ଶ୍ରୀ ବାସୁଦେବ ବିଷ୍ଣୁ ମିରାଶୀଙ୍କ

# କାଳିଦାସ




ଅନୁବାଦକ– [illegible]

# କାଳିଦାସ

ଲେଖକ

ମହାମହୋପାଧ୍ୟାୟ ଶ୍ରୀ ବାସୁଦେବ ବିଷ୍ଣୁ ମିରାଶୀ ଏମ୍. ଏ.,
ଭୂତପୂର୍ବ ଅଧ୍ୟକ୍ଷ, ସଂସ୍କୃତ, ପାଳି ଓ ପ୍ରାକୃତ ବିଭାଗ,
ନାଗପୁର ବିଶ୍ୱବିଦ୍ୟାଳୟ

ଅନୁବାଦକ

ପଣ୍ଡିତ-କବିରାଜ ଶ୍ରୀ ଅନନ୍ତ ତ୍ରିପାଠି ଶର୍ମା ଏମ୍.ଏ.,ବି.ଓ.ଏଲ୍.,
ସାହିତ୍ୟଶିରୋମଣି, ମୀମାଂସା ବିଦ୍ୟାପ୍ରବୀଣ, ଆୟୁର୍ବେଦାଚାର୍ଯ୍ୟ,
ରାଷ୍ଟ୍ରଭାଷାରତ୍ନ
ଲୋକସଭା ସଦସ୍ୟ, ବ୍ରହ୍ମପୁର

—o—

ପ୍ରକାଶକ

ଉତ୍କଳ ବିଶ୍ୱବିଦ୍ୟାଳୟ
ବାଣୀବିହାର, ଭୁବନେଶ୍ୱର

# ମୁଖବନ୍ଧ

କେତେକ ବର୍ଷ ପୂର୍ବେ ନାଗପୁର ବିଶ୍ୱବିଦ୍ୟାଳୟର କୌଣସି କାର୍ଯ୍ୟ ଉପଲକ୍ଷରେ ମୋତେ ନାଗପୁର ଯିବାର ସୁବିଧା ମିଳିଥିଲା । ନାଗପୁର ବିଜ୍ଞାନ କଲେଜର ଡାକ୍ତାଳିକ ଅଧ୍ୟକ୍ଷ ଶ୍ରୀଯୁକ୍ତ ଏମ୍‌. ଭି. ମିରାଶୀଙ୍କ ଅନୁଗ୍ରହରୁ ତାଙ୍କର ପିତା ମହାମହୋପାଧ୍ୟାୟ ପଣ୍ଡିତ ବି. ଵି. ମିରାଶୀଙ୍କୁ ଭେଟିବାର ସୁଯୋଗ ପାଇଥିଲି । କଥା-ପ୍ରସଙ୍ଗରେ ମହାମହୋପାଧ୍ୟାୟ ପଣ୍ଡିତମହୋଦୟ ମହାକବି କାଳିଦାସଙ୍କ ବିଷୟରେ ତାଙ୍କ ପୁସ୍ତକ ବିଷୟ ଉଲ୍ଲେଖ କରିଥିଲେ ଏବଂ ସେ ଅନୁଗ୍ରହ କରି ସେହି ପୁସ୍ତକର ହିନ୍ଦୀ ଅନୁବାଦରୁ ଖଣ୍ଡିଏ ମୋତେ ଉପହାର ଦେଇଥିଲେ । ସେ ସମୟରେ ଉକ୍ତ ପୁସ୍ତକର ଓଡ଼ିଆ ଅନୁବାଦ କଥା ଉଠିଥିଲା । ଓଡ଼ିଶାକୁ ଫେରି ଏବଂ ହିନ୍ଦୀ-ଅନୁବାଦକୁ ପଢ଼ିସାରି ମହାମହୋପାଧ୍ୟାୟଙ୍କ ପୁସ୍ତକର ଓଡ଼ିଆ-ଅନୁବାଦ ପ୍ରସଙ୍ଗ ଉତ୍କଳ ବିଶ୍ୱବିଦ୍ୟାଳୟର "ଓଡ଼ିଆ ସାହିତ୍ୟ ଉତ୍ସାହକ ଓ ଉନ୍ନାୟକ କମିଟି" (Committee for Improvement & Encouragement of Oriya Literature) ସମ୍ମୁଖରେ ଉପସ୍ଥାପିତ କଲି । କମିଟିର ସୁପାରିସ ଅନୁସାରେ ସିଣ୍ଡିକେଟ୍‌ ପୁସ୍ତକର ଓଡ଼ିଆ ଅନୁବାଦ କରିବାକୁ ସ୍ୱୀକୃତି ଦେଲେ । ତହୁଁ ପଣ୍ଡିତ ଅନନ୍ତ ତ୍ରିପାଠୀ ଶର୍ମା ମହୋଦୟଙ୍କୁ ଅନୁବାଦ କରିବାର ଭାର ଦିଆଗଲା । ମହାମହୋପାଧ୍ୟାୟ ପଣ୍ଡିତ ମିରାଶୀଙ୍କ "କାଳିଦାସ" ପୁସ୍ତକର ଓଡ଼ିଆ ଅନୁବାଦ ବର୍ତ୍ତମାନ ପ୍ରକାଶିତ ହେଲା । ଏହା ଉପାଦେୟ ଗ୍ରନ୍ଥ ଅଧ୍ୟାପକ ଓ ଗବେଷକମାନଙ୍କର ବହୁତ ସାହାଯ୍ୟ କରିବ—ଏଥିରେ ସନ୍ଦେହ ନାହିଁ ।

ପରିଶେଷରେ ମହାମହୋପାଧ୍ୟାୟ ପଣ୍ଡିତ ବାସୁଦେବ ଶାସ୍ତ୍ରୀ ମିଶ୍ରଜୀ ତାଙ୍କ ପୁସ୍ତକର ଓଡ଼ିଆ ଅନୁବାଦ ପାଇଁ ସ୍ୱୀକୃତ ଦେଇଥିବାରୁ ତାଙ୍କୁ ମୁଁ ଧନ୍ୟବାଦ ଅର୍ପଣ କରୁଅଛି ।

ବାଣୀବିହାର,
ଭୁବନେଶ୍ୱର
ତା ୭ । ୧୦ । ୬୨

ପ୍ରାଣକୃଷ୍ଣ ପରିଡ଼ା

—o—

# *ପ୍ରସ୍ତାବନା

ଏହି ପୁସ୍ତକ (ହିନ୍ଦୀସଂସ୍କରଣ) ନାଗପୁରର ପ୍ରସିଦ୍ଧ 'ନବଭାରତ ଗ୍ରନ୍ଥମାଳା'ରେ ପ୍ରକାଶିତ ମରାଠୀପୁସ୍ତକର ଅନୁବାଦ ମାତ୍ର । ହିନ୍ଦୀଜନତା କାଳିଦାସଙ୍କର କାବ୍ୟ ଓ ନାଟକ ବିଷୟରେ ଅପରିଚିତ ନୁହନ୍ତି । ଅଦ୍ୟପର୍ଯ୍ୟନ୍ତ କାଳିଦାସଙ୍କର କାବ୍ୟ ଓ ନାଟକମାନଙ୍କର ଅନେକ ଅନୁବାଦ ପ୍ରକାଶିତ ହୋଇଅଛି । ପଣ୍ଡିତ ଶ୍ରୀମହାବୀରପ୍ରସାଦ ଦ୍ୱିବେଦୀ କାଳିଦାସଙ୍କର କବିତାର ଗୁଣଦୋଷ ବିଷୟରେ ମଧ୍ୟ ସମାଲୋଚନାତ୍ମକଭାବରେ ବହୁତ ଲେଖି ଅଛନ୍ତି । କିନ୍ତୁ କାଳିଦାସସମ୍ବନ୍ଧୀୟ ସକଳ ବିଷୟରେ ବ୍ୟାପକରୂପରେ ସର୍ବାଙ୍ଗୀନ ସମାଲୋଚନାତ୍ମକ ଗ୍ରନ୍ଥର ବର୍ତ୍ତମାନ ସୁଦ୍ଧା, ଖାଲି ହିନ୍ଦୀସାହିତ୍ୟ ନୁହେଁ, ଅନ୍ୟ ଯେକୌଣସି ଭାରତୀୟ ଓ ବିଦେଶୀୟ ସାହିତ୍ୟରେ ମଧ୍ୟ ଯେତେଦୂର ମୁଁ ଜାଣେ, ଅଭାବ ରହିଅଛି ।

କାଳିଦାସଙ୍କର ଜନ୍ମସ୍ଥାନ ଓ ସମୟପ୍ରଭୃତି ବିବାଦାସ୍ପଦ ବିଷୟମାନଙ୍କର ବିଚାର ଅନେକ ପଣ୍ଡିତ କରି ଅଛନ୍ତି । ତଥାପି ସେ ସମସ୍ତ ପ୍ରଶ୍ନର ବର୍ତ୍ତମାନସୁଦ୍ଧା ନିଶ୍ଚିତ ରୂପରେ ସମାଧାନ ହୋଇପାରି ନାହିଁ । ଏହି ହେତୁ ଏହି ପୁସ୍ତକରେ ସେ ପ୍ରଶ୍ନମାନଙ୍କ ବିଷୟରେ କେବଳ ମୋର ମତ ନ ଦେଇ ଆଜସୁଦ୍ଧା ଏ ସମସ୍ତ ବିଷୟରେ ପ୍ରକାଶିତ ବିଭିନ୍ନ ପଣ୍ଡିତମାନଙ୍କର ବିଶିଷ୍ଟ ମତମାନ ଉଲ୍ଲେଖ କରି ତର୍କ ଓ ଯୁକ୍ତିବଳରେ ଊହାପୋହପୂର୍ବକ ବିବେଚନା କରି ଅଛି । ଏ ହେତୁ ଆଶା କରୁଅଛି ଯେ ପାଠକମାନେ ନିଜ ନିଜ

---

* ହିନ୍ଦୀରୁ ଅନୁଦିତ ।

ମତ ସ୍ଥିର କରିବାକୁ ଏଥିରୁ ଯଥେଷ୍ଟ ସାହାଯ୍ୟ ପାଇପାରିବେ । ତା ସଙ୍ଗେ ସଙ୍ଗେ ମୋର ମନେ ହେଉଛି, ସଂସ୍କୃତଜ୍ଞ ପାଠକମାନଙ୍କ ପକ୍ଷରେ ଏହି ଗ୍ରନ୍ଥଟି ମନୋରଞ୍ଜକ ଓ ଉପାଦେୟ ବୋଧ ହେବ । ଅନ୍ୟ ପାଠକମାନେ ମଧ୍ୟ ସହଜରେ କାଳିଦାସଙ୍କ କବିତାର ରସାସ୍ୱାଦନ କରିପାରିବେ—ଏହି ଉଦ୍ଦେଶ୍ୟରେ କାଳିଦାସକାଳୀନ ପରିସ୍ଥିତି ଏବଂ ତାଙ୍କ କାବ୍ୟନାଟକମାନଙ୍କର ବିଷୟରେ ବିସ୍ତୃତ ଚର୍ଚ୍ଚା କରାଯାଇ ଅଛି । ଯଦି ପାଠକମାନେ ପ୍ରଥମେ ଏ ସମସ୍ତ ବିଷୟ ପଢ଼ିବେ, ତେବେ ଅନ୍ୟାନ୍ୟ ବିଷୟ ବୁଝିବା କଠିନ ହେବନାହିଁ ।

କାଳିଦାସଙ୍କ ବିଷୟରେ ଏପର୍ଯ୍ୟନ୍ତ ପ୍ରକାଶିତ ଓ ଉପଲବ୍ଧ ସମସ୍ତ ପ୍ରବନ୍ଧ ବା ଗ୍ରନ୍ଥମାନଙ୍କର ଉପଯୋଗ ଏହି ପୁସ୍ତକରେ କରାଯାଇ ଅଛି । ସେ ସମସ୍ତର ଉଲ୍ଲେଖ ମୁଁ ପ୍ରସଙ୍ଗକ୍ରମେ ସ୍ଥାନେ ସ୍ଥାନେ କୃତଜ୍ଞତା ସହକାରେ କରିଅଛି । ଜିଜ୍ଞାସୁ ପାଠକମାନେ ସତ୍ୟାସତ୍ୟନିର୍ଣ୍ଣୟ ନିଜେ ପରୀକ୍ଷା କରି, କରି ପାରିବେ ଭାବି ଫୁଟ୍‌ନୋଟରେ ସ୍ଥଳନିର୍ଦ୍ଦେଶ ମଧ୍ୟ ମୁଁ କରିଅଛି । ଏହି ପୁସ୍ତକରେ ଯେ କେବଳ ଗବେଷକମାନଙ୍କର ମତମାନ ଉଲ୍ଲିଖିତ ହୋଇଅଛି, ତାହା ନୁହେଁ, କିନ୍ତୁ ସେ ସମସ୍ତ ମତଉପରେ ନୂତନ ଆଲୋକପାତ, ମୌଳିକ ବିଚାର ଓ ସ୍ୱତନ୍ତ୍ର ମତ ଦେବାକୁ ମଧ୍ୟ ପ୍ରଯତ୍ନ କରାଯାଇଅଛି । ମୋର ଦୃଢ଼ ବିଶ୍ୱାସ, ବହୁଶ୍ରୁତ ଓ ଅଧ୍ୟୟନଶୀଳ ପାଠକମାନେ ସେ ସମସ୍ତ ବିଚାରକୁ ସ୍ୱାଗତ କରିବେ ।

ଏହି ହିନ୍ଦୀଅନୁବାଦ ବର୍ଦ୍ଧା-ଭାରତୀୟ ସାହିତ୍ୟପରିଷଦର ସଭ୍ୟ ପଣ୍ଡିତ ଶ୍ରୀ ହୃଷୀକେଶ ଶର୍ମା କରିଅଛନ୍ତି । ଏଥି ସକାଶେ

ମୁଁ ତାଙ୍କଠାରେ କୃତଜ୍ଞ । ଏହି ଅନୁବାଦକୁ ପରିମାର୍ଜିତ କରିବାରେ ଅଧ୍ୟାପକ ଶ୍ରୀ ସରସ୍ୱତୀପ୍ରସାଦ ଚତୁର୍ବେଦୀ, ମରିସ କାଲେଜ, ନାଗପୁର ତଥା ପଣ୍ଡିତ ଶ୍ରୀ ହଦପ୍ରଶଙ୍କର ଭଟ୍ଟ, ଲାହୋର ଯେଉଁ ସାହାଯ୍ୟ କରି ଅଛନ୍ତି, ମୁଁ କୃତଜ୍ଞତାସହକାରେ ତାର ଉଲ୍ଲେଖ କରୁଅଛି, ଲାହୋରର ପ୍ରସିଦ୍ଧ ସଂସ୍କୃତଗ୍ରନ୍ଥପ୍ରକାଶକ ମୋତିଲାଲ ବନାରସୀଦାସ ଏହି ପୁସ୍ତକ ପ୍ରକାଶ କରିବାକୁ ସ୍ୱୀକୃତ ହୋଇ ଧନ୍ୟବାଦର ପାତ୍ର ହୋଇ ଅଛନ୍ତି ।

ନାଗପୁର ବିଶ୍ୱବିଦ୍ୟାଳୟ }
ନାଗପଞ୍ଚମୀ, ସମ୍ବତ୍ ୧୯୨୫ }

ବି. ବି. ମିରାଶୀ

# ଅନୁବାଦକଙ୍କ ଆତ୍ମକଥା

ଉତ୍କଳବିଶ୍ୱବିଦ୍ୟାଳୟ ମହାମହୋପାଧ୍ୟାୟ ଶ୍ରୀ ବାସୁଦେବ ବିଷ୍ଣୁ ମିରାଶୀଙ୍କର 'କାଳିଦାସ'କୁ ଓଡ଼ିଆରେ ଅନୁବାଦିତ କରି ପ୍ରକାଶ କରିବାକୁ ସ୍ଥିର କଲାପରେ ମୁଁ ସ୍ୱତଃପ୍ରବୃତ୍ତ ହୋଇ ଅନୁବାଦ କରିବା ଭାର ନେଇଥିଲି । କାରଣ ଏପର୍ଯ୍ୟନ୍ତ କାଳିଦାସଙ୍କ ବିଷୟରେ ଯେତେ ଯେତେ ସମାଲୋଚନାଗ୍ରନ୍ଥ ପ୍ରକାଶିତ ହୋଇ ଅଛି, ସେମାନଙ୍କ ମଧ୍ୟରେ 'କାଳିଦାସ'ର ସ୍ଥାନ ଅତି ଉଚ୍ଚରେ । କହିବାକୁ ଗଲେ କାଳିଦାସଙ୍କ ବିଷୟରେ ଯେଉଁ ସବୁ ଜ୍ଞାତବ୍ୟ ବିଷୟ ରହିଛି, ମହାମହୋପାଧ୍ୟାୟ ମିରାଶୀ ସେ ସମସ୍ତ ସଂଗ୍ରହ କରି ପୁଙ୍ଖାନୁପୁଙ୍ଖ ସମାଲୋଚନା କରି ଅଛନ୍ତି ଏବଂ ଏ ପର୍ଯ୍ୟନ୍ତ ପ୍ରକାଶିତ ସମସ୍ତ ସମାଲୋଚନାଗ୍ରନ୍ଥର ସାର ଏହି ଗ୍ରନ୍ଥରେ ସନ୍ନିବେଶିତ କରି ଅଛନ୍ତି । ତାଙ୍କର ସୂକ୍ଷ୍ମବୁଦ୍ଧିରେ ସେ ସମସ୍ତ ବିଷୟରେ ନିଜର ସିଦ୍ଧାନ୍ତ ପ୍ରକାଶ କରି ଅଛନ୍ତି । ଏହି ଗ୍ରନ୍ଥ ଉଚ୍ଚଶ୍ରେଣୀୟ ଛାତ୍ର ତଥା ଶିକ୍ଷକମାନଙ୍କ ପକ୍ଷରେ ଅତ୍ୟନ୍ତ ଉପାଦେୟ । ଓଡ଼ିଆରେ ପ୍ରକାଶ ପାଇଲେ ଉତ୍କଳୀୟ ଛାତ୍ରସମାଜ ଓ ସୁଧୀବୃନ୍ଦ କାଳିଦାସଙ୍କ ବିଷୟରେ ଅନେକ ନୂତନ ତଥ୍ୟମାନ ଜାଣିପାରିବେ ଏଥିରେ – ସନ୍ଦେହ ନାହିଁ । ଅନୁବାଦକ ହିସାବରେ ମୁଁ ମୂଳଗ୍ରନ୍ଥର ଓଡ଼ିଆ ତରଜମା କରି ଅଛି । କୌଣସି ସ୍ଥଳରେ ଲେଖକଙ୍କର ମୌଳିକ ଭାବଧାରାକୁ ରୂପାନ୍ତରିତ, ବିକୃତ ବା ବିଲୁପ୍ତ କରି ନାହିଁ । ଆଶା କରେ, ସହୃଦୟ ପାଠକମାନେ ଏହାର ସଦୁପଯୋଗ କରିବେ ।

ଗ୍ରନ୍ଥର ଅବିକଳ ଅନୁବାଦ କଲେ ମଧ୍ୟ ଅନେକ ବିଷୟରେ ମୁଁ ଗ୍ରନ୍ଥକାରଙ୍କ ସହିତ ଏକମତ ନୁହେଁ । ମୋର ଅମ୍ଳା ହୃଦ-

ସମାଜର ମହୁଡ଼ମଣି ବିକ୍ରମାଦିତ୍ୟଙ୍କୁ ଉଡ଼ାଇଦେଇ ଦ୍ୱିତୀୟ ଚନ୍ଦ୍ରଗୁପ୍ତଙ୍କୁ ବିକ୍ରମାଦିତ୍ୟ ମାନି, କାଳିଦାସଙ୍କୁ ତଦାଶ୍ରିତ ମାନିବାକୁ ପ୍ରସ୍ତୁତ ନୁହେଁ କି କାଳିଦାସ ଅଶ୍ୱଘୋଷଙ୍କର ଅନୁକରଣ ବା ଆଦର୍ଶରେ ନିଜ କାବ୍ୟମାନ ଲେଖିଅଛନ୍ତି ବୋଲି ମାନିପାରିବି ନାହିଁ । ନାଗପୁରସମୀପସ୍ଥ 'ରାମଟେକ୍' ଯକ୍ଷର ବିରହବିନୋଦନ ସ୍ଥଳ ରାମଗିରି ବୋଲି ମଧ୍ୟ ମୁଁ ସ୍ୱୀକାର କରି ପାରିବି ନାହିଁ । ଏହିପରି ଆହୁରି ଅନେକ ବିଷୟ ଅଛି, ଯହିଁରେ କି ମୋର ମତଦ୍ୱୈଧ ରହିଛି । ସେ ସମସ୍ତର ବିସ୍ତୃତ ବିବରଣୀ ପାଠକମାନଙ୍କୁ ଉପହାର ଦେବା ବାସନା ମୋର ରହିଛି । ଭଗବାନଙ୍କର ଶୁଭଦୃଷ୍ଟି ପଡ଼ିଲେ ମୋଦ୍ୱାରା ସମ୍ପାଦିତ 'କାଳିଦାସ ଗ୍ରନ୍ଥମାଳା'ର ପ୍ରଥମ କୁସୁମ 'ମେଘଦୂତ'ର ଭୂମିକାରେ ସେ ସମସ୍ତର ପରିଚୟ ସହୃଦୟ ପାଠକମାନେ ପାଇପାରିବେ ବୋଲି ଆଗରୁ କହି ରଖୁଅଛି ।

ଏହି ଗ୍ରନ୍ଥର ଅନୁବାଦ କରିବା ଓ ଛପାଇବା ସୁଯୋଗ ମୋତେ ଦେଇଥିବାରୁ ମୁଁ ଉତ୍କଳବିଶ୍ୱବିଦ୍ୟାଳୟକର୍ତ୍ତୃପକ୍ଷ ବିଶେଷତଃ କୁଳପତିଙ୍କୁ ବିଶେଷ ଧନ୍ୟବାଦ ଦେଉଅଛି । ଇତି ।

ବିନୀତ ଅନୁବାଦକ

ତା ୩ । ୧୦ । ୬୨

# ଅନୁକ୍ରମଣିକା





# ୧-କାଳ-ନିର୍ଣ୍ଣୟ

'ख्यातिं कामपि कालिदासकृतयो नीताः शकारातिना'

(ଶକାରି ବିକ୍ରମାଦିତ୍ୟ କାଳିଦାସଙ୍କ କୃତିମାନଙ୍କୁ ବିଶେଷ ଭାବରେ ବିଖ୍ୟାତ କରିଥିଲେ)

— *ଅଭିନନ୍ଦକୃତ ରାମଚରିତ*

ଆମର ସଂସ୍କୃତ ସାହିତ୍ୟ ଅତ୍ୟନ୍ତ ସମୃଦ୍ଧ ଓ ଅଗାଧ । ବେଦ, ବେଦାଙ୍ଗ, ଉପନିଷଦ୍, ଦର୍ଶନ, ପୁରାଣ, ଧର୍ମଶାସ୍ତ୍ର କାବ୍ୟ, ନାଟକ ପ୍ରଭୃତି ବିବିଧ ବିଷୟରେ ଶତ ଶତ ଗ୍ରନ୍ଥ ଏ ପର୍ଯ୍ୟନ୍ତ ପ୍ରକାଶିତ ହୋଇ ସାରିଛି ଏବଂ ଶତ ଶତ ଗ୍ରନ୍ଥ ବର୍ତ୍ତମାନ ସୁଦ୍ଧା 'ପାଣ୍ଡୁଲିପି' ସ୍ୱରୂପରେ କୌଣସି ପୁସ୍ତକ ପ୍ରକାଶକଙ୍କର କୃପାଦୃଷ୍ଟି ଅପେକ୍ଷା କରି ରହିଛି । ଏହା ଛଡ଼ା ଆମର ଶତ ଶତ ଅମୂଲ୍ୟ ଗ୍ରନ୍ଥ ଦୈବଦୁର୍ବିପାକରୁ ଅକାଳରେ କାଳକବଳିତ ହୋଇ ଯାଇଛି । ହଜାର ହଜାର ବର୍ଷ ଧରି ଅସଂଖ୍ୟ ବିଦ୍ୱାନ୍ ଲେଖକ ନିଜ ନିଜ ଅପାର ବୁଦ୍ଧିବିଭବ ଖର୍ଚ୍ଚ କରି ଏହି ବିଶାଳ ଗ୍ରନ୍ଥଭଣ୍ଡାରକୁ ଶାସ୍ତ୍ର ସମ୍ପତ୍ତିରେ ପରିପୂର୍ଣ୍ଣ କରି ଅଛନ୍ତି । ଏହା ସତ୍ତ୍ୱେ ଏହି ବିଶାଳ ଭଣ୍ଡାରରେ ଐତିହାସିକ ଗ୍ରନ୍ଥର ଅଭାବ ପ୍ରତ୍ୟେକ ସଂସ୍କୃତ ପ୍ରେମୀଙ୍କୁ ଅଭିଭୂତ କରୁଅଛି । ଆମର ଯେ ଐତିହାସିକ-ଗ୍ରନ୍ଥ ନାହିଁ—ଏହା ନୁହେଁ । ଅବଶ୍ୟ ଉଦାହରଣ ସ୍ୱରୂପ କଲହଣ କବିଙ୍କର 'ରାଜତରଙ୍ଗିଣୀ', ବାଣଭଟ୍ଟଙ୍କର 'ହର୍ଷଚରିତ', ପଦ୍ମଗୁପ୍ତଙ୍କର 'ନବସାହସାଙ୍କ ଚରିତ' ଏବଂ ବିଲ୍‌ହଣ କବିଙ୍କର 'ବିକ୍ରମାଙ୍କ ଦେବଚରିତ' ପ୍ରଭୃତି ମୁଷ୍ଟିମେୟ କେତେକ ଗ୍ରନ୍ଥ ରହିଛି ।

କିନ୍ତୁ ଏହି କେତୋଟି ସାହାଯ୍ୟରେ ଐତିହାସିକତତ୍ତ୍ୱ ବାହାର କରିବା କଷ୍ଟସାଧ୍ୟ । କାରଣ ଏମାନଙ୍କରେ ବିବିଧ ଘଟନା, ବିଚିତ୍ର କଥା ସଂବିଧାନ ଏବଂ ଅତିଶୟୋକ୍ତି ଏତେ ଦୂର ଘୁରି ରହିଛି ଯେ ଏମାନଙ୍କରୁ ପ୍ରକୃତ ଐତିହାସିକ ସତ୍ୟ ବାହାର କରିବା ଅସମ୍ଭବ ହୋଇ ଉଠୁଛି । ଯେତେବେଳେ ଏମାନଙ୍କରେ ଆମେମାନେ ପ୍ରତାପଶାଳୀ ପୂର୍ବକାଳୀନ ସମ୍ରାଟ୍ ଅଶୋକ, ବିକ୍ରମାଦିତ୍ୟ ସମୁଦ୍ରଗୁପ୍ତ, ଚନ୍ଦ୍ରଗୁପ୍ତ, ଭୋଜ ପ୍ରଭୃତି ରାଜାମାନଙ୍କର ଶାସନ-କାଳୀନ ଯଥାର୍ଥ ଘଟନା ଏବଂ ସେମାନଙ୍କର ଗୁଣଦୋଷର ପୂର୍ଣ୍ଣ ପରିଚୟ ପାଇପାରୁନାହୁଁ, ସେତେବେଳେ ସେମାନଙ୍କର ଆଶ୍ରିତ କବି ଲେଖକ ଓ କଳାକାରମାନଙ୍କ ସମ୍ବନ୍ଧରେ ପ୍ରକୃତ ତତ୍ତ୍ୱଜ୍ଞାନ ଲାଭ କରିବା କାଠିକର ପାଠ ହେଉଅଛି । ଯଦ୍ୟପି ଭବଭୂତି, ବାଣ, ରାଜଶେଖର, ବିଲ୍ହଣ ପ୍ରଭୃତି କବିମାନେ ନିଜ ନିଜ ଗ୍ରନ୍ଥ-ମାନଙ୍କରେ ନିଜ ନିଜ ବଂଶ, ପାଣ୍ଡିତ୍ୟ ଓ ଆଶ୍ରୟଦାତାଙ୍କ ସମ୍ବ-ନ୍ଧରେ ଅବଶ୍ୟ ଊଣାଅଧିକ ଉଲ୍ଲେଖ କରିଛନ୍ତି, ତଥାପି ସେ ସମସ୍ତ ଦେଖି ଆଧୁନିକଯୁଗର ପୁରାତତ୍ତ୍ୱପ୍ରେମୀ ପାଠକ ତୃପ୍ତି ଲାଭ କରି-ପାରୁ ନାହିଁ । ତେବେ ବି ଯେଉଁ କବିମାନେ ନିଜ ନିଜ ବିଷୟରେ ଏକ ଅକ୍ଷର ସୁଦ୍ଧା ଲେଖି ନାହାନ୍ତି, ସେହି କବିମାନଙ୍କ ତୁଳନାରେ ଏହି କବିମାନେ ଦେଇ ଥିବା ନିଜର ସ୍ୱଳ୍ପ ପରିଚୟ ଐତିହାସିକ ଆଧାର ଦୃଷ୍ଟିରେ ବିଶେଷ ସହାୟକ ହେଉଅଛି । ପୁଣି ଏହି କବିମାନେ 'ଆତ୍ମଶ୍ଳାଘା'କୁ ଦୋଷ ମନେ କରି ସ୍ୱ ସ୍ୱ ଗ୍ରନ୍ଥରେ ନିଜର ଏହି ଅଳ୍ପ ବହୁତ ପରିଚୟ ଯଦି ଦେଇ ନଥାନ୍ତେ, ତେବେ ସେମାନଙ୍କର କାଳନିର୍ଣ୍ଣୟ କରିବା ମଧ୍ୟ ବିବାଦର ବିଷୟ ହୋଇଥାନ୍ତା । କାରଣ ଏହା ନିଶ୍ଚିତ କଥା ଯେ ସମକାଳୀକ ଲେଖକମାନେ ଏହାଙ୍କର ଜୀବିତ ଦଶାରେ ବା ମୃତ୍ୟୁ ପରେ

ଏହାଙ୍କର ଭୂୟସୀ ପ୍ରଶଂସା କଲେ ମଧ୍ୟ ଏହାଙ୍କର 'ଜୀବନ ଚରିତ' ଲେଖିବାକୁ କଦାପି ଅଗ୍ରସର ହୋଇ ଅନ୍ତେ ନାହିଁ ।

କାଳିଦାସଙ୍କର ବିଷୟ ଧରିଯାଉ । ସଂସାରର ପ୍ରାୟ ସମସ୍ତ ପ୍ରାଚୀନ ଓ ଅର୍ବାଚୀନ ଦେଶୀ ବିଦେଶୀ ପଣ୍ଡିତଗଣ ମୁକ୍ତକଣ୍ଠରେ ଏହାଙ୍କର ପ୍ରଶଂସା କରି ଅଛନ୍ତି ଏବଂ ଏହାଙ୍କୁ 'କବିକୁଳଗୁରୁ' ଉପାଧିରେ ସମ୍ମାନିତ କରି ସଂସ୍କୃତ କବିମାନଙ୍କ ମଧ୍ୟରେ ସର୍ବୋଚ୍ଚ ସ୍ଥାନ ଦେଇ ଅଛନ୍ତି । ଖାଲି ସେତିକି ନୁହେଁ, ଏହାଙ୍କୁ ସଂସାରର 'ସାହିତ୍ୟ ସମ୍ରାଟ୍'ମାନଙ୍କ ଆସନରେ ବସାଇ ଅଛନ୍ତି । କହନ୍ତୁ— ଏହି ମହାକବିଙ୍କର ବଂଶ, ଜନ୍ମଚରିତ, ସ୍ୱଭାବ, ଯୋଗ୍ୟତା-ପ୍ରଭୃତି ବିଷୟରେ ଜ୍ଞାତବ୍ୟ, ବିଶ୍ୱାସଯୋଗ୍ୟ ସାମଗ୍ରୀ ଆମ ପ୍ରାଚୀନ ସାହିତ୍ୟ ଭଣ୍ଡାରରେ କେତେ ପରିମାଣରେ ମିଳୁଅଛି ? କେବଳ ନିଜେ ନିଜେ ଅତ୍ୟନ୍ତ ବିନମ୍ରୀ ହୋଇ ଥିବାରୁ ପ୍ରାଚୀନ ନିୟମ ଅନୁସରଣ କରି ନିଜ ନିଜ ନାଟକମାନଙ୍କରେ କେବଳ ନିଜ ନିଜ ନାମ ମାତ୍ର ନିର୍ଦ୍ଦେଶ କରିଛନ୍ତି । ନିଜ ନିଜ କାବ୍ୟମାନଙ୍କରେ ତାହା ମଧ୍ୟ କରି ନାହାନ୍ତି । କାଳିଦାସଙ୍କର ଏହି ନିସ୍ପୃହତାର କୌଣସି ଅଭିସନ୍ଧି ଅଛି କି ? ସେ ଯେଉଁ ସହୃଦୟ ରସିକ ରାଜାଙ୍କର ଆଶ୍ରୟରେ ରହିଥିଲେ, ତାଙ୍କ ସମ୍ବନ୍ଧରେ ଧନ-ଲାଳସାର ବଶବର୍ତ୍ତୀ ହୋଇ ଏକ ପଂକ୍ତି ପ୍ରଶସ୍ତି ମଧ୍ୟ ଲେଖି ନାହାନ୍ତି । ଯଦି ପରୋକ୍ଷ ଭାବରେ କୃତ ଉଲ୍ଲେଖ ଛାଡ଼ି ଦିଆଯାଏ, ତେବେ ସେ ନିଜ ନାମ ସହିତ ଆଶ୍ରୟଦାତାଙ୍କର ନାମ ମଧ୍ୟ ନିଜ କାବ୍ୟରେ ଉଲ୍ଲେଖ କରି ନାହାନ୍ତି । ମହାକବିମାନେ ନିଜ ନିଜ ଦେଶର ବିଶାଳ ବିଭୂତି, ବିଶ୍ୱବିଜୟୀ ସମ୍ରାଟ୍ ଏବଂ ନିଜ ଜୀବନ ଚରିତ ଲେଖିବା ପ୍ରଥା ଗ୍ରହଣ କରି ନଥିବାରୁ, ସେମାନଙ୍କର ମୃତ୍ୟୁ ପରେ

ସେମାନଙ୍କର ଚରିତର ଐତିହାସିକ ସାମଗ୍ରୀ ଲୁପ୍ତ ହୋଇଯାଇଛି । ଫଳରେ ସେହି ଐତିହାସିକତାର ସ୍ଥାନ ନାନାପ୍ରକାର ଗଳ୍ପକଥାର କାହାଣୀମାନେ ଗ୍ରହଣ କରିଛନ୍ତି । ସ୍ପଷ୍ଟତରେ ବଲ୍ଲାଳ କବିଙ୍କର 'ଭୋଜପ୍ରବନ୍ଧ' ଏହିପରି ମନଗଢ଼ା କଥାମାନଙ୍କର ସମାବେଶମାତ୍ର । କାବ୍ୟକଳା ଦୃଷ୍ଟିରେ ଶବ୍ଦ ଯୋଜନାରେ ବିଶେଷ ମାଧୁର୍ଯ୍ୟ ଥାଇପାରେ ଏବଂ ଅର୍ଥ ବୈଚିତ୍ର୍ୟରେ ସୌନ୍ଦର୍ଯ୍ୟ ଥାଇପାରେ, ମାତ୍ର ଇତିହାସର କଷଟିପଥରରେ ଏହାର ଗାର ପଡ଼ିବ ନାହିଁ । ଭୋଜ ପ୍ରବନ୍ଧର ରଚନାକାଳ ଷୋଡଶ ଶତାବ୍ଦୀ । ଏହା କାଳିଦାସଙ୍କର କେତେ ଶହ ବର୍ଷ ପରେ ଲେଖା ଯାଇ ଅଛି । ଏ ହେତୁ ଏହାର ଐତିହାସିକ ମହତ୍ତ୍ୱ ବା ମୂଲ୍ୟ ନିତାନ୍ତ କମ୍ । ବଡ଼ ଆଶ୍ଚର୍ଯ୍ୟର କଥା—ବଲ୍ଲାଳ ଭିନ୍ନ ଭିନ୍ନ କାଳର ବିଭିନ୍ନ କବିମାନଙ୍କୁ ଏକ ସମୟରେ ଏକ ସ୍ଥାନରେ ସମାବେଶିତ କରି ଦେଇଛନ୍ତି । ଭୋଜଙ୍କ ରାଜ ସଭାରେ କାଳିଦାସ, ଭବଭୂତି, ଭାରବି, ଦଣ୍ଡୀ, ବାଣ—ଏ ସମସ୍ତଙ୍କୁ ଆପଣ ସମସ୍ୟା ପୂରଣ କରୁଥିବା ଦେଖିପାରିବେ । ଏ ସମସ୍ତ କବିମାନଙ୍କର ଆଶ୍ରୟଦାତା ପ୍ରସିଦ୍ଧ ଧାରାଧିପତି ଭୋଜ ମଧ୍ୟ ସେ କବିମାନଙ୍କର ମୃତ୍ୟୁର କେତେ ଶହ ବର୍ଷ ପରେ ଏକାଦଶ ଶତାବ୍ଦୀରେ ଥିଲେ— ଏହା ତାଙ୍କର ଲିଖିତ ତାମ୍ରଫଳକ-ମାନଙ୍କରୁ ପ୍ରମାଣିତ ହୋଇଅଛି । ବର୍ତ୍ତମାନ ପାଠକ ନିଜେ ଭାବନ୍ତୁ-କବିମାନଙ୍କର ସମୟ ନିରୂପଣ କରିବାରେ ଏହି 'ପ୍ରବନ୍ଧ' କପରି ନିରର୍ଥକ ।

ପରମ୍ପରାଗତ ବିଶ୍ୱାସଯୋଗ୍ୟ ସାମଗ୍ରୀ ନ ଥିବାରୁ କାଳି-ଦାସଙ୍କର ଜନ୍ମ ସ୍ଥାନ, ସ୍ଥିତିକାଳ ଓ ଚରିତ୍ର ବିଷୟରେ ବିବିଧ ଲେଖକ ନାନାପ୍ରକାର ମନଗଢ଼ା କଳ୍ପନା କରି ଯାଇଛନ୍ତି । ଏହି ସମସ୍ତ କାରଣରୁ ତାଙ୍କର ସ୍ଥିତି ସମୟ ଏକ କଠିନ ବିବାଦର

ବିଷୟୀଭୂତ ହୋଇଅଛି । ସଙ୍ଗେ ସଙ୍ଗେ ସେ ବିଷୟ ଅତ୍ୟନ୍ତ ମହତ୍ତ୍ୱପୂର୍ଣ୍ଣ ଏବଂ ଅନ୍ୟ ସମସ୍ତ ପ୍ରଶ୍ନମାନଙ୍କର ବିଚାରର ଆଧାରଭୂତ ହୋଇଅଛି । ଏ ହେତୁ ଏହି ପରିଚ୍ଛେଦରେ ଏହି ବିଷୟର ବିଚାର କରାଯିବ ।

ପଣ୍ଡିତମାନେ କାଳିଦାସଙ୍କର ସମୟର ଦୁଇଟି ସୁସ୍ପଷ୍ଟ ସୀମା ମାନିଛନ୍ତି । କାଳିଦାସ ନିଜ ରଚିତ 'ମାଳବିକାଗ୍ନିମିତ୍ର' ନାଟକର କଥାବସ୍ତୁ ଶୁଙ୍ଗବଂଶୀୟ ରାଜା ଅଗ୍ନିମିତ୍ରଙ୍କର ଚରିତ୍ରରୁ ସଂଗ୍ରହ କରିଛନ୍ତି । ଏହି ଅଗ୍ନିମିତ୍ର, ମୌର୍ଯ୍ୟବଂଶର ଉଚ୍ଛେଦ ସାଧନ କରି ମଗଧ ସାମ୍ରାଜ୍ୟ ଧ୍ୱସ୍ତ କରିଥିବା ସେନାପତି ପୁଷ୍ପମିତ୍ରଙ୍କର ପୁତ୍ର ଥିଲେ । ଏହାଙ୍କର ସମୟ ଖ୍ରୀଷ୍ଟପୂର୍ବ ୧୫୦ ବର୍ଷର ଆଖପାଖ ବୋଲି ପଣ୍ଡିତମାନେ ସ୍ଥିର କରି ଅଛନ୍ତି । ଏହିହେତୁ କାଳିଦାସଙ୍କର ସମୟ ଏହା ପୂର୍ବରୁ ହୋଇ ନ ପାରେ । କାଳିଦାସଙ୍କର ନାମର ସ୍ପଷ୍ଟ ଉଲ୍ଲେଖ, ସର୍ବ ପ୍ରଥମେ କାନ୍ୟକୁବ୍ଜାଧୀଶ୍ୱର ସମ୍ରାଟ୍ ହର୍ଷବର୍ଦ୍ଧନଙ୍କ ( ୬୦୬-୬୪୭ ଖ୍ରୀଷ୍ଟାବ୍ଦ ) ସଭାକବିର ପ୍ରସିଦ୍ଧ ସଂସ୍କୃତ ମହାକବି ବାଣଭଟ୍ଟକୃତ ହର୍ଷଚରିତର ପ୍ରସ୍ତାବନାରେ ଏବଂ ଦକ୍ଷିଣ ଭାରତର 'ଐହୋଲେ' ନାମକ ଗ୍ରାମରୁ ପ୍ରାପ୍ତ ଶିଳାଲେଖରେ (ଖ୍ରୀଷ୍ଟାବ୍ଦ ୬୩୪) ଖୋଦିତ ପ୍ରଶସ୍ତିରେ * ଦେଖାଯାଏ । ଏହି ଦୁଇଟି ଉଲ୍ଲେଖ ଖ୍ରୀଷ୍ଟୀୟ ସପ୍ତମ ଶତାବ୍ଦୀର । ଏହିହେତୁ କାଳିଦାସଙ୍କର ସମୟ ସପ୍ତମ ଶତାବ୍ଦୀର ପରେ ହୋଇ ନ ପାରେ । କାଳିଦାସଙ୍କ ଅବସ୍ଥିତି ବିଷୟରେ ନିମ୍ନଲିଖିତ ମତମାନ ଉଲ୍ଲେଖ ଯୋଗ୍ୟ—

(୧) ଖ୍ରୀଷ୍ଟପୂର୍ବ ଦ୍ୱିତୀୟ ଶତାବ୍ଦୀ (ଡ଼ା. କୁହ୍ନନରାଜା)

(୨) ଖ୍ରୀଷ୍ଟୀୟ ପ୍ରଥମ ଶତାବ୍ଦୀ (ରା. ଚିନ୍ତାମଣି ବୈଦ୍ୟ)

---

* स जयति रविकीर्तिः कविताश्रितकालिदासभारविकीर्तिः ।

(୩) ଖ୍ରୀଷ୍ଟୀୟ ତୃତୀୟ ଶତାବ୍ଦୀ (ଶ୍ରୀ ଦ. ବେ. କେତକର)
(୪) ଖ୍ରୀଷ୍ଟୀୟ ଚତୁର୍ଥ ଶତାବ୍ଦୀର ଉତ୍ତର ଭାଗ (ଡ଼ା. ସର୍ ରାମକୃଷ୍ଣ ଭଣ୍ଡାରକର ପ୍ରଭୃତି ଭାରତୀୟ ତଥା ବହୁ ୟୁରୋପୀୟ ପଣ୍ଡିତ)
(୫) ଖ୍ରୀଷ୍ଟୀୟ ପଞ୍ଚମ ଶତାବ୍ଦୀ (ପ୍ର. ପାଠକ)
(୬) ଖ୍ରୀଷ୍ଟୀୟ ଷଷ୍ଠ ଶତାବ୍ଦୀ (ପ୍ର. ମୋକ୍ଷମୂଲର୍, ମହାମହୋପାଧ୍ୟାୟ ହରପ୍ରସାଦ ଶାସ୍ତ୍ରୀ, ପ୍ରା. ସୁବୋଧଚନ୍ଦ୍ର ସେନ ଗୁପ୍ତ) ଏ ସମସ୍ତ ମତ ଯେଉଁ ଯେଉଁ ପ୍ରମାଣଭିତ୍ତି ଉପରେ ପ୍ରତିଷ୍ଠିତ, ସେ ସମସ୍ତ ପ୍ରମାଣମାନଙ୍କର ସଂକ୍ଷିପ୍ତ ପରିଚୟ ନିମ୍ନରେ ଦିଆଗଲା—

## (୧) ଖ୍ରୀଷ୍ଟପୂର୍ବ ଦ୍ୱିତୀୟ ଶତାବ୍ଦୀ

'ମାଳବିକାଗ୍ନିମିତ୍ର' ନାଟକର ଭରତ ବାକ୍ୟରେ

**'आशास्यमीतिविगमप्रभृति प्रजानां**
**सम्पत्स्यते न खलु गोप्तरि नाग्निमित्रे ।'**

(ଅଗ୍ନିମିତ୍ର ପାଳକ ହୋଇ ଥିଲାବେଳେ ପ୍ରଜାମାନଙ୍କର ଈତି (ଅତିବୃଷ୍ଟି, ଅନାବୃଷ୍ଟି, ଶଲଭ, ମୂଷିକ, ଖଗ, ରାଜୋପଦ୍ରବ) ରାହିତ୍ୟପ୍ରଭୃତି ଆଶଂସନୀୟ କାର୍ଯ୍ୟ ନ ହେବ ଏହା ନୁହେଁ ।)

ବୋଲି ଶୁଙ୍ଗବଂଶୀୟ ଅଗ୍ନିମିତ୍ରରାଜାଙ୍କର ଉଲ୍ଲେଖ ଦେଖାଯାଏ । ସାଧାରଣତଃ ଭରତବାକ୍ୟରେ ଶାନ୍ତି, ସମୃଦ୍ଧି, ସୌରାଜ୍ୟ ପ୍ରଭୃତି ବିଷୟରେ ପ୍ରାର୍ଥନା କରାଯାଇଥାଏ । କେତେକ ସ୍ଥାନରେ ରାଜାଙ୍କର ନିର୍ଦ୍ଦେଶ ମଧ୍ୟ ଥାଏ ଏବଂ ତାହା ସେହି ସମୟର ରାଜାଙ୍କର ନିଦର୍ଶକ ବୋଲି ଧରାଯାଏ । ମାତ୍ର 'ମାଳବିକାଗ୍ନିମିତ୍ର'ର ଭରତବାକ୍ୟ ଅନ୍ୟ ପ୍ରକାର । ଏଥିରୁ ଡାକ୍ତର କୁହ୍ନନରାଜା ଅନୁମାନ କରନ୍ତି—କାଳିଦାସ ଖ୍ରୀଷ୍ଟ ପୂର୍ବ ଦ୍ୱିତୀୟ ଶତାବ୍ଦୀରେ ବିଦିଶାର

ରାଜା ଅଗ୍ନିମିତ୍ରଙ୍କର ଆଶ୍ରୟରେ ଥିଲେ । ଏ ବିଷୟରେ ସେ ଅତି କେତେକ ପ୍ରମାଣ ବି ଦେଇଛନ୍ତି, ସେ ମଧ୍ୟରୁ ଗୋଟାଏ ପ୍ରମାଣ ହେଉଛି, କାଳିଦାସ 'ମେଘଦୂତ'ରେ 'ତେଷାଂ ଦିକ୍ଷୁ ପ୍ରଥିତବିଦିଶା-ଲକ୍ଷଣାଂ ରାଜଧାନୀମ୍' (ବିଦିଶା ଦଶାର୍ଣ୍ଣଦେଶର ସର୍ବଜନ ପ୍ରସିଦ୍ଧ ରାଜଧାନୀ) ଏହି ବାକ୍ୟରେ ବିଦିଶାର ଯେଉଁ ବର୍ଣ୍ଣନା କରି ଅଛନ୍ତି, ତାହା ଶୁଙ୍ଗବଂଶୀୟ ରାଜାମାନଙ୍କର ରାଜଧାନୀ ବିଦିଶା ସହିତ ଖାପ ଖାଉଛି ।

କିନ୍ତୁ ଏହି ମତ ଠିକ୍ ବୋଲି ଧରାଯାଏ ନାହିଁ 'ମାଳବିକାଗ୍ନିମିତ୍ର' କାଳିଦାସଙ୍କର ପ୍ରଥମ ନାଟକ । ଏହା ନିଶ୍ଚିତ ଯେ— କାଳିଦାସଙ୍କର ପୂର୍ବବର୍ତ୍ତୀ ନାଟକ ଅତି ବିରଳ ଏବଂ ଯାହା ନିଶ୍ଚିତ ରୂପେ ପୂର୍ବବର୍ତ୍ତୀ ବୋଲି ଧରାଯାଇଛି, ସେ ସମସ୍ତ ପୂର୍ଣ୍ଣ-ରୂପେ ମିଳୁନାହିଁ, ଯାହା ମିଳୁଅଛି, ତାହା ମୂଳନାଟକମାନଙ୍କର ସଂକ୍ଷିପ୍ତ ସଂସ୍କରଣ ଏବଂ ସ୍ଥାନେ ସ୍ଥାନେ ତ୍ରୁଟିତ । ଏ ହେତୁ ସେ ସମସ୍ତ ପ୍ରମାଣରୁ କବି କାଳିଦାସଙ୍କ ସମୟରେ ଭରତବାକ୍ୟରେ କି ପ୍ରକାର ପ୍ରଥା ପ୍ରଚଳିତ ଥିଲା—ତାହା କହି ହେବ ନାହିଁ । କାଳିଦାସଙ୍କର ଅନ୍ୟ ଦୁଇଟି ନାଟକର ଭରତବାକ୍ୟ ସାମାନ୍ୟ ଧରଣର । ଏ ହେତୁ କେବଳ 'ମାଳବିକାଗ୍ନିମିତ୍ର'ର ଭରତ-ବାକ୍ୟକୁ ଆଧାର କରି କାଳିଦାସ ଅଗ୍ନିମିତ୍ରଙ୍କର ସମସାମୟିକ ଥିଲେ ବୋଲି ନିଶ୍ଚିତ ରୂପେ ଅନୁମାନ କରିହେବ ନାହିଁ । ଆଉ ଗୋଟିଏ କଥା—ଅତ୍ୟନ୍ତ ପ୍ରାଚୀନ କିମ୍ବଦନ୍ତୀ ଅନୁସାରରେ କାଳି-ଦାସ ଏକ ବିକ୍ରମାଦିତ୍ୟଙ୍କର ଆଶ୍ରୟରେ ଥିଲେ । ଅଗ୍ନିମିତ୍ର ବିକ୍ରମା-ଦିତ୍ୟ ଉପାଧିରେ ବିଭୂଷିତ ଥିଲେ ବୋଲି କୌଣସି ପ୍ରମାଣ ନାହିଁ । ବିଦିଶାର ମହତ୍ତ୍ୱ ଗୁପ୍ତ ସମୟରେ ଅକ୍ଷୁଣ୍ଣ ରହିଥିଲା । ଏହା ଭେଲସା (ପ୍ରାଚୀନ ବିଦିଶା)ର ସମୀପବର୍ତ୍ତୀ ଉଦୟଗିରି

(ପ୍ରାଚୀନ ମାଳବୈଗିର ) ର ଗୁମ୍ଫାର ଶିଳ୍ପ ଓ ଉତ୍କୀର୍ଣ୍ଣ ଲେଖ-ମାନଙ୍କରୁ ପ୍ରମାଣିତ ହେଉଅଛି । ଏହିହେତୁ ମେଘଦୂତରେ ବିଦିଶାର ବର୍ଣ୍ଣନା ସୁଦ୍ଧା ଯେହି ମତ ପରିପୁଷ୍ଟ କରୁ ନାହିଁ ।

## (୨) ଖ୍ରୀଷ୍ଟପୂର୍ବ ପ୍ରଥମ ଶତାବ୍ଦୀ ।

(କ) ପ୍ରାଚୀନ ପଣ୍ଡିତମାନଙ୍କ ପରମ୍ପରାଗତ ପ୍ରସିଦ୍ଧି ଅଛି ଯେ କାଳିଦାସ ବିକ୍ରମାଦିତ୍ୟଙ୍କର ରାଜସଭାର କବି ଥିଲେ । କାଳିଦାସ ନିଜ 'ବିକ୍ରମୋର୍ବଶୀୟ' ନାଟକର ନାମକରଣରେ ଏବଂ ନାଟକୀୟ ପାତ୍ରମାନଙ୍କର କଥୋପକଥନରେ ଦୁଇ ସ୍ଥାନରେ 'ବିକ୍ରମ' ଶବ୍ଦର ସହେତୁକ ଉଲ୍ଲେଖ କରି ଅଛନ୍ତି । ଯେପରି ସେକ୍ସପୀୟର ନିଜ ନାଟକରେ ଇଂଲଣ୍ଡର ରାଜା ଜେମ୍‌ସଙ୍କର ଉଲ୍ଲେଖ କରି ଅଛନ୍ତି, ସେପରି କାଳିଦାସ ନିଜ ଆଶ୍ରୟଦାତା ବିକ୍ରମଙ୍କର ଶ୍ଳେଷ-ଗର୍ଭିକ ଉଲ୍ଲେଖ କରି ଅଛନ୍ତି । ଏଥିରୁ ଏତିକି ଅନୁମାନ କରାଯାଏ ଯେ,ସେ ଏକ ବିକ୍ରମାଦିତ୍ୟ ନାମଧାରୀ ରାଜାଙ୍କର ସଭାରେ ଥିଲେ । ଲୋକମାନଙ୍କର ଧାରଣା—ଆଜିକାଲି ପ୍ରଚଳିତ ବିକ୍ରମ-ନାମକ ସମ୍ବତ୍ସର ଏହି ବିକ୍ରମାଦିତ୍ୟଙ୍କଦ୍ୱାରା ପ୍ରଚଳିତ ହୋଇଅଛି । ଏହି ବିକ୍ରମାବ୍ଦ ଖ୍ରୀଷ୍ଟପୂର୍ବ ୫୭ ବର୍ଷରୁ ହୋଇ ଅଛି—ଏ ହେତୁ କାଳିଦାସ ଖ୍ରୀଷ୍ଟପୂର୍ବ ପ୍ରଥମ ଶତାବ୍ଦୀରେ ଥିଲେ—ଏହା ପ୍ରାଚୀନା-ଚାର୍ଯ୍ୟମାନଙ୍କର ମତ । ଏହି ମତକୁ ଶ୍ରୀ ମ· ବୈଦ୍ୟ, ପ୍ର. ଅପଟେ ପ୍ର. ଶାରଦା ରଞ୍ଜନ ରାୟ, ପ୍ରୟାଗ ବିଶ୍ୱବିଦ୍ୟାଳୟର ସଂସ୍କୃତା-ଧ୍ୟାପକ ଚଟ୍ଟୋପାଧ୍ୟାୟ, ପ୍ର. କ୍ଷେମ୍ବଣେକର ପ୍ରଭୃତି ପ୍ରସିଦ୍ଧ

*'दिष्ट्या महेन्द्रोपकारपर्याप्तेन विक्रममहिम्ना वर्धते भवान्'—विक्रमोर्वशीय १म अङ्क ।
'अनुत्सेकः खलु विक्रमालङ्कारः'—विक्रमोर्वशीय १म अङ्क ।

ପଣ୍ଡିତମାନେ ପରିପୁଷ୍ଟ କରନ୍ତି । ଏହି ମତ ସମର୍ଥନ କରିବା ସକାଶେ ପଣ୍ଡିତମାନେ ଯେଉଁ ସବୁ ପ୍ରମାଣ ଉପସ୍ଥାପିତ କରି-ଛନ୍ତି, ସେ ସମସ୍ତ ମଧ୍ୟରୁ ମୁଖ୍ୟ ମୁଖ୍ୟ କେତେକ ପ୍ରମାଣର ଚର୍ଚ୍ଚା ମୁଁ ପରେ କରିବି । କିନ୍ତୁ ଏହି ମତରେ ମୋର ପ୍ରଥମ ଆକ୍ଷେପ ଏହି ଯେ ଖ୍ରୀଷ୍ଟପୂର୍ବ ପ୍ରଥମଶତାବ୍ଦୀରେ ବିକ୍ରମାଦିତ୍ୟ ନାମରେ ଜଣେ ରାଜା ଥିଲେ ବୋଲି ଏହାର ନିଶ୍ଚିତ ପ୍ରମାଣ ଆଜିପର୍ଯ୍ୟନ୍ତ ମିଳି ନାହିଁ । ଏହି ସମୟର ପୂର୍ବବର୍ତ୍ତୀ ଅଶୋକପ୍ରଭୃତି ରାଜା-ମାନଙ୍କର ଶିଳାଲେଖ ମିଳୁଅଛି । ମାତ୍ର ବିକ୍ରମାଦିତ୍ୟ ନାମଧାରୀ ରାଜାଙ୍କର କୌଣସି ଶିଳାଲେଖ ଏପର୍ଯ୍ୟନ୍ତ ଦୃଷ୍ଟିଗୋଚର ହୋଇ ନାହିଁ । ସଂସ୍କୃତ ଓ ପ୍ରାକୃତ ଭାଷାର ସାହିତ୍ୟରେ କେତେକ ସ୍ଥଳରେ ବିକ୍ରମାଦିତ୍ୟଙ୍କର ଅଲ୍ପ ବହୁତ ଉଲ୍ଲେଖ ଦେଖାଯାଏ । ଉଦା-ହରଣ ସ୍ୱରୂପ—'ଗାଥାସପ୍ତସତୀ' ବା 'ସତ୍ତସଈ'ରେ ବିକ୍ରମା-ଦିତ୍ୟଙ୍କର ଦାନଶୀଳତା ତଥା କଥାସରିତ୍ସାଗର ଓ ବୃହତ୍-କଥାମଞ୍ଜରୀରେ ଭୂତ ବେତାଳଙ୍କ ବିଜୟ ବର୍ଣ୍ଣିତ ହୋଇଅଛି । ଜୈନ କଥାମାନଙ୍କରେ ଶକମାନଙ୍କୁ ପରାସ୍ତ କରିଥିବା ବିକ୍ରମଙ୍କର ଉଲ୍ଲେଖ ଦେଖାଯାଏ । ମାତ୍ର 'ସତ୍ତସଈ'ରେ ଅନେକ ପରବର୍ତ୍ତୀ କାଳର ଗାଥାମାନ ପ୍ରବେଶ କରିଛି ଏବଂ ଖ୍ରୀଷ୍ଟାବ୍ଦ କେତେ ଶହ ବର୍ଷପରେ ପୂର୍ବୋକ୍ତ ଅନ୍ୟାନ୍ୟ ଗ୍ରନ୍ଥମାନ ରଚିତ ହୋଇଅଛି । ଏ ହେତୁ ସେହି ଗ୍ରନ୍ଥମାନଙ୍କରେ ଉଲ୍ଲିଖିତ ବାକ୍ୟମାନଙ୍କ ଉପରେ ଆମେ କେତେଦୂର ବିଶ୍ୱାସ ସ୍ଥାପନ କରିବା—ଏହା ଏକ ଜଟିଳ ସମସ୍ୟା । ଦ୍ୱିତୀୟ କଥା—ଐତିହାସିକମାନେ ଇତିହାସର ଯେଉଁ ରୂପରେଖ ଆଙ୍କିଛନ୍ତି, ତହିଁରେ ବିକ୍ରମାଦିତ୍ୟଙ୍କୁ କୌଣସିଠାରେ ସ୍ଥାନ ଦେଇ ନାହାନ୍ତି । ଖ୍ରୀଷ୍ଟପୂର୍ବ ପ୍ରଥମ ଶତାବ୍ଦୀରେ ଶକମାନେ ହିନ୍ଦୁସ୍ଥାନ ଉପରେ ଆକ୍ରମଣ କରିଥିଲେ ଏବଂ କାଠିଆବାଡ଼, ମାଲବାର,

ମହାରାଷ୍ଟ୍ର, କୋଙ୍କଣ ପ୍ରଭୃତି ପ୍ରଦେଶମାନ ନିଜ ଅଧିକାରଭୁକ୍ତ କରି ଥିଲେ । କ୍ଷହରପ ନହପାନ ଓ ତାଙ୍କର ଜାମାତା ଋଷଭଦତ୍ତ (ପ୍ରାକୃତ ଉସଭଦାତ) ଏହି ଦୁହିଙ୍କର ଶିଳାଲେଖ ନାସିକ, କାର୍ଲେ ପ୍ରଭୃତି ସ୍ଥାନରେ ଦେଖାଯାଏ, ଯେଉଁ ସମସ୍ତରେ ପୂର୍ବୋକ୍ତ ଘଟଣାମାନଙ୍କର ବର୍ଣ୍ଣନା ଅଛି । କିନ୍ତୁ ଯେ କି ଏହି ନହପାନଙ୍କୁ ପରାସ୍ତ କରି ଶକମାନଙ୍କୁ ସେହି ପ୍ରାନ୍ତମାନଙ୍କରୁ ବିତାଡ଼ିତ କଲେ, ସେହି ଗୌତମୀ-ପୁତ୍ର ଶାତକର୍ଣ୍ଣି ବିକ୍ରମାଦିତ୍ୟ ଉପାଧି ଧାରଣ କରି ନିଜ ନାମରେ ଏକ ସମ୍ବତ୍ ପ୍ରଚଳନ କରି ଥିଲେ—ଏବିଷୟ ଏହି ଶିଳା ଲେଖ-ମାନଙ୍କରେ କୌଣସି ସ୍ଥାନରେ ହେଲେ ଉଲ୍ଲିଖିତ ହୋଇ ନାହିଁ । ଏହା ଛଡ଼ା ଆଉ ଗୋଟାଏ କଥା—ଖ୍ରୀଷ୍ଟପୂର୍ବ ପ୍ରଥମ ଶତାବ୍ଦୀରେ ଯଦି ବିକ୍ରମାଦିତ୍ୟ ନାମଧାରୀ କୌଣସି ବ୍ୟକ୍ତି ଥାଆନ୍ତେ ଯେ କି ଏହି ସମ୍ବତ୍‌ର ପ୍ରବର୍ତ୍ତକ ଥିଲେ, ତେବେ ତାଙ୍କର ନାମ ଅବଶ୍ୟ ତାହା ସହିତ ସମ୍ପୃକ୍ତ ହୋଇ ଥାଆନ୍ତା । କିନ୍ତୁ ବସ୍ତୁସ୍ଥିତି ଅନ୍ୟ ପ୍ରକାର । 'ବିକ୍ରମ କାଳ' ଏହି ସମସ୍ତ ପଦର ଉପଯୋଗ 'ଖ୍ରୀଷ୍ଟ ଏକ ସମ୍ବତ୍' ଏହି ଅର୍ଥରେ ସର୍ବ ପ୍ରଥମେ ୯ମ ଶତାବ୍ଦୀରେ ପ୍ରଯୁକ୍ତ ହେବା ଦେଖାଯାଏ ଏବଂ ଏହି ବିକ୍ରମଶବ୍ଦରେ ବିକ୍ରମାଦିତ୍ୟ ଅଭିପ୍ରେତ ଏ ବିଷୟରେ ଆମର ଆଶଙ୍କା ହୁଏ । ଅମିତଗତିଙ୍କର 'ସୁଭାଷିତ ରତ୍ନ ସଂଦୋହ'ରେ ଯେଉଁ ବିକ୍ରମ ସମ୍ବତ୍ ୧୦୫୦ ରୂପେ ଲେଖାଯାଇଛି, ସେଠାରେ ବିକ୍ରମଶବ୍ଦ ବିକ୍ରମାଦିତ୍ୟ-ନାମକ ରାଜାଙ୍କ ଅର୍ଥରେ ସର୍ବ ପ୍ରଥମେ ବ୍ୟବହୃତ ହୋଇଅଛି—ଏଥିରେ କୌଣସି ସନ୍ଦେହ ନାହିଁ । ପ୍ରଫେସର କିଲହୋର୍ନ ଅନୁମାନ କରନ୍ତି—ଏହି ସମ୍ବତ୍‌କୁ କୌଣସି ବିକ୍ରମାଦିତ୍ୟ ପ୍ରବର୍ତ୍ତିତ କରି ନାହାନ୍ତି । କିନ୍ତୁ ଏହି ନାମ ଧୀରେ ଧୀରେ ଏହି ସମ୍ବତ୍ ସହିତ ସମ୍ବଦ୍ଧ ହୋଇ ଯାଇ ଅଛି । ଏହାର କାରଣ ହେଉଛି ଯେମିତ

'ଶାଳିବାହନ ଶକ ସମ୍ବତ୍' ଚୈତ୍ରମାସରେ ଆରମ୍ଭ ହୋଇ ଅଛି, ଯେହିପରି ବିକ୍ରମ ସମ୍ବତ୍ ଶରଦ୍ଋତୁ ଅର୍ଥାତ୍ କାର୍ତ୍ତିକମାସରେ ଆରମ୍ଭ ହୋଇଅଛି । ଏହି ଋତୁରେ ରାଜାମାନେ ଯୁଦ୍ଧ ଯାତ୍ରାରେ ପ୍ରସ୍ଥାନ କରୁଥିଲେ । ଏହି ହେତୁ ଏହି ଋତୁକୁ 'ବିକ୍ରମକାଳ' ବୋଲି ନାମ ଦିଆଯାଇଛି । ଏହି ଅର୍ଥରେ ହର୍ଷଚରିତ ପ୍ରଭୃତି ଗ୍ରନ୍ଥମାନଙ୍କରେ 'ବିକ୍ରମ'ଶବ୍ଦର ପ୍ରୟୋଗ କରାଯାଇଅଛି । ଶରଦ୍ଋତୁରେ ଆରମ୍ଭ ହୋଇ ଥିବା, ବିକ୍ରମସମ୍ବତ୍‌ର ଏକ ବିଶେଷତ୍ୱ । ଏହି ହେତୁ ଏହି ସମ୍ବତ୍‌କୁ 'ବିକ୍ରମ କାଳ' ବୋଲି କହିବାକୁ ଲାଗିଲେ, ପ୍ରଥମେ ଏହି ସାମାଜିକ ଶବ୍ଦର ପ୍ରକୃତ ଅର୍ଥ ଲୋକମାନେ ବୁଝି ନ ପାରି ଏହି ଶବ୍ଦକୁ 'ବିକ୍ରମାଦିତ୍ୟଙ୍କ ପ୍ରବର୍ତ୍ତିତ ସମ୍ବତ୍' ଏହି ଅର୍ଥରେ ପ୍ରୟୋଗ କରିବାକୁ ଲାଗିଲେ । ଏହି ପରି ବିକ୍ରମାଦିତ୍ୟଙ୍କର ନାମ ଧୀରେ ଧୀରେ 'ବିକ୍ରମସମ୍ବତ୍' ସହିତ ଯୋଡ଼ା ହୋଇଗଲା । ଅନ୍ୟ କେତେକ ପଣ୍ଡିତଙ୍କ ମତରେ ଏହି ସମ୍ବତ୍ ମାଳବଦେଶରେ ଅନେକ ବର୍ଷ ପର୍ଯ୍ୟନ୍ତ ପ୍ରଚଳିତ ଥିଲା ଏବଂ ଏହି ପ୍ରାନ୍ତରେ ଚତୁର୍ଥ ଶତାବ୍ଦୀରେ ପ୍ରସିଦ୍ଧ ପରାକ୍ରମୀ,ଦାନଶୂର, ମହାରାଜ ଦ୍ୱିତୀୟ ଚନ୍ଦ୍ରଗୁପ୍ତ ବିକ୍ରମାଦିତ୍ୟ ଉପାଧି ଧାରଣ କରି ରାଜତ୍ୱ କରିଥିଲେ । ପରବର୍ତ୍ତୀ କେତେକ ଶତାବ୍ଦୀପରେ ଯେତେବେଳେ ଏହି ସମ୍ବତ୍‌କୁ କିଏ କେବେ ପ୍ରଚଳିତ କରିଥିଲେ—ଏହା ଲୋକମାନେ ବୁଝି ପାରିଲେ ନାହିଁ, ସେତେବେଳେ ଲୋକମାନେ ଏହି ସମ୍ବତ୍ ସହିତ (ଚନ୍ଦ୍ରଗୁପ୍ତ) ବିକ୍ରମାଦିତ୍ୟଙ୍କର ନାମ ଯୋଗ କରି ଦେଇ ଥିବେ । ଉପର୍ଯ୍ୟୁକ୍ତ ଦୁଇଟି ମତରୁ ଯେ କୌଣସିଟିକୁ ସ୍ୱୀକାର କଲେ ମଧ୍ୟ, ବିକ୍ରମାଦିତ୍ୟ ଏହି ସମ୍ବତ୍ ପ୍ରଚଳନ କରିଥିଲେ—ଏହି ଧାରଣା ନବମ ଶତାବ୍ଦୀ ପର୍ଯ୍ୟନ୍ତ ନ ଥିଲା—ଏହା ସ୍ପଷ୍ଟ । ସମ୍ବତ୍ ୨୮୨, ୨୮୪, ୨୯୫, ୩୩୫, ୪୨୮, ୪୬୧, ୪୮୧,

୪୯୩, ୫୨୯, ୫୮୯ ର ଶିଳାଲେଖମାନଙ୍କରେ ସର୍ବପ୍ରଥମେ ଏହି ସମ୍ବତ୍‌ର ଉଲ୍ଲେଖ ଦେଖାଯାଏ । ଏ ସମସ୍ତରେ ଏହି ସମ୍ବତ୍‌ର ନାମ 'କୃତ' ବୋଲି ଦିଆଯାଇ ଅଛି ଏବଂ ଏହା 'ମାଳବାନାଂ ଗଣସ୍ଥିତ୍ୟା' 'ଶ୍ରୀମାଳବଗଣାମ୍ନାତେ' 'ମାଲବଗଣସ୍ଥିତବଶାତ୍' ଏହିପରି ଶବ୍ଦ ଯୋଜନା ସହକାରେ ଉଲ୍ଲିଖିତ ହୋଇ ଅଛି । ଏଥିରୁ ଏହି ସମ୍ବତର ପ୍ରଚାର ମାଲବଗଣ ଦ୍ୱାରା ହୋଇଥିବ— ଏହି ପରି ଅନୁମାନ ହେଉ ଅଛି । ପାଣିନିଙ୍କ ଅଷ୍ଟାଧ୍ୟାୟୀ (ଅ ୫, ପା ୩, ସୂ ୧୧୪) ସୂତ୍ରରୁ ପ୍ରତୀତ ହୁଏ ଯେ ପ୍ରାଚୀନ କାଳରୁ ମାଲବରେ ଏପରି ଏକ ସଂଘ ଥିଲା, ଯେଉଁ ସଂଘ ଅସ୍ତ୍ର ଧରି ଯୁଦ୍ଧ କରି ନିଜ ଜୀବିକା ନିର୍ବାହ କରୁଥିଲା । ଏହିମାନେ ବେତନ ନେଇ ଯେ କୌଣସି ଏକ ପକ୍ଷରେ ଯୁଦ୍ଧ କରୁଥିଲେ । ସିକନ୍ଦର (ଅଲେକଜାଣ୍ଡାର)ଙ୍କ ସହିତ ଯୁଦ୍ଧ କରିବା ସକାଶେ ଯେଉଁ ଯୋଦ୍ଧାମାନେ ପଞ୍ଜାବରେ ସମ୍ମିଳିତ ହୋଇଥିଲେ, ସମ୍ଭବତଃ ସେମାନେ ପଞ୍ଜାବ ଛାଡ଼ିକରି ଧୀରେ ଧୀରେ ଦକ୍ଷିଣଆଡ଼େ ଗତି କଲେ ଏବଂ ମାଳବର ଉତ୍ତରାଞ୍ଚଳରେ ଉପଗତ ହୋଇ ଏକ ପ୍ରଜା-ସତ୍ତାତ୍ମକ ରାଜ୍ୟ (ଗଣ) ସ୍ଥାପନ କଲେ ଏବଂ ନିଜ ନାମରେ ମୁଦ୍ରା ମଧ୍ୟ ପ୍ରଚଳିତ କଲେ । ଏହି ଧରଣର ଶତ ଶତ ମୁଦ୍ରା ରାଜସ୍ଥାନର 'ନଗର' ନାମକ ସ୍ଥାନରୁ ମିଳିଅଛି । ଏ ମଧ୍ୟରୁ କେତେକ ମୁଦ୍ରା-ଉପରେ 'ମାଲବାନାଂ ଜୟଃ' ଅଥବା 'ମାଲବଗଣସ୍ୟ ଜୟଃ' ଏହି ପରି ଶବ୍ଦ ଦେଖାଯାଏ । ଏଥିରୁ ସୁପ୍ରସିଦ୍ଧ ଇତିହାସବେତ୍ତା କାଶୀ-ପ୍ରସାଦ ଜାୟସୱାଲ ଅନୁମାନ କରନ୍ତି—ସେମାନେ ତତ୍କାଳୀନ କୌଣସି ଶତ୍ରୁମାନଙ୍କୁ (ସମ୍ଭବତଃ ଶକମାନଙ୍କୁ) ଜୟ କରିଥିଲେ ଏବଂ ନିଜ ଗଣରାଜ୍ୟ ସ୍ଥାପନା କରି କୌଣସି ପ୍ରବଳ ଶତ୍ରୁର ବିଜୟକୁ ସ୍ମୃତି ପଥରେ ରଖିବା ଉଦ୍ଦେଶ୍ୟରେ ଏହି ସମ୍ବତ୍

ପ୍ରଚଳିତ କରିଥିଲେ ଏବଂ ନିଜେ ଅପି ମାଳବରେ ରହିବାକୁ ଲାଗିଲେ । କ୍ରମେ କ୍ରମେ ଲୋକମାନେ ଏହି ସମ୍ବତ୍‌କୁ ବ୍ୟବହାର କରିବାକୁ ଆରମ୍ଭ କଲେ । ଯଥାର୍ଥରେ 'ଏହି ସମ୍ବତ୍ ମାଳବଗଣର' ଏହି ବିଷୟ ଯେଉଁ ଦିନ ପର୍ଯ୍ୟନ୍ତ ଲୋକମାନଙ୍କର ଧ୍ୟାନରେ ରହିଥିଲା, ସେ ପର୍ଯ୍ୟନ୍ତ ଅର୍ଥାତ୍ ଖ୍ରୀଷ୍ଟୀୟ ଷଷ୍ଠ ଶତାବ୍ଦୀ ପର୍ଯ୍ୟନ୍ତ ମାଳବମାନଙ୍କର ନାମ ଏହି ସମ୍ବତ୍ ସହିତ ଯୁକ୍ତ ହୋଇ ରହିଥିଲା ।

ଉପର୍ଯ୍ୟୁକ୍ତ ବିବୃତିରୁ ପାଠକମାନଙ୍କର ମନରେ ଏହି ଭାବ ଜାତ ହେବ ଯେ ଖ୍ରୀଷ୍ଟପୂର୍ବ ପ୍ରଥମ ଶତାବ୍ଦୀରେ ବିକ୍ରମାଦିତ୍ୟ ବିକ୍ରମ ସମ୍ବତ୍ ପ୍ରଚଳନ କରିଥିଲେ—ଏହି ଧାରଣା ନିରାଧାର । ଖ୍ରୀଷ୍ଟପୂର୍ବ ପ୍ରଥମ ଶତାବ୍ଦୀରେ ବିକ୍ରମ ରାଜାଙ୍କର ଅସ୍ତିତ୍ୱ ଯେତେବେଳେ ସନ୍ଦେହଗ୍ରସ୍ତ, ସେତେବେଳେ କାଳିଦାସଙ୍କର ସେ ସମୟର ଅବସ୍ଥା ବର୍ଣ୍ଣନା କରିବା ସମ୍ଭବପର ନୁହେଁ । କାରଣ ଏହାଙ୍କର ଆଶ୍ରୟଦାତା ଯେ କୌଣସି ବିକ୍ରମାଦିତ୍ୟନାମଧାରୀ ରାଜା ଥିଲେ ଏହି ବିଷୟ ତାଙ୍କ ଗ୍ରନ୍ଥାନ୍ତର୍ଗତ ଉଲ୍ଲେଖମାନଙ୍କରୁ ବିଦିତ ହେଉ ଅଛି—ଏହା ମୁଁ ପୂର୍ବରୁ କହି ସାରିଛି । ବର୍ତ୍ତମାନ ଏହି ମତର ପରିପୁଷ୍ଟି ସକାଶେ ଯେଉଁ ସବୁ ପ୍ରମାଣମାନ ଉପସ୍ଥାପିତ କରାଯିବ ସେ ମଧ୍ୟରୁ କେତେକ ମହତ୍ତ୍ୱପୂର୍ଣ୍ଣ ପ୍ରମାଣର ପରୀକ୍ଷା କରାଯାଉ ।

(କ) ରଘୁବଂଶର ଷଷ୍ଠ ସର୍ଗରେ ଇନ୍ଦୁମତୀ ସ୍ୱୟଂବର-ବର୍ଣ୍ଣନା ପ୍ରସଙ୍ଗରେ ନିମ୍ନଲିଖିତ ଶ୍ଳୋକ ଦେଖାଯାଏ—

**अथोरगाख्यस्य पुरस्य नाथं दौवारिकी देवसरूपमेत्य ।**

**इतश्चकोराक्षि विलोकयेति पूर्वानुशिष्टां निजगाद भोज्याम् ।५९। ?**

**पाण्ड्योऽयम'सार्पितलम्बहारः क्लृप्ताङ्गरागो हरिचन्दनेन ।**

**आभाति बालातपरक्तसानुः सनिर्झरोद्गार इवाद्रिराजः ।६०।**

ଉକ୍ତ ଶ୍ଳୋକମାନଙ୍କରୁ ଜଣାପାଏ—ପାଣ୍ଡ୍ୟରାଜା ଉରଗପୁରରେ ରାଜତ୍ୱ କରୁଥିଲେ । ପରେ ୬୭ତମ ଶ୍ଳୋକରେ "ଏହି ପାଣ୍ଡ୍ୟ ରାଜାଙ୍କୁ ବିବାହ କରି ତୁମେ ଦକ୍ଷିଣ ଦିଗର ସପତ୍ନୀ ହୁଅ" * ବୋଲି ଉପଦେଶ ଇନ୍ଦୁମତୀଙ୍କୁ ସଖୀ ସୁନନ୍ଦା ଦେଇଛନ୍ତି । ସେହିପରି ଚତୁର୍ଥ ସର୍ଗରେ ୪୯ତମ ଶ୍ଳୋକରେ 'ରଘୁ ଦକ୍ଷିଣ ଦିଗରେ ପାଣ୍ଡ୍ୟଙ୍କୁ ପରାଜିତ କଲେ' ବୋଲି କବି ଉଲ୍ଲେଖ କରି ଅଛନ୍ତି । କେତେକ ସ୍ଥଳରେ ଏହି ପରି ଦେଖା ଯାଉଛି— ବଡ଼ ବଡ଼ କବିମାନେ ମଧ୍ୟ ଅସାବଧାନତାବଶତଃ ଐତିହାସିକ କାଳବିପର୍ଯ୍ୟାସ (**Anchronism**) ରୂପ ଭୂଲ କରିଥାନ୍ତି ଏବଂ ଅଜ୍ଞାତସାରରେ ନିଜ ସମୟର ପରିସ୍ଥିତି ବର୍ଣ୍ଣନା କରିଥାନ୍ତି । କାବ୍ୟ ଶାସ୍ତ୍ର ଦୃଷ୍ଟିରୁ ଏହା ଦୋଷ ବୋଲି ଧରାଯାଏ । ମାତ୍ର ଏଥି ସକାଶେ ଐତିହାସିକମାନେ ପ୍ରାଚୀନ କବିମାନଙ୍କୁ ଧନ୍ୟବାଦ ଦିଅନ୍ତି । କାରଣ ସମୟେ ସମୟେ ଏହିପରି ସ୍ଥଳ ବିଶେଷରେ କବିଙ୍କର କାଳ ନିର୍ଣ୍ଣୟର ଅଭ୍ରାନ୍ତ ପ୍ରମାଣ ସନ୍ନିହିତ ଥାଏ । ଏହି ଦୃଷ୍ଟିରୁ ଉପର୍ଯ୍ୟୁକ୍ତ ଶ୍ଳୋକ ବିଶ୍ଳେଷଣ କରି ଶ୍ରୀଯୁକ୍ତ ଚିନ୍ତାମଣି ବୈଦ୍ୟ କାଳିଦାସଙ୍କର ଅବସ୍ଥିତି ଖ୍ରୀଷ୍ଟପୂର୍ବ ପ୍ରଥମ ଶତାବ୍ଦୀରେ ବୋଲି ସିଦ୍ଧ କରିବାକୁ ପ୍ରଯତ୍ନ କରି ଅଛନ୍ତି ※ ଯଥା—

---

* **'रत्नानुविद्धार्णवमेखलायाः दिशः सपत्नी भव दक्षिणस्याः ।'**

※**Annals of the Bhandarkar Institute Vol. II, P, 63.**

ଉକ୍ତ ଶ୍ଳୋକରେ ପାଣ୍ଡ୍ୟରାଜା ଦକ୍ଷିଣରେ ପ୍ରବଳ ଥିଲେ ଏବଂ ଉରଗପୁରରେ ରାଜତ୍ୱ କରୁଥିଲେ ବୋଲି ବର୍ଣ୍ଣିତ ହୋଇ ଅଛି । ମଲ୍ଲୀନାଥ ଓ ହେମାଦ୍ରି ଉରଗପୁରକୁ ନାଗପୁର ବୋଲି ଅର୍ଥ କରିଛନ୍ତି । ଏହି ନାଗପୁର କେଉଁଠି ? ମଧ୍ୟ ପ୍ରଦେଶର ନାଗପୁର ବୋଲି କହିହେବ ନାହିଁ । କାରଣ ଏହା ଦକ୍ଷିଣରେ ଅବସ୍ଥିତ ନୁହେଁ । ପୁଣି କେବେହେଲେ ଏହି ନାଗପୁରରେ ପାଣ୍ଡ୍ୟରାଜାଙ୍କର ଆଧିପତ୍ୟ ନ ଥିଲା । ଏ ହେତୁ ଏହି ଉରଗପୁର ଆଧୁନିକ 'ଉରୟୂର' ହେବ । ପ୍ରାକୃତ ବ୍ୟାକରଣ-ନିୟମାନୁସାରେ ଉରଗପୁର ଶବ୍ଦର 'ଗ' ଓ 'ପ' ର ଲୋପ ହୋଇ ଅଛି ଏବଂ ମଧ୍ୟରେ ଯ୍ ଆଗମ ହୋଇ 'ଉରୟୂର' ହୋଇ ଅଛି । ଖ୍ରୀଷ୍ଟୀୟ ପ୍ରଥମ ଶତାବ୍ଦୀରେ କରିକାଲ ନାମକ ଚୋଳରାଜାଙ୍କଦ୍ୱାରା ପରାଜିତ ହେଲା ପର୍ଯ୍ୟନ୍ତ ପାଣ୍ଡ୍ୟରାଜା ଦକ୍ଷିଣରେ ପ୍ରବଳ ଥିଲେ । କରିକାଲ ପାଣ୍ଡ୍ୟରାଜାଙ୍କୁ ପରାଜିତ କରି ଉରୟୂରରୁ ବିତାଡ଼ିତ କଲେ ଏବଂ କାବେରୀପତ୍ତନକୁ ନିଜର ରାଜଧାନୀ କଲେ । ଏହା ପୂର୍ବରୁ 'ଉରୟୂର' କେବଳ ପାଣ୍ଡ୍ୟ ରାଜାମାନଙ୍କର ରାଜଧାନୀ ଥିବା ସମ୍ଭବ । ଖ୍ରୀଷ୍ଟୀୟ ଦ୍ୱିତୀୟ ଶତାବ୍ଦୀରେ ପାଣ୍ଡ୍ୟ ରାଜାମାନେ ପୁଣି ପ୍ରବଳ ହୋଇଥିଲେ । ମାତ୍ର ସେତେବେଳେ 'ଉରୟୂର' ସେମାନଙ୍କର ରାଜଧାନୀ ନ ଥିଲା, 'ମଦୁରା' ରାଜଧାନୀ ହୋଇଥିଲା । ଉପର୍ଯ୍ୟୁକ୍ତ ଶ୍ଳୋକରେ କାଳିଦାସ ନିଜ ସମୟର ପରିସ୍ଥିତି ବର୍ଣ୍ଣନା କରିଛନ୍ତି—ଏପରି ଧରାଗଲେ କାଳିଦାସ ନିଶ୍ଚୟ ଖ୍ରୀଷ୍ଟୀୟ ପ୍ରଥମ ଶତାବ୍ଦୀର ପୂର୍ବବର୍ତ୍ତୀ ହେବା ଉଚିତ । କାରଣ ଏହି ଶତାବ୍ଦୀ ପରେ 'ଉରୟୂର' ଆଉ କେବେହେଲେ ପାଣ୍ଡ୍ୟ ରାଜାମାନଙ୍କର ରାଜଧାନୀ ନ ଥିଲା ।

ଉପଯୁ୍ତକ୍ତ ପ୍ରମାଣ ପରୀକ୍ଷାକଷଟିପଥରରେ ଠିକ୍ ଉଠୁନାହିଁ । ଉରଗପୁର 'ଓରଯ୍ୟୁର' ହେବା ଅସମ୍ଭବ ନୁହେଁ । ପରନ୍ତୁ ଉରଯ୍ୟୁର କେଉଁ ସମୟରେ ପାଣ୍ଡ୍ୟରାଜାମାନଙ୍କର ରାଜଧାନୀ ଥିଲା—ଏ ବିଷୟରେ କୌଣସି ଐତିହାସିକ ପ୍ରମାଣ ବା କୌଣସି କିମ୍ବଦନ୍ତୀ ମିଳୁନାହିଁ । ଅପର ପକ୍ଷରେ ବିନ୍‌ସେଣ୍ଟ୍ ସ୍ମିଥ୍ ପ୍ରଭୃତି ଐତିହାସିକମାନେ 'ମଦୁରା' ପ୍ରାଚୀନ କାଳରେ ପାଣ୍ଡ୍ୟରାଜାମାନଙ୍କର ରାଜଧାନୀ ଥିଲା ବୋଲି ମତ ପୋଷଣ କରନ୍ତି । ତାମିଲ-ଭାଷାରେ ମଦୁରାର ନାମ 'ଅଲବାୟୁ' ଏବଂ ଏହାର ଅର୍ଥ 'ନାଗ' । କବି ଯଦି ମଦୁରାକୁ ଏହି ଅର୍ଥରେ ଉରଗପୁର ବୋଲି ବ୍ୟବହାର କରିଥାନ୍ତି, ତେବେ ଏହି ପ୍ରମାଣ ଯେପରି ଖ୍ରୀଷ୍ଟପୂର୍ବ ପ୍ରଥମ ଶତାବ୍ଦୀର ସମର୍ଥକ, ସେହିପରି ଖ୍ରୀଷ୍ଟୀୟ ଚତୁର୍ଥ ଓ ପଞ୍ଚମଶତାବ୍ଦୀପକ୍ଷର ମଧ୍ୟ ସମର୍ଥକ । କାରଣ, ଖ୍ରୀଷ୍ଟୀୟ ତୃତୀୟ ଶତାବ୍ଦୀଠାରୁ ସପ୍ତମ ଶତାବ୍ଦୀରେ ପଲ୍ଲବ ରାଜ ସିଂହବିଷ୍ଣୁଙ୍କଦ୍ୱାରା ପରାଜିତ ହେଲା ପର୍ଯ୍ୟନ୍ତ ପାଣ୍ଡ୍ୟ ରାଜା ଦକ୍ଷିଣରେ ପ୍ରବଳ ଥିଲେ ଏବଂ ମଦୁରା ତାଙ୍କର ରାଜଧାନୀ ଥିଲା— ଏହା ସର୍ବବାଦିସମ୍ମତ ଓ ପ୍ରସିଦ୍ଧ । ଏ ହେତୁ ଉକ୍ତ ପ୍ରମାଣ ଠିକ୍ ବୋଲି କହି ହେବ ନାହିଁ ।

(ଖ) ମାଳବିକାଗ୍ନିମିତ୍ରରେ ଅନାବଶ୍ୟକ ଉଲ୍ଲେଖ—

ସ୍ୱର୍ଗୀୟ ପ୍ରଫେସର ଶିବରାମ ପନ୍ଥ ପରାଂଜପେ ନିଜ 'ସାହିତ୍ୟ-ସଂଗ୍ରହ'ରେ ଏକ ସରସ ପ୍ରବନ୍ଧ 'ମେଘଦୂତ ଓ କାଳିଦାସ' (ଭାଗ ୧, ୮୮ ପୃଷ୍ଠା)ରେ କହିଛନ୍ତି— 'ମାଳବିକାଗ୍ନିମିତ୍ର' ନାଟକରେ ଇରାବତୀ ଓ ଧାରଣୀ ନାମକ ଦୁଇଟି ଉପନାୟିକାଙ୍କର ଅବତରଣ ଏବଂ ଧାରଣୀଙ୍କ ଭ୍ରାତାଙ୍କର ହୀନବଂଶୀୟରୂପେ ଚିତ୍ରଣର କୌଣସି ଆବଶ୍ୟକତା ନ ଥିଲା ।

ତଥା ପଞ୍ଚମାଙ୍କରେ ପୁଷ୍ପମିତ୍ର ନିଜ ପତ୍ରରେ 'ବଟଭଦ୍ରୋଷଚେଢଥା' କ୍ରୋଧ ସ୍ଥଳଜର ଫଳରେ ସନ୍ଧିଲଭ ହୁଅ ବୋଲି ଅଗ୍ନିମିତ୍ରଙ୍କ ପାଖକୁ ଯାହା ଲେଖିଛନ୍ତି, ତହିଁରେ କ୍ରୋଧର କାରଣ ନିର୍ଦ୍ଦେଶ ନକରିବା—ଇତ୍ୟାଦି ଅନାବଶ୍ୟକ ପ୍ରସଙ୍ଗର ଅବତାରଣାରୁ ଏହା ପ୍ରମାଣିତ ହେଉ ଅଛି ଯେ କାଳିଦାସ ଶୁଙ୍ଗବଂଶୀୟ ରାଜାମାନଙ୍କର ପରସ୍ଥିତର ସୂକ୍ଷ୍ମ ତତ୍ତ୍ୱମାନ ଭଲ କରି ଜାଣିଥିଲେ । ଏଥିରୁ ଏତିକି ଅନୁମାନ କରାଯାଏ ଯେ କାଳିଦାସ ଅଗ୍ନିମିତ୍ର ବା ଅଗ୍ନିମିତ୍ରଙ୍କ ଆସନ୍ନ ସମୟରେ ଅବଶ୍ୟ ଅବସ୍ଥାନ କରିଥିବେ । ଏହି ଧରଣର ଅଭିମତ ପ୍ରଫେସର ଚଟ୍ଟୋପାଧ୍ୟାୟ ମଧ୍ୟ ପ୍ରକାଶ କରି ଅଛନ୍ତି । ଏଥିରୁ ଏହା ଅନୁମିତ ହେଉଛି ଯେ ଶୁଙ୍ଗମାନଙ୍କର କଥା ଲୋକମାନଙ୍କର ସ୍ମୃତିପଥରୁ ଲୁପ୍ତ ହେବା ପୂର୍ବରୁ ଅର୍ଥାତ୍ ଅଗ୍ନିମିତ୍ରଙ୍କ ସମୟର ଏକ ଶତବର୍ଷ ମଧ୍ୟରେ ଅଥବା ଖ୍ରୀଷ୍ଟପୂର୍ବ ୫୭ ବର୍ଷର ଆସନ୍ନ ସମୟରେ କାଳିଦାସଙ୍କର ଅବସ୍ଥାନ ହୋଇ ଥିବ ।

ଗୋଟିଏ ଉଲ୍ଲେଖକୁ ଆଧାର କରି ବିଭିନ୍ନ ଐତିହାସିକ ପଣ୍ଡିତ ବିଭିନ୍ନ ଅନୁମାନ କରି ପାରନ୍ତି—ଏହା ତାହାର ଏକ ଜ୍ୱଳନ୍ତ ଉଦାହରଣ । ଡା. ଶ୍ରୀ. ବା°. କେତକର କାଳିଦାସ ଖ୍ରୀଷ୍ଟୀୟ ପଞ୍ଚମ ଶତାବ୍ଦୀର ଗୁପ୍ତରାଜାଙ୍କ ସମୟର ଲୋକ ବୋଲି ମାନନ୍ତି । ସେ କହନ୍ତି ସାଢ଼େ ପାଞ୍ଚ ଶହ ବର୍ଷ ପରେ କବିଙ୍କର ଏତାଦୃଶ ପ୍ରାଚୀନ ଓ ଅତୀବ ସୂକ୍ଷ୍ମ କଥାମାନ ମନେ ରଖିବା ସମ୍ଭବ ନୁହେଁ । ଉପର ଲିଖିତ ପାତ୍ର ଓ ଘଟନାମାନଙ୍କର ସମାବେଶ କରିବା ଏବଂ ସେପରି ସଂବିଧାନ ରଚନା କରିବାରେ କାଳିଦାସଙ୍କର ଉଦ୍ଦେଶ୍ୟ ଅନ୍ୟ ପ୍ରକାର ଥିଲା

ବୋଲି ସେ ପ୍ରମାଣିତ କରିବାକୁ ଚେଷ୍ଟା କରିଛନ୍ତି । ତାଙ୍କର ସିଦ୍ଧାନ୍ତ ହେଉଛି—ମାଳବିକାଗ୍ନିମିତ୍ରରେ ତାତ୍କାଳିକ ସମାଜ ବିଷୟରେ ଟୀକା ଟିପ୍ପଣୀ କରି ତାଳି ମାରିବା କାଳିଦାସଙ୍କର ଉଦ୍ଦେଶ୍ୟ ଥିଲା ବୋଲି ଆଉ ଅଛପା ରହି ନାହିଁ । ଏକ ରାଣୀଙ୍କୁ ମଦିରା ପିଅଇ ପ୍ରକାଶ୍ୟ ରଙ୍ଗମଞ୍ଚରେ ଉପନୀତ କରିବା ଏବଂ ତାଙ୍କର ଭ୍ରଇଙ୍କୁ ହୀନକାର୍ଯ୍ୟରୂପେ ଚିତ୍ରଣ କରିବା ପ୍ରଭୃତି ସଙ୍ଘଟନାମାନ ନାଟକରେ ସନ୍ନିବେଶ କରିବା ସବାଶେ କବିଙ୍କଠାରେ ଅଧିକ ସାହସ ଥିବା ଦରକାର । କବିଙ୍କର ନିଜ ନାଟକରେ ପ୍ରାଚୀନ କାଳର ଦୃଶ୍ୟ ଦେଖାଇବା ହିଁ ଙ୍କ ବିଶେଷ ପ୍ରଣିଧାନର ବିଷୟ । ଧ୍ରାକୃତ ଲୋକମାନଙ୍କ ମଧ୍ୟରେ ରାଣୀଙ୍କୁ ଉପହାସ କରିବା ଏବଂ ମଦିରା ପିଅଇବା ଏକ ଐତିହାସିକ ଘଟନା—ଏପରି ଧାରଣା କାଢ଼ କରାଇ ବାହାଦୁରି ନେବା କବିଙ୍କ ପକ୍ଷରେ କଠିନ ନୁହେଁ ।

'ମାଳବିକାଗ୍ନିମିତ୍ର'ର ଉପର୍ଯ୍ୟୁକ୍ତ ବିଷୟମାନ ଆଧାର କରି ଯେଉଁ ଦୁଇ ପ୍ରକାର ଅନୁମାନ କରାଯାଇଛି, ତାହା ଯୁକ୍ତିସଙ୍ଗତ ବୋଧ ହୁଏ ନାହିଁ । ଶୁଙ୍ଗ ରାଜାମାନଙ୍କ ଉତ୍ତାରୁ ୫୦୦-୫୫୦ ବର୍ଷପରେ ଉତ୍ପନ୍ନ କାଳିଦାସ ପୂର୍ବବର୍ତ୍ତୀ ପାଞ୍ଚଶହ କି ଛଅଶହ ବର୍ଷର ଘଟନାମାନ ସ୍ପଷ୍ଟରୂପେ ଜାଣିବା ସମ୍ଭବପର ନୁହେଁ— ଏପରି କହିବା ଯୁକ୍ତିଯୁକ୍ତ ବୋଧ ହେଉ ନାହିଁ । କାରଣ, ଏହାଙ୍କ ଉତ୍ତାରୁ ୨୦୦-୨୫୦ ବର୍ଷପରେ ବାଣ ଥିଲେ । ସେ ନିଜ ହର୍ଷଚରିତରେ ଶୁଙ୍ଗ ରାଜାମାନଙ୍କ ସମୟର ଯେଉଁ ବର୍ଣ୍ଣନା କରି ଅଛନ୍ତି, ସେପରି ବର୍ଣ୍ଣନା କୌଣସି ପୁରାଣରେ ମିଳେ ନାହିଁ । ଉଦାହରଣ ସ୍ୱରୂପ କୁହାଯାଇ ପାରେ—ପୁରାଣମାନଙ୍କରେ ସେନାପତି ପୁଷ୍ୟମିତ୍ର ମୌର୍ଯ୍ୟ ଅଧିପତି ବୃହଦ୍ରଥଙ୍କୁ

ହତ୍ୟା କରି ମଗଧ ରାଜସିଂହାସନ ନିଜ ଅଧିକାର ଭୁକ୍ତ କଲେ — ଏହି ଘଟଣା ଉଲ୍ଲେଖ ଅଛି । କିନ୍ତୁ ତାଙ୍କୁ କେବେ କିପରି ମାରିଲେ — ଏହାର ଆଭାସ ମୁଦ୍ଧା ନାହିଁ । ମାତ୍ର ବାଣଙ୍କର 'ହର୍ଷ' ଚରିତ'ରେ ହର୍ଷ ଦିଗ୍‌ବିଜୟ କରିବାକୁ ଗଲା ସମୟରେ ଗଜସେନାପତି ସ୍କନ୍ଦଗୁପ୍ତ ଯେଉଁ ଉପଦେଶ ଦେଇଥିଲେ, ସେ ପ୍ରସଙ୍ଗରେ ଏହାର ଉଲ୍ଲିଖିତ ହୋଇ ଅଛି—ସେନାପତି ପୁଷ୍ୟମିତ୍ର ମୂର୍ଖ ବୃହଦ୍ରଥଙ୍କୁ ସେନାମାନଙ୍କୁ ଦେଖାଇବା ଛଳରେ ଡକାଇ ହତ୍ୟା କରିଥିଲେ । କାଳିଦାସଙ୍କର ବିହୁ ସମୟ ପରବର୍ତ୍ତୀ ବିଶାଖଦତ୍ତ, ଶୁଙ୍ଗରାଜା-ମାନଙ୍କଠାରୁ ଅନ୍ତୁର ୧୫୦ ବର୍ଷ ପୂର୍ବରେ ମଗଧ ରାଜ୍ୟରେ ଯେଉଁ ବିପ୍ଳବ ଘଟିଥିଲା, ତାର ସବିସ୍ତର ଐତିହାସିକ ବର୍ଣ୍ଣନା ନିଜ ନାଟକ ମୁଦ୍ରାରାକ୍ଷସରେ କରି ଅଛନ୍ତି । ତେବେ କାଳିଦାସ ଏହା-ଠାରୁ କମ୍ ବ୍ୟବଧାନ ପୂର୍ବବର୍ତ୍ତୀ ଘଟନାମାନ କାହିଁକି କରି ପାରିବେ ନାହିଁ ? ଆଜିକାଲି ଅପେକ୍ଷା କାଳିଦାସଙ୍କ ସମୟରେ ଐତିହାସିକ ସାଧନ ପ୍ରଚୁର ପରିମାଣରେ ବିଦ୍ୟମାନ ଥିଲା । ପୂର୍ବ କାଳରେ ଖାଲି ରାଜାଙ୍କର ବଂଶାବଳୀ ନୁହେଁ, ତାଙ୍କର ଶାସନ-ସମୟର ସମସ୍ତ ଘଟନା ଲିପିବଦ୍ଧ କରି ରଖିବା ପ୍ରଥା ଅବଶ୍ୟ ପ୍ରଚଳିତ ଥିଲା । ଏହି ପରି ଖାରବେଳ ନାମକ କଳିଙ୍ଗ ରାଜାଙ୍କର ଶାସନକାଳର ବିଶଦ ବର୍ଣ୍ଣନା ହାତୀଗୁମ୍ଫାରେ ଖୋଦିତ ହେବା ଦେଖାଯାଏ । ଏହା ପ୍ରାଚୀନ ଇତିହାସପରିଶୀଳକଙ୍କୁ ଭଲରୂପେ ଜଣା ଅଛି । ଏହି ରୀତିରେ ଶୁଙ୍ଗବଂଶୀୟ ରାଜାମାନଙ୍କ ଶାସନକାଳୀନ ଘଟଣାମାନଙ୍କର ସାମଗ୍ରୀ ଶୁଙ୍ଗ ଓ ଗୁପ୍ତ ରାଜା-ମାନଙ୍କର ରାଜଧାନୀ ପାଟଳୀପୁତ୍ରରେ କାଳିଦାସଙ୍କ ସମୟରେ ଅବଶିଷ୍ଟ ଥିବା ଏବଂ ପ୍ରକାଳୀନ କାଳିଦାସଙ୍କଦ୍ୱାରା ତାହା ଉପଯୁକ୍ତ ହେବା ଅସମ୍ଭବ ନୁହେଁ ।

(ଘ) ଅଶ୍ୱଘୋଷଙ୍କ ଗ୍ରନ୍ଥମାନଙ୍କରେ ସମତା — ଖ୍ରୀଷ୍ଟୀୟ ୧୮୯୩ ସାଲରେ ବୁଦ୍ଧଚରିତ ଏବଂ ୧୯୧୦ ସାଲରେ 'ସୌନ୍ଦରନନ୍ଦ' ପ୍ରକାଶିତ ହେବାପରେ ପଣ୍ଡିତମାନଙ୍କର ଦୃଷ୍ଟି ଅଶ୍ୱଘୋଷଙ୍କର କାବ୍ୟ ଏବଂ କାଳିଦାସଙ୍କର କାବ୍ୟମାନଙ୍କର ସମତା ପ୍ରତି ଆକୃଷ୍ଟ ହେଲା ଏବଂ ଫଳରେ ଦୁଇଟି ବିଭିନ୍ନ ପକ୍ଷର ସୃଷ୍ଟି ହେଲା । ପ୍ରଫେସର କାଓ୍ୱେଲ ପ୍ରଭୃତି କେତେକ ୟୁରୋପୀୟ ଏବଂ କେତେକ ଭାରତୀୟ ପ୍ରତ୍ନତତ୍ତ୍ୱବେତ୍ତାମାନେ ଏହି ସମତା ଦେଖି ସିଦ୍ଧାନ୍ତ କଲେ ଯେ—କାଳିଦାସ ଅଶ୍ୱଘୋଷଙ୍କଠାରୁ ନିଜ କାବ୍ୟର କଳ୍ପନାସମ୍ଭାର ନେଇଛନ୍ତି । ଅତଏବ ଅଶ୍ୱଘୋଷଙ୍କ ପରେ ଅର୍ଥାତ୍ ଖ୍ରୀଷ୍ଟୀୟ ପ୍ରଥମଶତାବ୍ଦୀପରେ କାଳିଦାସ ଥିଲେ । ପ୍ରଫେସର ହରିଦାସ ଭଟ୍ଟାଚାର୍ଯ୍ୟ, ପ୍ରଫେସର ଚଟ୍ଟୋପାଧ୍ୟାୟ ପ୍ରଭୃତି ପଣ୍ଡିତମାନେ ଠିକ୍ ଏହାର ବିପରୀତ ଧାରଣା ପୋଷଣ କରନ୍ତି । ସେମାନେ କହନ୍ତି—ଅଶ୍ୱଘୋଷ କାଳିଦାସଙ୍କର କଳ୍ପନାମାନ ଗ୍ରହଣ କରି ନେଇଛନ୍ତି ଏବଂ ସେ ଅଶ୍ୱଘୋଷଙ୍କ ପୂର୍ବବର୍ତ୍ତୀ ଖ୍ରୀଷ୍ଟପୂର୍ବ ପ୍ରଥମଶତାବ୍ଦୀର କବି । ଏ ବିଷୟରେ ସିଦ୍ଧାନ୍ତ କରିବା ପୂର୍ବରୁ ମନେ ରଖିବାକୁ ହେବ—କାଳିଦାସ ଅଶ୍ୱଘୋଷଙ୍କଠାରୁ ଗ୍ରହଣ କରିଥାନ୍ତୁ, ବା ଅଶ୍ୱଘୋଷ କାଳିଦାସଙ୍କଠାରୁ ଗ୍ରହଣ କରିଥାନ୍ତୁ, ତାହାଦ୍ୱାରା ଗ୍ରହଣକରିଥିବା କବି ନିମ୍ନସ୍ତରର ବୋଲି କୁହାଯିବ ନାହିଁ । ରାଜଶେଖରଙ୍କ ମତରେ 'ସର୍ବୋଽପି ପରେଭ୍ୟ ଏବ ବ୍ୟୁତ୍ପଦ୍ୟତେ' (ସମସ୍ତ କବି ଅନ୍ୟମାନଙ୍କଠାରୁ ବ୍ୟୁତ୍ପତ୍ତି ଲାଭ କରିଥାନ୍ତି) ଅର୍ଥାତ୍ ପ୍ରତ୍ୟେକ ଗ୍ରନ୍ଥକର୍ତ୍ତା ନିଜ ନିଜ ପୂର୍ବବର୍ତ୍ତୀ କବିମାନଙ୍କର ଗ୍ରନ୍ଥମାନ ଆଦର୍ଶ କରି ଗ୍ରନ୍ଥ ରଚନା କରିଥାନ୍ତି । ଯେହେତୁ ଦୁଇ କବିଙ୍କ ମଧ୍ୟରୁ ଜଣେ ପୂର୍ବବର୍ତ୍ତୀ, ଜଣେ ପରବର୍ତ୍ତୀ ଏବଂ ଦୁହିଁଙ୍କର ଗ୍ରନ୍ଥମାନଙ୍କର ଯେଉଁ ସାମ୍ୟ ଦେଖାଯାଏ, ତାର କାରଣ କଅଣ—ଏ ବିଷୟରେ

ବାଡବ୍ୟସ୍ତ ହେବାର କୌଣସି କାରଣ ନାହିଁ । ଏହି ସମାନତା ଦୁଇ ପ୍ରକାର—ପ୍ରସଙ୍ଗ ସମତା ଓ ଶେଖାର୍ଥ ସମତା ଏହି ଦୁଇ ପ୍ରକାର ସମାନତା କାଳିଦାସଙ୍କର କୁମାରସମ୍ଭବ ଏବଂ ଅଶ୍ୱ-ଘୋଷଙ୍କର ସୌନ୍ଦରନନ୍ଦରେ ପରିଲକ୍ଷିତ ହୁଏ । ଅଶ୍ୱଘୋଷଙ୍କ କାବ୍ୟରେ ଶାକ୍ୟବଂଶୀୟ ନନ୍ଦ କପର ବୌଦ୍ଧ ଧର୍ମ ଗ୍ରହଣ କଲେ—ତାର ଉଲ୍ଲେଖ ଅଛି । ବୁଦ୍ଧ ନନ୍ଦଙ୍କୁ ସଂସାର ତ୍ୟାଗ କରିବାକୁ ନାନା ପ୍ରକାର ଉପଦେଶ ଦେଲେ ; ତଥାପି ତାଙ୍କ ମନରେ ବୈରାଗ୍ୟର ଉଦୟ ହେଲା ନାହିଁ । ବୁଦ୍ଧ ପୁଣି ଅଗ୍ରହସହକାରେ ନାନାପ୍ରକାର ଉପଦେଶ ଦେଲାପରେ ସେ ବିଷାଦସହକାରେ ସମ୍ମତି ଦେଲେ ଏବଂ ନିଜ ମସ୍ତକ ମୁଣ୍ଡନ କଲେ । ଏ ସମ୍ବାଦ ତାଙ୍କର ପତ୍ନୀ ସୁନ୍ଦରୀଙ୍କ ପାଖରେ ପହଞ୍ଚିଲା ଏବଂ ସେ ବିଶେଷ ଦୁଃଖିତା ହେଲେ । ଏହାଙ୍କର ଶୋକର ବର୍ଣ୍ଣନା 'ସୌନ୍ଦରନନ୍ଦ'କାବ୍ୟର ଷଷ୍ଠ ସର୍ଗରେ ବର୍ଣ୍ଣିତ ହୋଇଅଛି । ଏହି ଶୋକର ବର୍ଣ୍ଣନା ଏବଂ କୁମାର-ସମ୍ଭବର ଶିବଙ୍କ କ୍ରୋଧରେ ଭସ୍ମୀଭୂତ ମଦନର ବିନାଶରେ ରତିକୃତ ବିଳାପର ବର୍ଣ୍ଣନାରେ କେତେକ ସ୍ଥଳରେ ସମଧିକ ସମତା ଦେଖାଯାଏ । ସେପରି ସୌନ୍ଦରନନ୍ଦର ସପ୍ତମ-ସର୍ଗ ବର୍ଣ୍ଣିତ ନନ୍ଦବିଳାପ 'ରଘୁବଂଶ ବର୍ଣ୍ଣିତ ଅଜବିଳାପର ମଧ୍ୟ ସମଧିକ ସାମଞ୍ଜସ୍ୟ ଦେଖାଯାଏ । ଏହାଦ୍ୱାରା ଜଣେ ଅନ୍ୟ ଜଣଙ୍କର ନକଲ କରିଛନ୍ତି ବୋଲି ସିଦ୍ଧାନ୍ତ କରିବା ସମୁଚିତ ବୋଧ ହୁଏ ନାହିଁ । ଏହାପର ଅନ୍ୟ ଭୂରି କେତେକ ସମାନ ପ୍ରସଙ୍ଗ ଦେଖାଇ ଦିଆଯାଇ ପାରେ । 'ବୁଦ୍ଧଚରିତ'ର ତୃତୀୟ ସର୍ଗରେ ଶୀତଋତୁରେ ରାଜକୁମାର ଗୌତମ ପିତାଙ୍କ ଆଦେଶରେ ଯେତେ-ବେଳେ ନଗରର ବାହାରେ ବିହାର କରିବାକୁ ଯାଉଥିଲେ, ସେତେବେଳେ ତାଙ୍କୁ ଦେଖିବା ଉଦ୍ଦେଶ୍ୟରେ ନଗରବାସିନୀ

ସ୍ତ୍ରୀମାନଙ୍କର ସମ୍ଭ୍ରମ ବର୍ଣ୍ଣିତ ହୋଇଅଛି । ସେପରି କୁମାର-ସମ୍ଭବର ସପ୍ତମ ସର୍ଗରେ ବିବାହାର୍ଥ ସମାଗତ ଶିବଙ୍କ ଦର୍ଶନ-ଉଦ୍ଦେଶ୍ୟରେ ଔଷଧି ପ୍ରସ୍ଥବାସିନୀ ସ୍ତ୍ରୀମାନଙ୍କର ଏବଂ 'ରଘୁ-ବଂଶ'ର ସପ୍ତମ ସର୍ଗରେ ଇନ୍ଦୁମତୀଙ୍କ ସ୍ୱୟମ୍ବରପରେ ଇନ୍ଦୁମତୀଙ୍କ ସହିତ କୁଣ୍ଡିନ ନଗରରେ ପ୍ରବେଶ କଲାବେଳେ ଅଜଙ୍କର ଦର୍ଶନ ଉଦ୍ଦେଶ୍ୟରେ ନଗରବାସିନୀ ଲଳନାମାନଙ୍କର ସମ୍ଭ୍ରମ ବର୍ଣ୍ଣିତ ହୋଇଅଛି । ଉଭୟ କବିଙ୍କର ଏହି ପ୍ରସଙ୍ଗସମାନତା ପ୍ରତି ପଣ୍ଡିତମାନଙ୍କର ଦୃଷ୍ଟି ଆକୃଷ୍ଟ ହୋଇ ଅଛି ଏବଂ ଉଭୟ ପକ୍ଷରେ ସେମାନେ ନିଜ ନିଜ ଅନୁମାନ ପରିପୁଷ୍ଟ କରୁ ଅଛନ୍ତି । କିନ୍ତୁ ଏ ପ୍ରସଙ୍ଗରେ କୁହାଯାଇ ।ରେ ଯେ ଏପରି ପ୍ରସଙ୍ଗ ପ୍ରତିଦିନ ଉପସ୍ଥିତ ହୋଇ ଥାଏ । ଏହେତୁ ପ୍ରତିଭାଶାଳୀ କବିଙ୍କର ଲକ୍ଷ୍ୟ ସେଥି ପ୍ରତି ପଡ଼ିବା ସ୍ୱାଭାବିକ । ଏଥିରେ ଜଣେ ଅନ୍ୟ ଜଣକୁ ଅନୁକରଣ କରିଛନ୍ତି ବୋଲି ସ୍ଥିର କରିବା ସମୀ-ଚୀନ ହେବ ନାହିଁ । ଖ୍ରୀଷ୍ଟୀୟ ଦଶମ ଶତାବ୍ଦୀୟ କବି ପଦ୍ମଗୁପ୍ତ ନିଜ "ନବସାହସାଙ୍କ ଚରିତକାବ୍ୟ"ରେ ଏହି ପରି ବର୍ଣ୍ଣନା କରି ଅଛନ୍ତି । ଏଥିରୁ ପୂର୍ବୋକ୍ତ ପ୍ରସଙ୍ଗ ସ୍ୱାଭାବିକ ବୋଲି ସ୍ପଷ୍ଟ ହେବ । ଦ୍ୱିତୀୟ କଥା—ଉଭୟ କବିଙ୍କ ବର୍ଣ୍ଣନାରେ ଅତି ଅଳ୍ପ ମାତ୍ର କଳ୍ପନା ସାମ୍ୟ ଦେଖାଯାଏ । ଉଭୟ କବିଙ୍କର ବର୍ଣ୍ଣନା ସମ୍ଭାର ମନୋଯୋଗ ସହକାରେ ପାଠ କଲେ ନିମ୍ନଲିଖିତ ସ୍ଥଳମାନଙ୍କରେ କେବଳ କଳ୍ପନା ସାମ୍ୟ ଦୃଷ୍ଟିଗୋଚର ହୁଏ—

**ଅଶ୍ୱଘୋଷ—**

**वातायनेभ्यस्तु विनिःसृतानि परस्परोपासितकुण्डलानि ।**
**स्त्रीणां विरेजुर्मुखपङ्कजानि सक्तानि हर्म्येष्विव पङ्कजानि ॥**

ବୁଦ୍ଧ—୩-୧୯

—ଗବାକ୍ଷ ମାନଙ୍କର ବାହାରକୁ ବାହାର ଥିବା, ପରସ୍ପରରେ ସମ୍ମିଳିତ କୁଣ୍ଡଳମାନଙ୍କରେ ବିରାଜମାନ ସ୍ତ୍ରୀମାନଙ୍କର ମୁଖକମଳମାନ ହର୍ମ୍ୟମାନଙ୍କରେ ଫଳଗ୍ନ କମଳମାନଙ୍କ ପରି ଶୋଭା ପାଉଥିଲା ।

କାଳିଦାସ—

**तासां मुखैरासवगन्ध गर्भैर्व्याप्तान्तराः सान्द्रकुतूहलानाम् ।**
**विलोलनेत्रभ्रमरैर्गवाक्षाः सहस्रपत्राभरणा इवासन् ॥**

କୁମାର—୭-୬୨; ରଘୁ—୭-୧୧

ଅର୍ଥ—ପ୍ରବଳ କୁତୁହଳ ପୂର୍ଣ୍ଣ କାମିନୀମାନଙ୍କର ମଦ୍ୟଗନ୍ଧ-ସୁରଭିତ ଓ ଭ୍ରମର ସଦୃଶ ଚଞ୍ଚଳନେତ୍ରଯୁକ୍ତ ମୁଖମାନଙ୍କ-ଦ୍ୱାରା ଗବାକ୍ଷମାନ ପଦ୍ମମାନଙ୍କଦ୍ୱାରା ଭୂଷିତ ହେଲାପରି ଶୋଭା ପାଉଥିଲା ।

ଏହି ଦୁଇଟି ବର୍ଣ୍ଣନାରେ ଗବାକ୍ଷରୁ ବାହାରକୁ ବାହାରିଥିବା ସ୍ତ୍ରୀମାନଙ୍କ ମୁଖମାନଙ୍କ ସହିତ ପଦ୍ମମାନଙ୍କର ଉପମା ଦିଆଯାଇ ଅଛି । ଅଶ୍ୱଘୋଷ କେବଳ ଉପମା ଦେଇ ତୁନି ହୋଇଯାଇଛନ୍ତି । ମାତ୍ର କାଳିଦାସଙ୍କର ପଦ୍ୟରେ ଉପମା-କଳ୍ପନା ପୂର୍ଣ୍ଣ ବିକାଶ ଲାଭ କରିଛି । ଏଥିରୁ ଯଦି ଅନୁମାନ କରାଯିବ—ତେବେ କାଳିଦାସଙ୍କର କଳ୍ପନା ପରବର୍ତ୍ତୀ ବୋଲି ପ୍ରତୀତ ହେବ ।

ବର୍ତ୍ତମାନ ଛନ୍ଦ ଓ ଅର୍ଥର ସମତା ବିଚାର କରାଯାଉ । ପ୍ରଫେସର ଚଟ୍ଟୋପାଧ୍ୟାୟ The date of Kalidas

(କାଳିଦାସଙ୍କର ସମୟ) ନିର୍ଦ୍ଦିଷ୍ଟ ନିବନ୍ଧରେ କାଳିଦାସ ଓ ଅଶ୍ୱଘୋଷଙ୍କର କାବ୍ୟମାନ ପରିଶୀଳନ କରି ସମାନ ହେବା କେତେକ ଉଦାହରଣ ଉଲ୍ଲେଖ କରି ଅଛନ୍ତି । ପରନ୍ତୁ ସେମାନଙ୍କ ମଧ୍ୟରେ ଗୁରୁ ପାଞ୍ଚୋଟିରେ କେବଳ ବିଶେଷ ସାମ୍ୟ ଅଛି । କେତେକ ସମାନତା ଏପରି ଯେ ତାହା ବାଲ୍ମୀକି-ରାମାୟଣରେ ମଧ୍ୟ ଦେଖାଯାଏ । ସେମାନଙ୍କଦ୍ୱାରା କୌଣସି ଅନୁମାନ କରିବା ସମୀଚୀନ ହେବ ନାହିଁ । ଉଦାହରଣ ସ୍ୱରୂପ ନିମ୍ନଲିଖିତ ସମାନତା ବିଚାର କରନ୍ତୁ—

**ଅଶ୍ୱଘୋଷ—**

**वाता ववुः स्पर्शसुखा मनोज्ञा दिव्यानि वासांस्यवपातयन्तः ।**
**सूर्य्यः स एवाभ्यधिकं चकाशे जज्वाल सौम्यार्चिरनीरितोऽग्निः ।।**

ବୁଦ୍ଧ—୧, ୪୧

ଅର୍ଥ—ସ୍ପର୍ଶସୁଖକର ପବନ ଦେବାଙ୍ଗନାମାନଙ୍କ ବସ୍ତ୍ରାଞ୍ଚଳମାନ ବିଚଳିତ କରି ମନୋହର ଭାବରେ ବହିବାକୁ ଲାଗିଲା । ସୂର୍ଯ୍ୟ ଅଧିକ ତେଜରେ ପ୍ରକାଶ ପାଇଲେ, ସମିଧାଦିଦ୍ୱାରା ସନ୍ଦୀପିତ ନ ହେଲେ ମଧ୍ୟ ଅଗ୍ନି ସୌମ୍ୟଜ୍ୱାଳାବିଶିଷ୍ଟ ହୋଇ ଜଳିଲା ।

କାଳିଦାସ—

**दिशः प्रसेदुर्मरुतो ववुः सुखाः प्रदक्षिणार्चिर्हविरग्निराददे ।**
**बभूव सर्वं शुभशंसि तत्क्षणं,भवो हि लोकाभ्युदयाय तादृशाम् ।।**

ରଘୁ—୩, ୧୪

ଅର୍ଥ—ଦିଗମାନେ ନିର୍ମଳ ଦେଖାଗଲେ, ସ୍ପର୍ଶସୁଖକର ବାୟୁ ବହିଲା । ଅଗ୍ନି ପ୍ରଦକ୍ଷିଣ ଜ୍ୱାଳାବିଶିଷ୍ଟ ହୋଇ ହବି ଗ୍ରହଣ କଲେ । ସବୁ ପ୍ରକାର ଶୁଭସୂଚକ ଲକ୍ଷଣମାନ

ଦେଖାଗଲେ । କାରଣ, ଏପରି ମହାତ୍ମାମାନଙ୍କର ଉପସ୍ଥିତି ସବୁ ଲୋକମାନଙ୍କର ମଙ୍ଗଳ ସାଧନ ସକାଶେ ହୋଇଥାଏ ।

ଏ ଦୁଇଟି ବର୍ଣ୍ଣନାରେ କଳ୍ପନାସାମ୍ୟ ଅଧିକ ବୋଲି କହି ହେବ ନାହିଁ, ପୁଣି ଗୋଟିଏ ବର୍ଣ୍ଣନା ନ ପଢ଼ିଲେ ଅନ୍ୟ ବର୍ଣ୍ଣନା ସମ୍ଭବପର ନୁହେଁ ବୋଲି ମଧ୍ୟ କୁହାଯାଇ ପାରିବ ନାହିଁ । କାରଣ ଏପରି ବର୍ଣ୍ଣନା କରିବା ପ୍ରଥା କବିମାନଙ୍କର ମଧ୍ୟରେ ପ୍ରଚଳିତ ଥିଲା । ଉଭୟ କବି ନିଜ ନିଜ କଳ୍ପନା ବାଲ୍ମୀକି-ରାମାୟଣରୁ ନେଇଛନ୍ତି । ଯଜ୍ଞରକ୍ଷା କରିବା ସକାଶେ ବିଶ୍ୱାମିତ୍ରଙ୍କ ସହିତ ରାମ ଓ ଲକ୍ଷ୍ମଣ ଅଯୋଧ୍ୟାରୁ ପ୍ରସ୍ଥାନ କଲାବେଳେ ବାଲ୍ମୀକିଙ୍କ ବର୍ଣ୍ଣନା ପଢ଼ନ୍ତୁ —

**ततो वायुः सुखस्पर्शो नीरजस्को ववौ तदा ।**
**विश्वामित्रगतं रामं दृष्ट्वा राजीवलोचनम् ॥**
**पुष्पवृष्टिर्महत्यासीद्देवदुन्दुभिनिस्वनैः ।**
**शङ्खदुन्दुभिनिर्घोषः प्रयाते तु महात्मनि ॥**

ବାଲକାଣ୍ଡ—୨୨, ୪-୫

ଅର୍ଥ—ବିଶ୍ୱାମିତ୍ରଙ୍କ ସହିତ ପ୍ରସ୍ଥାନ କଲାବେଳେ କମଳଲୋଚନ ରାମଚନ୍ଦ୍ରଙ୍କୁ ଦେଖି ଗାତ୍ରସ୍ପର୍ଶକର ଧୂଳିବିରହିତ ପବନ ସେ ସମୟରେ ବହିବାକୁ ଆରମ୍ଭ କଲା, ବଡ଼ ଧରଣର ପୁଷ୍ପବୃଷ୍ଟି ହେଲା. ସେ ପ୍ରସ୍ଥାନ କଲାବେଳେ ଦେବତା-ମାନଙ୍କର ଦୁନ୍ଦୁଭି ନାଦ ସହିତ ମର୍ତ୍ତ୍ୟଲୋକବାସୀମାନଙ୍କର ଶଙ୍ଖ ଓ ଦୁନ୍ଦୁଭିମାନଙ୍କର ଶବ୍ଦ ଗୁରିଆଡ଼େ ବ୍ୟାପିଗଲା ।

ସଂସ୍କୃତଙ୍କର ସାମ୍ରାଜ୍ୟରେ ଏକ କବି ଅନ୍ୟ ଏକ କବିଙ୍କର କଳ୍ପନା ଅନୁକରଣ କରିବା ଦରକାର ନାହିଁ । କଳ୍ପନାସାମ୍ୟ ସହିତ ଯଦି ଉକ୍ତି ସାମ୍ୟ ଦେଖାଯାଏ, ତେବେ ଜଣେ ଅନ୍ୟଠାରୁ ନେଇଛନ୍ତି ବୋଲି ଦୋଷାରୋପ କରାଯାଇ ପାରେ । ଏହି ପରି ଅନେକ ସ୍ଥଳ ଅଛି, ଯେଉଁଠାରେ କବିମାନଙ୍କର କଳ୍ପନା ଏହି ପରି ଏକ ପ୍ରକାର ଦେଖାଯାଏ—

୧ । ଅଶ୍ୱଘୋଷ—

**तं गौरवं बुद्धगतं चकर्ष, भार्य्यानुरागः पुनराचकर्ष ।**
**सोऽनिश्चयान्नापि ययौ न तस्थौ तरंस्तरङ्गेष्विव राजहंसः ॥**

ସୌନ୍ଦର—୪, ୪୨

ଅର୍ଥ—ବୁଦ୍ଧଙ୍କପ୍ରତି ତାଙ୍କର ଗୌରବବୁଦ୍ଧି ତାଙ୍କୁ ସଂସାରରୁ ଟାଣି ନେଉଥିଲା, ମାତ୍ର ସ୍ତ୍ରୀପ୍ରୀତି ଆସକ୍ତି ସଂସାରକୁ ଟାଣି ଆଣୁଥିଲା । ସେ କୌଣସି ବିଷୟ ସ୍ଥିର କରି ନ ପାରି ତରଙ୍ଗମାନଙ୍କ ମଧ୍ୟବର୍ତ୍ତୀ ରାଜହଂସ ପରି ଯାଇ ପାରିଲେ ନାହିଁ କି ରହି ପାରିଲେ ନାହିଁ ।

କାଳିଦାସ—

**तं वीक्ष्य वेपथुमती सरसाङ्गयष्टि—**
**र्निक्षेपणाय पदमुद्धृतमुद्वहन्ती ।**
**मार्गाचलव्यतिकराकुलितेव सिन्धुः**
**शैलाधिराजतनया न ययौ न तस्थौ ।**

କୁମାର—୫, ୮୫

ଅର୍ଥ—ତାଙ୍କୁ ଦେଖି ଅଙ୍ଗମାନ କମ୍ପି ଉଠିଲା । ଶରୀର ସରସ ହେଲା । ଯିବା ସକାଶେ ଟେକି ଥିବା ପାଦ ଆଗକୁ ପକାଇ ପାରିଲେ ନାହିଁ । ମାର୍ଗମଧ୍ୟରେ ପର୍ବତର ଅବରୋଧରେ ଆକୁଳିତ ନଦୀ ପରି ଯାଇଁ ଯାଇ ପାରିଲେ ନାହିଁ କି ରହିପାରିଲେ ନାହିଁ ।

୨ । ଅଶ୍ୱଘୋଷ—

**आदित्यपूर्वं विपुलं कुलं ते नवं वयो दीप्तमिदं वपुश्च ।**
**कस्मादियं ते मतिरक्रमेण भैक्षाक एवाभिमता न राज्ये ॥**

ବୁଦ୍ଧ—୧୦,୪

ଅର୍ଥ—ସୂର୍ଯ୍ୟବଂଶ ରୂପ ମହାକୁଳରେ ଉତ୍ପନ୍ନ, ନବୀନ ବୟସ ଏବଂ କାନ୍ତିମାନ୍ ଶରୀର । ତଥାପି ତୁମର ବୁଦ୍ଧି ରାଜ୍ୟରେ ଆସକ୍ତ ନ ହୋଇ, କପର ଏହି ଭିକ୍ଷାବୃତ୍ତିରେ ଅଯଙ୍ଗତ-ଭାବେ ଆସକ୍ତ ହେଲା ?

କାଳିଦାସ—

**एकातपत्रं जगतः प्रभुत्वं नवं वयः कान्तमिदं वपुश्च ।**
**अल्पस्य हेतोर्बहु हातुमिच्छन् विचारमूढः प्रतिभासि मे त्वम् ॥**

ରଘୁ, ୨, ୪୭

ଅର୍ଥ—ଏକଚ୍ଛତ୍ର ତ୍ରିଭୁବନ ସାମ୍ରାଜ୍ୟ, ତୁମର ଏହି ନବୀନ ବୟସ ଏବଂ କାନ୍ତିମାନ୍ ଶରୀର ! ସାମାନ୍ୟ ଗାଈଟାକୁ ରକ୍ଷା କରିବା ସକାଶେ ଏ ସମସ୍ତ ବଳିଦେବାକୁ ଇଚ୍ଛୁକ ତୁମେ ମୋ ଦୃଷ୍ଟିରେ ବିବେକଶୂନ୍ୟ ଦେଖା ଯାଉ ଅଛ !

୩ । ଅଶ୍ୱଘୋଷ—

द्वन्द्वानि सर्वस्य यतः प्रसक्ता-
न्यलाभलाभप्रभृतीनि लोके ।
अतोऽपि नैकान्तसुखोऽस्ति
कश्चिन्नैकान्तदुःखोऽपि नरः पृथिव्याम् ।

ବୁଦ୍ଧ, ୧୧, ୪୩

ଅର୍ଥ—ସଂସାରରେ ଲାଭ, ଅଲାଭ, ସୁଖ, ଦୁଃଖ ପ୍ରଭୃତି ଦୁଇଟି ଭାବ ସର୍ବଦା ଅନୁଭୂତ ହୋଇ ରହୁଛି । ଏ ହେତୁ ସଂସାରରେ ଏକାନ୍ତ ସୁଖୀ ହୋଇ କି ଏକାନ୍ତ ଦୁଃଖୀ ହୋଇ କେହି ନାହିଁ ।

କାଳିଦାସ—

कस्यैकान्तं सुखमुपनतं दुःखमेकान्ततो वा ।
नीचैर्गच्छत्युपरि च दशा चक्रनेमिक्रमेण ॥

ମେଘ, ୧୧୦,

ଅର୍ଥ—କାହାର ଭାଗ୍ୟରେ ନିରବଚ୍ଛିନ୍ନ ସୁଖ ବା ନିରବଚ୍ଛିନ୍ନ ଦୁଃଖ ସମ୍ଭବ ଥାଏ ? ଭାଗ୍ୟଚକ୍ର ରେଥଚକ୍ରର ନେମିପରି କେତେବେଳେ ଉପରେ ବା କେତେବେଳେ ତଳେ ଘୂରୁଥାଏ ।

ଏପରି ଉଦାହରଣମାନଙ୍କର ସମାନତା ଅବଶ୍ୟ ଅର୍ଥପୂର୍ଣ୍ଣକର । ହଠାତ୍ ଜଣାଯାଉଛି— ଅବଶ୍ୟ ଏକ କବି ଅନ୍ୟ କବିଙ୍କର କାବ୍ୟ ଦେଖିଛନ୍ତି । କିନ୍ତୁ ଉପର୍ଯ୍ୟୁକ୍ତ ଉଦାହରଣମାନଙ୍କରେ କିଏ କାହାର ନକଲ କରିଅଛନ୍ତି—ତାହା ନିରୂପଣ କରିବାକୁ

ଠିକଏ କଷ୍ଟସାଧ । ଅଶ୍ୱଘୋଷଙ୍କ ଅପେକ୍ଷା କାଳିଦାସଙ୍କର ଉଦାହରଣମାନଙ୍କରେ ଅଧିକ ଲାଳିତ୍ୟ ଅଛି—ଏହା ସହୃଦୟ ପାଠକମାନେ ପଠନମାତ୍ରେ ଉପଲବ୍ଧି କରି ପାରିବେ । ଅଶ୍ୱଘୋଷ ଏକ ବଡ଼ ଦାର୍ଶନିକ ଥିଲେ । ସେ ନିଜ ବାକ୍ୟରେ ପ୍ରକାଶ କରିଛନ୍ତି— ମୁଁ ସର୍ବସାଧାରଣଙ୍କର ମନ ଆକର୍ଷଣ କରିବାକୁ କେବଳ ଏହି କାବ୍ୟମାନଙ୍କୁ ଲେଖିବାକୁ ପ୍ରବୃତ୍ତ ହୋଇଅଛି । ଏଥିରେ କୌଣସି ସନ୍ଦେହ ନାହିଁ ଯେ ସେ ଅସାଧାରଣ ପ୍ରତିଭାଶାଳୀ ଥିଲେ । ତଥାପି କାବ୍ୟ ରଚନା କରିବା ତାଙ୍କର ଲକ୍ଷ୍ୟ ନ ଥିବାରୁ ତାଙ୍କର ଧ୍ୟାନ କାବ୍ୟର ଗୂଢ଼ତା ପ୍ରତି ଆକୃଷ୍ଟ ହୋଇ ନ ଥିଲା । ମାତ୍ର କାଳିଦାସଙ୍କ ଠାରେ ଅନେ ଏହାର ଠିକ୍ ବିପରୀତ ଭାବ ଦେଖିପାରୁ । କାଳିଦାସ ଅଶ୍ୱଘୋଷ-ଙ୍କର କଳ୍ପନା ଓ ଶବ୍ଦ ଯୋଜନା ମାର୍ଜିତ କରି ପୁଣି ତା ଉପରେ ରଙ୍ଗ ଚଢ଼ାଇ ସେସବୁ ସମସ୍ତ ନିଜ କାବ୍ୟରେ ସନ୍ନି-ବେଶିତ କରି ଅଛନ୍ତି । ଏପରି ଯଦି ଏକ ପକ୍ଷୀୟ ବ୍ୟକ୍ତି କହନ୍ତି, ଅପର ପକ୍ଷର ଲୋକ କହି ପାରନ୍ତି—କାଳିଦାସଙ୍କ ଅପେକ୍ଷା ଅଶ୍ୱଘୋଷଙ୍କ କାବ୍ୟମାନଙ୍କରେ କୃତ୍ରିମତା ଅଧିକ ପରିମାଣରେ ଦେଖାଯାଏ ଏବଂ ସଂସ୍କୃତ ସାହିତ୍ୟ ଇତିହାସରେ କୃତ୍ରିମତାର ପରିମାଣ ଯାହାଙ୍କ କାବ୍ୟରେ ଯେତେ ଅଧିକମାତ୍ରାରେ ଦେଖା-ଯାଏ, ସେ କବି ସେତେ ପରିମାଣରେ ଅର୍ବାଚୀନ ବୋଲି ଧରାଯାଏ । ଏହି ସାଧାରଣ ନିୟମ ଅନୁଯାୟୀ ଅଶ୍ୱଘୋଷ କାଳିଦାସଙ୍କର ପରବର୍ତ୍ତୀ ହେବେ । ଏହିହେତୁ ଏହି ବିବାଦର ନିଷ୍ପତ୍ତି କରିବାକୁ ହେଲେ ଅନ୍ୟପ୍ରକାର ସାହାଯ୍ୟ ନେବାକୁ ହେବ । ଉଦାହରଣ-ସ୍ୱରୂପ ଏକ କବିଙ୍କର କେତେକ ଶବ୍ଦ ପ୍ରୟୋଗ ଅନ୍ୟ କବି ଅପହରଣ କରି ଅଛନ୍ତି—ଏପରି ଯଦି ଆମେ ପ୍ରମାଣିତ କରି

ଧାରିବା, ତେବେ ଏହି ସମସ୍ୟା ସମାଧାନରେ ସହାୟତା ମିଳିବ । ଏହି ଦୃଷ୍ଟିରେ ଅଶ୍ୱଘୋଷଙ୍କର କାବ୍ୟମାନ ପରିଶୀଳନ କରି ଆମେ ଯେଉଁ ଉଦାହରଣମାନ ପାଉଛୁଁ, ତାହା ପାଠକ-ମାନଙ୍କ ସମ୍ମୁଖରେ ଉପସ୍ଥାପିତ କରୁଅଛୁଁ ।

ଅଶ୍ୱଘୋଷ 'ପ୍ରାଗେବ' ପଦର ଉପଯୋଗ ସଂସ୍କୃତର 'କିମୁତ' (ଆଉ କଅଣ କହିବା !) ଏହି ଅର୍ଥରେ ବ୍ୟବହାର କରି ଅଛନ୍ତି । ନିମ୍ନଲିଖିତ ଶ୍ଳୋକ ପ୍ରତି ଦୃଷ୍ଟିପାତ କରନ୍ତୁ—

**एवमाद्या महात्मानो विषयान् गर्हितानपि ।**
**रतिहोतोर्बुभुजिरे प्रागेव गुणसंहितान् ।**

ବୁଦ୍ଧ, ୪, ୮୧

ନୀତଶାସ୍ତ୍ରଜ୍ଞ 'ଉଦାୟୀ' ନାମକ ଗୌତମଙ୍କର ମିତ୍ର ବିରକ୍ତ ମନକୁ ପୁନରପି ବିଷୟମାନଙ୍କରେ ଅନୁରକ୍ତ କରିବା ଉଦ୍ଦେଶ୍ୟରେ ଅନେକ ପ୍ରାଚୀନ କଥା ଉଦାହରଣ ଦେଇ କହୁଅଛନ୍ତି 'ଯେତେବେଳେ ଏହି ପ୍ରକାର ନିନ୍ଦନୀୟ ବିଷୟମାନଙ୍କୁ ବଡ଼ ବଡ଼ ମହାତ୍ମାମାନେ ଭୋଗଲାଳସାର ବଶବର୍ତ୍ତୀ ହୋଇ ଉପଭୋଗ କରି ଅଛନ୍ତି, ତେବେ ଅନିନ୍ଦିତ ବିଷୟମାନଙ୍କ ଉପଭୋଗ କରିବା ବିଷୟରେ ଆଉ କଅଣ କହିବା !' ଏହିପରି ଅର୍ଥରେ 'ପ୍ରାଗେବ' ପଦର ଉପଯୋଗ ସଂସ୍କୃତ ବୌଦ୍ଧ ସାହିତ୍ୟରେ ଅନେକ ସ୍ଥଳରେ ଦେଖାଯାଏ * ମାତ୍ର ହିନ୍ଦୁ ସଂସ୍କୃତ ସାହିତ୍ୟରେ ଏହି ପ୍ରକାର ପ୍ରୟୋଗ କୌଣସି ସ୍ଥଳରେ ଦେଖାଯାଏ ନାହିଁ । ପ୍ରଥମେପର

* ବୁଦ୍ଧ ଚରିତ—୪, ୧୯ । ଆର୍ଯ୍ୟଶୂରଙ୍କୃତ ଜାତକମାଳା ୫୧ ପୃଷ୍ଠା ପ୍ରଭୃତି ଦେଖନ୍ତୁ ।

ଅମ୍ବ୍ରଟଙ୍କ ସଂସ୍କୃତ ଅଭିଧାନରେ ଏବଂ ଅମରକୋଶପ୍ରମୁଖ ଅନ୍ୟ ପ୍ରାଚୀନ କୋଶମାନଙ୍କରେ 'ପ୍ରାଗେବ' ଶବ୍ଦର ଏହି ପ୍ରକାର ଅର୍ଥ ଦିଆଯାଇ ନାହିଁ । ପରନ୍ତୁ ଆଶ୍ଚର୍ଯ୍ୟର କଥା କାଳିଦାସ 'ଋତୁସଂହାର' କାବ୍ୟରେ 'ପ୍ରାଗେବ' ଶବ୍ଦକୁ ଏହି ଅର୍ଥରେ ଏକ ଶ୍ଳୋକରେ ବ୍ୟବହାର କରି ଅଛନ୍ତି—

**कुन्दैः सविभ्रम वधू हसितावदातै—**
**रुद्योतितान्युपवनानि मनोहराणि ।**
**चित्तं मुनेरपि हरन्ति निवृत्तरागं**
**प्रागेव रागमलिनानि मनांसि यूनाम् ॥**

"ଯେଉଁବେଳେ ବିଳାସିନୀ ତରୁଣୀମାନଙ୍କର ହାସ ସଦୃଶ ଶୁଭ୍ର କୁନ୍ଦପୁଷ୍ପମାନଙ୍କରେ ସମୁଦ୍ଭାସିତ ଉପବନ ମୁନିମାନଙ୍କର ବିରକ୍ତ ମନକୁ ମଧ୍ୟ ହରଣ କରେ, ସେତେବେଳେ ଅନୁରାଗୀ ଯୁବକମାନଙ୍କର ମନକୁ ହରଣ କରେ ବୋଲି କହିଲେ ଆଶ୍ଚର୍ଯ୍ୟର ବିଷୟ କଅଣ ଅଛି ?"

ଏହି ପଦ୍ୟର 'ପ୍ରାଗେବ' ଶବ୍ଦର ପ୍ରୟୋଗ ସଂସ୍କୃତଟୀକାକାରଙ୍କ ପକ୍ଷେ ଏତେଦୂର ଅପରିଚିତ ଯେ, ଏକ ଜଣ ଟୀକାକାର ଏହାର ଅର୍ଥ 'ମୁନିଚିତ୍ତାପହରଣାତ୍ ପ୍ରାଗେବ' ବୋଲି ଅର୍ଥ କରି ଅଛନ୍ତି । ସେପରି ଅର୍ଥ କଲେ ସେହି ଶ୍ଳୋକର ଭାବ ସଙ୍ଗତ ହେବ ନାହିଁ । ସେଥିରୁ କଅଣ ସିଦ୍ଧ ହେଉ ନାହିଁ ଯେ କାଳିଦାସ ସଂସ୍କୃତ ବୌଦ୍ଧ ଗ୍ରନ୍ଥ ବିଶେଷତଃ ନିଜପୂର୍ବବର୍ତ୍ତୀ କବିମାନଙ୍କର କାବ୍ୟ ପଢ଼ିଥିଲେ ? ଅନ୍ୟ ପକ୍ଷରେ ଆମେ କାଳିଦାସଙ୍କୁ ଖ୍ରୀଷ୍ଟପୂର୍ବ ପ୍ରଥମ ଶତାବ୍ଦୀ କବି ବୋଲି ଯଦି ମାନିବା, ତେବେ

କାଳିଦାସଙ୍କ ପୂର୍ବରୁ ସଂସ୍କୃତ ଭାଷାରେ ବୌଦ୍ଧସାହିତ୍ୟ ରଚିତ ହୋଇଥିଲା ବୋଲି ମାନିବାକୁ ହେବ । ପରନ୍ତୁ ଖ୍ରୀଷ୍ଟ ପ୍ରଥମ ଶତାବ୍ଦୀରେ 'ମହାଯାନ' ସମ୍ପ୍ରଦାୟ ଉତ୍କର୍ଷ ଲାଭ କଲା-ପରେ ବୌଦ୍ଧମାନେ ସଂସ୍କୃତ ଭାଷାରେ ଗ୍ରନ୍ଥମାନ ରଚନା କରି ଅଛନ୍ତି । ତା ପୂର୍ବରୁ ବୌଦ୍ଧ ଗ୍ରନ୍ଥମାନ ପାଲିଭାଷାରେ ରଚିତ ହେବା ଦେଖାଯାଏ । ଏ ହେତୁ ଆମେମାନେ କାଳିଦାସଙ୍କୁ ଅଶ୍ୱଘୋଷଙ୍କ ପୂର୍ବବର୍ତ୍ତୀ ଅର୍ଥାତ୍ ଖ୍ରୀଷ୍ଟପୂର୍ବ ପ୍ରଥମ ଶତାବ୍ଦୀର କବି ବୋଲି କହି ପାରିବୁ ନାହିଁ । ଓଲଟା, ଯଦି ସେ ଗୁପ୍ତ-ସମୟରେ ବା ତାହା ପରେ ଥିଲେ ବୋଲି ସ୍ୱୀକାର କରାଯାଏ, ତେବେ ସେ ତାଙ୍କର ପୂର୍ବବର୍ତ୍ତୀ ବୌଦ୍ଧକବିମାନଙ୍କର ଗ୍ରନ୍ଥମାନ ପଢ଼ିବାର ସୁଯୋଗ ପାଇଥିଲେ ଏବଂ ଅଜ୍ଞାତସାରରେ ସେହି ଗ୍ରନ୍ଥମାନଙ୍କର ଶବ୍ଦ ପ୍ରୟୋଗମାନଙ୍କରୁ କେତେକ ନିଜ କାବ୍ୟରେ ପ୍ରଥମେ ପ୍ରଥମେ ବ୍ୟବହାର କରିଥିଲେ । ପରିଶେଷରେ ସେପରି ଶବ୍ଦମାନ ହିନ୍ଦୁ ସଂସ୍କୃତ ସାହିତ୍ୟରେ ପ୍ରଚଳିତ ନ ଥିବାରୁ ସମ୍ଭବତଃ ପରିତ୍ୟାଗ କରିଅଛନ୍ତି ବୋଲି ଅନୁମାନ କରାଯାଇ ପାରେ ।

(ଙ) ଭିଟାର ପଦକ ୧୯୦୯—୧୦ ସାଲରେ ପ୍ରୟାଗ—ନିକଟବର୍ତ୍ତୀ ଭିଟା ନାମକ ଗ୍ରାମରେ ଖନନ କାର୍ଯ୍ୟ ଆରମ୍ଭ ହେଲା । ସେଠାରେ ଖୋଳୁ ଖୋଳୁ ଏକ ବଡ଼ ଆକାରର ମୃଣ୍ମୟ ପଦକ ମିଳିଲା । ଏହି ପଦକ ଗାତ୍ରରେ ଚାରୋଟି ଘୋଡ଼ା ଯୋଚା ହୋଇଥିବା ଏକ ରଥ ଏବଂ ରଥ ଉପରେ ଦୁଇବ୍ୟକ୍ତି ବସିଥିବା ଅବସ୍ଥାରେ ଦେଖାଯାଏ । ସମ୍ମୁଖରେ କାରଗାରୁ ସଦୃଶ ଏକ ଅସ୍ଥିପଞ୍ଜରବିଶିଷ୍ଟ ମନୁଷ୍ୟ, ପୃଷ୍ଠଭାଗରେ ଏକ

କୁଡ଼ଅ, ତା ପାଖରେ ଏକ ବୃକ୍ଷ ସମୀପରେ ଏକ ସ୍ତ୍ରୀର ପ୍ରତିକୃତି—ଏ ସମସ୍ତ ବସ୍ତୁ ଦେଖାଯାଏ।* ତଳ ଭାଗରେ ମଧ୍ୟ, କମଳ ଅଧରେ ମରିପୂର୍ଣ୍ଣ ଏକ ପୁଷ୍କରଣୀ, ତୀରରେ ଏକ ବ୍ୟକ୍ତି ଏବଂ ତା ପାଖରେ ଦୁଇଟି ହରିଣ ଓ ପିଂଛ ଟେକି ନାଚୁଥିବା ଏକ ମୟୂରର ଚିତ୍ର ଦେଖାଯାଏ। † ପ୍ରଫେସର ଶାରଦାରଞ୍ଜନରାୟ ଅନୁମାନ କରନ୍ତି ଯେ ଏହି ପଦକର ଉପରେ ଶାକୁନ୍ତଳ ନାଟକର ପ୍ରଥମାଙ୍କର ଦୃଶ୍ୟ ପ୍ରତିଫଳିତ। ରଥଉପରେ ଥିବା ଦୁଇବ୍ୟକ୍ତି ରାଜା ଦୁଷ୍ମନ୍ତ ଏବଂ ତାଙ୍କର ସାରଥି। ତାପରେ ଅସ୍ଥିପଞ୍ଜରବିଶିଷ୍ଟ ବ୍ୟକ୍ତି କଣ୍ୱାଶ୍ରମ ନିବାସୀ ତାପସ ଓ ତାଙ୍କ ପାଖରେ ଥିବା ସ୍ତ୍ରୀ ଶକୁନ୍ତଳା ବୋଲି ପ୍ରଫେସର ମହୋଦୟ ନିରୂପଣ କରିଛନ୍ତି। କେତେକ ପଣ୍ଡିତଙ୍କ ମତରେ ଏହି ପଦକଟି ଶୁଙ୍ଗକାଳୀନ। ଏହି ହେତୁ କାଳିଦାସ ଖ୍ରୀଷ୍ଟପୂର୍ବ ପ୍ରଥମଶତାବ୍ଦୀର କବି ବୋଲି ପ୍ରଫେସର ରାୟମହୋଦୟଙ୍କର ଅଭିମତ।

କିନ୍ତୁ ସେପରି ଅନୁମାନରେ କୌଣସି ସତ୍ୟତା ନାହିଁ। ପ୍ରଥମତଃ ସେ ପଦକ ଶୁଙ୍ଗକାଳୀନ—ଏ ବିଷୟରେ କୌଣସି ପ୍ରମାଣ ଏ ପର୍ଯ୍ୟନ୍ତ ମିଳି ନାହିଁ। ଦ୍ୱିତୀୟତଃ ପଦକ ଉପରେ ଯେଉଁ ଦୃଶ୍ୟ ଅଙ୍କିତ, ତାହା ଶାକୁନ୍ତଳ ନାଟକର ପ୍ରଥମାଙ୍କର ଦୃଶ୍ୟ ବୋଲି ଭାବିବାରେ ଦ୍ୱିଧାଭାବ ଜାତ ହୁଏ। ରଥ ଆଗରେ

---

*Cambridge History of India vol. I (Ancient India)ରେ ଏହି ପଦକର ଛବି ଦିଆଯାଇଛି।

† Ray: Kalidasa's Shakuntala (1920) Introduction. Page 9.

ହରିଣ ଧାଉଁ ଥିବା ପରି ଅଙ୍କିତ ହୋଇ ନାହିଁ । ସ୍ଥାନ ନ ଥିବାରୁ ତଳେ ହରିଣର ଚିହ୍ନ ଦିଆଯାଇଛି ବୋଲି ଭାବିଲେ ମଧ୍ୟ ତଥାପି ଏକ ହରିଣ ସ୍ଥାନରେ ଦୁଇଟି ହରିଣର ଚିହ୍ନ ଅଙ୍କିତ ହୋଇ ଅଛି । ପୁଣି ଏହି ଦୁଇଟି ହରିଣ ଭୀତତ୍ରସ୍ତ ହୋଇ ଧାଉଁ ନାହାନ୍ତି କିନ୍ତୁ ସ୍ୱଚ୍ଛନ୍ଦଭାବରେ ବିହାର କରୁଥିବା ପରି ଅଙ୍କିତ ହୋଇଛନ୍ତି । ପାର୍ଶ୍ୱରେ ଅଙ୍କିତ ମୟୂର ମଧ୍ୟ, ପୁଚ୍ଛ ଟେକି ନୃତ୍ୟ କରୁଅଛି । ତରୁଣ କୁମାର ସିଦ୍ଧାର୍ଥଙ୍କ ରଥ ଆରୋହଣ କରି ବିହାର କରିବାକୁ ଗଲା ସମୟରେ ପ୍ରଥମେ ଅସ୍ଥିପଞ୍ଜରବିଶିଷ୍ଟ ମନୁଷ୍ୟ ଦୃଷ୍ଟିପଥାରୂଢ଼ ହୋଇଥିଲା — ଯାହାଦ୍ୱାରା ସର୍ବପ୍ରଥମେ ତାଙ୍କ ମନରେ ବୃଦ୍ଧାବସ୍ଥାର ଧାରଣା ଜାତ ହୋଇ ଥିଲା । ଅନେକ ପ୍ରାଚୀନ ବୌଦ୍ଧଗ୍ରନ୍ଥରେ ଯେଉଁ ପ୍ରକାର ବର୍ଣ୍ଣନା ଦେଖାଯାଏ, ଶିଳ୍ପକାର ପଦକରେ ତାହା ଅଙ୍କିତ କରି ଅଛନ୍ତି — ଏପରି କଳ୍ପନା ପୂର୍ବ କଳ୍ପନା ଅପେକ୍ଷା ଅଧିକ ଯୁକ୍ତିଯୁକ୍ତ ଦେଖାଯାଏ । ପ୍ରଥମେ ପ୍ରଥମେ ବୁଦ୍ଧଦେବଙ୍କର ଅନେକ ଘଟନା ଏହି ପରି ଶିଳା ସ୍ତୂପ-ପ୍ରଭୃତିରେ ଚିତ୍ରିତ ହେବା ପ୍ରଥା ଥିଲା—ଏହା ପ୍ରାଚୀନ ସ୍ତୂପ-ମାନଙ୍କରୁ ପ୍ରମାଣିତ ହୋଇ ଅଛି । ପ୍ରାଚୀନ କାଳରେ ଶାକୁନ୍ତଳ-ପ୍ରଭୃତି ନାଟକମାନଙ୍କର ଦୃଶ୍ୟ ଏହି ପ୍ରକାର ପଦକମାନଙ୍କରେ ଉତ୍କୀର୍ଣ୍ଣ କରିବା ପ୍ରଥା ନ ଥିଲା । ସେପରି ଅଙ୍କନ କରିବା ଉଦ୍ଦେଶ୍ୟ ମଧ୍ୟ କଅଣ ହୋଇପାରେ ଜଣାଯାଏ ନାହିଁ ।†

(ଚ) ବୃହତ୍କଥାର ସଂସ୍କୃତ ସଂସ୍କରଣରେ ବିକ୍ରମାଦିତ୍ୟଙ୍କର ଉଲ୍ଲେଖ—କଥା ସରିତ୍ ସାଗରର ଶେଷ ଲମ୍ବକରେ ମହେନ୍ଦ୍ରପୁର

† K. Chattopadhyaya: The Date of Kalidasa. p. p. 57 8

ବିକ୍ରମାଦିତ୍ୟଙ୍କର କଥା ଦିଆଯାଇଅଛି । ତହିଁରେ କୁହାଯାଇଛି ଯେ ସେ ଭଗବାନ୍ ଶିବଙ୍କର ମାଲ୍ୟବାନ୍ ନାମକ ଗଣ ଥିଲେ । ତାଙ୍କର ଆଦେଶରେ ସେ ମ୍ଲେଚ୍ଛମାନଙ୍କର ନିଧନ ସାଧନ, ବୌଦ୍ଧ ଧର୍ମର ପରାଜୟ ଏବଂ ବୈଦିକ ଧର୍ମର ପୁନରୁଜ୍ଜୀବନ କରିବା ସକାଶେ ପୃଥିବୀରେ ଅବତୀର୍ଣ୍ଣ ହୋଇଥିଲେ । 'କଥା ସରିତ୍ ସାଗର' 'ବୃହତ୍ କଥା'ର ସଂସ୍କୃତ ସଂସ୍କରଣ । ବୃହତ୍କଥା ଖ୍ରୀଷ୍ଟୀୟ ପ୍ରଥମ ଶତାବ୍ଦୀର ପୈଶାଚୀ ଭାଷାରେ ଲେଖାଯାଇଥିଲା । ଏ ହେତୁ ଏହି ବିକ୍ରମାଦିତ୍ୟ ବିକ୍ରମ ସମ୍ବତ୍‌ର ଅବଶ୍ୟ ସଂସ୍ଥାପକ ହେବେ । ସେ ମାଳବର ଉଜ୍ଜୟିନୀରେ ରାଜତ୍ୱ କରୁଥିଲେ । ଏ ହେତୁ ଏହି ସମ୍ବତ୍‌କୁ 'ମାଳବ ସମ୍ବତ୍' ବୋଲି ନାମ ଦିଆ ଯାଇ ଅଛି । ଉତ୍କୀର୍ଣ୍ଣ ଲେଖମାନଙ୍କରେ ଏହି ସମ୍ବତ୍‌ର ନିର୍ଦ୍ଦେଶ କରିବାକୁ ଯାଇ 'ମାଲବାନାଂ ଗଣସ୍ଥିତ୍ୟା' 'ମାଲବଗଣସ୍ଥିତିବଶାତ୍' 'ଶ୍ରୀମାଲବ-ଗଣାମ୍ନାତ' ଇତ୍ୟାଦି ଶବ୍ଦମାନଙ୍କର ପ୍ରୟୋଗ ଦେଖାଯାଏ । ଏ ସମସ୍ତରେ ପ୍ରଯୁକ୍ତ ଗଣଶବ୍ଦର ଅର୍ଥ ଗଣନା । ଶବ୍ଦାର୍ଣ୍ଣବ-କୋଷରେ 'ଗଣସ୍ତୁ ଗଣନାୟାଂ ସ୍ୟାଦ୍‌ଗଣେଶେ ପ୍ରମଥେ ଚୟେ' ଏହି ପଂକ୍ତିରେ ଗଣ ଶବ୍ଦର ବିଭିନ୍ନ ଅର୍ଥ ଦିଆଯାଇ ଅଛି । ଏ ହେତୁ ଉପର୍ଯ୍ୟୁକ୍ତ ଶବ୍ଦପ୍ରୟୋଗର ଅର୍ଥ—ମାଳବ ଦେଶରେ ଚଳିତ ଗଣନା ପଦ୍ଧତି ଅନୁସାରେ ବୋଲି ହେଉଅଛି । 'ଗାଥା-ସପ୍ତଶତୀ'ରେ ବିକ୍ରମାଦିତ୍ୟଙ୍କର ଦାତୃତ୍ୱ ବିଷୟରେ ଏକ ଗାଥା * ଦେଖାଯାଏ । ଏହି ଗ୍ରନ୍ଥ 'ହାଳ' ନାମକ ଏକ ରାଜା ଖ୍ରୀଷ୍ଟୀୟ ପ୍ରଥମ ଶତାବ୍ଦୀରେ ରଚନା କରିଥିଲେ । ଏ ହେତୁ ଏହି

*संवाहणसुहरसतोसिएण देन्तेण तुह करे लक्खम्
चलणेण विक्कमाइत्तचरिअं अणुसिक्खिअं तिस्सा ॥४६४॥

ବିକ୍ରମାଦିତ୍ୟ କେବଳ 'ବିକ୍ରମସଂବତ୍‌ର ସଂସ୍ଥାପକ ହେବା ବାଞ୍ଛନୀୟ । ଏହିପରି ଅନୁମାନ ପ୍ରା. କ୍ଷି. ମୋ. ଶୈବବର୍ଣ୍ଣେକର ଘୋଷଣା କରନ୍ତି ।

ପ୍ରା. ଶୈବବର୍ଣ୍ଣେକରଙ୍କର ପ୍ରମାଣ ନିତାନ୍ତ ଦୁର୍ବଳ । କଥାସରିତ୍‌ସାଗର ଖ୍ରୀଷ୍ଟୀୟ ଏକାଦଶ ଶତାବ୍ଦୀରେ ଲେଖା ଯାଇଥିଲା । ଏହାର ମୂଳଗ୍ରନ୍ଥ ପୈଶାଚୀ ଭାଷାର ବୃହତ୍‌କଥା ବର୍ତ୍ତମାନ ମିଳୁ ନାହିଁ । କଥାସରିତ୍‌ସାଗର ଛଡ଼ା ଏହାର ଆଉର ଦୁଇଟି ସଂସ୍କରଣ ଅଛି— 'ବୃହତ୍ କଥା ମଞ୍ଜରୀ' ଓ 'ବୃହତ୍‌କଥା ଶ୍ଳୋକ ସଂଗ୍ରହ' । ଗୁଣାଢ଼୍ୟଙ୍କ କଥା 'ନେପାଳ-ମାହାତ୍ମ୍ୟ'ରେ ମଧ୍ୟ ଦେଖାଯାଏ । ଏହି ଗ୍ରନ୍ଥତ୍ରୟ ଗୁଡ଼ିକର କଥା-ମାନଙ୍କରେ ପରସ୍ପର ଅନେକ ଭେଦ ଦେଖାଯାଏ । ବୃହତ୍‌କଥାରେ ବିକ୍ରମାଦିତ୍ୟଙ୍କର ଯେଉଁ କଥା ଥିଲା, ବୃହତ୍‌କଥାର ଏକ ହଜାର ବର୍ଷ ପରେ ଯେଉଁ ସବୁ ସଂସ୍କୃତ ସଂସ୍କରଣ ହୋଇଅଛି— ସେ ମଧ୍ୟରେ ଯେଉଁ ସବୁ କଳ୍ପିତ କଥା ପ୍ରକ୍ଷିପ୍ତ ହୋଇ ଅଛି— ସେ ସମସ୍ତ ନିରୂପଣ କରିବା ଦରକାର । କଥା ହିସାବରେ ତ ଏହା ଐତିହାସିକ କୁହାଯାଇ ପାରିବ ନାହିଁ । ଏହି କଥାର ନାୟକ

---

ଭାବାର୍ଥ—ଏକ ସ୍ତ୍ରୀ ନିଜ ପ୍ରିୟତମଙ୍କୁ କହୁଅଛି—ଯେତେବେଳେ ତୁମେ ସେହି ସ୍ତ୍ରୀର ପାଦ ସମ୍ବାହନ କରୁଥିଲ, ସେତେବେଳେ ଅନବଧାନତାବଶତଃ ତୁମ ହାତରେ ଲାକ୍ଷାରସର ଚିହ୍ନ ଲାଗିଯାଇଥିଲା, ତାହା ତୁମ ହାତରେ ଦେଖାଯାଉଛି । ଏହି ଶ୍ଳୋକରେ ଲକ୍ଷାରସର ଚିହ୍ନ ଲାଗି କରି ତାର ଚରଣ ବିକ୍ରମାଦିତ୍ୟଦେବଙ୍କର ଚରିତ୍ର ଅନୁକରଣ କରୁଅଛି । କାରଣ ବିକ୍ରମାଦିତ୍ୟ ମଧ୍ୟ ନିଜ ସେବକମାନଙ୍କର ସେବାରେ ସନ୍ତୁଷ୍ଟ ହୋଇ ସେମାନଙ୍କ ହାତରେ ଲକ୍ଷ ଲକ୍ଷ ମୁଦ୍ରା ଦେଉଥିଲେ (ଏଠାରେ 'ଲକ୍ଷ୍ମୀ' ଏହି ଶ୍ଲିଷ୍ଟପଦର ଦୁଇଟି ଅର୍ଥ-ଲାକ୍ଷାରସ ଓ ଲକ୍ଷ ।

ବିକ୍ରମାଦିତ୍ୟ ଅପରାନ୍ତ (କୋଙ୍କଣ) ସମେତ ସମସ୍ତ ଦାକ୍ଷିଣାତ୍ୟ-ପ୍ରଦେଶ, ମଧ୍ୟଦେଶ, ସୌରାଷ୍ଟ୍ର, ବଙ୍ଗ, ଅଙ୍ଗ, କାଶ୍ମୀର ପ୍ରଭୃତି ଉତ୍ତରାଞ୍ଚଳ ଏବଂ ଅନେକ ଦ୍ୱୀପ ଜୟ କରିଥିଲେ—ଏହା କଥା-ସରିତ୍ସାଗରରେ ଲେଖା ଅଛି । ଏହି ବର୍ଣ୍ଣନା ସହିତ, ଅଦ୍ୟପର୍ଯ୍ୟନ୍ତ ଉତ୍କୀର୍ଣ୍ଣ ଶିଳାଲେଖାଦିର ସାହାଯ୍ୟରେ ଭାରତର ଯେଉଁ ସବୁ ଐତିହାସିକ ତଥ୍ୟ ସଂଗୃହୀତ ହୋଇ ଅଛି, ସେ ସମସ୍ତର ସାମଞ୍ଜସ୍ୟ ଦେଖାଯାଉ ନାହିଁ । ତାହା ଛଡ଼ା ଏହି କଥାରେ କାଳବିପର୍ଯ୍ୟାସ ନାମକ ଏକ ବଡ଼ ଦୋଷ ଦେଖାଯାଏ । ଯଦି ଏହି କଥାର ନାୟକ ବିକ୍ରମାଦିତ୍ୟଙ୍କୁ ଖ୍ରୀଷ୍ଟପୂର୍ବ ପ୍ରଥମ-ଶତାବ୍ଦୀର ବୋଲି ଧରାଯାଏ, ତେବେ ଏହି କଥା ଖ୍ରୀଷ୍ଟପୂର୍ବ ପଞ୍ଚମ ଶତାବ୍ଦୀର ନରବାହନଦତ୍ତଙ୍କୁ କାଶ୍ୟପ ବା କଣ୍ୱମୁନି କହି ଥିଲେ ବୋଲି କଥାସରିତ୍ସାଗର (୧୮, ୧, ୩-୮) ଏବଂ ବୃହତ୍କଥାମଞ୍ଜରୀ (୧୦, ୧, ୨-୧୨)ରେ ଯେଉଁ ଉଲ୍ଲେଖ ଅଛି, ତାହା ସଙ୍ଗତ ହେବ ନାହିଁ । ନରବାହନ ଦତ୍ତ ବତ୍ସରାଜ ଉଦୟନଙ୍କର ବାସବଦତ୍ତାଙ୍କ ଗର୍ଭଜାତ ପୁତ୍ର ଏବଂ ଉଦୟନ ବୁଦ୍ଧ ଦେବଙ୍କର ସମକାଳୀନ ଥିଲେ ଅର୍ଥାତ୍ ସେ ଖ୍ରୀଷ୍ଟପୂର୍ବ ଷଷ୍ଠ ଶତାବ୍ଦୀର ଶେଷ ଭାଗରେ ଏବଂ ତାଙ୍କର ପୁତ୍ର ନରବାହନ ଦତ୍ତ ପଞ୍ଚମ ଶତାବ୍ଦୀର ପୂର୍ବ ଭାଗରେ ଥିଲେ—ଏଥିରେ ସନ୍ଦେହ ନାହିଁ । ଏ ହେତୁ ଯେଉଁ ବିଷମଶୀଳ ବିକ୍ରମାଦିତ୍ୟଙ୍କ କଥା ନରବାହନ ଦତ୍ତଙ୍କୁ କୁହାଯାଇ ଥିଲା, ସେ କଦାପି ବିକ୍ରମ-ସମ୍ବତର ସଂସ୍ଥାପକ ହୋଇ ପାରିବେ ନାହିଁ ।

ଆଜିକାଲିକାର ମାଳବ ଖ୍ରୀଷ୍ଟପୂର୍ବ ପ୍ରଥମ ଶତାବ୍ଦୀରେ ଏହି ନାମରେ ପରିଚିତ ନ ଥିଲା । ସେ ସମୟରେ ତାର ନାମ ଥିଲା

ଅବନ୍ତୀ । ଖ୍ରୀଷ୍ଟୀୟ ଚତୁର୍ଥ ପଞ୍ଚମ ଶତାବ୍ଦୀରେ ଯେତେବେଳେ ମାଳବଗଣ ସ୍ଥାପିତ ହେଲା, ସେତେବେଳେ ତାର ନାମ ହେଲା ମାଳବ ଅର୍ଥାତ୍ 'ମାଳବ ଦେଶରେ ଯେଉଁ ସମ୍ବତ୍ ସ୍ଥାପିତ ହେଲା ତାର ନାମ ହେଲା ମାଳବ ସମ୍ବତ୍' ଏବଂ 'ମାଳବାନାଂ ଗଣସ୍ଥିତ୍ୟା' ଇତ୍ୟାଦି ଶେଷ ପ୍ରୟୋଗମାନଙ୍କର ଅର୍ଥ—'ମାଳବ ଦେଶର ଗଣନା-ନୁସାରେ' ଏହି ପରି ବୁଝିବାକୁ ମତ ପ୍ରମାଣ ସଙ୍ଗତ ନୁହେଁ । ଏହା ଛଡ଼ା ଆଉ ଗୋଟିଏ ଉଲ୍ଲେଖଯୋଗ୍ୟ ବିଷୟ ଏହି ଯେ ଏହି ମାଳବ ସମ୍ବତ୍‌ର ପ୍ରଥମ ଉଲ୍ଲେଖ ମାଳବରେ ମିଳି ନାହିଁ । ମିଳୁଛି ରାଜସ୍ଥାନର ଉଦୟପୁର, କୋଟା, ଜୟପୁର ଓ ଭରତ-ପୁର ପ୍ରଭୃତିରେ । ଉତ୍କୀର୍ଣ୍ଣ ଲେଖମାନଙ୍କରେ 'ଶ୍ରୀମାଳବଗଣା-ମ୍ନାତେ' ପ୍ରଭୃତି ପ୍ରୟୋଗମାନଙ୍କରେ ଯେଉଁ 'ଗଣ' ଶବ୍ଦ ବ୍ୟବହୃତ ହୋଇଅଛି, ତାର ଅର୍ଥ ଗଣନା କରିବା—ଏହା ଅସମ୍ଭବ । ଯଦି ସେପରି ଅର୍ଥ ସ୍ୱୀକାର କରାଯାଏ, ତେବେ ମାଳବଗଣ ଓ ଯୌଧେୟ ଗଣର ମୁଦ୍ରାମାନଙ୍କରେ 'ମାଳବଗଣସ୍ୟ ଜୟଃ' ଯୌଧେୟଗଣସ୍ୟ ଜୟଃ' ଇତ୍ୟାଦି ଯେଉଁ ଉଲ୍ଲେଖ ଅଛି, ସେ ସମସ୍ତର ଅର୍ଥ 'ମାଳବଗଣନାର ଜୟ' 'ଯୌଧେୟଗଣନାର ଜୟ' ବୋଲି ସ୍ୱୀକାର କରିବାକୁ ହେବ—ଏହି ପରି ଅର୍ଥ ସ୍ୱୀକାର କରିବା ହାସ୍ୟାସ୍ପଦ ମାତ୍ର ।

'ଗାଥା ସପ୍ତଶତୀ' ଟି ବର୍ତ୍ତମାନ ମୌଳିକ ରୂପରେ ମିଳୁ ନାହିଁ । କାରଣ ବର୍ତ୍ତମାନ ମିଳୁଥିବା ଗ୍ରନ୍ଥରେ ଚତୁର୍ଥ ପଞ୍ଚମ ଶତାବ୍ଦୀର ବାକାଟକ ରାଜା ସର୍ବସେନ ଓ ପ୍ରବରସେନଙ୍କର ତଥା ଅଷ୍ଟମ ଶତାବ୍ଦୀର ବାକ୍‌ପତିରାଜ ପ୍ରଭୃତି କବିମାନଙ୍କର ଗାଥା-ମାନ ସନ୍ନିବିଷ୍ଟ ହୋଇ ଅଛି । ଏଥିରୁ ଏହା ସ୍ପଷ୍ଟ ପ୍ରତୀତ ହେଉ

ଅଛୁ ଯେ 'ସପ୍ତସତୀ'ର କେତେକ ଗାଥା ହାଲରାଜାଙ୍କର ସମୟର ପୂର୍ବବର୍ତ୍ତୀ ଏବଂ ଆଉ କେତେକ ଗାଥା ହାଲରାଜାଙ୍କର କେତେ ଶହ ବର୍ଷ ପରେ ରଚିତ । ଏ ହେତୁ ସପ୍ତ ସତୀର ଗାଥାମାନଙ୍କୁ ଅନ୍ୟ କବିମାନଙ୍କର କାଳ ନିର୍ଣ୍ଣୟରେ ପ୍ରମାଣ ସ୍ୱରୂପ ଗ୍ରହଣ କରିବା ପୂର୍ବରୁ, ସେହି ଗାଥାମାନଙ୍କର କାଳ ନିରୂପଣ କରିବା ଆବଶ୍ୟକ । ବର୍ତ୍ତମାନ ପରିସ୍ଥିତିରେ ସେହି ଗାଥାମାନଙ୍କର ସମୟ ନିରୂପଣ କରିବା ଅସମ୍ଭବ । ସୁତରାଂ କାଳନିରୂପଣରେ ସେହି ଗାଥାମାନଙ୍କର ଉପଯୋଗ ନ କରିବାହିଁ ସମୁଚିତ ହେବ ।

ତାହା ଛଡ଼ା 'ଗାଥା ସପ୍ତସତୀ'ରେ ବିକ୍ରମାଦିତ୍ୟଙ୍କର ଦାନତତ୍ପର ଯେଉଁ ବର୍ଣ୍ଣନା ଦେଖାଯାଏ, ତାହା ଗୁପ୍ତବଂଶୀୟ ଦ୍ୱିତୀୟ ଚନ୍ଦ୍ରଗୁପ୍ତଙ୍କଠାରେ ଠିକ୍ ସମନ୍ୱିତ ହୁଏ । ସେ ଖାଲି ଲକ୍ଷ ନୁହେଁ କୋଟି କୋଟି ସ୍ୱର୍ଣ୍ଣମୁଦ୍ରା ଦାନ କରୁଥିଲେ ବୋଲି ପ୍ରାଚୀନ କାଳରୁ ବହୁ କିମ୍ବଦନ୍ତୀ ପ୍ରଚଳିତ ଅଛି । ଏ ବିଷୟ ରାଷ୍ଟ୍ରକୂଟ ନୃପତି ପ୍ରଥମ ଅମୋଘବର୍ଷଙ୍କର 'ସଂଜାନ'ତାମ୍ର ପତ୍ରର ନିମ୍ନଲିଖିତ ପଂକ୍ତିରୁ ସ୍ପଷ୍ଟ ହୁଏ—

**लक्षं कोटिमलेखयत् किल कलौ दाता स गुप्तान्वयः ।**

ଗୁପ୍ତବଂଶୀୟ ରାଜା (ଦ୍ୱିତୀୟ ଚନ୍ଦ୍ରଗୁପ୍ତ) ଲକ୍ଷ ଲକ୍ଷ କୋଟି କୋଟି ସ୍ୱର୍ଣ୍ଣମୁଦ୍ରାମାନଙ୍କର ଦାନ (ନିଜ କୋଷାଧ୍ୟକ୍ଷଦ୍ୱାରା) ଲେଖାଇ ଥିଲେ)

ଏ ହେତୁ, 'ସପ୍ତସତୀ'ର ପୂର୍ବୋକ୍ତ ଗାଥାରୁ ବିକ୍ରମାଦିତ୍ୟ, ଖ୍ରୀଷ୍ଟପୂର୍ବ ପ୍ରଥମଶତାବ୍ଦୀର ବୋଲି କୁହାଯାଇ ନ ପାରେ ।*

କାଳିଦାସ ଖ୍ରୀଷ୍ଟପୂର୍ବ ପ୍ରଥମ ଶତାବ୍ଦୀରେ ଥିଲେ – ଏହି ମତ ଅନେକ ଭାରତୀୟ ପଣ୍ଡିତ ସମର୍ଥନ କରନ୍ତି ଏବଂ ପ୍ରଚଳିତ କିମ୍ବଦନ୍ତୀ ଉପରେ ନିର୍ଭର କରି ସାଧାରଣ ପାଠକମାନେ ସେହି ମତ ଠିକ୍ ବୋଲି ଭାବନ୍ତି । ଏ ହେତୁ ଏ ମତର ସବିସ୍ତର ବିବେଚନା କରା ଯାଉଅଛି । ଏହି ମତ ସମର୍ଥନ କରିବାକୁ ଯାଇ, କାଳିଦାସଙ୍କ ସମୟର ସ୍ଥିତି ଏବଂ କାଳିଦାସଙ୍କ କାବ୍ୟମାନଙ୍କରେ ପ୍ରତିଫଳିତ ଅକୃତ୍ରିମ ରମଣୀୟତା ପ୍ରଭୃତି କେତେକ ପ୍ରମାଣ ବିମର୍ଶକପଣ୍ଡିତମାନେ ଉପସ୍ଥାପିତ କରି ଅଛନ୍ତି । କିନ୍ତୁ ସେ ସମସ୍ତ ସର୍ବବାଦ ସମ୍ମତ ନୁହେ । ଅତଏବ ଗ୍ରନ୍ଥବିସ୍ତାରଭୟରେ ସେ ସମସ୍ତର ପରୀକ୍ଷା କରାଯାଇ ନାହିଁ । ବର୍ତ୍ତମାନ ଅନ୍ୟ ମତର ପରୀକ୍ଷା କରାଯାଉ ।

## (୩) ଖ୍ରୀଷ୍ଟୀୟ ତୃତୀୟ ଶତାବ୍ଦୀ

ବିଜାପୁରର ସୁପ୍ରସିଦ୍ଧ ଜ୍ୟୋତିଷଶାସ୍ତ୍ରଜ୍ଞ ଶ୍ରୀ ଦ. ବେ. କେତକର ସ୍ଥିର କରିଛନ୍ତି—କାଳିଦାସ ଖ୍ରୀଷ୍ଟୀୟ ୨୮୦ ବର୍ଷର ଆଖ ପାଖରେ ଥିଲେ । ତାଙ୍କର ମତ ନିମ୍ନଲିଖିତ ଜ୍ୟୋତିଷ-ବିଷୟକ ଉଲ୍ଲେଖ ଉପରେ ନିର୍ଭର କରେ ।

---

* ଏ ବିଷୟର ବିସ୍ତୃତ ଚର୍ଚ୍ଚା ମୋର 'ଗାଥା ସପ୍ତସତୀର କାଳ' ଶୀର୍ଷକ ମରାଠୀ ପ୍ରବନ୍ଧରେ କରାଯାଇ ଅଛି । ସଂଶୋଧନ ମୁକ୍ତାବଳୀ—ପ୍ରଥମ ସଂସ୍କରଣ – ୧୦୪-୧୨୩ ପୃଷ୍ଠା ଦ୍ରଷ୍ଟବ୍ୟ ।

କାଳିଦାସ ରଘୁବଂଶର ଷୋଡ଼ଶ ସର୍ଗ ୪୦ଟି ଶ୍ଳୋକରେ 'ଘର୍ମ ଆଜଗାମ' (ଗ୍ରୀଷ୍ମ ସମୟ ଆସିଲା) ଏହି ଛନ୍ଦରେ ସେ ମାସର ଦୁଇ ତୃତୀୟାଂଶ ଅତୀତ ହେଲା ପରେ ଉତ୍ତରାୟଣର ନିର୍ଦ୍ଦେଶ କରି ଅଛନ୍ତି । ତା ପରେ ସେ ନିମ୍ନଲିଖିତ ଶ୍ଳୋକ (୧୬ଶ, ୪୦)ରେ ତାତ୍କାଳିକ ଦକ୍ଷିଣାୟନର ନିର୍ଦ୍ଦିଷ୍ଟ ସ୍ଥାନ ନିର୍ଦ୍ଦେଶ କରି ଅଛନ୍ତି—

**अगस्त्यचिह्नादयनात्समीपं दिगुत्तरा भास्वति संनिवृत्ते ।**
**आनन्दशीतामिव बाष्पवृष्टिं हिमस्रुतिं हैमवतीं ससर्ज ॥**

[ଉତ୍ତର ଦିଗ ସୂର୍ଯ୍ୟଙ୍କ ଅଗସ୍ତ୍ୟଚିହ୍ନିତ ଅୟନରୁ (ଦକ୍ଷିଣାଶାରୁ) ନିବୃତ୍ତ ହେବା ଦେଖି ଆନନ୍ଦ ଶୀତଳ ଅଶ୍ରୁ ବୃଷ୍ଟି କଲା ପରି ହିମାଳୟରୁ ତରଳିତ ହିମ ତ୍ୟାଗ କଲା ।]

ଦକ୍ଷିଣାୟନ ଆରମ୍ଭ ହେବା ସଙ୍ଗେ ସଙ୍ଗେ ଗ୍ରୀଷ୍ମକାଳ ଅତ୍ୟନ୍ତ ତୀବ୍ର ହୁଏ ଏବଂ ସେ ହେତୁ ହିମାଳୟର ହିମ ତରଳ ହୋଇ ବହିବାକୁ ଆରମ୍ଭ କରେ । ଏହି ହିମ ପ୍ରବାହର ନିଜ ସଉତୁଣୀ ଦକ୍ଷିଣ ଦିଗକୁ ଛାଡ଼ି ନିଜ ସମୀପକୁ ଆସୁଥିବା ସୂର୍ଯ୍ୟରୂପ ପ୍ରିୟତମଙ୍କ ଦର୍ଶନରେ ନିସୃତ ଉତ୍ତର ଦିଗର ଆନନ୍ଦାଶ୍ରୁ ସହିତ ଉପମା ଏହି ଶ୍ଳୋକରେ ଦିଆଯାଇ ଅଛି । 'ସୂର୍ଯ୍ୟ ସିଦ୍ଧାନ୍ତ' ଏବଂ ବରାହମିହିରଙ୍କର 'ପଞ୍ଚସିଦ୍ଧାନ୍ତିକା'ରେ ଅଗସ୍ତ୍ୟଙ୍କର ଅଂଶ ଅଶ୍ଳେଷା-ନକ୍ଷତ୍ରର ଆରମ୍ଭରେ ୯୦ ବୋଲି କୁହାଯାଇ ଅଛି । ଉପର୍ଯ୍ୟୁକ୍ତ ବର୍ଣ୍ଣନାରୁ ସ୍ପଷ୍ଟ ପ୍ରତୀତ ହେଉଛି ଯେ କାଳିଦାସଙ୍କ ସମୟରେ ଦକ୍ଷିଣାୟନ ବା କର୍କଟ ସଂକ୍ରାନ୍ତି କ୍ରାନ୍ତିବୃତ୍ତରୁ ଅଶ୍ଳେଷା ନକ୍ଷତ୍ରର ୯୦ ଅଂଶ ପରେ ଅର୍ଥାତ୍ ପୁନର୍ବସୁ ନକ୍ଷତ୍ରର ଯୋଗତାରା ସମୀପରେ ହେଉଥିଲା । ବରାହମିହିରଙ୍କ ସମୟରେ (ଖ୍ରୀଷ୍ଟୀୟ

୫୨୦ ବର୍ଷରେ) ଦକ୍ଷିଣାୟନ ସ୍ଥାନବିନ୍ଦୁ ନକ୍ଷତ୍ରର ମଧ୍ୟ ଅର୍ଥାତ୍ ୮୬ ଅଂଶ ୪୦ କଳାପରେ ହୋଇଥିଲା । ଗୋଟିଏ ନକ୍ଷତ୍ରର (ଅର୍ଥାତ୍ ୧୩ ଅଂଶ ୨୦ କଳା) ଅୟନ ଚଳନ ହେବାକୁ ୯୬୦ ବର୍ଷ ଲାଗେ । ସୁତରାଂ ଦକ୍ଷିଣାୟନ ସ୍ଥାନ ୯୦ ଅଂଶରେ ହେବାକୁ ୨୮୦ ବର୍ଷ ଅବଶ୍ୟ ଲାଗିବ । ଏହେତୁ କେତେକଙ୍କର ମତେ କରନ୍ତି—କାଳିଦାସ ଖ୍ରୀଷ୍ଟପୂର୍ବ ଷୋଡ଼ଶ ଶତାବ୍ଦୀରେ ଥିଲେ ।*

କାଳିଦାସଙ୍କ କାଳନିର୍ଣ୍ଣୟ ବିଷୟରେ କେତେକଙ୍କର ଏହି ଅନୁମାନ ସମ୍ପୂର୍ଣ୍ଣ ଠିକ୍ ନୁହେଁ । ଅଗସ୍ତ୍ୟ ଦକ୍ଷିଣ ଦିଗରେ ରହିବା ମୁନି ଥିଲେ । ଏହି ହେତୁ କାଳିଦାସ ରଘୁବଂଶ ଚତୁର୍ଥ ସର୍ଗର ୪୪ଶ ଶ୍ଲୋକରେ ଦକ୍ଷିଣ ଦିଗକୁ 'ଅଗସ୍ତ୍ୟା-ଚରିତାମାଶାମ୍' ବୋଲି ଉଲ୍ଲେଖ କରି ଅଛନ୍ତି । 'ଅଗସ୍ତ୍ୟ ଚିହ୍ନା-ଦୟନାତ୍' ଏଥିରୁ ମଧ୍ୟ 'ଦକ୍ଷିଣାୟନାତ୍' ଏହି ଅର୍ଥ କେବଳ ପ୍ରତୀତ ହୁଏ । ସମସ୍ତ ସଂସ୍କୃତ ଟୀକାକାର ସେହି ଅର୍ଥ କେବଳ ସ୍ୱୀକାର କରିଛନ୍ତି । 'ଅଗସ୍ତ୍ୟଙ୍କ ଅଂଶରେ (ଅର୍ଥାତ୍ ଅଶ୍ୱିନୀ ଆରମ୍ଭ ଠାରୁ ୯୦ ଅଂଶରେ ହେବା ଦକ୍ଷିଣାୟନରେ) ଏହି ଅର୍ଥ କାଳିଦାସଙ୍କର ଅଭିପ୍ରେତ ଥିଲା ବୋଲି ଭାବିବାକୁ ସଂଶୟ ଜାତ ହୁଏ । ଦ୍ୱିତୀୟ କଥା—କାଳିଦାସ ଯଦି ସୂକ୍ଷ୍ମ ରୀତିରେ ଦକ୍ଷିଣାୟନ ସ୍ଥାନ ନିର୍ଦ୍ଦେଶ କରିବାକୁ ଚାହିଁଥାନ୍ତେ, ତେବେ ଅଗସ୍ତ୍ୟଙ୍କ ସମୀପବର୍ତ୍ତୀ କ୍ରାନ୍ତିବୃତ୍ତର ବାହ୍ୟ ତାରକାର ନିର୍ଦ୍ଦେଶ ନ କରି ସେହି ବୃତ୍ତର ପୁନର୍ବସୁନକ୍ଷତ୍ରରହିଁ ଉଲ୍ଲେଖ କରିଥାନ୍ତେ ।

---

* **Annals of the Bhandarkar Oriental Research Institute, Vol- 36, P. P. 150.** ଦ୍ରଷ୍ଟବ୍ୟ ।

ଏହା ଛଡ଼ା ଅପୂର୍ବଚେଳନ ସୂକ୍ଷ୍ମ ଗଣନରେ ହୁଏ । ଏ ହେତୁ ତହିଁରେ ଗଟେକ ଦେଡ଼ଶ ବର୍ଷରୁ ଅଧିକ ଅନ୍ତର ଦେଖାଯାଏ ନାହିଁ । ଏ ହେତୁ ୨୮୦ ଖ୍ରୀଷ୍ଟାବ୍ଦରେ ଯେଉଁ ବାସ୍ତବିକ ସଙ୍କେତ ଥିଲା, ତାହା କାଳିଦାସ ୪୦୦ ଖ୍ରୀଷ୍ଟାବ୍ଦର ଆଖପାଖରେ ମଧ୍ୟ ବର୍ଣ୍ଣନା କରି ଥାଇ ପାରନ୍ତି, ଏଥିରେ ଆଶ୍ଚର୍ଯ୍ୟର କଥା କିଛି ନାହିଁ । ପୁଣି ଏହି ଅନୁମାନ କାଳିଦାସ ଗୁପ୍ତକାଳୀନ ଥିଲେ ଏହି ପକ୍ଷର ମଧ୍ୟ ବାଧକ ନୁହେଁ । ଯଦ୍ୟପି କାଳିଦାସଙ୍କର ଜ୍ୟୋତିଷରେ ଗଭୀର ଜ୍ଞାନ ଥିଲା, ତଥାପି ସେ କବି ଥିଲେ, ଜ୍ୟୋତିଷୀ ନ ଥିଲେ । ଏ ହେତୁ ଜ୍ୟୋତିଷ ଗ୍ରନ୍ଥର ଉପଯୋଗୀ ସୂକ୍ଷ୍ମ ତତ୍ତ୍ୱମାନ ତାଙ୍କ ଗ୍ରନ୍ଥମାନଙ୍କରେ ଆଶା କରିବା ବିଡ଼ମ୍ବନା ମାତ୍ର ।

## (୪) ଖ୍ରୀଷ୍ଟୀୟ ପଞ୍ଚମ ଶତାବ୍ଦୀ

'ରଘୁବଂଶ'ର ଚତୁର୍ଥ ସର୍ଗରେ ରଘୁଙ୍କର ଦିଗ୍‌ବିଜୟ-ବର୍ଣ୍ଣନା ପ୍ରସଙ୍ଗରେ କାଳିଦାସ ନିମ୍ନଲିଖିତ ଶ୍ଳୋକମାନ ଲେଖିଛନ୍ତି—

ततः प्रतस्थे कौबेरीं भास्वानिव रघुर्दिशम् ।
शरैरुस्रैरिवोदीच्यानुद्धरिष्यन् रसानिव ।
विनीताध्वश्रमास्तस्य वङ्क्षुतीर विचेष्टनैः ।
दुधुवुर्वाजिनः स्कन्धाँल्लग्नकुङ्कुमकेसरान् ॥
तत्र हूणावरोधानां भर्तृषु व्यक्त विक्रमम् ।
कपोलपाटलादेशि बभूव रघुचेष्टितम् ।

ରଘୁବଂଶ, ୪ର୍ଥ ୬୭—୬୮

ଏହି ଶ୍ଳୋକମାନଙ୍କରେ ରଘୁ ଉତ୍ତର ଦିଗରେ 'ବଂକ୍ଷୁ' ନଦୀ-ତୀରରେ ହୂଣମାନଙ୍କୁ ପରାସ୍ତ କଲେ ବୋଲି ବର୍ଣ୍ଣନା କରି-

ଯାଇ ଅଛୁ । 'ଅମର କୋଶ' ଟୀକାକାର କ୍ଷୀରସ୍ୱାମୀ କେସରକୁ କାହ୍ଲିକ ବାହ୍ଲୀକ କୁହାଯାଏ—ଏହା ବୁଝାଇବାକୁ ଯାଇ ଏ ସମସ୍ତ ଶ୍ଳୋକ ଉଦ୍ଧୃତ କରି ଅଛନ୍ତି । ଏଥିରୁ ଏହି 'ବଂକ୍ଷୁ' ନଦୀ ବାହ୍ଲୀକ (ପ୍ରାଚୀନ ବାକ୍‌ଟ୍ରିୟା ଓ ଆଧୁନିକ ବଲ୍‌ଖ) ଦେଶରେ ପ୍ରବହମାନ ଅକ୍‌ସସ ନଦୀ ବୋଲି ପ୍ରତୀତ ହୁଏ । ହୁଣମାନେ ଅକ୍‌ସସ ନଦୀତୀରେ ପ୍ରାୟ ଖ୍ରୀଷ୍ଟାବ୍ଦ ୪୫୦ ଆଖପାଖ ସମୟରେ ନିଜ ରାଜ୍ୟ ସ୍ଥାପନ କରିଥିଲେ ଏବଂ ଭାରତବର୍ଷ ଆକ୍ରମଣ କରି ଥିଲେ । ଏହି ଆକ୍ରମଣ କୁମାରଗୁପ୍ତଙ୍କର ଶେଷ ସମୟରେ ହୋଇଥିଲା । ଏହି ଆକ୍ରମଣରେ କୁମାରଗୁପ୍ତଙ୍କର ଯୁବରାଜ ସ୍କନ୍ଦଗୁପ୍ତ ଅସାଧାରଣ ବୀରତ୍ୱ ସହକାରେ ହୁଣମାନଙ୍କର ଅବରୋଧ କରିଥିଲେ । ଏ ବିଷୟ ଜୁନାଗଡ଼ ସମୀପସ୍ଥ ଗିରନାର (୪୫୫—୫୭ ଖ୍ରୀଷ୍ଟାବ୍ଦୀୟ) ଶିଳାଲେଖରୁ ପ୍ରମାଣିତ ହୁଏ । 'ରଘୁବଂଶ'ରେ ହୁଣମାନେ ଅକ୍‌ସସ ନଦୀ ତୀରରେ ଥିଲେ ବୋଲି କାଳିଦାସ ବର୍ଣ୍ଣନା କରି ଅଛନ୍ତି । ଏହା କାଳିଦାସଙ୍କର ସମ-ସାମୟିକ ଘଟନା ହୋଇଥିବ । ଏ ହେତୁ ଏହି ଗ୍ରନ୍ଥ ଖ୍ରୀଷ୍ଟୀୟ ୪୫୦ (ଅକ୍‌ସସ ନଦୀ ତୀରରେ ହୁଣ ରାଜ୍ୟ ସ୍ଥାପନ) ଓ ୪୫୫—୪୫୭) (ଗିରନାର ଶିଳା ଲେଖକାଳ) ଏ ମଧ୍ୟରେ ଲେଖାଯାଇ ଥିବ ଅର୍ଥାତ୍ କାଳିଦାସ ଖ୍ରୀଷ୍ଟୀୟ ପଞ୍ଚମ ଶତାବ୍ଦୀ ମଧ୍ୟଭାଗର ଆଖପାଖ ସମୟରେ ଥିଲେ—ପ୍ରଫେସର ପାଠକ ଏହି ମତ ପୋଷଣ କରନ୍ତି ।*

ଉପର୍ଯ୍ୟୁକ୍ତ ଅନୁମାନ ପ୍ରବଳ ଓ ନିଶ୍ଚିତ ବୋଲି ଆମେ-ମାନେ କହିପାରୁ ନାହିଁ । ଖ୍ରୀଷ୍ଟୀୟ ୫ ପଞ୍ଚମ ଶତାବ୍ଦୀ ପର୍ଯ୍ୟନ୍ତ

* K. B. Pathak, Meghaduta, Introduction. x

ହୂଣମାନଙ୍କର ଭାରତବର୍ଷ ସହିତ ସମ୍ପର୍କ ନ ଥିଲା—ଏହା ଅଧ୍ୟାପକ ପାଠକ କହନ୍ତି । କିନ୍ତୁ ଏହା ଠିକ୍ ନୁହେଁ । ପାରସ୍ୟର 'ଅବେସ୍ତା' ଗ୍ରନ୍ଥରେ ଓ ମହାଭାରତରେ ହୂଣମାନଙ୍କର ଉଲ୍ଲେଖ ଦେଖାଯାଏ । ଖ୍ରୀଷ୍ଟୀୟ ତୃତୀୟ ଶତାବ୍ଦୀରେ ଲିଖିତ 'ଲଳିତବିସ୍ତର' ଗ୍ରନ୍ଥରେ ବୁଦ୍ଧଦେବ ଯେଉଁ ସବୁ ଲିପି ପିଲାଦିନେ ଶିଖିଥିଲେ ସେ ଲିପିମାନଙ୍କ ମଧ୍ୟରେ ହୂଣଲିପିର ନାମ ମଧ୍ୟ ଉଲ୍ଲିଖିତ ହୋଇ ଅଛି । ଖ୍ରୀଷ୍ଟପୂର୍ବ ୧୬୦ ବର୍ଷ ଆଖପାଖ ସମୟରେ ହୂଣମାନେ 'ୟୁଏଚି' (ପରେ କୁଶାନରୂପେ ପରିଚିତ) ଲୋକମାନଙ୍କୁ ଅକ୍ସସ ନଦୀର ଦକ୍ଷିଣ ତୀରରେ ପରାସ୍ତ କରି ତଡ଼ିଦେଇ ଥିଲେ । ହୁଏତ ତାପରେ ସେମାନେ ଅକ୍ସସ ନଦୀର ଉତ୍ତର ତୀର ଅତିକ୍ରମଣ କରି ଥିଲେ ବା ସେ ପର୍ଯ୍ୟନ୍ତ ଦଳେ ଦଳେ ଯାତାୟାତ କରୁଥିଲେ । ଖ୍ରୀଷ୍ଟୀୟ ପଞ୍ଚମ ଶତାବ୍ଦୀରେ ସେମାନେ ଅକ୍ସସ ନଦୀର ଉତ୍ତର ତୀରରେ ରାଜ୍ୟ ସ୍ଥାପନ କରି ଥିଲେ ବୋଲି କାଳିଦାସ ୪୫୫-୪୫୭ ପୂର୍ବରୁ ବଂକ୍ଷୁନଦୀର ଉତ୍ତର ତୀରରେ ହୂଣମାନେ ଥିବା ଜାଣି ନ ଥିଲେ ବୋଲି କହିବା ଠିକ୍ ହେବ ନାହିଁ । ଫଳତଃ କାଳିଦାସଙ୍କୁ ଖ୍ରୀଷ୍ଟୀୟ ପଞ୍ଚମ ଶତାବ୍ଦୀର ମଧ୍ୟ ପର୍ଯ୍ୟନ୍ତ ଟାଣି ନେବାର କୌଣସି ଆବଶ୍ୟକତା ନାହିଁ ।

## ୫ । ଖ୍ରୀଷ୍ଟୀୟ ଷଷ୍ଠ ଶତାବ୍ଦୀ

ଖ୍ରୀଷ୍ଟୀୟ ଷଷ୍ଠ ଶତାବ୍ଦୀରେ ଭାରତ ବର୍ଷରେ ସଂସ୍କୃତ ବିଦ୍ୟାର ପୁନରୁଜ୍ଜୀବନ ହୋଇ ଥିଲା ଏବଂ ସେ ସମୟରେ କାଳିଦାସ ଜନ୍ମ ଗ୍ରହଣ କରି ଥିଲେ ବୋଲି ପ୍ରାଧ୍ୟାପକ ମୋକ୍ଷମୂଲର ପ୍ରକାଶ କରି ଅଛନ୍ତି । ଆଜିକାଲି ଅନେକ କାରଣରୁ ଏହି ମତକୁ କେହି ପସନ୍ଦ କରନ୍ତି ନାହିଁ । ମାତ୍ର କେତେକ ପଣ୍ଡିତ ଅନ୍ୟ କେତେକ ପ୍ରମାଣ ଆଧାର କରି ଉକ୍ତ ମତ

ସିଦ୍ଧ କରିବାକୁ ଚେଷ୍ଟା କରି ଅଛନ୍ତି । ସ୍ୱର୍ଗୀୟ ମହାମହୋପାଧ୍ୟାୟ ହରପ୍ରସାଦଶାସ୍ତ୍ରୀ 'ବିହାର ଏଣ୍ଡ୍ ଓଡ଼ିଶା ରିସର୍ଚ୍ଚ ସୋସାଇଟୀର ଜର୍ନାଲ'ର ପ୍ରଥମ ଓ ଦ୍ୱିତୀୟ ଖଣ୍ଡରେ ଏବଂ ଧାରର କା. କୃ. ଲେଲେ ଏବଂ ଶି. କା. ଓକ — ଏହି ଦୁଇ ମହାରାଷ୍ଟ୍ରୀୟ ପଣ୍ଡିତ 'ବିବିଧଜ୍ଞାନ ବିସ୍ତାର'ର ୫୩ ତମ ଖଣ୍ଡରେ ଉକ୍ତ ମତ ସମର୍ଥନ କରିବାକୁ ଯାଇ ଅନେକ ପ୍ରମାଣ ଦେଇଛନ୍ତି । ସେ ସମସ୍ତର ପୁଙ୍ଖାନୁପୁଙ୍ଖ ଚର୍ଚ୍ଚା କଲେ ଗ୍ରନ୍ଥର କଳେବର ଅଯଥା ବଢ଼ିଯିବ । ଅତଏବ କେତେକ ମୁଖ୍ୟ ପ୍ରମାଣର ଏଠାରେ ପରୀକ୍ଷା କରାଯାଉ ।

(କ) ଯଶୋଧର୍ମା—ବିକ୍ରମାଦିତ୍ୟ ଓ ମାତୃଗୁପ୍ତ—କାଳିଦାସ— ପ୍ରସିଦ୍ଧ ଚୀନ ପରିବ୍ରାଜକ ହୁଏନ୍‌ସାଙ୍ଗ ଖ୍ରୀଷ୍ଟୀୟ ୬୨୯ ଠାରୁ ୬୪୫ ପର୍ଯ୍ୟନ୍ତ ଭାରତ ବର୍ଷରେ ପରିଭ୍ରମଣ କରି ଥିଲେ । ଏହି ପରିବ୍ରାଜକ ଏକ ସ୍ଥାନରେ ଲେଖିଛନ୍ତି—'ମାଳବ (Molapo) ଦେଶରେ ଶିଳାଦିତ୍ୟ ନାମକ ଏକ ରାଜା ୫୩୦ ଠାରୁ ୫୮୦ ପର୍ଯ୍ୟନ୍ତ ପ୍ରାୟ ୫୦ ବର୍ଷ ପର୍ଯ୍ୟନ୍ତ ରାଜତ୍ୱ କରୁ ଥିଲେ ।' କହ୍ଲଣକୃତ 'ରାଜ ତରଙ୍ଗିଣୀ'ରୁ ଜଣାଯାଏ—ଉଜ୍ଜୟିନୀର ବିକ୍ରମାଦିତ୍ୟ ନିଜ ମିତ୍ର କବି ମାତୃଗୁପ୍ତଙ୍କୁ କାଶ୍ମୀରର ସିଂହାସନରେ ବସାଇଥିଲେ । ବିକ୍ରମାଦିତ୍ୟଙ୍କ ମୃତ୍ୟୁପରେ ମାତୃଗୁପ୍ତ ରାଜଗାଦି ଛାଡ଼ିଦେଇଥିଲେ ଏବଂ ତାଙ୍କ ପରେ ପ୍ରବରସେନ ଔରସ ସୂତ୍ରରେ ରାଜା ହୋଇ ଥିଲେ । ଏହି ରାଜା ସ୍ଥାପନ କରିଥିବା ପ୍ରବରପୁର ହୁଏନ୍‌ସାଙ୍ଗଙ୍କ ବର୍ଣ୍ଣନାରୁ ଷଷ୍ଠଶତାବ୍ଦୀୟ ବୋଲି ଜଣାଯାଏ । ତେବେ ବିକ୍ରମାଦିତ୍ୟଙ୍କର ସମୟ ମଧ୍ୟ ଷଷ୍ଠ ଶତାବ୍ଦୀ ବୋଲି ମାନିବାକୁ ହେବ । ଏତହେତୁ ହୁଏନ୍‌ସାଙ୍ଗଙ୍କ ବର୍ଣ୍ଣିତ ଶିଳାଦିତ୍ୟ, ଓ ରାଜ-

ତରଙ୍ଗିଣୀ' ବର୍ଣ୍ଣିତ ବିକ୍ରମାଦିତ୍ୟ ଏକ ବ୍ୟକ୍ତି ହୋଇ ପାରନ୍ତି । ରାଜ ତରଙ୍ଗିଣୀରେ ବିକ୍ରମାଦିତ୍ୟଙ୍କଦ୍ୱାରା ଶକମାନଙ୍କର ପରାଜୟ ବର୍ଣ୍ଣିତ ହୋଇ ଅଛି । ଏହି ଶତାବ୍ଦୀରେ ମାଳବ ଦେଶରେ ଯଶୋଧର୍ମଦେବ ନାମକ ଏକ ପ୍ରବଳପରାକ୍ରମ ରାଜା ଥିଲେ । ଏହାଙ୍କଦ୍ୱାରା ଖୋଦିତ ଦୁଇଟି ଶିଳା ଲେଖ ମାନ୍ଦସୋରରୁ * ମିଳିଅଛି । ଏହି ଦୁଇ ଲେଖରୁ ଜଣାଯାଏ—ସେ ରାଜା ମିହିର-କୁଳନାମକ ପ୍ରବଳ ପରାକ୍ରମ ଏକ ହୂଣ ରାଜାଙ୍କୁ ପରାସ୍ତ କରିଥିଲେ ଏବଂ ନିଜ ରାଜ୍ୟ ଗୁପ୍ତ ଓ ହୂଣରାଜାମାନଙ୍କର ସାମ୍ରାଜ୍ୟ ଅପେକ୍ଷା ବହୁତ ବିସ୍ତୃତ କରିଥିଲେ ଏବଂ ନିଜ ନାମସହିତ 'ରାଜାଧିରାଜ' ଓ 'ପରମେଶ୍ୱର' ଉପାଧି ଯୋଗ କରିଥିଲେ ଏହି ଯଶୋଧର୍ମାହିଁ ହୁଏନ୍‌ସାଙ୍ଗଙ୍କ ବର୍ଣ୍ଣିତ ଶିଳାଦିତ୍ୟ ଏବଂ ରାଜତରଙ୍ଗିଣୀ ବର୍ଣ୍ଣିତ ବିକ୍ରମାଦିତ୍ୟ । ପରାଜିତ ହୂଣମାନଙ୍କୁ କହ୍ଲଣ ଓ ଅଲବିରୁଣୀ 'ଶକ' ବୋଲି ନିର୍ଦ୍ଦେଶ କରିଯାଇ ଥାନ୍ତି ବିକ୍ରମାଦିତ୍ୟ ଯାହାଙ୍କୁ କାଶ୍ମୀର ସିଂହାସନରେ ବସାଇଥିଲେ ସେହି ମାତୃଗୁପ୍ତହିଁ କାଳିଦାସ ହୋଇ ପାରନ୍ତି । ମାତୃଗୁପ୍ତ କାଶ୍ମୀର ସିଂହାସନ ତ୍ୟାଗ କଲା ପରେ ପ୍ରବରସେନ ସେହି ସିଂହାସନରେ ବସିଥିଲେ । ପ୍ରବରସେନଙ୍କ ନାମରେ ପ୍ରସିଦ୍ଧ 'ସେତୁବନ୍ଧ' ନାମକ ପ୍ରାକୃତ କାବ୍ୟ ବିକ୍ରମାଦିତ୍ୟଙ୍କ ଆଜ୍ଞାରେ କାଳିଦାସ ଲେଖିଥିଲେ—ଏପରି କିମ୍ବଦନ୍ତୀ ପଣ୍ଡିତମାନଙ୍କ ମଧ୍ୟରେ ପ୍ରଚଳିତ ଥିବା କଥା ଅକବରଙ୍କ ସମକାଳୀନ ଏକ ଟୀକାକାରଙ୍କର ଉଲ୍ଲେଖରୁ ଜଣାଯାଏ । ଏଥିରୁ ବିକ୍ରମା-ଦିତ୍ୟ ପ୍ରବରସେନ ଓ କାଳିଦାସ ଏକକାଳୀନ ବୋଲି ପ୍ରମାଣିତ ହୁଏ ।

---

* ଏ ଦୁଇଟିରୁ ଗୋଟିଏ ଲେଖ ୫୩୨ ସାଲର

ଉପର୍ଯ୍ୟୁକ୍ତ ପ୍ରମାଣମାନଙ୍କ ମଧ୍ୟରୁ କେତେକ ସ୍ଥଳରେ ଆକ୍ଷେପ ଦେଖାଯାଏ । ହୁଏନ୍‌ସାଙ୍ଗ ଯାହାକୁ molapo କହିଛନ୍ତି ତାହା କେଉଁ ପ୍ରଦେଶ ହୋଇପାରେ ? ଏବିଷୟରେ ପଣ୍ଡିତମାନଙ୍କର ନାନା ପ୍ରକାର ଚର୍ଚ୍ଚା ହୋଇ ଅଛି । ପ୍ରସିଦ୍ଧ ଐତିହାସିକ ଭିନ୍‌ସେଣ୍ଟ ସ୍ମିଥ୍ ସାହେବ ଲେଖିଛନ୍ତି—ମହୀନଦୀ ତୀରରେ ସାବରମତୀର ସାମାନ୍ୟ ପୂର୍ବ ଓ ଦକ୍ଷିଣରେ ଥିବା ରାଜପୁତନାର ପାର୍ବତ୍ୟ ପ୍ରଦେଶ ହୁଏନ୍‌ସାଙ୍ଗଙ୍କ ବର୍ଣ୍ଣିତ 'ମୋଳାପୋ' । ଉଜ୍ଜୟିନୀ ଏହାର ରାଜଧାନୀ ନ ଥିଲା । କାରଣ ହୁଏନ୍‌ସାଙ୍ଗ ଆଗେ ଯାଇ ପୃଥକ୍ କରି ଉଜ୍ଜୟିନୀ ବର୍ଣ୍ଣନା କରି ଅଛନ୍ତି । ହୁଏନ୍‌ସାଙ୍ଗ୍ ଯାହାଙ୍କର ପ୍ରଶସ୍ତି ବିଶେଷ ଭାବେ ଗାନ କରିଛନ୍ତି, ସେ ଯଶୋଧର୍ମା ନୁହନ୍ତି, ସେ ବଲଭୀର ପ୍ରଥମ ଶିଳାଦିତ୍ୟ ହେବେ ବୋଲି ପ୍ରଫେସର ସିଲ୍‌ଭନ୍ ଲେଭି ମନେ କରନ୍ତି । 'ରାଜତରଙ୍ଗିଣୀ'ର ରଚନା ଖ୍ରୀଷ୍ଟାବ୍ଦ ୧୨ ଶ ଶତାବ୍ଦୀରେ ହୋଇଥିଲା । ସେ ଅବଶ୍ୟ ତାତ୍କାଳିକ ସମସ୍ତ ବିଶ୍ୱସନୀୟ ଐତିହାସିକ ସାମଗ୍ରୀ ସଂଗ୍ରହ କରିଥିଲେ କିନ୍ତୁ ସେ ପ୍ରାଚୀନ କାଳର ଯେଉଁ ଇତିହାସ ବର୍ଣ୍ଣନା କରିଛନ୍ତି, ତାହା ସେତେଦୂର ବିଶ୍ୱାସଯୋଗ୍ୟ ନୁହେଁ । ଏହା ସର୍ବବାଦ ସମ୍ମତ ଯେ ତହିଁରେ ଅନେକ ଅସମ୍ଭବ ଘଟନା ଓ ଅତିଶୟୋକ୍ତି ପୂର୍ଣ୍ଣଭାବରେ ରହିଛି । ଯଦି ଯଶୋଧର୍ମାହିଁ ବିକ୍ରମାଦିତ୍ୟ ହୋଇଥାନ୍ତେ, ତେବେ ସେ ଯେପରି ନିଜ ନାମ ସହିତ 'ରାଜାଧିରାଜ' 'ପରମେଶ୍ୱର' ଉପାଧି ଯୋଗ କରିଛନ୍ତି, ସେପରି ସେହି ଉପାଧି ଅପେକ୍ଷା ଅଧିକ ଗୌରବାସ୍ପଦ 'ବିକ୍ରମାଦିତ୍ୟ' ଉପାଧି ମଧ୍ୟ ଅବଶ୍ୟ ଯୋଗ କରିଥାନ୍ତେ । ଏହାଙ୍କୁ 'ଶକାରି' ବୋଲି କୌଣସିମତେ କହି ହେବ ନାହିଁ । କାରଣ ଖ୍ରୀଷ୍ଟାବ୍ଦ ଷଷ୍ଠ ଶତାବ୍ଦୀରେ ଇତିହାସରେ ଆଉ ଶକମାନଙ୍କର ନାମ

ଶୁଣାଯାଏ ନାହିଁ । ଯଦି ମାତୃଗୁପ୍ତ କେବଳ କାଳିଦାସ ହୋଇ ଥାନ୍ତେ, ତେବେ କଲହଣ ମାତୃଗୁପ୍ତଙ୍କ ବିଷୟ ଯେଉଁ ୨୦୦ ଶ୍ଳୋକରେ ବର୍ଣ୍ଣିତ କରି ଅଛନ୍ତି, ସେ ମଧ୍ୟରେ ଅନ୍ତତଃ ସେ କୌଣସି ଗୋଟାଏ ଶ୍ଳୋକରେ ସେ କାଳିଦାସ ବୋଲି ଉଲ୍ଲେଖ କରିଥାନ୍ତେ । ମାତୃଗୁପ୍ତ ପ୍ରବରସେନଙ୍କ ସକାଶେ 'ସେତୁବନ୍ଧ' କାବ୍ୟ ରଚନା କରିଥିଲେ—ଏହା ମଧ୍ୟ ଅସମ୍ଭବ ବୋଧ ହେଉଅଛି । କାରଣ— (୧) ପ୍ରଥମରେ ରାଜତରଙ୍ଗିଣୀରେ ଏହାର ଉଲ୍ଲେଖ ନାହିଁ । (୨) ପ୍ରବରସେନ ଓ ବିକ୍ରମାଦିତ୍ୟଙ୍କ ମଧ୍ୟରେ ଶତ୍ରୁତା ଥିଲା ବୋଲି କହ୍ଲଣ ଲେଖି ଅଛନ୍ତି । ଏ ହେତୁ ପ୍ରବର-ସେନଙ୍କ ନାମରେ 'ସେତୁବନ୍ଧ' କାବ୍ୟ ଲେଖିବାକୁ ବିକ୍ରମାଦିତ୍ୟ କାଳିଦାସଙ୍କୁ ଅନୁରୋଧ କରିଥିଲେ— ଏ ବିଷୟରେ ସନ୍ଦେହ ମଧ୍ୟ ଜାତ ହେଉଅଛି । ରାଜସିଂହାସନରେ ଅଧିଷ୍ଠିତ ହେଲା ପରେ ପ୍ରବରସେନ ଅନୁରୋଧ କଲେ ମଧ୍ୟ ମାତୃଗୁପ୍ତ କାଶ୍ମୀରରେ ରହି ନ ଥିଲେ । ସଙ୍ଗେ ସଙ୍ଗେ କାଶୀ ଯାଇ ସନ୍ନ୍ୟାସ ଗ୍ରହଣ କଲେ ବୋଲି କହ୍ଲଣ ବର୍ଣ୍ଣନା କରି ଅଛନ୍ତି । * ଏ ସମସ୍ତ କାରଣରୁ ଉପର୍ଯ୍ୟୁକ୍ତ ବିଷୟ ଠିକ୍ ନୁହେଁ ବୋଲି ଜଣାଯାଏ ।

(ଖ) ବରାହ ମିହିରଙ୍କ ଗ୍ରନ୍ଥଗତ ସାମଞ୍ଜସ୍ୟ— ବରାହ-ମିହିର ଷଷ୍ଠ ଶତାବ୍ଦୀରେ ଥିଲେ । ସେ ଅସାଧାରଣ ଜ୍ୟୋତିଷ-ଶାସ୍ତ୍ରଜ୍ଞ ଥିଲେ । ସେ ଅୟନଚଳନର ନିର୍ଣ୍ଣୟ କରିଛନ୍ତି । ତାଙ୍କ ନିର୍ଣ୍ଣୟାନୁସାରେ ବର୍ଷାଋତୁର ଆରମ୍ଭ ଆଷାଢ଼ ମାସ ଠାରୁ ଧରାଯାଉ ଅଛି । ତାଙ୍କ ପୂର୍ବରୁ ଶ୍ରାବଣ ମାସଠାରୁ ଦକ୍ଷିଣାୟନ ବା ବର୍ଷା

* ରାଜତରଙ୍ଗିଣୀ – ୩, ୨୯ – ୩୨୦ ।

ଋତୁର ଆରମ୍ଭ ପ୍ରଚଳିତ ଥିଲା । ଏ ବିଷୟ ବରାହମିହିର ସ୍ୱଗ୍ରନ୍ଥରେ ମଧ୍ୟ ଉଲ୍ଲେଖ କରି ଅଛନ୍ତି । କାଳିଦାସ ନିଜ 'ମେଘଦୂତ'ର

**'आषाढस्य प्रथमदिवसे मेघमाश्लिष्टसानुम्'**

ଇତ୍ୟାଦି ବର୍ଣ୍ଣନାରେ ବର୍ଷାଋତୁର ଆରମ୍ଭ ଆଷାଢ଼ ମାସରେ ବୋଲି ସ୍ୱୀକାର କରି ଅଛନ୍ତି । ଏହାଙ୍କ ସମୟରେ ସେହି ପ୍ରଥା ପ୍ରଚଳିତ ଥିଲା । ଏଥିରୁ ଜଣାଯାଏ—କାଳିଦାସ ବରାହମିହିରଙ୍କର ସମକାଳୀନ ବା ପରବର୍ତ୍ତୀ ଥିଲେ । ଆହୁରି ଗୋଟିଏ କଥା—କାଳିଦାସ ବରାହ ମିହିରଙ୍କ ଗ୍ରନ୍ଥରୁ କେତେକ ଜ୍ୟୋତିଃଶାସ୍ତ୍ର-ବିଷୟକ କଳ୍ପନା ନେଇ ଅଛନ୍ତି । ନିମ୍ନରେ କେତେକ ଉଦାହରଣ ଦିଆଗଲା । ଦେଖନ୍ତୁ—

(କ) ବରାହ ମିହିର—

**भूच्छायां स्वग्रहणे भास्करमर्कग्रहे प्रविशतीन्दुः ।**

ବୃହତ୍ ସଂହିତା—ରାହୁଚାର ।

କାଳିଦାସ—

**छाया हि भूमेः शशिनो मलत्वेनारोपिता शुद्धिमतः प्रजाभिः ।**

ରଘୁବଂଶ, ୧୪, ୪୦ ।

ଏହି ଦୁଇ ଉଦାହରଣରୁ ଭୂମିର ଛାୟା ହେତୁ ଚନ୍ଦ୍ରଗ୍ରହଣ ହୁଏ ବୋଲି ଜଣାଯାଏ ।

(ଖ) ବରାହ ମିହିର –

**सलिलमये शशिनि रवेर्दीधितयो मूर्च्छितास्तमो नैशम् ।**

ବୃହତ୍ ସଂହିତା—ଚନ୍ଦ୍ରଚାର ।

କାଳିଦାସ—

पुपोष वृद्धिं हरिदश्वदीधितेरनुप्रवेशादिव बालचन्द्रमाः ।

ରଘୁବଂଶ, ୩, ୨୨ ।

ଏହି ଦୁଇସ୍ଥଳର ବର୍ଣ୍ଣନାରୁ ଜଣାଯାଏ—ଚନ୍ଦ୍ର ସୂର୍ଯ୍ୟଙ୍କର କିରଣମାନଙ୍କଦ୍ୱାରା ପ୍ରକାଶିତ ହୁଅନ୍ତି । ଏହେତୁ ବରାହ ମିହିର ଓ କାଳିଦାସ—ଏ ଦୁହେଁ ବିକ୍ରମାଦିତ୍ୟଙ୍କ ନବରତ୍ନ ମାନଙ୍କ ମଧ୍ୟରେ ଥିଲେ—ଏହି ପରମ୍ପରାଗତ ପ୍ରବାଦ ସତ୍ୟ ବୋଲି ମାନିବାକୁ ହେବ ।

ଉପର୍ଯ୍ୟୁକ୍ତ ପ୍ରମାଣମାନ ବିଶେଷ ପ୍ରବଳ ବୋଲି ମନେ ହୁଏ ନାହିଁ । ମେଘଦୂତର ଚତୁର୍ଥ ଶ୍ଳୋକରେ 'ଆଷାଢ଼ସ୍ୟ ପ୍ରଶମ-ଦିବସେ' ବୋଲି ମଧ୍ୟ ପଠାନ୍ତର ଅଛି । ସେହି ପାଠ ଯଦି ଗ୍ରହଣ କରାଯାଏ ତେବେ ବର୍ଷା ଋତୁର ଆରମ୍ଭ ଆଷାଢ଼ ମାସର ଶେଷରେ ଅର୍ଥାତ୍ ଶ୍ରାବଣ ଆରମ୍ଭରେ ବୋଲି ସେହି ଶ୍ଳୋକରୁ ଜଣାଯିବ । କାଳିଦାସ ଏହା ଛଡ଼ା ରଘୁବଂଶର ଦୁଇସ୍ଥାନରେ (୧୨ଶ ସର୍ଗ, ୨୯ ଓ ୧୮ଶ ସର୍ଗ ୬ ଶ୍ଳୋକ) ଶ୍ରାବଣ ମାସରେ ବର୍ଷାଋତୁର ଆରମ୍ଭ ବୋଲି ସୂଚନା ଦେଇ ଅଛନ୍ତି । ସେଥିରୁ ତାଙ୍କର ସମୟ ବରାହମିହିରଙ୍କ ପୂର୍ବବର୍ତ୍ତୀ ବୋଲି ଜଣାଯାଏ । ଉପରେ ଯେଉଁ ଜ୍ୟୋତିଷବିଷୟକ କଳ୍ପନାସାମଞ୍ଜସ୍ୟ କୁହାଯାଇ ଅଛି ସେଥିରେ ପ୍ରଥମ ଉଦାହରଣରେ କାଳିଦାସ ଚନ୍ଦ୍ରଗ୍ରହଣ ବିଷୟରେ କିଛି କହି ନାହାନ୍ତି—ସେ ଚନ୍ଦ୍ରମଣ୍ଡଳ ମଧ୍ୟବର୍ତ୍ତୀ କଳଙ୍କର କାରଣ ବର୍ଣ୍ଣନା କରି ଅଛନ୍ତି । ଦ୍ୱିତୀୟ ଉଦାହରଣର ପ୍ରତିପାଦ୍ୟ ବିଷୟ ଚନ୍ଦ୍ର ସୂର୍ଯ୍ୟକିରଣରେ ପ୍ରକାଶିତ ହୁଅନ୍ତି—ଏହା ଅତ୍ୟନ୍ତ ପ୍ରାଚୀନ । ଖ୍ରୀଷ୍ଟପୂର୍ବ ଅଷ୍ଟମ ଶତାବ୍ଦୀର ଯାସ୍କାଚାର୍ଯ୍ୟ ନିଜ ନିରୁକ୍ତରେ

अथाप्यस्यैको रश्मिश्चन्द्रमसं प्रति दीप्यते,
तदेतेनोपेक्षितव्यम्, आदित्यतोऽस्य दीप्तिर्भवति ।
(ଅ ୨, ୬)

ଏହିରୂପେ ଚନ୍ଦ୍ର ସୂର୍ଯ୍ୟ କିରଣରେ ପ୍ରକାଶିତ ହେବା ବିଷୟ ବର୍ଣ୍ଣନା କରି ଅଛନ୍ତି । ଏ ହେତୁ ଏହି କାରଣରୁ କାଳିଦାସଙ୍କୁ ବରାହମିହିରଙ୍କର ସମକାଳୀନ ମାନିବା ଯୁକ୍ତିସଙ୍ଗତ ଦେଖାଯାଏ ନାହିଁ ।

**(ଗ) ମେଘଦୂତରେ ଦିଙ୍ନାଗାଚାର୍ଯ୍ୟଙ୍କର ଉଲ୍ଲେଖ**— କାଳିଦାସ ନିଜ କାବ୍ୟ ମେଘଦୂତରେ ଯକ୍ଷଦ୍ୱାରା ମେଘର ଅଳକାପୁରୀଗମନ ମାର୍ଗ ବର୍ଣ୍ଣନା କରିବାକୁ ଯାଇ ଲେଖି ଅଛନ୍ତି—

स्थानादस्मात् सरसनिचुलादुत्पतोदङ्मुखः खं
दिङ्नागानां पथि परिहरन् स्थूलहस्तावलेपान् ॥
ମେଘଦୂତ ୧୪ ।

ଏହି ଶ୍ଳୋକାର୍ଦ୍ଧରେ ଶ୍ଳେଷ ଅର୍ଥଦ୍ୱାରା କାଳିଦାସ ନିଜ ସମକାଳିକ ନିଚୁଳ ଓ ଦିଙ୍ନାଗ-ଏହି ଦୁଇ କବିଙ୍କର ଉଲ୍ଲେଖ କରି ଅଛନ୍ତି ବୋଲି ମେଘଦୂତର ଦୁଇଟି ଟୀକାକାର ମଲ୍ଲିନାଥ ଓ ଦକ୍ଷିଣାବର୍ତ୍ତ ନିଜ ନିଜ ଟୀକାରେ ଉଲ୍ଲେଖ କରି ଅଛନ୍ତି । ରାମଗିରିସମୀପରେ କାଳିଦାସଙ୍କର ସହାଧ୍ୟାୟୀ "ନିଚୁଳ କବି କାଳିଦାସଙ୍କ କାବ୍ୟମାନଙ୍କରେ ଆରୋପିତ ଆକ୍ଷେପମାନ ଖଣ୍ଡନ କରୁଥିଲେ ଏବଂ କାଳିଦାସଙ୍କର ପ୍ରତିପକ୍ଷ ଦିଙ୍ନାଗ 'କାଳିଦାସ ସମସ୍ତ କଳ୍ପନା ଅନ୍ୟାନ୍ୟ ଗ୍ରନ୍ଥମାନଙ୍କରୁ ଚୋରାଇ ନିଜ କାବ୍ୟରେ ସନ୍ନିବେଶିତ କରି ଅଛନ୍ତି ବୋଲି ବିଶେଷ ଅଗ୍ରହ ସହ ହାତ ଠେକି ଆକ୍ଷେପ କରୁଥିଲେ । ଏ ହେତୁ ଏହି

ଦିଙ୍ଗ୍‌ନାଗାଗ୍ରଣୀଙ୍କର ସ୍ଥୂଳହସ୍ତ ଦୂରରୁ ପରିହାର କରି ହେ ମେଘ, ତୁମେ ଉତ୍ତର ଦିଗ ଅଭିମୁଖରେ ଯାତ୍ରା କର’ ବୋଲି କାଳିଦାସ ଯକ୍ଷମୁଖରେ ମେଘକୁ ନିର୍ଦ୍ଦେଶ ଦେଇ ଅଛନ୍ତି । ଦିଙ୍ଗ୍‌ନାଗ ଏକ ପ୍ରସିଦ୍ଧ ବୌଦ୍ଧ ଦାର୍ଶନିକ, ସେ ଖ୍ରୀଷ୍ଟୀୟ ଷଷ୍ଠ ଶତାବ୍ଦୀରେ ଥିଲେ ଏଥିରୁ ପ୍ରମାଣିତ ହୁଏ କାଳିଦାସ ମଧ୍ୟ ସେ ସମୟରେ ଥିଲେ ।

ଏହି ପ୍ରମାଣ ମଧ୍ୟ ସେତେଟା ପ୍ରବଳ ପରି ବୋଧ ହୁଏ ନାହିଁ । କାଳିଦାସ କେତେକ ସ୍ଥଳରେ ଅବଶ୍ୟ ଶ୍ଳେଷର ପ୍ରୟୋଗ କରିଛନ୍ତି । କିନ୍ତୁ ସେ ବାଣ, ସୁବନ୍ଧୁ, ଶ୍ରୀହର୍ଷ ପ୍ରଭୃତି କବିଙ୍କପରି ପ୍ରଚୁର ପରିମାଣରେ ଶ୍ଳେଷର ଉପଯୋଗ କରି ନାହାନ୍ତି । ଏହେତୁ ସେପରି ବିଶିଷ୍ଟ କାରଣ ନ ଥିଲେ ଶ୍ଳେଷମୂଳକ ବ୍ୟକ୍ତିଗତ ଉଲ୍ଲେଖ କାଳିଦାସଙ୍କ କାବ୍ୟରେ ମାନିନେବା ସମ୍ମତ ହେବ ନାହିଁ । ଦ୍ୱିତୀୟ କଥା ମେଘଦୂତରେ ନିଜ ପ୍ରତିପକ୍ଷ ଦିଙ୍ଗ୍‌ନାଗଙ୍କର ଉଲ୍ଲେଖ କାଳିଦାସଙ୍କର ଲକ୍ଷ୍ୟ ଥିଲେ ସେ କଦାପି ନିଜ ପ୍ରତିପକ୍ଷଙ୍କୁ ‘ଦିଙ୍ଗ୍‌ନାଗାନାମ୍’ ବୋଲି ଗୌରବସୂଚକ ବହୁବଚନରେ ନିର୍ଦ୍ଦେଶ କରି ନ ଥାନ୍ତେ । ତାବାଦ୍ ଦିଙ୍ଗ୍‌ନାଗ ଏକ ପ୍ରସିଦ୍ଧ ଦାର୍ଶନିକ ପଣ୍ଡିତ ଥିଲେ. କାବ୍ୟଶାସ୍ତ୍ରରେ ମଧ୍ୟ ତାଙ୍କର ବ୍ୟୁତ୍ପତ୍ତି ଥିଲା ପରି କୌଣସିଠାରେ ଉଲ୍ଲେଖ ନାହିଁ । ତେବେ ସେ କିପରି କାଳିଦାସଙ୍କ କାବ୍ୟରେ ଦୋଷ ଦେଖାଇ ପାରିବେ— ଏହା ବିଶ୍ୱାସ କରିହେବ ନ ପାରେ । ଉପର୍ଯ୍ୟୁକ୍ତ ଶ୍ଳୋକରେ ଉଲ୍ଲିଖିତ ନିଚୁଳ ଓ ଦିଙ୍ଗ୍‌ନାଗଙ୍କୁ କାଳିଦାସଙ୍କ ସମକାଳୀନ ବୋଲି ସ୍ୱୀକାର କଲେ ମଧ୍ୟ କାଳିଦାସଙ୍କର ସମୟ ଠିକ୍ କରି ହେବ ନାହିଁ । କାରଣ ଡାକ୍ତର କୀଥ୍ ଓ ପ୍ରଫେସର ମେକ୍‌ଡାନଲପ୍ରଭୃତିଙ୍କ ମତରେ ଦିଙ୍ଗ୍‌ନାଗଙ୍କ ସମୟ ଖ୍ରୀଷ୍ଟୀୟ ୪୦୦ ବର୍ଷର ଆଖପାଖ । ଦିଙ୍ଗ୍‌ନାଗଙ୍କ ଗୁରୁ ବସୁବନ୍ଧୁ ମହାରାଜ

ଚନ୍ଦ୍ରଗୁପ୍ତଙ୍କ ପୁତ୍ରଙ୍କର ମନ୍ତ୍ରୀ ଥିଲେ । ବାମନ ନାଜ 'ଅଳଙ୍କାର ସୂତ୍ରବୃତ୍ତି'ରେ ଏହାଙ୍କର ଉଲ୍ଲେଖ କରି ଅଛନ୍ତି । ଅନେକ ପଣ୍ଡିତଙ୍କ ମତରେ ଏହି ଚନ୍ଦ୍ରଗୁପ୍ତ ଗୁପ୍ତସାମ୍ରାଜ୍ୟର ସଂସ୍ଥାପକ ପ୍ରସିଦ୍ଧ ପ୍ରଥମ ଚନ୍ଦ୍ରଗୁପ୍ତ (ଖ୍ରୀଷ୍ଟାବ୍ଦ ୩୧୯-୩୬୦) ତଥା ତାଙ୍କର ପୁତ୍ର ପ୍ରସିଦ୍ଧ ସମ୍ରାଟ୍ ସମୁଦ୍ରଗୁପ୍ତ । ଏ ହେତୁ ବସୁବନ୍ଧୁଙ୍କର ସମୟ ଚତୁର୍ଥ ଶତାବ୍ଦୀର ମଧ୍ୟଭାଗ ଏବଂ ତାଙ୍କର ଶିଷ୍ୟ ଦିଙ୍ନାଗଙ୍କର ସମୟ ଚତୁର୍ଥ ଶତାବ୍ଦୀର ଶେଷଭାଗ ହେବା ସମ୍ଭବ ।

(ଘ) ଜ୍ୟୋତିର୍ବିଦାଭରଣରେ କାଳିଦାସଙ୍କର ଉଲ୍ଲେଖ—ଜ୍ୟୋତିର୍ବିଦାଭରଣର ୧୨ଶ ଅଧ୍ୟାୟରେ ଉଲ୍ଲେଖ ଅଛି ଯେ ସେ ଗ୍ରନ୍ଥ କୋର ବିକ୍ରମାଦିତ୍ୟଙ୍କର ରାଜସଭା ପଣ୍ଡିତ କାଳିଦାସଙ୍କର ରଚନା ଏବଂ କାଳିଦାସ ତାଙ୍କ ନବରତ୍ନ ମଧ୍ୟରେ ଅନ୍ୟତମ ଥିଲେ ।* ଏହି ଗ୍ରନ୍ଥରେ ଯେଉଁ ସବୁ ଜ୍ୟୋତିଷ—ବିଷୟର ଉଲ୍ଲେଖ ଅଛି, ତାହାର ବଳରେ ତାହା ଷଷ୍ଠ ଶତାବ୍ଦୀର ରଚନା ବୋଲି ଧରାଯାଏ, କିନ୍ତୁ ଉକ୍ତ ଗ୍ରନ୍ଥକାର ବରାହମିହିରଙ୍କ ଅନୁସାରେ କଳିଯୁଗାରମ୍ଭର ଯେଉଁ ସମୟ ନିର୍ଦ୍ଦେଶ କରି ଅଛନ୍ତି, ସେଥିରୁ ସେ ଗ୍ରନ୍ଥ ୫୮୦ ସାଲରେ ରଚିତ

---

*धन्वन्तरिक्षपणकामर सिंहशंकु वेतालभट्ट घटखर्पर कालिदासाः ।
ख्यातो वराहमिहिरो नृपतेः सभायां रत्नानि वै वररुचिर्नव-
विक्रमस्य ॥
୨୨, ୧୦ ।

† ଜ୍ୟୋତିର୍ବିଦାଭରଣ—୪, ୮୫ ଓ କୁମାରସମ୍ଭବ ୧-୩ ଦେଖନ୍ତୁ ।

ବୋଲି ପ୍ରତୀତ ହୁଏ । ଏହି ଗ୍ରନ୍ଥ ଓ କାଳିଦାସଙ୍କ କାବ୍ୟମାନଙ୍କ ମଧ୍ୟରେ ଅନେକ କଳ୍ପନା ସାମଞ୍ଜସ୍ୟ ଦେଖାଯାଏ ।† ଏହାର ଶେଷରେ ବିକ୍ରମଙ୍କ ଯେଉଁ ପ୍ରଶସ୍ତି ଦିଆଯାଇ ଅଛି ତାର ଭାଷା ଯେତେଦୂର ଓଜସ୍ୱିନୀ ହେବା ଉଚିତ, ସେତେଦୂର ହୋଇ ନାହିଁ — ଏହା ସତ୍ୟ, କିନ୍ତୁ ମହାକବିଙ୍କ ଭାଷାରେ ସବୁକାବ୍ୟରେ ଏକ ପ୍ରକାର ସୌଷ୍ଠବ ଓ ଏକ ପ୍ରକାର ଗୁଣ ରହିବ— ଏହା ସମ୍ଭବପର ନୁହେଁ । ଉଦାହରଣ ସ୍ୱରୂପ, ଭାଷାର ଅସମ୍ବଦ୍ଧତା, ଓ ସୌଷ୍ଠବ ନେଇ 'ଋତୁସଂହାର' ଓ 'ମାଳବିକାଗ୍ନିମିତ୍ର' ସମ୍ବନ୍ଧରେ ପଣ୍ଡିତମାନଙ୍କର ବହୁଦିନ ପର୍ଯ୍ୟନ୍ତ ବିବାଦ ହୋଇଥିଲା । ଏହେତୁ କାଳିଦାସ ଖ୍ରୀଷ୍ଟୀୟ ଷଷ୍ଠ ଶତାବ୍ଦୀରେ ଯଶୋଧର୍ମାଙ୍କର ସଭାରେ ଥିବା ସମ୍ଭବ ।

ଉପର୍ଯ୍ୟୁକ୍ତ ମତ ମଧ୍ୟ ସମୀଚୀନ ବୋଧ ହୁଏ ନାହିଁ । 'ଜ୍ୟୋତିର୍ବିଦାଭରଣ' ଗ୍ରନ୍ଥର କାଳ ଷଷ୍ଠ ଶତାବ୍ଦୀ ବୋଲି ସ୍ୱୀକାର କରିଗଲେ ମଧ୍ୟ, ତାହା ରଘୁବଂଶାଦି ଉଚ୍ଚକୋଟିର ଗ୍ରନ୍ଥ ଲେଖକ କାଳିଦାସଙ୍କର ରଚନା ବୋଲି ପ୍ରତୀତ ହୁଏ ନାହିଁ । 'ଜ୍ୟୋତିର୍ବିଦାଭରଣ'ର ୨୨ତମ ଅଧ୍ୟାୟର ୨୦ଶ ଶ୍ଳୋକଟି ଦେଖନ୍ତୁ । ଯଦି ସେଥିରେ ଥିବା ଉଲ୍ଲେଖ ସତ୍ୟ ବୋଲି ଧରାଯାଏ, ତେବେ ରଘୁବଂଶାଦି କାବ୍ୟ ରଚନା କଲାପରେ କାଳିଦାସ ସେହି ଗ୍ରନ୍ଥ ଲେଖି ଥିବେ । ସେ ସମୟକୁ କାଳିଦାସଙ୍କର ବୁଦ୍ଧି ମରିପକ୍ୱ ହୋଇଯାଇ ଥିବ । ତାଙ୍କର ଲେଖନୀରେ ସେ ଗ୍ରନ୍ଥରେ ସଦୋଷ ଭାଷାର ପ୍ରୟୋଗ କଦାପି ହୋଇ ନ ପାରେ । ଅବଶ୍ୟ 'ଋତୁ ସଂହାର' ଓ 'ମାଳବିକାଗ୍ନିମିତ୍ର'ରେ ମଧ୍ୟ ଭାଷାର ଓ ସନ୍ନିଧାନର ବୈଶିଷ୍ଟ୍ୟ ନାହିଁ । କାରଣ ତାହା କବିଙ୍କର ପ୍ରଥମ

ଲେଖା ଥାନ୍ତି । ଯଦି କବିଙ୍କର ଭାଷା ଶୈଳୀ ଉକ୍ତ କାବ୍ୟମାନଙ୍କରେ ସେତେ ଦୂର ପରିମାର୍ଜିତ, ନିର୍ଦ୍ଦୋଷ ଓ ମଧୁର ହୋଇ ପାରି ନାହିଁ ସେଥିପାଇଁ ଆଶ୍ଚର୍ଯ୍ୟ ହେବାର କାରଣ ନାହିଁ । ଏ ହେତୁ କୌଣସି ଅନ୍ୟ ବ୍ୟକ୍ତି କାଳିଦାସଙ୍କ ନାମରେ ଏହି ଗ୍ରନ୍ଥ ରଚନା କରିଥିବେ ବା କୌଣସି ଅନ୍ୟ ଏକ 'କାଳିଦାସ' ନାମ-ଧାରୀ ବ୍ୟକ୍ତି ଏ ଗ୍ରନ୍ଥ ଲେଖିଥିବେ । ଏହାପରି ତିନିଜଣ କାଳିଦାସ ରାଜଶେଖରଙ୍କ ସମୟରେ ( ଖ୍ରୀଷ୍ଟୀୟ ୧୦ଶ ଶତାବ୍ଦୀରେ ) ଜନ ସମାଜରେ ପରିଚିତ ଥିଲେ । ସେମାନଙ୍କୁ ଲକ୍ଷ୍ୟ କରି ରାଜଶେଖର ଏକ ସ୍ଥାନରେ ଲେଖିଛନ୍ତି—

**एकोऽपि जीयते हन्त कालिदासो न केनचित् ।**
**शृङ्गारे ललितोद्‌गारे कालिदासत्रयी किमु ॥**

ଶୃଙ୍ଗାର ରସ ବର୍ଣ୍ଣନାରେ ଏବଂ ମଧୁର ଭାଷା ପ୍ରୟୋଗରେ ଏକ କାଳିଦାସଙ୍କୁ ଜିଣିପାରିବା ବ୍ୟକ୍ତି ଏପର୍ଯ୍ୟନ୍ତ ଉତ୍ପନ୍ନ ହୋଇ ନାହାନ୍ତି—ପୁଣି ତିନି କାଳିଦାସଙ୍କୁ (ଭିନ୍ନ ଭିନ୍ନ ବୟସରେ) ପରାସ୍ତ କରିବା ବ୍ୟକ୍ତି କାହୁଁ ମିଳିବ ?

ଙ) କାଳିଦାସଂକ ଗ୍ରଂଥମାନଙ୍କରେ ଜ୍ୟୋତିଷ ବିଷୟର ଉଲ୍ଲେଖ— କଲିକତା ବିଶ୍ୱବିଦ୍ୟାଳୟର ଗଣିତପ୍ରାଧ୍ୟାପକ ଶ୍ରୀ ପ୍ରବୋଧସେନଗୁପ୍ତ କାଳିଦାସୀୟ ଗ୍ରନ୍ଥମାନଙ୍କରେ ଉଲ୍ଲିଖିତ ଜ୍ୟୋତିଷ ବିଷୟମାନ ଗଣନା କରି ସେ ଷଷ୍ଠ ଶତାବ୍ଦୀୟ ଲୋକ ପ୍ରମାଣିତ କରିବାକୁ ଚେଷ୍ଟା କରିଛନ୍ତି । ତାଙ୍କର ପ୍ରଧାନ ପ୍ରଧାନ ଯୁକ୍ତିମାନ ବର୍ତ୍ତମାନ ପରୀକ୍ଷା କରାଯାଉ ।

† ରଘୁବଂଶ—୪, ୮୫ ଏବଂ କୁମାରସମ୍ଭବ ୧, ୩, ଦ୍ରଷ୍ଟବ୍ୟ ।

*(କ) ମେଘଦୂତରେ ବର୍ଣ୍ଣନା କରାଯାଇ ଅଛି—ନିର୍ବାସିତ ଯକ୍ଷ ରାମଗିରିରେ ମେଘକୁ ଆଷାଢ଼ର ଶେଷ ଦିନ (ଆଷାଢ଼ସ୍ୟ ପ୍ରଥମ ଦିବସେ) ଦେଖିଥିଲେ । ତା ପରେ ଅତି ନିକଟରେ ଶ୍ରାବଣମାସ ଆସିବାକୁ ଥିଲା (ପ୍ରତ୍ୟାସନ୍ନେ ନଭସି-ଶ୍ଳୋକ ୪) ତା ପରେ ଚାରି ମାସ ପରେ (କାର୍ତ୍ତିକ ମାସର ପ୍ରବୋଧିନୀ ଏକାଦଶୀ ଦିନ) ଭଗବାନ୍ ବିଷ୍ଣୁ ଭୁଜଗଶୟନରୁ ଉଠିବାକୁ ଥିଲେ । (**शापान्तो मे भुजगशयनादुत्थिते शार्ङ्गपाणौ**) ଏ ସମସ୍ତ ବର୍ଣ୍ଣନାରୁ ପ୍ରାଧ୍ୟାପକ ସେନଗୁପ୍ତ ନିମ୍ନମତେ ଅନୁମାନ କରନ୍ତି—

ଯକ୍ଷ ଆଷାଢ଼ର ଏକାଦଶୀ ଦିନ ମେଘକୁ ଦେଖିଥିଲେ । ତା ପରେ ଦ୍ୱିତୀୟ ଦିନ ଶ୍ରାବଣ ମାସରେ ଆରମ୍ଭ ହେବା କଥା । ଅର୍ଥାତ୍ ସେହି ତିଥିରେ ସମାପ୍ତ ହେବାକୁ ଥିବା ଆଷାଢ଼ ମାସ ସୌର ମାସ ହେବ । କାଳିଦାସଙ୍କ ସମୟରେ ଏହି ଦିନ ଦକ୍ଷିଣାୟନାରମ୍ଭ ହେଉ ଥିଲା ଏବଂ ସେହି ଦିନ ବର୍ଷାଋତୁର ଆରମ୍ଭ ହେଉଥିଲା । ଏହି ଘଟନାଟି ଉଲ୍ଲେଖ ଗଣନା କରି ପ୍ରାଧ୍ୟାପକ ସେନଗୁପ୍ତ ନିର୍ଣ୍ଣୟ କରିଛନ୍ତି ଯେ ସେ ଦିନ ଖ୍ରୀଷ୍ଟୀୟ ୫୮୧ ବର୍ଷ ଜୁନ୍ ୨୦ ତାରିଖ । ଏ ହେତୁ କାଳିଦାସ ଷଷ୍ଠ ଶତାବ୍ଦୀର ମଧ୍ୟ ଭାଗରେ ଥିଲେ ।

କିନ୍ତୁ 'ମେଘଦୂତ'ର ଉପର ନିର୍ଦ୍ଦିଷ୍ଟ ବର୍ଣ୍ଣନାକୁ ଏତେ ଗୁରୁତ୍ୱ ଦେଇ ବିଚାର କରିବା ସମୀଚୀନ ବୋଧ ହୁଏ ନାହିଁ ।

* P. C. Senagupta, Ancient Indian Chronology, ୨୬୩ ପୃଷ୍ଠା ଦ୍ରଷ୍ଟବ୍ୟ ।

ସୌରମାସର ଉଲ୍ଲେଖ ଖାଲି କାଳିଦାସଙ୍କ ଅନ୍ୟ କୌଣସି ଗ୍ରନ୍ଥରେ ନାହିଁ ତାହା ନୁହେଁ, ପ୍ରାଚୀନ ଉତ୍କୀର୍ଣ୍ଣ କୌଣସି ଲେଖରେ ମଧ୍ୟ ଦେଖାଯାଏ ନାହିଁ । ମେଘଦୂତ ବର୍ଣ୍ଣନାରୁ ଏହି ଭାବ ପ୍ରତୀତ ହୁଏ—ଯକ୍ଷ ରାମଗିରିରେ (ପୂର୍ଣ୍ଣିମାନ୍ତ ଆଷାଢ଼ର ଶେଷ ତିଥିରେ (ଅର୍ଥାତ୍ ଆଷାଢ଼ ପୂର୍ଣ୍ଣିମା ଦିନ) ମେଘ ଦେଖିଥିଲେ । ତାପରେ ଅତିଅଳ୍ପ ସମୟରେ (ସମ୍ଭବତଃ ଦ୍ୱିତୀୟଦିନ) ବର୍ଷା ଋତୁର ପ୍ରଥମ ମାସ ଆରମ୍ଭ ହେବାକୁ ଥିଲା । ଆଗାମୀ ଚାରିମାସ ପରେ ପ୍ରବୋଧିନୀ ଏକାଦଶୀ ଦିନ ଯକ୍ଷଙ୍କର ଶାପ ସମାପ୍ତ ହେବା କଥା ଏବଂ ସେହି ଦିନ ପ୍ରିୟତମା ପତ୍ନୀଙ୍କ ସହିତ ତାଙ୍କର ମିଳନ ହେବା କଥା । ମେଘଦୂତର ବର୍ଣ୍ଣନାକୁ ସେହି ଦୃଷ୍ଟିରୁ ବିଚାର କଲେ ଏହି ବର୍ଣ୍ଣନା ଖ୍ରୀଷ୍ଟାବ୍ଦ ୫୦୦ରେ ନୁହେଁ କିନ୍ତୁ ତା ପୂର୍ବ କେତେକ ଦେଢ଼ଶହ ବର୍ଷ ତଳର ହେବା ସମ୍ଭାବନା ।

(କ) ଶାକୁନ୍ତଳର ଶେଷ ଅଙ୍କରେ ଶକୁନ୍ତଳାଙ୍କୁ ଚିହ୍ନିବା ପରେ ଦୁଷ୍ୟନ୍ତ କହୁଅଛନ୍ତି—

**स्मृतिभिन्नमोहतमसो दिष्ट्या प्रमुखे स्थितासि मे सुमुखि ।**
**उपरागान्ते शशिनः समुपगता रोहिणी योगम् ॥**

(ଅର୍ଥ—ହେ ପ୍ରିୟେ, ସ୍ମରଣ ହେବା ଫଳରେ ମନରୁ ମୋହରୂପ ଅନ୍ଧକାର ଦୂରହେଲାପରେ ମୋର ସମ୍ମୁଖରେ ଗ୍ରହଣମୁକ୍ତ ଚନ୍ଦ୍ରଙ୍କ ସମ୍ମୁଖରେ ରୋହିଣୀ ଉପସ୍ଥିତ ହେଲାପରି ଭାଗ୍ୟବଶତଃ ତୁମେ ଉପସ୍ଥିତ ହୋଇ ଅଛ ।)

ପ୍ରାଧ୍ୟାପକ* ସେନଗୁପ୍ତ ମନେକରନ୍ତି—କାଳିଦାସ ନିଜେ ଦେଖିଥିବା ଖଗ୍ରାସ ଚନ୍ଦ୍ରଗ୍ରହଣର ବର୍ଣ୍ଣନା ଏହି ବାକ୍ୟରେ କରି ଅଛନ୍ତି । ସେହି ଦୃଷ୍ଟିରୁ ଗଣନା କରି ଏହି ସିଦ୍ଧାନ୍ତରେ ଉପନୀତ ହୋଇ ଅଛନ୍ତି ଯେ ସେହି ଧରଣର ଖଗ୍ରାସ ଚନ୍ଦ୍ରଗ୍ରହଣ ଉଜ୍ଜୟିନୀରେ ୫୪୨ ସାଲ ନବମ୍ବର ମାସରେ ୮ ତାରିଖରେ ରାତି ୮।୩୬ ସମୟରେ ହୋଇ ମଧ୍ୟରାତ୍ରିର ୨୦ ମିନଟ ପରେ ଶେଷ ହୋଇଥିଲା । ସେ ସମୟରେ ଚନ୍ଦ୍ରଙ୍କ ସହିତ ରୋହିଣୀ ନକ୍ଷତ୍ରର ଯୋଗ ହୋଇ ଥିଲା । ଏ ହେତୁ କାଳିଦାସ ଷଷ୍ଠ ଶତାବ୍ଦୀର ମଧ୍ୟ ଭାଗରେ ଥିଲେ ।

କେତେକ ଲୋକ ସାଧାରଣ ବିଷୟକୁ ଟାଣି ଓଟାରି କପରି କଦର୍ଥ କରନ୍ତି ଏହା ତାହାର ଜ୍ୱଳନ୍ତ ଉଦାହରଣ । ଚନ୍ଦ୍ରଙ୍କ ସହିତ ରୋହିଣୀଙ୍କର ସହଯୋଗ କାଳିଦାସଙ୍କ ଦୃଷ୍ଟିକୁ ଅଧିକ ସୁନ୍ଦର ଦେଖା ଯାଉଥିଲା । ସେ ଅନ୍ୟ ସ୍ଥାନରେ ମଧ୍ୟ ଏହି ଦୃଶ୍ୟ ବର୍ଣ୍ଣନା କରି ଅଛନ୍ତି ।* ଏହେତୁ ଦୁଷ୍ୟନ୍ତଙ୍କ ସହିତ ଶକୁନ୍ତଳାଙ୍କର ସଂଯୋଗକୁ ଚନ୍ଦ୍ର ସହିତ ରୋହିଣୀଙ୍କର ସଂଯୋଗ ସହିତ ଯଦି ତୁଳନା କରନ୍ତି—ଏଥିରେ ଆଶ୍ଚର୍ଯ୍ୟ ହେବାର କିଛି ନାହିଁ । ସେହି ମିଳନ ପୂର୍ବରୁ ଦୁଷ୍ୟନ୍ତଙ୍କ ମନ ଦୁର୍ବାସା ଋଷିଙ୍କର ଶାପରେ ମୋହଗ୍ରସ୍ତ ଥିଲା । ଏ ହେତୁ ଉପମାନ ଦେବାବେଳେ ରୋହିଣୀ ସହିତ ମିଳନ ହେବା ପୂର୍ବରୁ ଚନ୍ଦ୍ର ଉପରାଗଗ୍ରସ୍ତ ଥିଲେ ବୋଲି କବି କଳ୍ପନା କରି ଅଛନ୍ତି । ଏହି କଳ୍ପନାକୁ ନେଇ କାଳିଦାସ

---

* "हृष्ठे निपुणिके, एष रोहिणीसंयोगेन अधिकं शोभते मृगलांछनः" ବିକ୍ରମୋର୍ବଶୀ, ତୃତୀୟ ଅଙ୍କ ଦ୍ରଷ୍ଟବ୍ୟ ।

ଅକାଶରେ ସେ ଗ୍ରହଣ ଦେଖି ଥିଲେ ବୋଲି ଭାବିବାର ଅବକାଶ ନାହିଁ ।

ଏହାପରେ ଆହୁରି ଜ୍ୟୋତିଷବିଷୟକ ଦୁଇ ତିନି ପ୍ରମାଣ ସେନଗୁପ୍ତ ଦେଇ ଅଛନ୍ତି । ମାତ୍ର ସେ ସମସ୍ତ ପ୍ରକୃତ ବିଷୟର ଦୂରରେ । ଅତଏବ ତାଙ୍କ ବିସ୍ତାର ଭୟରେ ସେମାନଙ୍କର ଚର୍ଚ୍ଚା କରାଗଲା ନାହିଁ ।

ଏପର୍ଯ୍ୟନ୍ତ ଆମ୍ଭେ କାଳିଦାସଙ୍କ ବିଷୟରେ କେତେକ ବିଭିନ୍ନ ମତ ପରିଶୀଳନ କରିଅଛୁ ଏବଂ ସେ ସମସ୍ତ ଯୁକ୍ତିଯୁକ୍ତ ନୁହେଁ ବୋଲି ଦେଖାଇ ଦେଇଅଛୁଁ । ବର୍ତ୍ତମାନ ଆମ୍ଭେ ନିଜ ମତ ପ୍ରମାଣସହକାରେ ପାଠକମାନଙ୍କର ସମ୍ମୁଖରେ ଉପସ୍ଥାପିତ କରୁଅଛୁଁ । କାଳିଦାସ ଷଷ୍ଠ ଶତାବ୍ଦୀର ବୋଲି ମତ ନିରାଧାର ପ୍ରମାଣିତ ହୋଇଅଛୁ । ଏହା ପରେ କାଳିଦାସ ପଞ୍ଚମ ଶତାବ୍ଦୀର ଦ୍ୱିତୀୟାର୍ଦ୍ଧ ପୂର୍ବରେ ଥିଲେ ବୋଲି ନିମ୍ନଲିଖିତ ପ୍ରମାଣବଳରେ କୁହା ଯାଇ ପାରେ ।

ମଧ୍ୟ ଭାରତରୁ ମନ୍ଦସୋର ନାମକ ସ୍ଥାନରୁ ଏକ ଶିଳା-ଲେଖ ମିଳି ଅଛୁ । ଡାକ୍ତର ଫ୍ଲୀଟ ଏହାକୁ 'ଗୁପ୍ତକାଳୀନ ଉତ୍କୀର୍ଣ୍ଣ ଲେଖ' ନାମକ ପୁସ୍ତକରେ * ପ୍ରକାଶ କରି ଅଛନ୍ତି । ଏହି ଲେଖରେ ଲାଟ ଅର୍ଥାତ୍ ମଧ୍ୟ ଓ ଦକ୍ଷିଣ ଗୁଜରାଟରୁ ଆସି ମନ୍ଦସୋରରେ ବସତି ସ୍ଥାପନ କରିଥିବା ଏକ ତନ୍ତୁବାୟ ସଂଘ ସମ୍ରାଟ୍ କୁମାର ଗୁପ୍ତଙ୍କର ଶାସନ ସମୟରେ ୪୩୭ ସାଲରେ ଏକ

* Dr. Fleet: Gupta Inscriptions (No. 18)

ସୂର୍ଯ୍ୟମନ୍ଦିର ନିର୍ମାଣ କରିଥିଲେ ଏବଂ ୫୨୭ ସାଲରେ ତାର ଜୀର୍ଣ୍ଣ ସଂସ୍କାର କରିଥିଲେ ବୋଲି ବର୍ଣ୍ଣିତ ହୋଇଅଛି । ସେ ପ୍ରସଙ୍ଗରେ ସେଠାରେ ବତ୍ସଭଟ୍ଟି ନାମକ ଏକ କବିଙ୍କ ଦ୍ୱାରା ଶିଳାଖଣ୍ଡ ଉପରେ ଖୋଦନ କରାଇ ମନ୍ଦିର ପାଖରେ ଏକ ପ୍ରଶସ୍ତି ସ୍ଥାପନ କରିଥିଲେ । ଏହି ପ୍ରଶସ୍ତିର କେତେକ ସ୍ଥାନରେ କାଳିଦାସଙ୍କ କବିତାର ଅନୁକରଣ କରାଯାଇ ଅଛି । ଡାକ୍ତର ବୁଲର୍, କୀଲ୍ ହାର୍ନ, ମେଗ୍ଡାନେଲ୍ଡ୍, କୀଥ୍ ପ୍ରଭୃତି ପଣ୍ଡିତମାନଙ୍କର ମଧ୍ୟ ଏହି ମତ । ଉଦାହରଣ ସ୍ୱରୂପ କାଳିଦାସ ଓ ବତ୍ସଭଟ୍ଟିଙ୍କ କବିତା ସାମଞ୍ଜସ୍ୟ ନିମ୍ନରେ ଉଦ୍ଧୃତ କରାଗଲା —

କାଳିଦାସ —

विद्युत्वन्तं ललितवनिताः सेन्द्रचापं सचित्राः
संगीताय प्रहतमुरजाः स्निग्धगम्भीरघोषम् ।
अन्तस्तोयं मणिमयभुवस्तुङ्गमभ्रंलिहाग्राः
प्रासादास्त्वां तुलयितुमलं यत्र तैस्तैर्विशेषैः ॥

ବତ୍ସଭଟ୍ଟି —

चलत्पताकान्यबलासनाथान्यत्यर्थशुक्लान्यधिकोन्नतानि ।
तडिल्लताचित्रसिताभ्रकूटतुल्योपमानानि गृहाणि यत्र ॥
ଶ୍ଳୋକ ୧୦

ଏହି ଦୁଇଟି ପଦ୍ୟରେ ଉତ୍ତୁଙ୍ଗ ଭବନ ଓ ମେଘର ଏକପ୍ରକାର ତୁଳନା ଦୃଷ୍ଟିଗୋଚର ହୁଏ । ନିମ୍ନୋଦ୍ଧୃତ ପଦ୍ୟମାନଙ୍କର ସାମଞ୍ଜସ୍ୟ ପ୍ରତି ମଧ୍ୟ ଟିକିଏ ଦୃଷ୍ଟି ଦିଅନ୍ତୁ —

କାଳିଦାସ—

निरुद्धवातायनमन्दिरोदरं
हुताशनो भानुमतो गभस्तयः ।
गुरूणि वासांस्यबलाः सयौवनाः
प्रयान्ति कालेऽत्र जनस्य सेव्यताम् ॥
न चन्दनं चारुमरीचिशीतलं
न हर्म्यपृष्ठं शरदिन्दु निर्मलम् ।
न वायवः सान्द्रतुषारशीतला
जनस्य चित्तं रमयन्ति साम्प्रतम् ।

ଋତୁସଂହାର ୫, ୨-୩

ବତ୍ସଭଟ୍ଟି—

रामासिनाथभवनोदरभास्करांशु-
वह्निप्रतापसुभगे जललीनमीने ।
चन्द्रांशुहर्म्यतलचन्दनतालवृन्त-
हारोपभोगरहिते हिमदग्धपद्मे ।

୩୧ ଶ୍ଳୋକ

ବତ୍ସଭଟ୍ଟିଙ୍କର ପଦ୍ୟରେ କାଳିଦାସଙ୍କର ପ୍ରତିବିମ୍ବ ଜଳଜଳ ଦିଶୁଅଛି । ବତ୍ସଭଟ୍ଟି ଏକ ନିମ୍ନସ୍ତରର କବି ଥିଲେ । ତାଙ୍କର କବିତାରେ ପଣ୍ଡିତମାନେ ବିଶେଷ ଦୋଷ ଦେଖାଇ ଅଛନ୍ତି ।* ଏଥି ହେତୁ ସହଜରେ ଅନୁମାନ କରାଯାଇ ପାରେ ଯେ ସେ କାଳିଦାସଙ୍କ କଳ୍ପନା ଅନୁକରଣ କରିଛନ୍ତି । ଏହି ପ୍ରମାଣରୁ ଆମେ ଏହି ନିର୍ଣ୍ଣୟରେ ଉପନୀତ ହେଉଅଛୁଁ ଯେ କାଳିଦାସ ମନ୍ଦସୋର ଲିପିର ଦ୍ୱିତୀୟଭାଗ ପୂର୍ବରୁ ଥିଲେ ।

* ଡାକ୍ତର ବୁଲରଙ୍କର ଲେଖ—Indian Antiquary, Vol. 54. 146-47 pp.

ବର୍ତ୍ତମାନ କାଳିଦାସ ଅବସ୍ଥିତିର ପୂର୍ବସୀମା ଅଧିକ ଅଧିକ ନିଶ୍ଚିତରୂପେ କପରି ଜଣାଯାଏ—ଏହି ବିଷୟରେ ବିଚାର କରିବୁଁ । କାଳିଦାସ ବାତ୍ସ୍ୟାୟନ କାମସୂତ୍ରକୁ ବିଶେଷ ଗଭୀରଭାବେ ଅଧ୍ୟୟନ କରିଥିଲେ । ବିବାହିତ ସ୍ତ୍ରୀମାନଙ୍କର କର୍ତ୍ତବ୍ୟ ଉଲ୍ଲେଖ କରିବାକୁ ଯାଇ ବାତ୍ସ୍ୟାୟନ ନିମ୍ନଲିଖିତ ସୂତ୍ରମାନ ଲେଖିଅଛନ୍ତି—

**श्वश्रु श्वशुर परिचर्या तत्पारतन्त्र्यमनुत्तरवादिता ।**
**.... .... भोगेष्वनुत्सेकः । परिजने दाक्षिण्यम् ।**
**... नायकापचारेषु किंचित्कलुषता नात्यर्थं विवदेत् ।**

କାମସୂତ୍ର ୨୩୯, ୨୩୬ ପୃଷ୍ଠା

ଉପର୍ଯ୍ୟୁକ୍ତ ସୂତ୍ରମାନଙ୍କର ଇତସ୍ତତଃ ବିକ୍ଷିପ୍ତ ବିଷୟମାନଙ୍କରେ ଏକ ସୁନ୍ଦର ଫୁଲମାଳ ଗୁନ୍ଥି କାଳିଦାସ କୁଳପତି କଣ୍ୱଙ୍କ ମୁଖରେ ନବବଧୂ ଶକୁନ୍ତଳାଙ୍କୁ ଅତ୍ୟୁପାଦେୟ ଭାବପୂର୍ଣ୍ଣ ଉପଦେଶ ନିମ୍ନଲିଖିତ ଶ୍ଳୋକରେ ଦେଇ ଅଛନ୍ତି—

**शुश्रूषस्व गुरून् कुरु प्रियसखीवृत्तिं सपत्नीजने**
**भर्त्तुर्विप्रकृताऽपि रोषणतया मास्म प्रतीपं गमः ।**
**भूयिष्ठं भव दक्षिणा परिजने भोगेष्वनुत्सेकिनी**
**यान्त्येवं गृहिणीपदं युवतयो वामाः कुलस्याधयः ॥**

ଶାକୁନ୍ତଳ, ୪,୧୭

'ଅଭିଜ୍ଞାନ ଶାକୁନ୍ତଳ'ରେ ଯେଉଁ ଚାରୋଟି ଶ୍ଳୋକ ସର୍ବୋତ୍କୃଷ୍ଟ ବୋଲି ଧରାଯାଏ, ସହୃଦୟ ପାଠକମାନେ ଏହି ଶ୍ଳୋକକୁ ସେମାନଙ୍କ ମଧ୍ୟରେ ଅନ୍ୟତମ ରୂପେ ଗଣନା କରନ୍ତି । ପରନ୍ତୁ— ଏହି ଶ୍ଳୋକର ମୌଳିକ ବିଷୟ ବାତ୍ସ୍ୟାୟନଙ୍କର-ଏହା ସ୍ପଷ୍ଟରୂପେ

ଜଣାଯାଏ । ଏଥିରୁ କାଳିଦାସ ବାତ୍ସ୍ୟାୟନଙ୍କର ପରବର୍ତ୍ତୀ ବୋଲି ଜଣାଯାଏ । କାମସୂତ୍ରରେ ଯେଉଁ ପ୍ରକାର ରାଜକାର୍ଯ୍ୟ ପଦ୍ଧତି ବର୍ଣ୍ଣିତ ହୋଇଅଛି, ତଦନୁଯାୟୀ ପଣ୍ଡିତମାନେ ବାତ୍ସ୍ୟାୟନଙ୍କର ସମୟ ଖ୍ରୀଷ୍ଟୀୟ ତୃତୀୟ ଶତାବ୍ଦୀର ମଧ୍ୟଭାଗ ବୋଲି ଠିକ୍ କରନ୍ତି । * ଏ ହେତୁ କାଳିଦାସ ଖ୍ରୀଷ୍ଟୀୟ ୨୫୦ ସାଲର ପରବର୍ତ୍ତୀ ହେବେ ।

ଏ ହେତୁ ୨୫୦ ଠାରୁ ୪୫୦ ମଧ୍ୟରେ ଅର୍ଥାତ୍ ଏହି ଦୁଇ ଶହ ବର୍ଷ ମଧ୍ୟରେ କାଳିଦାସଙ୍କର ସମୟ ଠିକ୍ କରିବାକୁ ହେବ । ଏହାଙ୍କ ଗ୍ରନ୍ଥମାନଙ୍କରୁ ଜଣାଯାଏ ସେ ଉଜ୍ଜୟିନୀରେ ଥିଲେ । ପରମ୍ପରାଗତ କିମ୍ବଦନ୍ତୀମାନଙ୍କ ଆଧାର ଏବଂ ଏହାଙ୍କର ଗ୍ରନ୍ଥମାନଙ୍କରେ ବ୍ୟବହୃତ 'ବିକ୍ରମ' ଏହି ଶ୍ଳେଷଗର୍ଭକ ନାମରୁ ଅନୁମିତ ହୁଏ—ସେ ଏକ ଶକାରି ବିକ୍ରମାଦିତ୍ୟଙ୍କର ଆଶ୍ରୟରେ ଥିଲେ । ପୂର୍ବରେ ଏ ବିଷୟର ବିଚାର କରାଯାଇ ଅଛି । ଏହି ପ୍ରକରଣର ଆରମ୍ଭରେ ଏକାଦଶ ଶତାବ୍ଦୀୟ ଅଭିନନ୍ଦଙ୍କର ଯେଉଁ ଉକ୍ତି ଉଦ୍ଧୃତ ହୋଇଅଛି, ତହିଁରୁ ଶକାରି ବିକ୍ରମାଦିତ୍ୟଙ୍କ ସମୟରେ କାଳିଦାସଙ୍କ ଗ୍ରନ୍ଥମାନ ପ୍ରସିଦ୍ଧି ଲାଭ କରିଥିଲା ବୋଲି ଜଣାଯାଏ । ଉପର୍ଯ୍ୟୁକ୍ତ ୨୦୦ ବର୍ଷ ମଧ୍ୟରେ ଦ୍ୱିତୀୟ ଚନ୍ଦ୍ରଗୁପ୍ତ ଏବଂ ତାଙ୍କର ପୌତ୍ର ସ୍କନ୍ଦଗୁପ୍ତ ଏହି ଦୁଇ ମହାରାଜ ବିକ୍ରମାଦିତ୍ୟ ଉପାଧି ଧାରଣ କରିଥିଲେ ବୋଲି ସେମାନଙ୍କ ସମୟରେ ଲିଖିତ ଅନୁଶାସନମାନଙ୍କରୁ ଜଣାଯାଏ । ଏ ଦୁହିଁଙ୍କ ମଧ୍ୟରୁ ଦ୍ୱିତୀୟ ଚନ୍ଦ୍ରଗୁପ୍ତଙ୍କୁ 'ଶକାରି' କୁହାଯାଇ ପାରେ । କାରଣ ଏହି ରାଜା

* **H.C. Chakladhar: Social Life in Ancient India.**
୬୩ ପୃଷ୍ଠା ଦ୍ରଷ୍ଟବ୍ୟ

ଖ୍ରୀଷ୍ଟାବ୍ଦ ୩୬୫ ସାଲରେ କାଠିଆବାଡ଼ର ଶକ ବଂଶୀୟ କ୍ଷତ୍ରପ-ମାନଙ୍କୁ ସମୂଳେ ଉଚ୍ଛେଦ କରି, ସେହି ପ୍ରାନ୍ତକୁ ନିଜ ରାଜ୍ୟରେ ମିଶାଇ ଥିଲେ । ଏ ବିଷୟ ଶିଳାଲେଖ ଏବଂ ମୁଦ୍ରାମାନଙ୍କର ପ୍ରମାଣିତ ହୋଇ ଅଛି । ଉଜ୍ଜୟିନୀ ତାଙ୍କର ରାଜଧାନୀ ଥିଲା । ସେ ଦାନବୀର ଥିଲେ, ଦୂର ଦୂରାନ୍ତରେ ତାଙ୍କର ଖ୍ୟାତି ଥିଲା । ସେ ବିଶେଷ ଗୌରବ ସହକାରେ ଅନେକ ପଣ୍ଡିତଙ୍କୁ ଆଶ୍ରୟ ଦେଇ ରଖିଥିଲେ । କୌତ୍ସ ଶାବ ନାମକ ତାଙ୍କର ଏକ ସାନ୍ଧିବିଗ୍ରହିକ ମନ୍ତ୍ରୀ ମଧ୍ୟଭାରତର ଉଦୟଗିରିରେ ଏକ ଶିଳାଲେଖ ସମ୍ପାଦନ କରିଥିଲେ * । ସେ ଲେଖରେ ସେ ନିଜକୁ 'ଶବ୍ଦାର୍ଥ ନ୍ୟାୟଲୋକଜ୍ଞ' ଓ 'କବି' ବୋଲି ସ୍ପଷ୍ଟ ଭାବେ ଉଲ୍ଲିଖିତ କରିଛନ୍ତି । ସେଥିରୁ ଚନ୍ଦ୍ରଗୁପ୍ତ ପଣ୍ଡିତମାନଙ୍କୁ ରାଜ୍ୟର ଉଚ୍ଚ ଅଧି-କାରରେ ରଖୁଥିଲେ ବୋଲି ଜଣାଯାଏ । ସେ ରାଜା ନିଜେ ମଧ୍ୟ ବଡ଼ ପଣ୍ଡିତ ଥିଲେ । କାଳିଦାସ, ମେଣ୍ଠ ପ୍ରଭୃତି ପଣ୍ଡିତମାନଙ୍କ ସହ ସେ ଉଜ୍ଜୟିନୀର ବିଦ୍ୱତ୍‌ସଭାରେ ପରୀକ୍ଷା ଦେଇଥିଲେ ବୋଲି ରାଜଶେଖରଙ୍କର କାବ୍ୟ ମୀମାଂସାର ଉଲ୍ଲେଖରୁ ❀ ଜଣାଯାଏ । ରାଜଶେଖରଙ୍କର କଥାନୁସାରେ ରାଜା କବି ହେଲେ ରାଜ୍ୟର ସମସ୍ତ ଲୋକ କାବ୍ୟ ରଚନା କରିବାକୁ ଲାଗିଯାନ୍ତି ଏବଂ ରାଜାଙ୍କର ଆଶ୍ରୟ ନିଅନ୍ତି । ଏ ହେତୁ ଏହି ଚନ୍ଦ୍ରଗୁପ୍ତ ବିକ୍ରମାଦିତ୍ୟ ଆଶ୍ରୟରେ କେବଳ କାଳିଦାସ ଥିଲେ ବୋଲି ଅନୁମାନ କରାଯାଏ ।

---

* Dr. Fleet: Gupta Inscriptions ( No 6)

❀ श्रूयते चोज्जयिन्यां काव्यकारपरीक्षा—
इह कालिदासमेण्ठावत्रामर-रूप-सूर-भारवयः ।
हरिचन्द्रचन्द्रगुप्तौ परीक्षिताविह विशालायाम् ।
କାବ୍ୟମୀମାଂସା, ଅଧ୍ୟାୟ ୧୦

କାଳିଦାସଙ୍କ ଜୀବନ ବିଷୟରେ ମଧ୍ୟ ଏ ପର୍ଯ୍ୟନ୍ତ ଯାହା କିଛି ଜଣା ଯାଇଛି, ତଦ୍ୱାରା ମଧ୍ୟ ଉପର୍ଯ୍ୟୁକ୍ତ ଅନୁମାନ ପରିପୁଷ୍ଟ ହେଉଅଛି । କବି କ୍ଷେମେନ୍ଦ୍ର 'ଔଚିତ୍ୟ ବିଚାର ଚର୍ଚ୍ଚା'ରେ ଅଧିକରଣକାରକର ଔଚିତ୍ୟର ଉଦାହରଣ ଦେବାକୁ ଯାଇ ନିମ୍ନଲିଖିତ ଶ୍ଳୋକ କାଳିଦାସଙ୍କର 'କୁନ୍ତଳେଶ୍ୱର ଦୌତ୍ୟ'ନାମକ ଗ୍ରନ୍ଥରୁ ଉଦ୍ଧୃତ କରି ଅଛନ୍ତି—

**इह निवसति मेरुः शेखरः क्ष्माधराणा-**
**मिह विनिहितभाराः सागराः सप्त चान्ये ।**
**इदमहिपतिभोगस्तम्भविभ्राजमानं**
**धरणितलमिहैव स्थानमस्मद्विधानाम् ॥**

ଔଚିତ୍ୟବିଚାରଚର୍ଚ୍ଚା ୧୪୦ ପୃଷ୍ଠା

ଏହି ଶ୍ଳୋକରେ କ୍ଷେମେନ୍ଦ୍ର ସ୍ଥାନ ବର୍ଣ୍ଣିବାର ଔଚିତ୍ୟ ବର୍ଣ୍ଣନା କରି ଅଛନ୍ତି । କାଳିଦାସ ସମ୍ରାଟଙ୍କର ଏକ ମାଣ୍ଡଳିକ ରାଜାଙ୍କ ସଭାକୁ ଯାଇଥିଲେ । ସେ ନିଜ ସ୍ୱାମୀଙ୍କର ସମ୍ମାନର ଅନୁରୂପ ଆସନ ପାଇଲେ ନାହିଁ । ତଥାପି ରାଜ କାର୍ଯ୍ୟ ସମ୍ପାଦନ ଉଦ୍ଦେଶ୍ୟରେ ସେ ଭୂତଳରେ ବସିଲେ । ରାଜସଭାର ପାରିଷଦଗଣ ଯେତେବେଳେ ପରିହାସ କଲେ, ସେତେବେଳେ ସେ ଧୀରଗମ୍ଭୀର-ସ୍ୱରରେ କହିଥିଲେ—'ଶେଷଙ୍କର ଫଣାରୂପ ସ୍ତମ୍ଭ ଉପରେ ପ୍ରତିଷ୍ଠିତ ଏହି ଭୂତଳ କେବଳ ଆମ୍ଭମାନଙ୍କର ଉପବେଶନ-ଯୋଗ୍ୟ ସ୍ଥାନ । କାରଣ ସର୍ବଶ୍ରେଷ୍ଠ ମେରୁ ଓ ସପ୍ତ ମହାସମୁଦ୍ର ଏହି ଆସନ ଉପରେ ବିରାଜମାନ । ସେମାନଙ୍କ ପରି ମଧ୍ୟ ମୋର ଯୋଗ୍ୟତା ।' ଏହି ଦୂତ ବା ରାଜପ୍ରତିନିଧି କିଏ ଏବଂ ସେ କେଉଁ ସମ୍ରାଟଙ୍କର ପ୍ରତିନିଧି ଥିଲେ—ଏହା ନିରୂପଣ କରିବାକୁ

ବର୍ତ୍ତମାନ ଏକ ସାଧନ ମିଳିଅଛି । କେତେକ ବର୍ଷ ପୂର୍ବେ ମାନ୍ଦ୍ରାଜ ଅଞ୍ଚଳରେ ଧାରାଧୀଶ ଭୋଜରାଜଙ୍କର 'ଶୃଙ୍ଗାର ପ୍ରକାଶ' ନାମକ ଏକ ଗ୍ରନ୍ଥ ମିଳିଅଛି । ସେ ଗ୍ରନ୍ଥର ଅଷ୍ଟମ ପ୍ରକାଶରେ **କାଳିଦାସଙ୍କ ମୁଖରେ** ନିମ୍ନଲିଖିତ ଶ୍ଳୋକ କୁହାଯାଇ ଅଛି—

**असकलहसितत्वात्क्षालितानीव कान्त्या**
**मुकुलितनयनत्वाद्व्यक्तकर्णोत्पलानि ।**
**पिबति मधुसुगन्धीन्याननानि प्रियाणां**
**त्वयि विनिहितभारः कुन्तलानामधीशः ।**

(କୁନ୍ତଳ ଦେଶର ରାଜା ତୁମ ଉପରେ ରାଜ୍ୟର ସମସ୍ତ ଭାର ଅର୍ପଣ କରି ସୁରାପାନରେ ସୁରଭିତ ପ୍ରିୟାର ମୁଖ ଚୁମ୍ବନ କରି ରହୁଅଛନ୍ତି, ଯେଉଁ ମୁଖକୁ ମନ୍ଦହାସର ଏକ ପ୍ରଭା ଉଦ୍ଭାସିତ କରୁଅଛି ଏବଂ ଯେଉଁ ମୁଖର କର୍ଣ୍ଣୋତ୍ପଳ ନେତ୍ର ମୁଦ୍ରିତ ହେବାହେତୁ ସ୍ପଷ୍ଟ ଦେଖାଯାଏ) ଏଥିରୁ ପ୍ରମାଣିତ ହୁଏ ଯେ କାଳିଦାସ କେବଳ ଦୂତରୂପେ କୁନ୍ତଳେଶ୍ୱର ରାଜାଙ୍କର ସଭାକୁ ଯାଇଥିଲେ । ଫେରିଲା ପରେ ବିକ୍ରମାଦିତ୍ୟ ଯେତେବେଳେ କାଳିଦାସଙ୍କୁ କୁନ୍ତଳେଶ୍ୱରଙ୍କ ବିଷୟରେ ପ୍ରଶ୍ନ କଲେ, ସେତେବେଳେ ସେ ଉତ୍ତର ଦେଲେ ଯେ କୁନ୍ତଳେଶ୍ୱର ତୁମ ଉପରେ ରାଜ୍ୟଭାର ନ୍ୟସ୍ତ କରି ଅନ୍ତଃପୁରରେ ସ୍ତ୍ରୀମାନଙ୍କ ସହିତ ରଙ୍ଗରସରେ ମତ୍ତ ରହିଛନ୍ତି । ଏହି ଶ୍ଳୋକ ଭୋଜଙ୍କର 'ସରସ୍ୱତୀ କଣ୍ଠାଭରଣ' ଏବଂ ରାଜଶେଖରଙ୍କର 'କାବ୍ୟମୀମାଂସା'ରେ ମଧ୍ୟ ଉଦ୍ଧୃତ ହୋଇଅଛି । ରାଜଶେଖର ଏହି ଶ୍ଳୋକକୁ ଟିକିଏ ଏଆଡ଼ ସେଆଡ଼ ପରିବର୍ତ୍ତନ କରି—

**पिबतु मधुसुगन्धीन्याननानि प्रियाणां ।**
**मयि विनिहित भारः कुन्तलानामधीशः ॥**

କାବ୍ୟମୀମାଂସା, ଅଧ୍ୟାୟ ୧୧

ଅର୍ଥାତ୍ ମୋ ଉପରେ ଭାର ନ୍ୟସ୍ତ କରି କୁନ୍ତଳେଶ୍ୱର ମଧୁସୁରଭିତ ପ୍ରିୟତମାମୁଖ ଉଲ୍‌ଭାବେ ଚୁମ୍ବନ କରନ୍ତୁ—ଏହି ଉତ୍ତର ବିକ୍ରମାଦିତ୍ୟ କାଳିଦାସଙ୍କୁ ଦେଇଥିଲେ ବୋଲି ଲେଖିଛନ୍ତି । ଉପର୍ଯ୍ୟୁକ୍ତ ଦୁଇଟି ଶ୍ଳୋକରୁ ଜଣାଯାଏ—ବିକ୍ରମାଦିତ୍ୟ କାଳିଦାସଙ୍କୁ ନିଜ ଦୂତରୂପେ ମଣ୍ଡଳାଧୀଶ କୁନ୍ତଳେଶ୍ୱରଙ୍କ ସଭାକୁ ପଠାଇ ଥିଲେ । ପ୍ରଥମେ ଅବଶ୍ୟ କାଳିଦାସଙ୍କର ଅପମାନ ହୋଇଥିଲା । ତଥାପି ସେ ସେଠାରେ ରହି ସମସ୍ତ ପରିସ୍ଥିତି ନିରୀକ୍ଷଣ କରି, ଫେରିଆସି ନିଜ ଆଶ୍ରୟଦାତା ସମ୍ରାଟ୍ ବିକ୍ରମାଦିତ୍ୟଙ୍କୁ ଜଣାଇଥିଲେ ଯେ 'କୁନ୍ତଳେଶ୍ୱର ଅପଣଙ୍କ ଉପରେ ରାଜ୍ୟଭାର ନ୍ୟସ୍ତ କରି ସ୍ତ୍ରୀମାନଙ୍କ ସହିତ ବିଳାସରେ ନିମଗ୍ନ ରହିଛନ୍ତି' । ତାହା ଶୁଣି ବିକ୍ରମାଦିତ୍ୟ ଉତ୍ତର ଦେଲେ—'ହେଉ, କିଛି ଯାଏ ଆସେ ନାହିଁ । ମୁଁ ତାଙ୍କର ରାଜ୍ୟ ରକ୍ଷଣରେ ସମର୍ଥ' କାଳିଦାସ ଅସାଧାରଣ ପଣ୍ଡିତ ଏବଂ ଚତୁର ରାଜଦୂତ ଥିଲେ—ଏ ବିଷୟ ତାଙ୍କ ଗ୍ରନ୍ଥମାନ ପ୍ରମାଣ ସ୍ୱରୂପ ଗ୍ରହଣ କରି ଆଗେ ଦେଖାଇ ଦିଆଯିବ । ଅତଏବ ତାଙ୍କୁ ବିକ୍ରମାଦିତ୍ୟ ନିଜ ପ୍ରତିନିଧି ସ୍ୱରୂପ ସାମନ୍ତରାଜାଙ୍କ ପାଖକୁ ପଠାଇ ଥିଲେ—ଏଥିରେ ବିସ୍ମିତ ହେବାର କୌଣସି କାରଣ ନାହିଁ ।

ଏହି କୁନ୍ତଳେଶ୍ୱର କିଏ—ବର୍ତ୍ତମାନ ତାର ବିଚାର କରିବା ଦରକାର । ଏ ବିଷୟରେ ଏପର୍ଯ୍ୟନ୍ତ ଦୁଇଟି ମତ ପ୍ରକାଶ ପାଇଅଛି । ସାଧାରଣତଃ ଦକ୍ଷିଣ ମହାରାଷ୍ଟ୍ର ଏବଂ ମହୀଶୂରର ଉତ୍ତର ଭାଗକୁ 'କୁନ୍ତଳ ଦେଶ' କୁହାଯାଏ । ମହୀଶୂର ରାଜ୍ୟର 'ଶିମୋଗା' ଜିଲ୍ଲାର ତାଳଗୁଣ୍ଡ ନାମକ ସ୍ଥାନରେ କଦମ୍ବବଂଶୀୟ ରାଜାମାନଙ୍କର ଏକ ଶିଳାଲିପି ମିଳିଅଛି । ସେଥିରେ ଉଲ୍ଲିଖିତ ଅଛି ଯେ

'କାକୁସ୍ଥ ବର୍ମା' ନାମକ ଏକ ରାଜା ଗୁପ୍ତରାଜାଙ୍କ ସହିତ ନିଜ ଝିଅର ବିବାହ କରାଇଥିଲେ । ଏଥିରୁ ବମ୍ବାଇ ସେଣ୍ଟ ଜେବିୟର କଲେଜର ଅଧ୍ୟାପକ ଫାଦର ହେରାସ ଅନୁମାନ କରନ୍ତି ଯେ ଚନ୍ଦ୍ରଗୁପ୍ତ ବିକ୍ରମାଦିତ୍ୟ ନିଜ ପୁଅର ସେହି ରାଜାଙ୍କର ଝିଅ ସହିତ ବିବାହ କରାଇବାକୁ ଚାହିଁଥିଲେ ଏବଂ ଏହି ପ୍ରସଙ୍ଗ ସ୍ଥିର କରିବା ପାଇଁ କାଳିଦାସଙ୍କୁ ନିଜ ପ୍ରତିନିଧି ସ୍ୱରୂପ ପଠାଇଥିଲେ ।*

କିନ୍ତୁ ଏ ବିଷୟରେ କୌଣସି ବିଶେଷ ଆଧାର ଦେଖାଯାଏ ନାହିଁ । କାରଣ ଉକ୍ତ ତାଲଗୁଣ୍ଡ ଶିଳା ଲିପିରେ ଅମୁକ ଗୁପ୍ତ ରାଜା କଦମ୍ବ ରାଜ କନ୍ୟାଙ୍କୁ ବରଣ କଲେ ବୋଲି ଉଲ୍ଲେଖ ନାହିଁ । ତାହା ଛଡ଼ା ଉପର୍ଯ୍ୟୁକ୍ତ ଶ୍ଳୋକର ବର୍ଣ୍ଣନାରୁ ଜଣାଯାଏ—ତହିଁରେ କଦମ୍ବରାଜାଙ୍କର ରାଜ୍ୟ ଚନ୍ଦ୍ରଗୁପ୍ତଙ୍କ ନୀତି-ଅନୁସାରେ ସଂଗଠିତ ହେଉଥିଲା ବୋଲି କୌଣସି ପ୍ରମାଣ ମିଳୁନାହିଁ । ଦ୍ୱିତୀୟ କଥା—କାକୁସ୍ଥବର୍ମା ଏବଂ ଚନ୍ଦ୍ରଗୁପ୍ତଙ୍କ ସମୟରେ ୫୦-୬୦ ବର୍ଷର ଅନ୍ତର ଦେଖାଯାଏ । ଏ ହେତୁ ଯେ ଅନୁମାନ ଠିକ୍ ବୋଲି ଆମ୍ଭେ କହି ପାରୁ ନାହିଁ । ପ୍ରଫେସର କ୍ରିଷ୍ଣସ୍ୱାମୀ ଠିକ୍ ଏହାର ବିପରୀତ ମତ ପ୍ରତିପାଦନ କରି ଅଛନ୍ତି । ସେ ଲେଖିଛନ୍ତି—କୁନ୍ତଳେଶ୍ୱର ଚନ୍ଦ୍ରଗୁପ୍ତ ବିକ୍ରମାଦିତ୍ୟଙ୍କର ନାତି ବାକାଟକ ଦ୍ୱିତୀୟ ପ୍ରବରସେନ ହେବେ । ଏହି ମତ ଯୁକ୍ତିସଙ୍ଗତ ବୋଧ ହୁଏ । ଚନ୍ଦ୍ରଗୁପ୍ତ ନିଜ ଦୁହିତା ପ୍ରଭାବତୀ ଗୁପ୍ତାଙ୍କୁ ବାକାଟକ ବଂଶୀୟ ଦ୍ୱିତୀୟ ରୁଦ୍ରସେନଙ୍କୁ ଦେଇଥିଲେ । ଏହି ବିବାହ ଖ୍ରୀଷ୍ଟୀୟ ୩୬୫ ସାଲ ଅଖପାଖ ସମୟରେ ହୋଇଥିଲା ବୋଲି ପ୍ରଫେସର ବିନ୍ସେଣ୍ଟ ସ୍ମିଥ ପ୍ରମାଣିତ କରି

* J. B. O. R. S. Vol, XII—Part IV.

ଅଛନ୍ତି । ରୁଦ୍ରସେନଙ୍କର ମୃତ୍ୟୁ ଅତି ଅଳ୍ପ ସମୟରେ ହୋଇ ଥିଲା । ତାଙ୍କର ଦିବାକର ସେନ ଓ ଦାମୋଦର ସେନ ନାମକ ଦୁଇଟି ପୁତ୍ର ଥିଲେ । ସେମାନେ ନାବାଳକ ଥିଲା ସମୟରେ ସ୍ୱୟଂ ପ୍ରଭାବତୀ-ଗୁପ୍ତା ରାଜ୍ୟ ଶାସନ କରୁଥିଲେ । ପରବର୍ତ୍ତୀରେ ସେ ଦୁହିଙ୍କ ମଧ୍ୟରୁ ଏକ (ଦ୍ୱିତୀୟ)ରାଜକୁମାର ପ୍ରବରସେନ ନାମ ଧାରଣ କରି ସିଂହାସନ ଆରୋହଣ କଲେ । ପ୍ରବରସେନଙ୍କର ବାଲ୍ୟାବସ୍ଥାରେ ଚନ୍ଦ୍ରଗୁପ୍ତଙ୍କର ଆଦେଶ ଅନୁଯାୟୀ ରାଜ୍ୟ ଶାସିତ ହୋଇଥିଲା ଏବଂ ବାକାଟକ ରାଜାମାନେ ଗୁପ୍ତମାନଙ୍କର ଅଧିକାରୀମାନଙ୍କର ଅଧୀନ ଥିଲେ—ଏହା ପ୍ରଭାବତୀଗୁପ୍ତାଙ୍କର ତାମ୍ରଫଳକମାନଙ୍କରୁ ଜଣାଯାଏ । ଏହାର ପ୍ରମାଣ ଏହା ଯେ ପ୍ରଭାବତୀଗୁପ୍ତା ତାମ୍ର-ଫଳକମାନଙ୍କରେ ବାକାଟକରାଜାମାନଙ୍କର ବଂଶାବଳୀ ନ ଦେଇ, ସ୍ୱ ମାତୃବଂଶୀୟ ଗୁପ୍ତରାଜାମାନଙ୍କର ବଂଶାବଳୀ ଦେଇ ଅଛନ୍ତି । ପ୍ରବରସେନଙ୍କ ଶାସନ ସମୟରେ ରାଜ୍ୟର ଅବସ୍ଥା କିପରି ଥିଲା—ଜାଣିବା ଇଚ୍ଛାରେ ବିକ୍ରମାଦିତ୍ୟ କାଳିଦାସଙ୍କୁ ବିଦର୍ଭ ଦେଶକୁ ପଠାଇ ଥିବେ ଏବଂ କାଳିଦାସ ବିଦର୍ଭ ପ୍ରାନ୍ତରେ କେତେ ସମୟ ରହି ଥିବେ ।

ସେହି ରହିବା ସମୟରେ କାଳିଦାସ ବାକାଟକ ରାଜଧାନୀର ସମୀପବର୍ତ୍ତୀ ରାମଗିରିରେ (ଆଧୁନିକ ରାମଟେକ୍)ନିଜର ମେଘଦୂତ କାବ୍ୟ ଲେଖିଥିଲେ ଏବଂ ଦ୍ୱିତୀୟ ପ୍ରବରସେନଙ୍କୁ 'ସେତୁବନ୍ଧ' ରଚନା କରିବାକୁ ସାହାଯ୍ୟ କରି ଥିଲେ— ଏହି ପରି ଅନୁମାନ କରାଯାଇ ପାରେ । କାଳିଦାସଙ୍କର ବାକାଟକ-ବଂଶୀୟ ରାଜାମାନଙ୍କ ସହିତ ଘନିଷ୍ଠ ସମ୍ବନ୍ଧ ଥିବା ହେତୁ ଉପରି ନିର୍ଦ୍ଦିଷ୍ଟ କୁନ୍ତଳେଶ୍ୱର ବାକାଟକ ନୃପତି ଦ୍ୱିତୀୟ ପ୍ରବର-

ସେନ ଥିଲେ ବୋଲି ପ୍ରଫେସର ଐୟାଙ୍ଗର ପ୍ରତିପାଦନ କରି ଅଛନ୍ତି । "ଏହି କୁନ୍ତଳ ଦେଶରେ ଏହି ପ୍ରବରସେନଙ୍କର ରାଜତ୍ୱ କେବେହେଲେ ନ ଥିଲା । ଏହାଙ୍କୁ କପରି 'କୁନ୍ତଳେଶ୍ୱର' କୁହା-ଯିବ"—ଏହିପରି ଆକ୍ଷେପ ଏହି ମତରେ ଅବଶ୍ୟ ହୋଇ ପାରେ । ମାତ୍ର ପ୍ରଫେସର ଐୟାଙ୍ଗାର ନିମ୍ନଲିଖିତ ପ୍ରକାରେ ସେହି ଆକ୍ଷେପର ସମାଧାନ କରିଅଛନ୍ତି । ଅଜନ୍ତାର ଏକ ଲେଖରୁ ଜଣା-ଯାଏ ଯେ ଏହି ପ୍ରବରସେନଙ୍କର ପିତାମହ ପ୍ରଥମ ପୃଥିବୀଷେଣ ଯେଉଁ ଦିନ କୁନ୍ତଳାଧିପତିଙ୍କୁ ପରାସ୍ତ କଲେ,ସେହି ଦିନ ଠାରୁ ବାକା-ଟକ ରାଜାମାନେ 'କୁନ୍ତଳେଶ' ଉପାଧି ଧାରଣ କଲେ । ଉଲ୍ଲିଖିତ ପ୍ରମାଣ ଶ୍ରୀକୃଷ୍ଣକବିଙ୍କର 'ଭରତ ଚରିତ' କାବ୍ୟରୁ ମିଳୁଅଛି । ଏହି କବି ନିଜ କାବ୍ୟର ପ୍ରାରମ୍ଭରେ ପ୍ରାଚୀନ କବିମାନଙ୍କର ସ୍ତୁତି କରିବାକୁ ଯାଇ ପ୍ରବରସେନଙ୍କୁ 'କୁନ୍ତଳେଶ' ରୂପେ ଚିହ୍ନିତ କରି ଅଛନ୍ତି । * ଏହି ସବୁ ପ୍ରମାଣ ଆଧାର ରୂପେ ସ୍ୱୀକାର କରି ପ୍ରବରସେନ କେବଳ 'କୁନ୍ତଳେଶ୍ୱର ଦୌତ୍ୟ'ରେ ଉଲ୍ଲିଖିତ କୁନ୍ତଳେଶ ଥିଲେ ବୋଲି ପ୍ରଫେସର ଐୟାଙ୍ଗର ପ୍ରତିପାଦନ କରି ଅଛନ୍ତି । * II

କିନ୍ତୁ ଐୟାଙ୍ଗରଙ୍କର ଏହି ମତ ଉପରେ ଅନେକ ଆକ୍ଷେପ କରାଯାଇ ପାରେ । ଗୁପ୍ତ ଏବଂ ବାକାଟକ ବଂଶ ମଧ୍ୟରେ

*जलाशयस्यान्तरगाधसत्त्वमलब्धबन्धं गिरिचौर्य्यवृत्त्या ।
लोकेष्वलं कान्तमपूर्वसेतुं बबन्ध कीर्त्या सह कुन्तलेशः ॥

ଭରତ ଚରିତ, ସର୍ଗ ଶ୍ଲୋକ । ଏଥିରେ ଅନେକ ଛେଦ ଶ୍ଳିଷ୍ଟ ।

* II. Aiyangar : Ancient India, Vol, i, 71-74 ପୃଷ୍ଠା ଦ୍ରଷ୍ଟବ୍ୟ ।

ଏତେ ଦୂର ଘନିଷ୍ଠ ସମ୍ବନ୍ଧ ଥିଲାବେଳେ ବାକାଟକ ରାଜାମାନଙ୍କର ସଭାରେ ପ୍ରାଥମିକ ମିଳନରେ କାଳିଦାସଙ୍କର ସେପରି ଅପମାନ ହେବା ଅସମ୍ଭବ ବୋଧ ହୁଏ । ତାହା ଛଡ଼ା ଯଦ୍ୟପି ବାକାଟକ ରାଜାମାନେ କୁନ୍ତଳରାଜାଙ୍କୁ ପରାସ୍ତ କରିଥିଲେ, ତଥାପି ସେମାନେ କୁନ୍ତଳେଶ ଉପାଧି ଧାରଣ କରିଥିଲେ—ଏ ବିଷୟରେ କୌଣସି ପ୍ରମାଣ ମିଳୁନାହିଁ । ଏହାର ବିରୋଧରେ ତାଙ୍କର ଶେଷ ବାଲା-ଘାଟ ତାମ୍ରଫଳକରେ ବାକାଟକ ନୃପତି ନରେନ୍ଦ୍ରସେନଙ୍କର କୁନ୍ତଳରାଜକନ୍ୟାଙ୍କ ସହିତ ବିବାହ ହେବାର ଉଲ୍ଲେଖ ଅଛି । ସେଥିରୁ ବାକାଟକ ଏବଂ କୁନ୍ତଳେଶ ବିଭିନ୍ନ ବ୍ୟକ୍ତି— ଏ ବିଷୟରେ ସନ୍ଦେହ ନାହିଁ । ଶ୍ରୀକୃଷ୍ଣ କବିଙ୍କର ସମୟ ଏ ପର୍ଯ୍ୟନ୍ତ ନିଷ୍ଚିତରୂପେ ଜଣାଯାଇ ନାହିଁ । ତେବେ ତାଙ୍କର କାବ୍ୟ ଖ୍ରୀ... ପ୍ରାଚୀନ ପରି ଦେଖାଯାଏ ନାହିଁ, ଏ ହେତୁ ତାହା ଏହି ବିବାଦା-ସ୍ପଦ ବିଷୟର ମୀମାଂସାଯୁକ୍ତ ରୂପେ ଧରାଯାଇ ପାରିବ ନାହିଁ ।

ଲେଖକଙ୍କର ଏତଦ୍‌ବିଷୟକ ଅନୁସନ୍ଧାନଫଳରେ ଏହି ବିଷୟରେ ନୂତନ ଆଲୋକପାତ ହୋଇଅଛି । ସତାରା, କୋହ୍ଲାପୁର ଓ ଦୌଲତପ୍ରଦେଶରେ ଗତ କେତେକ ବର୍ଷମଧ୍ୟରେ ତିନି ଗୁଚ୍ଛେଟି ତାମ୍ରଫଳକ ମିଳିଅଛି । ଏ ସମସ୍ତ ପୁଙ୍ଖାନୁପୁଙ୍ଖ-ରୂପେ ବିଚାର କଲେ ଜଣାଯାଏ—ଖ୍ରୀଷ୍ଟୀୟ ଚତୁର୍ଥ ଶତାବ୍ଦୀରେ ଦକ୍ଷିଣ ମହାରାଷ୍ଟ୍ରର ମାନପୁରନାମକ ନଗରରେ ଏକ ରାଷ୍ଟ୍ର-କୂଟବଂଶ ରାଜତ୍ୱ କରୁଥିଲା । ମାନାଙ୍କ ଏହି ବଂଶର ମୂଳ ପୁରୁଷ ଥିଲେ । ସେ ନିଜ ନାମରେ ମାନପୁର ନାମକ ନଗର ସ୍ଥାପନ କରି, ତାକୁ ନିଜର ରାଜଧାନୀ କରିଥିଲେ । କୋହ୍ଲାପୁର ତାମ୍ରଫଳ-କରେ ତାଙ୍କୁ 'ଶ୍ରୀମତ୍କୁନ୍ତଳାନାଂ ପ୍ରଶାସିତା (ଅର୍ଥାତ୍ ସମୃଦ୍ଧ

କୁନ୍ତଳ ଦେଶରେ ଅଧିପତି) ବୋଲି କୁହା ଯାଇ ଅଛି । କୁନ୍ତଳ-ଦେଶରେ କୃଷ୍ଣା ନଦୀର ଅବବାହିକା ଓ ତାର ଦକ୍ଷିଣ ପ୍ରଦେଶ ଅନ୍ତର୍ଭୁକ୍ତ ଥିଲା ।

**विख्यातकृष्णवर्णे तैलस्नेहोपलब्धसरलत्वे ।**
**कुन्तलविषये नितरां विराजते मल्लिकामोदः ।**

ଏହା ଉତ୍ତର ଗୁଲ୍‌କାଁ ଅଧିପତି ଜୟସିଂହ ଅଥବା ମଲ୍ଲିକା-ମୋଦ ବର୍ଣ୍ଣନ ବିଷୟକ ଶ୍ଳେଷ ପୂର୍ଣ୍ଣ ସୁନ୍ଦର ଶ୍ଳୋକ । ଏହି ଶ୍ଳୋକରେ କୃଷ୍ଣବର୍ଣ୍ଣ ବା କୃଷ୍ଣାନଦୀ କୁନ୍ତଳ ଦେଶରେ ପ୍ରବାହିତ ବୋଲି ସ୍ପଷ୍ଟ ରୂପେ ନିର୍ଦ୍ଦେଶ କରାଯାଇ ଅଛି ! ଏହି ତାମ୍ରଫଳକରେ ନିର୍ଦ୍ଦିଷ୍ଟ ଗ୍ରାମମାନଙ୍କର ପରିଚୟ ମିଳେ ଯେ ସତାର ଜିଲ୍ଲା ରାଷ୍ଟ୍ରକୂଟ ରାଜ୍ୟରେ ସମାବିଷ୍ଟ ଥିଲା । ଅନ୍ୟ ତାମ୍ରଫଳକମାନଙ୍କର ପ୍ରାପ୍ତିସ୍ଥାନମାନଙ୍କରୁ ଏହି ରାଜବଂଶର ରାଜ୍ୟ ଦକ୍ଷିଣ ମହାରାଷ୍ଟ୍ରରେ ସତାରା, କୋହ୍ଲାପୁର, ସୋଲ୍‌ପୁର ପ୍ରଦେଶରେ ଥିଲା ବୋଲି ସ୍ପଷ୍ଟ ଜଣାଯାଏ । ଏହାଙ୍କର ରାଜଧାନୀ ମାନପୁର ସତାରା ଜିଲ୍ଲାର ମାଣ ତାଲୁକାର ମୁଖ୍ୟ ଗ୍ରାମ ମାଣ ହେବ ।

ଉପର ନିର୍ଦ୍ଦିଷ୍ଟ କୋହ୍ଲାପୁର ତାମ୍ରପଟ୍ଟର ଲିପି ଓ କାଳ-ନିର୍ଦ୍ଦେଶରୁ ଅନୁମାନ ହୁଏ ଯେ ଏହି ରାଜବଂଶ ଖ୍ରୀଷ୍ଟୀୟ ଚତୁର୍ଥ ଶତାବ୍ଦୀରେ ଦକ୍ଷିଣ ମହାରାଷ୍ଟ୍ରରେ ରାଜତ୍ୱ କରୁଥିଲା । ଏହି ରାଜ୍ୟ ଉତ୍ତରରେ ଗୋଦାବରୀ ନଦୀ ପର୍ଯ୍ୟନ୍ତ ବିସ୍ତୃତ ଥିଲା । ଗୋଦାବରୀ ନଦୀର ଉତ୍ତର ଦିଗରେ ବିଦର୍ଭ ଦେଶରେ ବାକାଟକମାନଙ୍କର ଅଧିକାର ଥିଲା । ଖ୍ରୀଷ୍ଟୀୟ ଚତୁର୍ଥ ଶତାବ୍ଦୀରେ ବାକାଟକବଂଶର ଦୁଇଟି ଶାଖା ଗୋଦାବରୀର ଉତ୍ତର ପ୍ରଦେଶରେ ରାଜତ୍ୱ କରୁ-

ଥିଲେ । ନାଗପୁର ସମୀପବର୍ତ୍ତୀ ନନ୍ଦିବର୍ଦ୍ଧନ ଜ୍ୟେଷ୍ଠ ଶାଖାର ରାଜଧାନୀ ଥିଲା ଏବଂ ଏହି ରାଜ୍ୟରେ ଉତ୍ତର ବରାର ଓ ମଧ୍ୟ ପ୍ରଦେଶର ନାଗପୁର, ବର୍ଦ୍ଧା, ଭଣ୍ଡାରା, ଛିନ୍ଦବାଡ଼ା, ବୌତୁଲ ଓ ବାଲାଘାଟ ପ୍ରଭୃତି ଜିଲ୍ଲା ଥିଲା । ବତ୍ସଗୁଲ୍ମ (ଅକୋଲା ଜିଲ୍ଲାର ବାଶୀମ) ଦ୍ୱିତୀୟ ଶାଖାର ରାଜଧାନୀ ଥିଲା ଏବଂ ଏହି ରାଜ୍ୟରେ ଅଜନ୍ତା ପର୍ବତମାଳା ଓ ଗୋଦାବରୀ ନଦୀ ତୀରସ୍ଥ ପ୍ରଦେଶ ଅନ୍ତର୍ଭୁକ୍ତ ଥିଲା । ବତ୍ସଗୁଲ୍ମର ବାକାଟକ ଏବଂ ମାନପୁରର ରାଷ୍ଟ୍ରକୂଟମାନଙ୍କର ରାଜ୍ୟ ଲଗାଲଗି ଥିବାରୁ ଉଭୟଙ୍କ ମଧ୍ୟରେ ବାଦବିବାଦ ବାରମ୍ବାର ଉପୁଜୁ ହେଉଥିଲା—ଏଥିରେ ଆଶ୍ଚର୍ଯ୍ୟର ବିଷୟ କିଛି ନାହିଁ । ଏହାର ପ୍ରମାଣ ଉଭୟଙ୍କର ଲେଖମାନଙ୍କରୁ ମିଳୁଅଛି । ବତ୍ସଗୁଲ୍ମର ବାକାଟକମାନଙ୍କର ଏକ ଲେଖ ଅଜନ୍ତାର ଷୋଡ଼ଶ ଗୁମ୍ଫାରେ ବିଦ୍ୟମାନ । ଏଥିରେ ବିନ୍ଧ୍ୟସେନ ରାଜା କୁନ୍ତଳେଶଙ୍କୁ ପରାସ୍ତ କରିଥିଲେ ବୋଲି ଉଲ୍ଲିଖିତ ହୋଇ ଅଛି । ଏହାର ବିପରୀତ ଭାବେ କୋହ୍ଲାପୁର ତାମ୍ରଫଳକର ମାନାଙ୍କ ରାଜା ବିଦର୍ଭ ଓ ଅଶ୍ମକ ଦେଶ ଜୟ କରିଥିଲେ ବୋଲି ବର୍ଣ୍ଣିତ ହୋଇଅଛି । ଅଶ୍ମକଦେଶ ଗୋଦାବରୀ ତୀରରେ ଥିଲା । ବିଦର୍ଭ ବତ୍ସଗୁଲ୍ମର ବାକାଟକମାନଙ୍କ ଦ୍ୱାରା ଶାସିତ ଦକ୍ଷିଣ ବିଦର୍ଭ ହୋଇପାରେ ଅର୍ଥାତ୍ ଏହି ଦୁଇ ରାଜବଂଶଙ୍କୁ ସମକାଳୀନ ମାନି ନେଲେ କୌଣସି ଆପତ୍ତି ନାହିଁ ।

ଦ୍ୱିତୀୟ ଚନ୍ଦ୍ରଗୁପ୍ତ ବିକ୍ରମାଦିତ୍ୟ ଯେପରି ବାକାଟକମାନଙ୍କର ଆଶ୍ରୟ ଥିଲେ ସେପରି ରାଷ୍ଟ୍ରକୂଟମାନଙ୍କର ମଧ୍ୟ ସମ୍ଭବତଃ ଆଶ୍ରୟ ଥିଲେ । ଏକ ସମୟରେ ସେ ଏହି ମାନଙ୍କ ସହିତ ବିବାହସମ୍ପର୍କ ମଧ୍ୟ ସ୍ଥାପନ କରିଥିଲେ । ରାଷ୍ଟ୍ରକୂଟ ନୃପତି ଦେବରାଜ ଚନ୍ଦ୍ରଗୁପ୍ତଙ୍କୁ

ସମକାଳୀନ ଥିଲେ । ଗ୍ରିଷ୍ଟ୍ରକୁଟମାନଙ୍କର ତାମ୍ରଫଳକରେ ଦେବରାଜ ଇନ୍ଦ୍ରଙ୍କ ସହିତ ଏହାଙ୍କର ତୁଳନା କରାଯାଇ ଅଛି । ସମ୍ଭବତଃ ସେ ଇନ୍ଦ୍ରଙ୍କ ପର ବିଳାସପରାୟଣ ଥିଲେ । ବୋଧ ହୁଏ—ଏହାଙ୍କ ସଭାକୁ କାଳିଦାସ ଦୂତରୂପରେ ପ୍ରେରିତ ହୋଇଥିଲେ । କାଳିଦାସ ଫେରି ଆସି ଜଣାଇଥିଲେ ଯେ କୁନ୍ତଳେଶ୍ୱର ବିଷୟୋପଭୋଗରେ ମଗ୍ନ ରହି ଆପଣଙ୍କ (ବିକ୍ରମାଦିତ୍ୟଙ୍କ) ଉପରେ ରାଜ୍ୟରକ୍ଷା ଭାର ନ୍ୟସ୍ତ କରିଛନ୍ତି । ଚନ୍ଦ୍ରଗୁପ୍ତ କାଳିଦାସଙ୍କର ଶ୍ଳୋକକୁ କିଛିଏ ବଦଳାଇ 'ମୋ ଉପରେ ରାଜ୍ୟଭାର ନ୍ୟସ୍ତ କରି କୁନ୍ତଳେଶ ବିଳାସମଗ୍ନ ହୁଅନ୍ତୁ' ବୋଲି ଉତ୍ତର ଦେଇଥିଲେ—ଏହା କାବ୍ୟମୀମାଂସାଦି ଗ୍ରନ୍ଥ-ମାନଙ୍କରୁ ଜଣାଯାଏ ।

ବାକାଟକ ଏବଂ ରାଷ୍ଟ୍ରକୂଟ ଏହି ଦୁଇ ବଂଶ ଚନ୍ଦ୍ରଗୁପ୍ତଙ୍କ ଆଶ୍ରୟରେ ଥିବାରୁ ଉଭୟଙ୍କ ମଧ୍ୟରେ ସ୍ନେହ ସମ୍ବନ୍ଧ ଜାତ ହୋଇଥିଲା ଏବଂ ଏହାର ପରିଣାମସ୍ୱରୂପ ବାକାଟକ ନୃପତି ନରେନ୍ଦ୍ରସେନଙ୍କର କୁନ୍ତଳରାଜକୁମାରୀ ଅଜ୍ଝିତ ଭଟ୍ଟାରିକାଙ୍କ ସହିତ ବିବାହ ହୋଇ ଥିଲା—ଏହି ପର ବାଳାଘାଟ ତାମ୍ରଫଳକରୁ ଜଣାଯାଏ ।

ଫଳତଃ 'କୁନ୍ତଳେଶ୍ୱରଦୌତ୍ୟ'ରୁ ଉଦ୍ଧୃତ ଶ୍ଳୋକରେ କାଳିଦାସଙ୍କ ଚରିତ ବିଷୟରେ ଯେଉଁ ପ୍ରସଙ୍ଗ ବର୍ଣ୍ଣିତ ହୋଇ ଅଛି, ତାହା କାଳିଦାସ ଓ ଚନ୍ଦ୍ରଗୁପ୍ତ ସମକାଳୀନ ଏହି ମତର ପୋଷକ ।*

* ଏହି ବିଷୟର ବିସ୍ତୃତ ବିବରଣୀ ଅମର 'କାଳିଦାସାଚେଂ କୁନ୍ତଳେଶ୍ୱର ଦୌତ୍ୟ' ନାମକ ମରାଠୀ ପ୍ରବନ୍ଧରେ ମିଳିବ । ସଂଶୋଧନ ମୁକ୍ତାବଳୀ ୨, ୭୫-୭୫ ଦ୍ରଷ୍ଟବ୍ୟ

କାଳିଦାସ ଚନ୍ଦ୍ରଗୁପ୍ତଙ୍କର ସମକାଳୀନ ଥିଲେ ଏ ବିଷୟରେ ଆଉ ଏକ ପ୍ରମାଣ ଦିଆଯାଇ ପାରେ । 'ସେତୁବନ୍ଧ' ବା 'ରାବଣ ବହୋ' (ରାବଣବଧ) ଏକ ପ୍ରଧାନ ପ୍ରସିଦ୍ଧ ପ୍ରାକୃତ ଭାଷାର କାବ୍ୟ । ବାଣଭଟ୍ଟ ହର୍ଷଚରିତ ପ୍ରାରମ୍ଭରେ ଏହି ପ୍ରାକୃତ କାବ୍ୟର ପ୍ରଶଂସା କରି ଅଛନ୍ତି । ଏ ହେତୁ ଖ୍ରୀଷ୍ଟୀୟ ସପ୍ତମ ଶତାବ୍ଦୀ ପୂର୍ବରୁ ତାହା ରଚିତ ହୋଇଥିଲା ଏଥିରେ ସନ୍ଦେହ ନାହିଁ । ଏହି କାବ୍ୟ ବିକ୍ରମାଦିତ୍ୟଙ୍କ ଆଜ୍ଞାରେ ପ୍ରବରସେନଙ୍କ ନାମରେ କାଳିଦାସ ଲେଖିଥିଲେ ବୋଲି ଏକ ଟୀକାକାରଙ୍କର ଉଲ୍ଲେଖ ପାଠକମାନଙ୍କର ମନେ ଥିବ । ଏହି ପ୍ରବରସେନ କଦାପି କାଶ୍ମୀରର ରାଜା ହୋଇ ପାରିବେ ନାହିଁ । ଚନ୍ଦ୍ରଗୁପ୍ତ-ବିକ୍ରମାଦିତ୍ୟ ଓ ବାକାଟକ (ଦ୍ୱିତୀୟ) ପ୍ରବରସେନ ଏ ଦୁହିଙ୍କର ସମ୍ବନ୍ଧ ବିଚାର କଲେ ଏହି କାବ୍ୟ ଚନ୍ଦ୍ରଗୁପ୍ତଙ୍କର ଆଜ୍ଞାରେ କାଳିଦାସ ଲେଖିଥିଲେ ବା ସଂଶୋଧନ କରିଥିଲେ ବୋଲି ପ୍ରତୀତ ହୁଏ । ଏହି କାବ୍ୟର ପ୍ରଥମ ଆଶ୍ୱାସର ନବମ ପଦ୍ୟରେ ଉଲ୍ଲେଖ ହୋଇଅଛି ଯେ ଏହି କାବ୍ୟ ରାଜା ରାଜସିଂହାସନରେ ବସିଲା ପରେ ପରେ ଲେଖିଥିଲେ । ଏହି ଶ୍ଳୋକର ଟୀକା କରିବାକୁ ଯାଇ ଟୀକାକାର ରାମଦାସ ପ୍ରବରସେନଙ୍କୁ 'ଭୋଜଦେବ' ନାମରେ ଅଭିହିତ କରି ଅଛନ୍ତି । ବିଦର୍ଭଦେଶର ରାଜବଂଶ ଭୋଜ ନାମରେ ପରିଚିତ ଥିଲା—ଏହା କାଳିଦାସଙ୍କ ରଘୁବଂଶରୁ ମଧ୍ୟ ସ୍ପଷ୍ଟ ହୁଏ । ପ୍ରବରସେନଙ୍କ ବାଲ୍ୟାବସ୍ଥାରେ କାଳିଦାସ କେତେକ ସମୟ ବାକାଟକ ରାଜଧାନୀରେ ଅତିବାହିତ କରି ଥିଲେ ବୋଲି ଆମେ ପୂର୍ବରୁ କହି ଅଛୁଁ । ଏ ହେତୁ ଏହି ଅନୁମାନ ସଙ୍ଗତ ବୋଧ ହୁଏ ।

କାଳିଦାସ ଦ୍ୱିତୀୟ ଚନ୍ଦ୍ରଗୁପ୍ତ ବିକ୍ରମାଦିତ୍ୟଙ୍କ ଆଶ୍ରୟରେ ଥିଲେ ବୋଲି ସ୍ୱୀକାର କଲେ, ତାଙ୍କର ଗ୍ରନ୍ଥମାନଙ୍କରେ ତାତ୍କାଳିକ ରାଜକୀୟ ପରିସ୍ଥିତିର ପ୍ରତିବିମ୍ବ କିପରି ପ୍ରତିଫଳିତ ତାହା ଦେଖାଇ ଦିଆଯାଇ ପାରେ । ମାଳବିକାଗ୍ନିମିତ୍ର ନାଟକ, ବାକାଟକ ଅଧିପତି ଦ୍ୱିତୀୟ ରୁଦ୍ରସେନ ଓ ଚନ୍ଦ୍ରଗୁପ୍ତଙ୍କର ପୁତ୍ରୀ ପ୍ରଭାବତୀ ଗୁପ୍ତାଙ୍କ ବିବାହ ସମୟରେ ଲେଖା ହୋଇଥିବ । ମୂଳରେ ଦେଖାଇ ଦିଆଯାଇଛି—ବାକାଟକଦରବାରରେ ଥିଲା ସମୟରେ କାଳିଦାସ ମେଘଦୂତ ରଚନା କରିଥିଲେ ଏବଂ ସେତୁବନ୍ଧ କାବ୍ୟ ଲେଖି-ଥିଲେ ବା ସଂଶୋଧନ କରିଥିଲେ । 'ବିକ୍ରମୋର୍ବଶୀୟ' ନାଟକରେ ବିକ୍ରମାଦିତ୍ୟଙ୍କର ନାମର ସମ୍ବନ୍ଧ ସ୍ପଷ୍ଟ ଭାବେ ଦେଖାଯାଏ । ଚନ୍ଦ୍ରଗୁପ୍ତଙ୍କର ପୁତ୍ର କୁମାରଗୁପ୍ତଙ୍କର ଜନ୍ମୋତ୍ସବ ପ୍ରସଙ୍ଗରେ କୁମାରସମ୍ଭବ ଲିଖିତ ହୋଇଥିବ । ରଘୁବଂଶର ରଘୁଙ୍କର ଦିଗ୍‌ବିଜୟ ବର୍ଣ୍ଣନା କରି ସମ୍ଭବତଃ ଚନ୍ଦ୍ରଗୁପ୍ତଙ୍କର ଦିଗ୍‌ବିଜୟ ବର୍ଣ୍ଣନା ମନରେ ଲକ୍ଷ୍ୟ ରଖି ଲେଖିଛନ୍ତି । ଏତିକି ମଧ୍ୟ ମନେ ରଖିବାକୁ ହେବ—ଏହି ପ୍ରକାର ସମ୍ବନ୍ଧ ଅନ୍ୟ କୌଣସି ରାଜାଙ୍କ ସହିତ ଖାପ ଖାଇବ ନାହିଁ ।

ଉପର୍ଯ୍ୟୁକ୍ତ ବିବେଚନାରୁ କାଳିଦାସ ଦ୍ୱିତୀୟ ଚନ୍ଦ୍ରଗୁପ୍ତଙ୍କର ଆଶ୍ରୟରେ ଥିଲେ ବୋଲି ସ୍ପଷ୍ଟ ହୁଏ । ଚନ୍ଦ୍ରଗୁପ୍ତ ଖ୍ରୀଷ୍ଟୀୟ ୩୮୦ ଠାରୁ ୪୧୩ ସାଲ ପର୍ଯ୍ୟନ୍ତ ରାଜତ୍ୱ କରିଥିଲେ । ସୁତରାଂ କାଳିଦାସ ଚତୁର୍ଥ ଶତାବ୍ଦୀର ଶେଷ ଭାଗରେ ବା ପଞ୍ଚମ ଶତାବ୍ଦୀର ପ୍ରାରମ୍ଭରେ ଥିଲେ ।



# ୨ କାଳିଦାସ କାଳୀନ ପରିସ୍ଥିତି

**महीतलस्पर्शनमात्रभिन्नमृद्धं हि राज्यं पदमैन्द्रमाहुः ।**

ରଘୁବଂଶ ୨-୫୦ ।

(ସମସ୍ତ ସମୃଦ୍ଧିରେ ପରିପୂର୍ଣ୍ଣ ରାଜ୍ୟ ଓ 'ଇନ୍ଦ୍ରପଦ' ସମାନ, ଏତିକିମାତ୍ର ଭେଦ ଯେ ରାଜ୍ୟ ପୃଥିବୀରେ ଏବଂ ଇନ୍ଦ୍ରପଦ ସ୍ୱର୍ଗରେ)

ଗତ ପ୍ରକରଣରେ ଆମେ କାଳିଦାସଙ୍କର ସମୟ ସ୍ଥିର କରି ଅଛୁଁ । ସେ ସମୟରେ କାଳିଦାସଙ୍କ ଭଳି ଅଦ୍ୱିତୀୟ କବି ଜାତ ହେବାରେ କି କି ବାତାବରଣ କାରଣ ହୋଇଥିଲା—ତାହା ପରୀକ୍ଷା କରିବା ସକାଶେ ତାତ୍କାଳୀନ ରାଜନୈତିକ, ଧାର୍ମିକ ଓ ସାମାଜିକ ପରିସ୍ଥିତି କିପରି ଥିଲା—ତାହାର ସିଂହାବଲୋକନ କରିବା ଆବଶ୍ୟକ ।

ତାତ୍କାଳିକ ପରିସ୍ଥିତି ଲୋକମାନଙ୍କ କାର୍ଯ୍ୟରେ କେତେଦୂର ପ୍ରଭାବ ପକାଏ—ଏ ବିଷୟରେ ଦୁଇଟି ମତ ଦେଖାଯାଏ । କେତେକ ଲୋକ କହନ୍ତି—ମହାପୁରୁଷ ଈଶ୍ୱରଙ୍କର ଅବଦାନ । ସେ କୌଣସି ସମୟ ବିଶେଷର ପରିସ୍ଥିତି ହେତୁ ଉତ୍ପନ୍ନ ହୁଅନ୍ତି ବୋଲି ଭାବିବା ଭ୍ରମ । ସେପରି କହିଲେ ମାନିବାକୁ ହେବ ପୁଷ୍ପର ସୌରଭ ଗୃହଅଟ୍ଟେ ବିକୀର୍ଣ୍ଣ କରିବା ସକାଶେ ତାହାର ଉଦ୍ଭବ ଉଦ୍ୟାନରେ କେବଳ ହେବା ଉଚିତ । କାଳିଦାସ ନିଜେ କହନ୍ତି—ସମୟ ସମୟରେ ବନର ଲତା ମଧ୍ୟ ନିଜ

ଉତ୍ତମଗୁଣରେ ଉଦ୍ୟାନର ଲତାର ଗୌରବ ଦୂର କରିଦେଇ ଥାଏ । ଏହି ଉକ୍ତି ଅନେକ ଅଂଶରେ ସତ୍ୟ । ଶ୍ରେଷ୍ଠ ମନୁଷ୍ୟ-ଠାରେ ଦୈବ ଅଂଶ ଥାଏ—ଏହା ଭଗବାନ୍ ଗୀତାରେ କହି ଅଛନ୍ତି । ଆମେ ଦେଖିବାକୁ ପାଉଁ ସମୟ ସମୟରେ କେତେ ଲୋକ ନିଜ ଗୁଣ ପ୍ରଭାବରେ ପ୍ରତିକୂଳ ପରିସ୍ଥିତିକୁ ଅନୁକୂଳ କରି ଦିଅନ୍ତି । ତଥାପି ତାଙ୍କର କାର୍ଯ୍ୟରେ ତାହାଙ୍କ ପରିସ୍ଥିତିର ପ୍ରଭାବ ଏକାବେଳେ ପଡ଼େ ନାହିଁ ବୋଲି କହିଦେବ ନାହିଁ । ସଂସାରର ବିଚିତ୍ରତା ବିଷୟରେ ସୁପ୍ରସିଦ୍ଧ ବିଦ୍ୱାନ୍ ଏମର୍ସନ୍ କହିଛନ୍ତି—ଏକଆଡ଼େ ଯଦ୍ୟପି ଦେଖିବାକୁ ପାଉଁ—ଅତ୍ୟନ୍ତ କୃଶ ଶରୀର ବ୍ୟକ୍ତି ନଇଁ ପଡ଼ି ମଧ୍ୟ ବୋଝର ଭାର ବହନ କରିବାକୁ ଉଦ୍ୟତ ଅନ୍ୟଆଡ଼େ ଆମେ ଦେଖୁ—ସୁନ୍ଦର ହୃଷ୍ଟପୁଷ୍ଟ ସୁସ୍ଥ ବ୍ୟକ୍ତି ଏକ ଗଜ କନା ମଧ୍ୟ ବହିବାକୁ ପଶ୍ଚାତ୍ପଦ । ଏଥିରୁ ଏତିକି ଜଣାଯାଏ ଯେ ଯେଉଁ ପର୍ଯ୍ୟନ୍ତ ମନୁଷ୍ୟକୁ ନିଜର ଅନୁକୂଳ ପରିସ୍ଥିତି ମିଳିନାହିଁ, ସେ ପର୍ଯ୍ୟନ୍ତ ତାର ଗୁଣମାନଙ୍କର ସ୍ଫୂର୍ତ୍ତିବିକାଶ ସମ୍ଭବପର ନୁହେଁ । ଯଥା—ବନର ଲତା ନିଜ ପୁଷ୍ପମାନଙ୍କର ସୌରଭରେ ଚତୁର୍ଦିଗ ସୁବାସିତ କରୁଅଛନ୍ତି, ମାତ୍ର କେତେକ ବିରଳ ରସିକମାତ୍ର ତାହାର ଗୁଣଗ୍ରାହକ ହୋଇଥାନ୍ତି । ସେହି ପରି କାଳିଦାସଙ୍କ ପୂର୍ବବର୍ତ୍ତୀ କାଳରେ ଊଣା ଅଧିକ ଅବଶ୍ୟ କେତେକ ପ୍ରତିଭାଶାଳୀ ଗ୍ରନ୍ଥକାର ଥିବେ । ମାତ୍ର **'निराश्रया न शोभन्ते पण्डिता वनिता लताः'** ଏହି ଉକ୍ତି ଅନୁଯାୟୀ ସେମାନେ କୌଣସି ଗୁଣଗ୍ରାହୀ ରସିକ ରାଜାଙ୍କର ଆଶ୍ରୟ ନ ପାଇବାରୁ ବା ଲୋକ ରୁଚିର ସାହାଯ୍ୟ ନ ମିଳିବାରୁ ସେମାନଙ୍କର ଗ୍ରନ୍ଥମାନଙ୍କର ନାମ ଆଜି ଲୁପ୍ତ ହୋଇ ଯାଇ ଅଛି । କାଳିଦାସଙ୍କଦ୍ୱାରା ଯେଉଁ ସବୁ

ଉତ୍କୃଷ୍ଟଗ୍ରନ୍ଥ ରଚିତ ହୋଇ ଅଛି, ସେ ସମସ୍ତର ରଚନାରେ ନିଶ୍ଚୟ ତାତ୍କାଳିକ ପରିସ୍ଥିତିର ଅନୁକୂଳ ପ୍ରଭାବ ପଡ଼ିଥିଲା ।

କାଳିଦାସଙ୍କ ସମୟର ପରିସ୍ଥିତିର ସମ୍ୟକ୍ ଅବବୋଧ ସକାଶେ ତାଙ୍କର ପୂର୍ବବର୍ତ୍ତୀ କାଳର ସିଂହାବଲୋକନ କରିବା ନିତାନ୍ତ ଆବଶ୍ୟକ । ପ୍ରାମାଣିକ ଐତିହାସିକ ସାଧନ ବଳରେ ଭାରତବର୍ଷର ଇତିହାସ ଖ୍ରୀଷ୍ଟପୂର୍ବ ଚତୁର୍ଥ ଶତାବ୍ଦୀ ଠାରୁ ସ୍ଥୂଳ-ରୂପରେ ମିଳୁଅଛି । ଖ୍ରୀଷ୍ଟପୂର୍ବ ୩୨୭ ସାଲରେ ସିକନ୍ଦର ଭାରତ-ବର୍ଷ ଆକ୍ରମଣ କରିଥିଲେ । ସେ ସମୟରେ ଭାରତର ଉତ୍ତରାଞ୍ଚଳରେ ନନ୍ଦରାଜାଙ୍କର ଆଧିପତ୍ୟ ଥିଲା । ପାଟଳୀପୁତ୍ର ତାଙ୍କର ରାଜଧାନୀ ଥିଲା । ସିକନ୍ଦର ପ୍ରତ୍ୟାବର୍ତ୍ତନ କଲା ପରେ ଚନ୍ଦ୍ରଗୁପ୍ତ ବିଷ୍ଣୁଗୁପ୍ତ ( ଚାଣକ୍ୟ ) ନାମକ ମନ୍ତ୍ରୀଙ୍କ ସାହାଯ୍ୟରେ ମଗଧ ଦେଶ ଆକ୍ରମଣ କରି ପାଟଳୀପୁତ୍ରର ରାଜସିଂହାସନରେ ଆରୋହଣ କରିଥିଲେ । ଚନ୍ଦ୍ରଗୁପ୍ତ ନିଜରାଜ୍ୟରେ ଉତ୍ତମ ବ୍ୟବସ୍ଥା କରିଥିଲେ ଏବଂ ଅସୀମ ବୀରତା ସହକାରେ ଯବନ ସେନାପତି ସେଲ୍ୟୁକସ୍‌କୁ ପରାସ୍ତ କରି ବଲୋଚିସ୍ଥାନ, ଆଫ୍‌ଗାନିସ୍ଥାନ ଓ ପଞ୍ଜାବ ଏହି ତିନୋଟି ପ୍ରଦେଶ ନିଜରାଜ୍ୟରେ ମିଶାଇ ଥିଲେ । ତାଙ୍କର ମନ୍ତ୍ରୀ ଚାଣକ୍ୟ (କୌଟିଲ୍ୟ)ଙ୍କର 'ଅର୍ଥଶାସ୍ତ୍ର' ନାମକ ଉଚ୍ଚକୋଟିର ରାଜନୈତିକ ଗ୍ରନ୍ଥ ବର୍ତ୍ତମାନ ପ୍ରକାଶିତ ହୋଇ ଅଛି । ଚନ୍ଦ୍ରଗୁପ୍ତଙ୍କ ପରେ ତାଙ୍କର ପୁତ୍ର ବିନ୍ଦୁସାର ଏବଂ ପୌତ୍ର ଅଶୋକ—ଏହି ଦୁହିଙ୍କ ଶାସନ ସମୟରେ ମଗଧ ସାମ୍ରାଜ୍ୟ ବହୁତ ବିସ୍ତାର ଲାଭ କରିଥିଲା । ଉତ୍ତରରେ ହିନ୍ଦୁକୁଶ ପର୍ବତ-ଠାରୁ ପୂର୍ବରେ ବଙ୍ଗ ପର୍ଯ୍ୟନ୍ତ ସମଗ୍ର ପ୍ରଦେଶ ଅଶୋକଙ୍କ ସାମ୍ରାଜ୍ୟର ଅନ୍ତର୍ଭୁକ୍ତ ଥିଲା । ଅଶୋକ ଏତେ ବଡ଼ ସାମ୍ରାଜ୍ୟର ବ୍ୟବସ୍ଥା ଅତି ଉତ୍ତମ ରୂପରେ କରିଥିଲେ ।

ଅଶୋକ ନିଜ ଶିଳାଲେଖମାନଙ୍କରେ ସ୍ଥାନେ ସ୍ଥାନେ ଆଦେଶ ଦେଇଥିଲେ ଯେ ବ୍ରାହ୍ମଣମାନଙ୍କୁ ବୌଦ୍ଧ ଭିକ୍ଷୁଙ୍କ ସମାନ ସମ୍ମାନ ଦେବାକୁ ହେବ । ତଥାପି ତାଙ୍କର ଶାସନ ସମୟରେ ସଂସ୍କୃତ ଭାଷାକୁ ପ୍ରୋତ୍ସାହନ ମିଳି ନ ଥିଲା । ବୌଦ୍ଧଧର୍ମର ପ୍ରାଚୀନ ସମ୍ପ୍ରଦାୟ ଅନୁଯାୟୀ ତାଙ୍କର ଶିଳା ଅନୁଶାସନଗୁଡ଼ିକ ତତ୍କାଳୀନ ଭାଷାରେ ଲିଖିତ ହୋଇଥିଲା । ଖ୍ରୀଷ୍ଟପୂର୍ବ ୨୩୨ ସାଲରେ ଅଶୋକଙ୍କର ମୃତ୍ୟୁ ହୋଇଥିଲା । ତାଙ୍କ ପରେ ତାଙ୍କର ସାମ୍ରାଜ୍ୟ ପ୍ରାୟ ୫୦ ବର୍ଷ ପର୍ଯ୍ୟନ୍ତ ରହିଥିଲା । ଖ୍ରୀଷ୍ଟପୂର୍ବ ପ୍ରାୟ ୧୮୫ ସାଲରେ ଶୁଂଗବଂଶୀୟ ପୁଷ୍ୟମିତ୍ର ମୌର୍ଯ୍ୟବଂଶର ଅନ୍ତିମ ରାଜା ବୃହଦ୍ରଥଙ୍କୁ ହତ୍ୟା କରି ତାଙ୍କର ରାଜ୍ୟ ଅଧିକାର କଲେ । ସିଂହାସନରେ ଆରୂଢ଼ ହେଲା ପରେ ପୁଷ୍ୟମିତ୍ର ବୌଦ୍ଧଧର୍ମାବଲମ୍ବୀ ଅଶୋକାଦି ରାଜାମାନଙ୍କ କର୍ତ୍ତୃକ ହିନ୍ଦୁଧର୍ମାବଲମ୍ବୀମାନଙ୍କ ଉପରେ ପ୍ରବର୍ତ୍ତିତ କଟକଣାମାନ ଉଠାଇଦେଲେ ଏବଂ ସେ ନିଜେ ଅଶ୍ୱମେଧ ଯାଗ କରିଥିଲେ । ଅଯୋଧ୍ୟାର ଏକ ଶିଳାଲେଖରେ ଏ ସମସ୍ତ ଉଲ୍ଲିଖିତ ହୋଇ ଅଛି । ଏଥିରୁ ଜଣାଯାଏ—ପୁଷ୍ୟମିତ୍ର ବୈଦିକ ଧର୍ମାବଲମ୍ବୀ ମାନଙ୍କୁ, ଯଜ୍ଞରେ ପଶୁବଧ କରିବାକୁ ଅନୁଜ୍ଞା ଦେଇ ଥିଲେ । ସେ ସଂସ୍କୃତ ଭାଷାକୁ ମଧ୍ୟ ପ୍ରୋତ୍ସାହିତ କରିଥିଲେ । ପତଞ୍ଜଳି ନିଜର ସର୍ବସମାଦୃତ ବ୍ୟାକରଣ ମହାଭାଷ୍ୟ ଏହି ରାଜାଙ୍କ ସମୟରେ ଲେଖିଥିଲେ ଏବଂ ନିଜେ ଏହି ରାଜାଙ୍କ ହାତରେ ଯଜ୍ଞ କରାଇ ଥିଲେ । ଏହା ମହାଭାଷ୍ୟରେ ଉଲ୍ଲିଖିତ ହୋଇ ଅଛି ।

ଅଶୋକ ହିନ୍ଦୁସ୍ଥାନରେ ରାଜତ୍ୱ କରିବା ସମୟରେ ପ୍ରାୟ ଖ୍ରୀଷ୍ଟପୂର୍ବ ୨୫୦ ସାଲରେ ଗ୍ରୀକମାନେ ବାକ୍‌ଟ୍ରିୟାରେ ଏକ ସ୍ୱତନ୍ତ୍ର ରାଜ୍ୟ ସ୍ଥାପନ କରିଥିଲେ । ଅଶୋକଙ୍କ ପରେ ଆଉ

କୌଣସି ମୌର୍ଯ୍ୟ ରାଜା ଶକ୍ତିଶାଳୀ ନ ଥିଲେ । ଏ ହେତୁ ଗ୍ରୀକ-ମାନେ ପୂର୍ବ ଅପେକ୍ଷା କ୍ରମେ କ୍ରମେ ହସ୍ତକ୍ଷେପ କଲେ ଏବଂ ଧୀରେ ଧୀରେ ପଞ୍ଜାବ ଓ ସିନ୍ଧ ଏହି ଦୁଇ ପ୍ରାନ୍ତରେ ନିଜ ଅଧିକାର ବିସ୍ତାର କଲେ । ପୁଷ୍ୟମିତ୍ରଙ୍କର ଅଶ୍ୱମେଧୀୟ ଅଶ୍ୱକୁ ଗ୍ରୀକ୍ ସୈନିକମାନେ ଅବରୁଦ୍ଧ କରିଥିଲେ । ମାତ୍ର ପୁଷ୍ୟମିତ୍ରଙ୍କର ପୌତ୍ର ବସୁମିତ୍ର ନିଜ ପରାକ୍ରମରେ ଗ୍ରୀକ୍‌ମାନଙ୍କୁ ପରାସ୍ତ କରି ଅଶ୍ୱକୁ ମୁକ୍ତ କରିଥିଲେ । ଏ ବିଷୟ ମାଳବିକାଗ୍ନିମିତ୍ରରେ ବର୍ଣ୍ଣିତ ହୋଇ ଅଛି ଏବଂ ଯଥାର୍ଥ ବୋଧହୁଏ । ଶୁଙ୍ଗମାନଙ୍କର ରାଜ୍ୟ ଖ୍ରୀଷ୍ଟପୂର୍ବ ୭୩ ସାଲରେ ନଷ୍ଟ ହୋଇଥିଲା ଏବଂ ତାଙ୍କ ସ୍ଥାନରେ କାଣ୍ୱ ବ୍ରାହ୍ମଣ ରାଜା ହୋଇଥିଲେ । ସେ ପ୍ରାୟ ୪୫ ବର୍ଷ ରାଜତ୍ୱ କରିଥିଲେ । ପରେ ଦକ୍ଷିଣ ଭାରତର ଅନ୍ଧ୍ରମାନେ ଆକ୍ରମଣ କରି ସେମାନଙ୍କର ରାଜ୍ୟ ଅଧିକାର କଲେ । ଶୁଙ୍ଗ ଓ କାଣ୍ୱ ରାଜାମାନଙ୍କ ରାଜତ୍ୱ ସମୟରେ ହିନ୍ଦୁଧର୍ମ ଓ ସଂସ୍କୃତ ବିଦ୍ୟାକୁ ପ୍ରୋତ୍ସାହ ମିଳିଥିଲା । ମନୁସ୍ମୃତି ଏହି ସମୟରେ ବର୍ତ୍ତମାନ ଆକାର ଧାରଣ କରିଥିଲା ବୋଲି ଚରିତ୍ରପରିଶୀଳକମାନଙ୍କର ମତ । କିନ୍ତୁ ଏକ ପକ୍ଷରେ ଏହି ସମୟ ବିଶେଷ ଅଶାନ୍ତିମୟ ଥିଲା । କାରଣ ଏହି ସମୟରେ ଶକ ଓ ଯବନମାନେ ବାରମ୍ବାର ଆକ୍ରମଣ କରୁଥିଲେ । ଏ ବିଷୟ ଗର୍ଗସଂହିତାର ଯୁଗ ପୁରାଣରେ ବର୍ଣ୍ଣିତ ହୋଇ ଅଛି । ଏକ ସମୟରେ ଅମ୍ଳାତ ନାମକ ଏକ ଶକରାଜା ପାଟଳୀପୁତ୍ର ଆକ୍ରମଣ କରିଥିଲେ ଏବଂ ସହର ଧ୍ୱସ୍ତ ବିଧ୍ୱସ୍ତ କରିଥିଲେ । ସେ ସହରବାସୀଙ୍କର ସର୍ବନାଶ କରିଥିଲେ ଏବଂ ସହରରେ ଚତୁର୍ବର୍ଣ୍ଣର ବିରୋଧୀ ଶକମାନଙ୍କୁ ଆଣି ରଖାଇ ଥିଲେ । ଶକ ଓ ହୂଣମାନଙ୍କର ଆକ୍ରମଣରେ ଯେଉଁ ଭୀଷଣ ପରିସ୍ଥିତି ଘଟିଥିଲା, ତାହାର ହୃଦୟବିଦାରକ ଦୃଶ୍ୟ ଗର୍ଗାଚାର୍ଯ୍ୟ ନିମ୍ନ ପ୍ରକାରେ ବର୍ଣ୍ଣନା କରି ଅଛନ୍ତି—

'ଏହି ସମୟରେ ଯୁଦ୍ଧରେ ରାଷ୍ଟ୍ରର ସମସ୍ତ ପୁରୁଷ ମରିଗଲେ । ଏହେତୁ ସ୍ତ୍ରୀମାନଙ୍କୁ ସମସ୍ତ କାର୍ଯ୍ୟ କରିବାକୁ ପଡ଼ିଥିଲା । ସେମାନେ ହଳ ଯୁଆଳି ଓ ଧନୁର୍ବାଣ ଧାରଣ କରି କ୍ଷେତମାନ ରକ୍ଷା କରିଥିଲେ । ଗୃହଆଡ଼େ ସ୍ତ୍ରୀମାନଙ୍କ ସଙ୍ଗଠିତ କରି ସଙ୍ଘମାନ ସ୍ଥାପନ କରିଥିଲେ । ପୁରୁଷ ଏତେ ବିରଳ ହୋଇଗଲେ ଯେ ଏକ ଏକ ପୁରୁଷକୁ ଦଶ ଦଶ କୋଡ଼ିଏ କୋଡ଼ିଏ ସ୍ତ୍ରୀ ବରଣ କରୁଥିଲେ । ଗ୍ରାମ ଓ ସହରମାନଙ୍କର ସ୍ତ୍ରୀମାନେ କେବଳ ସମସ୍ତ ବ୍ୟବହାର ଦେଖୁଥିଲେ । ଗୃହବର୍ଣ୍ଣର ମର୍ଯ୍ୟାଦା ନଷ୍ଟ ହୋଇ ଯାଇଥିଲା । ଶୂଦ୍ରମାନେ ବ୍ରାହ୍ମଣ କର୍ମ କରିବାକୁ ଲାଗିଲେ ଏବଂ ଜଟାବଲ୍କଳ ଧାରଣ କରି ପରିଭ୍ରମଣ କଲେ । ବୈଦିକ ଧର୍ମରେ ବିଧର୍ମୀ ଲୋକ ଆସି ଦୀକ୍ଷିତ ହେଲେ ଏବଂ ଗୃହଆଡ଼େ ଦମ୍ଭର ସାମ୍ରାଜ୍ୟ ହୋଇଗଲା । ଗୃହସ୍ଥାଶ୍ରମକୁ ଘୃଣା କରି ଲୋକମାନେ ଜୋରସୋରରେ ସନ୍ନ୍ୟାସ ଗ୍ରହଣ କରିବାକୁ ଲାଗିଲେ । ଏ ସମୟରେ ପ୍ରାୟ ଦୁଇବର୍ଷ ପର୍ଯ୍ୟନ୍ତ ମେଘ ପାଣି ବରଷି ନାହିଁ । ଭାରି ଦୁର୍ଭିକ୍ଷ ପଡ଼ିଲା, ହଜାର ହଜାର ଲୋକ ମୃତ୍ୟୁମୁଖରେ ନିପତିତ ହେଲେ ।'

ଗତ ୟୁରୋପୀୟ ମହାଯୁଦ୍ଧ ପରେ ବେଲଜିୟମ୍ ଓ ଫ୍ରାନସର ପରିସ୍ଥିତିର ବର୍ଣ୍ଣନା ଯେଉଁମାନେ ପଢ଼ି ଅଛନ୍ତି, ସେମାନଙ୍କୁ ଗର୍ଗାଚାର୍ଯ୍ୟଙ୍କର ଉପର୍ଯ୍ୟୁକ୍ତ ବର୍ଣ୍ଣନା ଠିକଏହେଲେ ଅତିରଞ୍ଜିତପୂର୍ଣ୍ଣ ବୋଧ ହେବ ନାହିଁ । ଗର୍ଗ ସଂହିତା କାଣ୍ଡମାନଙ୍କର ରାଜତ୍ୱର ଶେଷ ଧାପରେ ଲିଖିତ ହୋଇଥିବ । ଏହେତୁ ସେ ବର୍ଣ୍ଣନାକୁ ବିଶ୍ୱାସ ଯୋଗ୍ୟ ବୋଲି ଧରିନେଲେ କୌଣସି କ୍ଷତି ହେବ ନାହିଁ । ବିଦେଶୀୟମାନଙ୍କର

ଅନ୍ତମଣପଳରେ ଉତ୍ତର ହିନ୍ଦୁସ୍ଥାନରେ କେତେକାଳ ପର୍ଯ୍ୟନ୍ତ ଅନ୍ଧକାର ମାଡ଼ିଯାଇ ଥିଲା । ସେ ସମୟରେ ଅନେକ ହିନ୍ଦୁ ଗ୍ରନ୍ଥ ନଷ୍ଟ ହୋଇଯାଇଥିଲା । ପତଞ୍ଜଳିଙ୍କର ମହାଭାଷ୍ୟରେ ପ୍ରାସଙ୍ଗିକ ବିବିଧ ବିଷୟର ଅବତାରଣାରୁ ଜଣାଯାଏ—ଶୁଙ୍ଗଙ୍କ ସମୟରେ କାବ୍ୟ ସାହିତ୍ୟ ଉନ୍ନତିର ଚରମସୀମାରେ ଉପନୀତ ହୋଇଥିଲା । ସେ ସାହିତ୍ୟ ତଥା ଅନେକ ଶ୍ରୌତ ସ୍ମାର୍ତ୍ତ ଗ୍ରନ୍ଥ ଏବଂ ପୁରାଣ ପ୍ରଭୃତି ନଷ୍ଟଭ୍ରଷ୍ଟ ହୋଇଯାଇଥିଲା । ମହାଭାଷ୍ୟର ଏକ ପ୍ରତି ସୁଦ୍ଧା ଉତ୍ତର ଭାରତରେ ଦୁର୍ଲଭ ହୋଇଯାଇ ଥିଲା । ଚନ୍ଦ୍ରାଚାର୍ଯ୍ୟ ନାମକ ଏକ ବୈୟାକରଣ ଏହି ଭାଷ୍ୟକୁ ବିଶେଷ ପରିଶ୍ରମ କରି ଦକ୍ଷିଣ ଭାରତରୁ ସଂଗ୍ରହ କରି, ଉତ୍ତର ଭାରତରେ ପ୍ରଚାର କରି ଥିଲେ । ଏ ବିଷୟ ଭର୍ତ୍ତୃହରିଙ୍କର ବାକ୍ୟପଦୀୟରେ ଉଲ୍ଲିଖିତ ହୋଇ ଅଛି ।

ଅଶୋକଙ୍କ ମୃତ୍ୟୁ ପରେ ଅତଶୀଘ୍ର ସାତବାହନମାନେ ଦକ୍ଷିଣରେ ନିଜକୁ ସ୍ୱତନ୍ତ୍ର ଘୋଷିତ କଲେ । ସାତବାହନ ସେମାନଙ୍କର ମୂଳ ପୁରୁଷ ଥିଲେ । ତାଙ୍କପରେ ସିମୁକ ସାତବାହନ ରାଜା ହେଲେ । ତାଙ୍କପରେ ରାଜସିଂହାସନରେ ଆସୀନ ହୋଇ ଶ୍ରୀ ସାତକର୍ଣ୍ଣୀ ଅଶ୍ୱମେଧ ଯାଗ କରିଥିଲେ ବୋଲି ନାନେଘାଟ ଶିଳାଲେଖରେ * ଉଲ୍ଲିଖିତ ହୋଇ ଅଛି । ଏହା ଛଡ଼ା ସେହି ଲେଖାରେ ବର୍ଣ୍ଣିତ ହୋଇ ଅଛି ଯେ ସେ ଗବାମୟନ, ଅପ୍ତୋର୍ଯ୍ୟାମ ଗାର୍ଗତ୍ରିରାତ୍ର, ପ୍ରଭୃତି ଶ୍ରୌତଯଜ୍ଞମାନ କରିଥିଲେ, ହଜାର ହଜାର ଗାଈ ଘୋଡ଼ା ଏବଂ କାର୍ଷାପଣ (ତାମ୍ରନିର୍ମିତ ମୁଦ୍ରା)

* Nanaghat Cave Inscription—Archaeological Survey of Western India, Vol. X pp. 60 ff.

ଦକ୍ଷିଣାସ୍ୱରୂପ ଦିଆଯାଉଥିଲା । ଅଶୋକଙ୍କ ମୃତ୍ୟୁପରେ ଶୀଘ୍ରହିଁ ଉତ୍ତରଭାରତ ପରି ଦକ୍ଷିଣ ଭାରତରେ ମଧ୍ୟ ବୈଦେଶିକ ଧର୍ମ ରାଜାମାନଙ୍କ ଅସ୍ତ୍ର ବଳରେ ଉପରକୁ ମୁଣ୍ଡ ଟେକି ଉଠିଲା । ଶକମାନେ ଉତ୍ତର ଭାରତରେ ଧୂମାଧୂମ ଅଧିକାର ଚଳାଇ ଦକ୍ଷିଣରେ ମଧ୍ୟ ରାଜ୍ୟସ୍ଥାପନ କରିବାକୁ ପ୍ରଯତ୍ନ କରିଥିଲେ । କେତେକାଳ ପର୍ଯ୍ୟନ୍ତ ସେମାନଙ୍କର ପ୍ରଯତ୍ନ ମଧ୍ୟ ସଫଳ ହୋଇଥିଲା । ଦକ୍ଷିଣ ଭାରତର ଆକ୍ରମଣରେ ଭୂମକ ଓ ନହପାନ ନାମକ ଦୁଇଜଣ ଶକ ଅଗ୍ରଣୀ ଥିଲେ । ପ୍ରଥମ ଆକ୍ରମଣ କରି ନହପାନ ଏକ ବିସ୍ତୃତ ପ୍ରଦେଶର ଆଧିପତ୍ୟ ଲାଭ କଲେ ଏବଂ କ୍ଷତ୍ରପ ନାମରେ ପ୍ରସିଦ୍ଧ ହେଲେ । ଶିଳାଲେଖ ଏବଂ ପ୍ରାପ୍ତ ମୁଦ୍ରାମାନଙ୍କରୁ ପ୍ରମାଣିତ ହୁଏ — କାଠିଆବାଡ଼, ରାଜପୁତନାର କେତେକ ଭାଗ, ମାଳବ, ଗୁଜରାଟ ଉତ୍ତର କୋଙ୍କଣ ଏବଂ ପୁନାଜିଲ୍ଲାର ଭୂଭାଗ ନହପାନଙ୍କ ଅଧିକାରଭୁକ୍ତ ଥିଲା ।

ନହପାନ ଯେତେବେଳେ ମହାରାଷ୍ଟ୍ରରେ ନିଜ ଅଧିକାର ବିସ୍ତାର କଲେ, ସେତେବେଳେ ସାତବାହନ ଦେଶ ତ୍ୟାଗ କରିଥିଲେ । ତାପରେ ଅତି ଅଳ୍ପ ସମୟ ମଧ୍ୟରେ ଗୌତମୀପୁତ୍ର ସାତକର୍ଣ୍ଣୀ ସିଂହାସନ ଲାଭ କରି ନହପାନଙ୍କ ବଂଶଜମାନଙ୍କୁ ପୂର୍ଣ୍ଣମାତ୍ରାରେ ପରାସ୍ତ କରି ତାଙ୍କର ବଂଶ ସମୂଳ ଧ୍ୱଂସ କଲେ ଏବଂ ନିଜ ରାଜ୍ୟ ଉତ୍କଳସୀମା ପର୍ଯ୍ୟନ୍ତ ବିସ୍ତୃତ କରିଥିଲେ । ଗୌତମୀପୁତ୍ର ନହପାନଙ୍କ ପ୍ରଚଳିତ ମୁଦ୍ରାମାନ ଲୋକମାନଙ୍କଠାରୁ ଫେରାଇ ଆଣି ସେମାନଙ୍କ ଉପରେ ନିଜ ନାମ ଅଙ୍କନ କରି ପ୍ରଚଳିତ କରାଇଲେ । ତାଙ୍କ ବଂଶରେ ପରେ ପରେ ବାଶିଷ୍ଠୀପୁତ୍ର ପୁଲୁମାୟୀ, ଯଜ୍ଞଶ୍ରୀ ସାତକର୍ଣ୍ଣୀ ପ୍ରଭୃତି ରାଜା ହୋଇ ଥିଲେ ।

ପୁରାଣ ବର୍ଣ୍ଣିତ ଗଣନା ଅନୁସାରେ ସାତବାହନମାନେ ପ୍ରାୟ ୪୫୦ ବର୍ଷ ଅର୍ଥାତ୍ ଖ୍ରୀଷ୍ଟପୂର୍ବ ୨୨୫ ଠାରୁ ୨୨୫ ଖ୍ରୀଷ୍ଟାବ୍ଦ ପର୍ଯ୍ୟନ୍ତ ରାଜ୍ୟ ଶାସନ କରିଥିଲେ ।

ସାତବାହନମାନେ ବୈଦିକଧର୍ମାବଲମ୍ବୀ ଥିଲେ । ନାସିକରୁ ପ୍ରାପ୍ତ ଏକ ଶିଳାଲେଖରୁ ଗୌତମୀପୁତ୍ର 'କ୍ଷତ୍ରିୟ-ମାନଙ୍କର ଦର୍ପହରଣକାରୀ ଏବଂ ଏକ ବ୍ରାହ୍ମଣ' ବୋଲି ଉଲ୍ଲିଖିତ ଥିବାରୁ ସେମାନେ ବ୍ରାହ୍ମଣ ବୋଲି ସିଦ୍ଧ ହୁଏ । ଶକମାନଙ୍କର ଶାସନ କାଳରେ ଚାତୁର୍ବର୍ଣ୍ଣ୍ୟରେ ଯେଉଁ ବିଭ୍ରାଟ ଘଟିଥିଲା, ସାତବାହନମାନେ ତାକୁ ପୁଣି ସୁଘଟିତ କରିଥିଲେ । ଏ ବିଷୟ ମଧ୍ୟ ନାସିକରୁ ପ୍ରାପ୍ତ ଏକ ଶିଳାଲେଖରୁ ପ୍ରମାଣିତ ହୁଏ । ସେମାନେ ବୌଦ୍ଧ ଧର୍ମର ମଧ୍ୟ ଆଶ୍ରୟଦାତା ଥିଲେ । ଗୌତମୀପୁତ୍ର, ତାଙ୍କର ମାତା ବାଲଶ୍ରୀ, ତାଙ୍କର ରାଣୀ ଏବଂ ପୁତ୍ର ପୁଲୁମାୟୀ—ଏମାନେ ବୌଦ୍ଧଭିକ୍ଷୁମାନଙ୍କର ଆବାସ ସକାଶେ ଅନେକ ଗୁମ୍ଫା ଖୋଳାଇ ଥିଲେ । ସେମାନଙ୍କର ପରିଚୁଲନା ସକାଶେ କେତେକ ଗ୍ରାମ ମଧ୍ୟ ଦେଇଥିଲେ । ନାସିକ ଏବଂ କାର୍ଲେ ଗୁମ୍ଫାମାନଙ୍କରେ ଏ ବିଷୟ ଉଲ୍ଲିଖିତ ହୋଇ ଅଛି । ଏଥିରୁ ଅନୁମିତ ହୁଏ—ସେମାନଙ୍କର ରାଜତ୍ୱ ସମୟରେ ଦୁଇ ଧର୍ମର ଅନୁଯାୟୀମାନଙ୍କୁ ସମାନ ଦୃଷ୍ଟିରେ ଦେଖା-ଯାଉ ଥିଲା । ସାତବାହନରାଜାମାନେ ବୈଦିକଧର୍ମାବଲମ୍ବୀ ଥିଲେ ମଧ୍ୟ ସଂସ୍କୃତ ବିଦ୍ୟାର ପ୍ରସାର କରି ନ ଥିଲେ । 'କଥା ସରିତ୍ ସାଗର'ରୁ ଏହାର ପ୍ରମାଣ ମିଳେ । ଏକ ସାତବାହନରାଜା ଜଳ ବିହାର କଲାବେଳେ ତାଙ୍କର ସ୍ତ୍ରୀ 'ମୋଦକୈସ୍ତାଡ଼ୟ' (ଜଳ ଛାଟି ମାର ନାହିଁ) ଏହି ସହଜ ସରଳ ବାକ୍ୟ ପ୍ରୟୋଗ

କରିଥିଲେ ଏବଂ ସରଳ ସଂସ୍କୃତ ବାକ୍ୟର ଅର୍ଥ ରାଜା ବୁଝି ପାରି ନଥିଲେ । ରାଜଶେଖରଙ୍କ କାବ୍ୟମୀମାଂସାରେ ଉଲ୍ଲିଖିତ ଅଛି— କୁନ୍ତଳେଶ୍ୱର ସାତବାହନ ନିଜ ଅନ୍ତଃପୁରରେ ପ୍ରାକୃତଭାଷା ବ୍ୟବହାର କରିବାକୁ କଡ଼ା ନିୟମ ଜାରି କରିଥିଲେ । ଏହା ଦ୍ୱାରା ପୂର୍ବୋକ୍ତ ବିଷୟ ସମର୍ଥିତ ହୋଇ ଅଛି ; ଏହା ଛଡ଼ା ସାତବାହନ-ଙ୍କର ସମସ୍ତ ଲେଖ ପ୍ରାକୃତ ଭାଷାରେ ଲିଖିତ ହୋଇ ଅଛି । ବୌଦ୍ଧ ଧର୍ମ ପ୍ରଚାରରେ ପାଲୀ ଏବଂ ତା ପରେ ପ୍ରାକୃତ ଭାଷାର ପ୍ରଭାବ ଦେଖାଯାଏ । ତାହା ଗୁପ୍ତରାଜାମାନଙ୍କର ଆଧିପତ୍ୟପର୍ଯ୍ୟନ୍ତ ଅକ୍ଷୁଣ୍ଣ ରହିଥିଲା ।

ସେମାନଙ୍କ ପରେ ଉତ୍ତର ହିନ୍ଦୁସ୍ଥାନରେ ପ୍ରଥମେ ପହ୍ଲବ ଏବଂ ସେମାନଙ୍କ ପରେ କୁଶାନ ରାଜାମାନେ ସାମ୍ରାଜ୍ୟ ସ୍ଥାପନ କରିଥିଲେ । କୁଶାନରାଜାମାନଙ୍କ ମଧ୍ୟରେ କୁଜୁଲ କାଡଫିସସ୍, ୱିମ କାଡଫିସସ୍, କନିଷ୍କ, ହୁବିଷ୍କ ଏବଂ ବାସୁଦେବଙ୍କ ନାମ ପ୍ରସିଦ୍ଧ । ୱିମ କାଡ଼ଫିସସ୍ ହିନ୍ଦୁ ଧର୍ମ ସ୍ୱୀକାର କରିଥିଲେ ଏବଂ ନିଜ ମୁଦ୍ରାମାନଙ୍କରେ ନିଜକୁ 'ମାହେଶ୍ୱର' ବୋଲି ଲେଖି ଥିଲେ ଏବଂ ମୁଦ୍ରାମାନଙ୍କ ଉପରେ ନନ୍ଦୀ ଓ ଶିବ—ଏହାଙ୍କର ଆକୃତି ଖୋଳାଇ ଥିଲେ । ସମସ୍ତ କୁଶାନରାଜାମାନଙ୍କ ମଧ୍ୟରେ କନିଷ୍କ ଶ୍ରେଷ୍ଠ ବୋଲି କହାଯାଏ । ଦକ୍ଷିଣ ଭାରତରେ ବର୍ତ୍ତମାନ ସୁଦ୍ଧା ପ୍ରଚଳିତ ଶାଳିବାହନ ଶକ ଏହି କନିଷ୍କ ୭୮ ସାଲରେ ପ୍ରଚଳିତ କରିଥିଲେ ବୋଲି କେତେକ ପଣ୍ଡିତଙ୍କର ମତ । ଏହାଙ୍କର ମୁଦ୍ରା କାବୁଲ ଠାରୁ ଗାଜୀପୁର ପର୍ଯ୍ୟନ୍ତ ଭୂଭାଗରେ ମିଳି ଅଛି । ଏକ ସମୟରେ ସେ ପାଟଳୀପୁତ୍ର ନଗର ଆକ୍ରମଣ କରିଥିଲେ ଏବଂ ସେଠାରୁ ପଣ୍ଡିତ ଅଶ୍ୱଘୋଷଙ୍କୁ ଧରି ନିଜ

ରାଜଧାନୀକୁ ନେଇଯାଇ ଥିଲେ । ଦକ୍ଷିଣରେ କାଠିଆବାଡ଼ ଓ ମାଳବରେ ଶାସନ କରୁଥିବା କ୍ଷତ୍ରପ ଏହାଙ୍କର ଅଧୀନ ଥିଲେ । ଏଥିରୁ ଭାରତବର୍ଷରେ ସାମ୍ରାଜ୍ୟ ବିସ୍ତାର କରିବା ଆକାଙ୍କ୍ଷା ତାଙ୍କର ଥିଲା ବୋଲି ପାଠକମାନଙ୍କ ମନରେ ଜାତ ହୋଇଥିବ । ସେ ନିଜେ ବୌଦ୍ଧଧର୍ମାବଲମ୍ବୀ ଥିଲେ । ବୌଦ୍ଧ ଧର୍ମର ପ୍ରଚାର-ମକାଶେ ସେ ସ୍ଥାନେ ସ୍ଥାନେ ସ୍ତୂପମାନ ସ୍ଥାପନ କରିଥିଲେ । କାଶ୍ମୀରରେ ବିଦ୍ୱାନ୍ ଭିକ୍ଷୁମାନଙ୍କର ସମ୍ମିଳନୀ ଆୟୋଜନ କରିଥିଲେ ଏବଂ ପ୍ରସିଦ୍ଧ ଦାର୍ଶନିକ ପଣ୍ଡିତ ଅଶ୍ୱଘୋଷଙ୍କୁ ସେହି ସମ୍ମିଳନୀର ଅଧ୍ୟକ୍ଷ ରୂପେ ନିର୍ବାଚିତ କରିଥିଲେ ।

ଖ୍ରୀଷ୍ଟୀୟ ଦ୍ୱିତୀୟ ଶତାବ୍ଦୀର ଶେଷ ଭାଗରେ କୁଶାନ-ମାନଙ୍କର ସାମ୍ରାଜ୍ୟ କ୍ଷୀଣ ହେବାକୁ ଲାଗିଲା । ସେମାନଙ୍କର ରାଜ୍ୟ ପଞ୍ଚମ ଶତାବ୍ଦୀରେ ହୂଣମାନଙ୍କର ଆକ୍ରମଣ ପର୍ଯ୍ୟନ୍ତ ପଞ୍ଜାବ ଓ କାବୁଲ—ଏହି ଦୁଇ ପ୍ରାନ୍ତରେ କେବଳ ଆବଦ୍ଧ ରହିଥିଲା । ମାଳବ ଓ କାଠିଆବାଡ଼ରେ ଶକ ବଂଶୀୟ କ୍ଷତ୍ରପମାନେ ଚତୁର୍ଥ ଶତାବ୍ଦୀର ଶେଷଭାଗ ପର୍ଯ୍ୟନ୍ତ ରାଜତ୍ୱ କରୁଥିଲେ । ଦକ୍ଷିଣରେ ଅନ୍ଧ୍ର ସାମ୍ରାଜ୍ୟର ଅବସାନ ତୃତୀୟ ଶତାବ୍ଦୀର ଆରମ୍ଭରେ ହୋଇ ଯାଇ ଥିଲା । କୁଶାନ ଓ ଅନ୍ଧ୍ର ସାମ୍ରାଜ୍ୟ ଯେଉଁ ଯେଉଁ ପ୍ରଦେଶରେ ସ୍ଥାପିତ ହୋଇଥିଲା, ସେହି ସେହି ପ୍ରଦେଶରେ ଅନେକ ଛୋଟ ଛୋଟ ରାଜ୍ୟ ମୁଣ୍ଡ ଟେକି ଉଠିଲା । ଚତୁର୍ଥ ଶତାବ୍ଦୀରେ ଗୁପ୍ତମାନଙ୍କର ଉତ୍ତର ଭାରତରେ ଏବଂ ବାକାଟକମାନଙ୍କର ଦକ୍ଷିଣ ଭାରତରେ ରାଜ୍ୟ ସଂସ୍ଥାପିତ ହେଲା ପର୍ଯ୍ୟନ୍ତ ସେ ସମସ୍ତ ରାଜ୍ୟ କୌଣସିମତେ ତିଷ୍ଠି ପାରିଥିଲେ । ଏହାର ପ୍ରମାଣ ଗୁପ୍ତ ତଥା ବାକାଟକ ରାଜା-ମାନଙ୍କର ଶିଳାଲେଖମାନଙ୍କରୁ ମିଳେ ।

ଏ ପର୍ଯ୍ୟନ୍ତ ଆମେ ଐତିହାସିକ ସିଂହାବଲୋକନ କରି ଆସିଛୁଁ । ଏଥିରୁ ପାଠକମାନେ ଖ୍ରୀଷ୍ଟପୂର୍ବ ଚତୁର୍ଥଶତାବ୍ଦୀଠାରୁ ଖ୍ରୀଷ୍ଟୀୟ ଚତୁର୍ଥ ଶତାବ୍ଦୀ ପର୍ଯ୍ୟନ୍ତ ଦେଶର ରାଜନୈତିକ ସ୍ଥିତିର ସାମାନ୍ୟ ପରିଚୟ ପାଇ ପାରିବେ । ଶୁଙ୍ଗ ସାମ୍ରାଜ୍ୟର ଅବସାନଠାରୁ ଗୁପ୍ତମାନଙ୍କର ଉଦୟ ପର୍ଯ୍ୟନ୍ତ ପ୍ରାୟ ୪୦୦ ବର୍ଷ ହେବ । ଏହି ସମୟରେ ଉତ୍ତର ହିନ୍ଦୁସ୍ଥାନରେ କୌଣସି ପ୍ରଭାବଶାଳୀ ହିନ୍ଦୁ ରାଜା ହିନ୍ଦୁ ଧର୍ମ ଏବଂ ସଂସ୍କୃତ ବିଦ୍ୟାକୁ ପ୍ରୋତ୍ସାହିତ କରି ନାହାନ୍ତି ।* ଦକ୍ଷିଣ ଦେଶରେ ମହାରାଷ୍ଟ୍ରରେ ଆନ୍ଧ୍ର ରାଜାମାନେ ବୈଦିକ ଧର୍ମାବଲମ୍ବୀ ଥିଲେ । ତଥାପି ଏମାନଙ୍କର ସଂସ୍କୃତ ବିଦ୍ୟା ପ୍ରତି ଆସ୍ଥା ନ ଥିଲା । ଏ ସମୟର ପ୍ରାୟ ସମସ୍ତ ଲେଖ ପ୍ରାକୃତ ଭାଷାରେ ଲିଖିତ । ମୁଦ୍ରାମାନଙ୍କ ଉପରେ ରାଜାମାନଙ୍କର ନାମ ଓ ବିରୁଦମାନ ପ୍ରାକୃତ ଭାଷାରେ ଲିଖିତ ହେବା ଦେଖାଯାଏ । ସ୍ତୂପ ଓ ଚୈତ୍ୟମାନଙ୍କର ନିର୍ମାଣରେ, ବୌଦ୍ଧଭିକ୍ଷୁମାନଙ୍କର ନିବାସାର୍ଥ ଗୁମ୍ଫାମାନଙ୍କର ଖୋଦନରେ ଏବଂ ସ୍ତୂପ ଓ ଗୁମ୍ଫାମାନଙ୍କର ଶୋଭା ବର୍ଦ୍ଧନ ଉଦ୍ଦେଶ୍ୟରେ ଶିଳ୍ପ ଓ ଚିତ୍ରକଳା ପ୍ରଦର୍ଶନରେ ଲୋକମାନେ ଅପରିମିତ ଧନ ବ୍ୟୟ କରୁଥିଲେ । ସାଞ୍ଚୀ ଓ ଭରହୁତର ସ୍ତୂପ, କାର୍ଲେ, ନାସିକ

* ଗୁପ୍ତରାଜାମାନଙ୍କର ଉଦୟ ପୂର୍ବରୁ ପ୍ରାୟ ଶହେ ବର୍ଷ ପର୍ଯ୍ୟନ୍ତ ନାଗବଂଶୀୟ ରାଜାମାନେ ଉତ୍ତର ଭାରତରେ ଅଶ୍ୱମେଧ ଯଜ୍ଞ କରି ହିନ୍ଦୁଧର୍ମର ପୁନରୁଦ୍ଧାର କରି ଥିଲେ ଏବଂ ସଂସ୍କୃତ ବିଦ୍ୟାକୁ ଆଶ୍ରୟ ଦେଇଥିଲେ ବୋଲି ବାରିଷ୍ଟର ଜୟସ୍ୱାଲଙ୍କର ମତ । (History of India 150—360 A.D.p.7.) କିନ୍ତୁ ଏହି ମତ ଏପର୍ଯ୍ୟନ୍ତ ସର୍ବସମ୍ମତ ନୁହେଁ ।

ଏବଂ ଅଜନ୍ତା ପ୍ରଭୃତି ସ୍ଥାନମାନଙ୍କରେ ଗୁଂଫାମାନ ନିର୍ମାଣ କରିବା ସକାଶେ ସ୍ତ୍ରୀଜାମାନଙ୍କ ପର ଶେଠ, ସାହୁକାର, ବେପାରୀ ସୁନାରି, ବାଢ଼ଇ, କାରିଗର ପ୍ରଭୃତି ବ୍ୟବସାୟୀମାନେ ତଥା ଶକ ଯବନାଦି ପ୍ରଭୃତି ବୈଦେଶିକମାନେ ମଧ୍ୟ ଦାନ କରୁଥିଲେ । ଏ ବିଷୟରେ ଶିଳାଲେଖମାନଙ୍କରେ ବହୁତ ପ୍ରମାଣ ରହିଅଛି ।*

ଏହି ସମୟର ହିନ୍ଦୁଧର୍ମ ସମ୍ବନ୍ଧୀ ଦେବାଳୟ କ ଶିଳ୍ପକଳାର ଆଦର୍ଶ ଗୋଟିଏ ହେଲେ ଏପର୍ଯ୍ୟନ୍ତ ମିଳି ନାହିଁ । ଏଥିରୁ ମଧ୍ୟ ଉପରଲିଖିତ ମତର ସମର୍ଥନ ହେଉ ଅଛି । ଏ ସମୟରେ ହିନ୍ଦୁ ଧର୍ମ ଯେ କୌଣସିମତେ ତିଷ୍ଠି ପାରିଥିଲା ଏବଂ ଅବଶ୍ୟ କେତେକ ସ୍ଥାନରେ ରାଜାଶ୍ରୟ ମଧ୍ୟ ପାଇଥିଲା । ଉତ୍ତରରେ ବାମ କାଡ଼ଫୀସସ୍ ଏବଂ ଦକ୍ଷିଣରେ ମାଳବର ରାଜା ରୁଦ୍ରଦମନ ପ୍ରଭୃତି କ୍ଷତ୍ରପ ରାଜାମାନେ ହିନ୍ଦୁଧର୍ମକୁ ଆଦର କରି ନେଇଥିଲେ । ଏ ହେତୁରୁ ଏମାନଙ୍କଠାରୁ ହିନ୍ଦୁ ଧର୍ମକୁ ସାହାଯ୍ୟ ମିଳିଥାଇ ପାରେ । ବିଶେଷତଃ କ୍ଷତ୍ରିୟମାନଙ୍କର ରାଜଧାନୀ ଉଜ୍ଜୟିନୀରେ ସଂସ୍କୃତ ବିଦ୍ୟାକୁ ପ୍ରୋତ୍ସାହ ମିଳିଥିଲା । ଖ୍ରୀଷ୍ଟୀୟ ୧୫୦ ସାଲର ରୁଦ୍ରଦମନଙ୍କର ଗିରନାର ଶିଳାଲେଖରୁ ବ୍ୟାକରଣଶାସ୍ତ୍ର, ସଙ୍ଗୀତାଦିକଳା, ଗଦ୍ୟପଦ୍ୟମୟ କାବ୍ୟବାଙ୍ମୟ ଏବଂ ତଦୁପଯୋଗୀ ଅଳଙ୍କାର ଶାସ୍ତ୍ର ପ୍ରଭୃତି ପଠନ ପାଠନ ସେ ସମୟରେ ବ୍ୟବହାରରେ ଥିଲା ପରି ପ୍ରତୀତ ହୁଏ । କ୍ଷତ୍ରପମାନଙ୍କର ରାଜତ୍ୱ-କାଳରେ ଭାସ, ସୌମିଲ୍ଲ ଏବଂ କବିପୁତ୍ରଙ୍କର ନାଟକମାନ ତଥା

* Cf. Dr. Sri R. G. Bhandarkar: A Peep into the Early History of India (1920)—p. 43

ବାତ୍ସ୍ୟାୟନଙ୍କ କାମସୂତ୍ର ପ୍ରଭୃତି ଲେଖା ହୋଇଥାଇ ପାରେ । ସାଧାରଣ ଲୋକମାନଙ୍କର ସଂସ୍କୃତ ବିଦ୍ୟା ପ୍ରତି ଶ୍ରଦ୍ଧା ନ ଥିଲେ ମଧ୍ୟ ସଂସ୍କୃତଭାଷା ବିଦ୍ୱାନ୍‌ମାନଙ୍କ ଉପରେ ନିଜ ଲାଳିତ୍ୟାଦିଗୁଣର ମୋହିନୀ ଶକ୍ତି ଚାଳିବାକୁ ଆରମ୍ଭ କରିଥିଲା—ଏଥିରେ ସନ୍ଦେହ ନାହିଁ । ତା ନ ହୋଇଥିଲେ ବିଶୁଦ୍ଧ ବୌଦ୍ଧଧର୍ମୀ ଅଶ୍ୱଘୋଷ ସଂସ୍କୃତରେ ନିଜକାବ୍ୟମାନ ଲେଖି ନ ଥାନ୍ତେ । ସେ ନିଜ ସୌନ୍ଦରନନ୍ଦ କାବ୍ୟର ଶେଷରେ ସ୍ପଷ୍ଟଭାବେ ଲେଖିଛନ୍ତି—'ଯେପରି ବୈଦ୍ୟ କଟୁ ଔଷଧ ମଧୁ ମିଶାଇ ରୋଗୀମାନଙ୍କୁ ଦିଅାଇ ଥାନ୍ତି ସେପରି ମୁଁ ଲୋକମାନଙ୍କର ଧ୍ୟାନ ସଂସାରିକ ବିଷୟ ମାନଙ୍କରୁ ନିବୃତ୍ତିକାରୀ ମୋକ୍ଷ ପ୍ରତି ଆକର୍ଷଣ କରିବା ଉଦ୍ଦେଶ୍ୟରେ କେବଳ ଏହି କାବ୍ୟ ସଂସ୍କୃତଭାଷାରେ ଲେଖିଅଛି । ତଥାପି ଏହି ସ୍ୱଳ୍ପ ବର୍ଷ ମଧ୍ୟରେ ଉତ୍ତମ ସଂସ୍କୃତ କାବ୍ୟ ନାଟକାଦି ଗ୍ରନ୍ଥ ରଚିତ ହୋଇ ନାହିଁ । ଅନ୍ୟ ପକ୍ଷରେ ଏହି ସମୟରେ ପାଲୀ-ସାହିତ୍ୟର ବିଶେଷ ଅଭିବୃଦ୍ଧି ହୋଇଅଛି ଏବଂ ପ୍ରାକୃତଭାଷାରେ ବୃହତ୍କଥା ପ୍ରଭୃତି ଗ୍ରନ୍ଥ ରଚିତ ହୋଇ ଅଛି । ଏହି ହେତୁ ସଂସ୍କୃତ ବିଦ୍ୟାକୁ ରାଜାଶ୍ରୟ ମିଳିଥିବା ଉଦାହରଣ କେବଳ ଅପବାଦରୂପ ।

ଏହି ସମୟରେ ହିନ୍ଦୁଧର୍ମକୁ ବିଶେଷ ରାଜାଶ୍ରୟ ମିଳି ନ ଥିଲା ଏବଂ ଲୋକମାନଙ୍କ ମଧ୍ୟରେ ହିନ୍ଦୁଧର୍ମର ପ୍ରସାର ବୌଦ୍ଧ ଧର୍ମ ଅପେକ୍ଷା କମ୍ ଥିଲା । ତଥାପି ବିଶ୍ରୁତଶୀଳ ବ୍ୟକ୍ତିମାନେ ନବୀନ କାଳ ଅନୁଯାୟୀ ଏହାର ପୁନରୁଦ୍ଧାର କରିବା ନିମନ୍ତେ ବ୍ୟଗ୍ର ଥିଲେ ବୋଲି ଜଣାଯାଏ । ବୈଦିକ ଧର୍ମର ନିଗୂଢ଼ତତ୍ତ୍ୱମାନ ସର୍ବସାଧାରଣ ବୁଝି ପାରିବେ ବୋଲି ପୂର୍ବକାଳର ସଂକ୍ଷିପ୍ତ ଏବଂ ଦୁର୍ବୋଧ ସୂତ୍ରାତ୍ମକ ଗ୍ରନ୍ଥମାନଙ୍କ ସ୍ଥାନରେ ମନୁସ୍ମୃତି, ଯାଜ୍ଞବଲ୍କ୍ୟ ସ୍ମୃତି ପ୍ରଭୃତି ସ୍ମୃତି ଗ୍ରନ୍ଥମାନ ସୁବୋଧ ଅନୁଷ୍ଟୁପ୍ ଛନ୍ଦରେ ଲେଖା

ଯାଇଥିଲା । ରାମାୟଣ ଏବଂ ମହାଭାରତ ମଧ୍ୟ ଏହି ସମୟରେ ବର୍ତ୍ତମାନରୂପ ଧାରଣ କରିଥିଲା । ବୌଦ୍ଧ ଓ ଜୈନ ଧର୍ମର ଅହିଂସା ସିଦ୍ଧାନ୍ତ ଉପରେ ଲୋକମାନଙ୍କର ବିଶ୍ୱାସ ଥିଲା ଏବଂ ସେହି ତତ୍ତ୍ୱମାନ ସର୍ବସମ୍ମତ ହୋଇଯାଇ ଥିଲା । ଏହା ଦେଖି ଏସମସ୍ତ ସ୍ମୃତିରେ ଏହି ତତ୍ତ୍ୱମାନ ଓଜସ୍ୱିନୀ ଭାଷାରେ ନିବଦ୍ଧ ହୋଇ ଥିଲା ଏବଂ ପ୍ରାଥମିକ ହିଂସାବିଧାୟକ ବାକ୍ୟମାନଙ୍କର ବହୁତ ଅପବାଦ ବାକ୍ୟମାନ ଗଢ଼ାଯାଇଥିଲା । ଏ ସମୟର ପ୍ରାରମ୍ଭାବସ୍ଥାରେ ଶିବ, କୁବେର, ଅଶ୍ୱିନୀକୁମାର, ଧର୍ମ, ଇନ୍ଦ୍ର, ସଙ୍କର୍ଷଣ, ବାସୁଦେବ ପ୍ରଭୃତି ଦେବତାମାନଙ୍କର ପୂଜା ହେଉଥିଲା—ଏହା କୌଟିଲ୍ୟଙ୍କ ଅର୍ଥଶାସ୍ତ୍ର ଏବଂ ନାଣେଘାଟର * ଶିଳାଲେଖରୁ ଜଣାଯାଏ । ପରବର୍ତ୍ତୀରେ ଏମାନଙ୍କ ମଧ୍ୟରେ ବ୍ରହ୍ମା, ବିଷ୍ଣୁ, ଓ ଶିବ ପ୍ରଭୃତି ଦେବତାମାନଙ୍କର ପ୍ରାଧାନ୍ୟ ପ୍ରାପ୍ତ ହୋଇଥିଲା ।

ଏହା ଛଡ଼ା ସ୍କନ୍ଦ, ସୂର୍ଯ୍ୟ ପ୍ରଭୃତି ଦେବତାମାନଙ୍କର ପୂଜାର ପ୍ରଚଳନ ହେଲା । ସର୍ବ ପ୍ରଥମରୁ ତତ୍ତ୍ୱଜ୍ଞାନରେ ବୈଦିକଧର୍ମର ବିଶେଷତ୍ୱ ଥିଲା । ଉପନିଷଦମାନଙ୍କରେ ଈଶ୍ୱର, ଜୀବ ଏବଂ ସାଂସାରିକ ବିଷୟମାନଙ୍କ ବିଷୟରେ ବହୁ ସ୍ଥାନରେ ଗମ୍ଭୀର ଓ ଉଦ୍‌ବୋଧକ ବିଚାର ଭିନ୍ନ ଭିନ୍ନ ରୂପରେ ହୋଇଥିଲା । ସେ ସମସ୍ତର ସମନ୍ୱୟ କରିବା ନିମନ୍ତେ ବେଦାନ୍ତସୂତ୍ର ଲେଖାଗଲା । ସେହିପରି ଯୋଗ, ନ୍ୟାୟ, ମୀମାଂସା ପ୍ରଭୃତି ଶାସ୍ତ୍ରମାନଙ୍କର ମୂଳଭୂତ ସୂତ୍ର ଗ୍ରନ୍ଥମାନ ଏହି ସମୟରେ ଲେଖାଯାଇଥିଲା । ଏ ସମସ୍ତ ବାଙ୍ମୟ ଦେଖିଲେ ବୈଦିକ ଧର୍ମ ବୌଦ୍ଧଧର୍ମକୁ ହଟାଇବା

---

* Bulher—Nanaghat Cave Inscription. A. S. W. I., Vol IX pp. 60 ff.

ସକାଶେ କପଟ ସୂତ୍ରପାତ କରିଥିଲା ଏବଂ ରାଜାଶ୍ରୟର ଅବକାଶ ପାଇଲା ମାନେ ବୌଦ୍ଧ ଧର୍ମକୁ କପଟ ବେଶରେ ପତିତ କଲା — ଏହା ଧ୍ୟାନରେ ଅସିଟିବ ।

ଖ୍ରୀଷ୍ଟୀୟ ଚତୁର୍ଥ ଶତାବ୍ଦୀର ପ୍ରଥମ ଭାଗରେ ଉତ୍ତର ହିନ୍ଦୁସ୍ଥାନରେ ଗୁପ୍ତ ଏବଂ ବର୍ଦ୍ଧନ ଦେଶରେ ବାକାଟକ ରାଜବଂଶ ଅଭ୍ୟୁଦୟ ଲାଭ କରିଥିବା ଦୃଷ୍ଟିଗୋଚର ହୁଏ । ଏମାନଙ୍କ ମଧ୍ୟରେ ପ୍ରଥମ ସାମ୍ରାଜ୍ୟର ସଂସ୍ଥାପକ ମହାରାଜ ଗୁପ୍ତ ମଗଧ ଦେଶର ଏକ ସାମନ୍ତ ରାଜା ଥିଲେ । ପ୍ରଥମ ଦୁଇ ପୁରୁଷର ଗୁପ୍ତମାନଙ୍କର ରାଜ୍ୟ ଗଙ୍ଗା-ତୀରବର୍ତ୍ତୀ ମଗଧ ଠାରୁ ଅଯୋଧ୍ୟା ପର୍ଯ୍ୟନ୍ତ ବିସ୍ତୃତ ଥିଲା । ମହାରାଜା ଗୁପ୍ତଙ୍କର ନାତି ପ୍ରଥମ ଚନ୍ଦ୍ରଗୁପ୍ତ ବୈଶାଳୀର ଲିଚ୍ଛବିକୁଳୋତ୍ପନ୍ନ ରାଜକନ୍ୟାଙ୍କୁ ବିବାହ କରିଥିଲେ । ଏହି ବିବାହ ଫଳରେ ବୈଶାଳୀ ଓ ମଗଧ ରାଜ୍ୟ ଏକଚ୍ଛତ୍ରାଧୀନ ହୋଇଥିଲା ଏବଂ ଏହା ଫଳରେ ଚନ୍ଦ୍ରଗୁପ୍ତଙ୍କର ଶକ୍ତି ବଢ଼ିଯାଇଥିଲା । ସେ ନିକଟ-ବର୍ତ୍ତୀ ଛୋଟ ଛୋଟ ରାଜ୍ୟମାନ ଜୟ କରି ନିଜ ରାଜ୍ୟରେ ଅନ୍ତର୍ଭୁକ୍ତ କଲେ ଏବଂ ମହାରାଜାଧିରାଜ ଉପାଧି ଧାରଣ କଲେ । ନିଜ ଏବଂ ଲିଚ୍ଛବିକୁଳର ପ୍ରତିପତ୍ତି ପ୍ରକଟ କରିବା ଉଦ୍ଦେଶ୍ୟରେ ନିଜ ଏବଂ ନିଜ ପତ୍ନୀଙ୍କ ନାମରେ ମୁଦ୍ରାମାନ ପ୍ରଚଳନ କଲେ । ସେ ଏକ ନୂତନ ବର୍ଷ ମଧ୍ୟ ପ୍ରବର୍ତ୍ତନ କଲେ । ପରେ ଏହି ବର୍ଷ ଗୁପ୍ତ-ସମ୍ବତ୍ ରୂପେ ପରିଚିତ ହେଲା । ତାଙ୍କର ପୁତ୍ର ତାଙ୍କଠାରୁ ବଳି ଅଧିକ ପରାକ୍ରମଶାଳୀ ଓ ମହତ୍ତ୍ୱାକାଙ୍କ୍ଷୀ ଥିଲେ । ସେ ଉତ୍ତର ହିନ୍ଦୁସ୍ଥାନର ଅନେକ ରାଜାମାନଙ୍କୁ ପରାଜିତ କରି, ସେମାନଙ୍କର ପ୍ରଦେଶମାନ ନିଜ ରାଜ୍ୟରେ ଯୋଗ କଲେ ଏବଂ ଦକ୍ଷିଣ ହିନ୍ଦୁସ୍ଥାନ ମଧ୍ୟ ଆକ୍ରମଣ କଲେ । ଏହି ଦିଗ୍‌ବିଜୟ ପରେ ସେ

ହରିଷେଣ ନାମକ ତାଙ୍କର ରାଜସଭାର କବିଙ୍କ ଦ୍ୱାରା ନିଜ ପରାକ୍ରମ ଗଦ୍ୟପଦ୍ୟମୟ କାବ୍ୟରେ ନିବଦ୍ଧ କରି, ସେହି କାବ୍ୟ ଅଶୋକଙ୍କ ଶିଳାସ୍ତମ୍ଭ ଉପରେ ଖୋଦନ କରାଇଲେ । ❋ ସେହି ସ୍ତମ୍ଭ ବର୍ତ୍ତମାନ ସୁଦ୍ଧା ପ୍ରୟାଗ ଦୁର୍ଗରେ ଅଛି । ଯଦ୍ୟପି ସେହି ଲେଖ ସାମାନ୍ୟ ଭାବେ ନଷ୍ଟ ହୋଇ ଯାଇଅଛି, ତଥାପି ତହିଁରୁ ତାଙ୍କ ଦିଗ୍‌ବିଜୟର ପୂର୍ଣ୍ଣ ପରିଚୟ ମିଳୁଅଛି ।

ସମୁଦ୍ରଗୁପ୍ତ ହିନ୍ଦୁ ଧର୍ମର ପୂର୍ଣ୍ଣ ଅଭିମାନୀ ଓ ଅଭ୍ୟୁଦାତା ଥିଲେ । ସେ ଦିଗ୍‌ବିଜୟ ପରେ ଅଶ୍ୱମେଧ ଯାଗ କରିଥିଲେ ଏବଂ ତାର ପ୍ରମାଣ ସ୍ୱରୂପ ମୁଦ୍ରାମାନ ପ୍ରଚଳନ କରିଥିଲେ । ପୁଷ୍ୟମିତ୍ର ଶୁଙ୍ଗଙ୍କ ମୃତ୍ୟୁପରେ ପ୍ରାୟ ପାଞ୍ଚଶତ ବର୍ଷ ପର୍ଯ୍ୟନ୍ତ ଉତ୍ତର ହିନ୍ଦୁସ୍ଥାନରେ କେତେକ ଅପବାଦ ଛଡ଼ା ଅନ୍ୟ କେହି ଅଶ୍ୱମେଧ ଯାଗ କରିଥିବା ପ୍ରମାଣ ମିଳେ ନାହିଁ । ଏ ହେତୁ ଏହାଙ୍କର ବଂଶଜ ରାଜାମାନଙ୍କ ଲେଖମାନଙ୍କରେ 'ଚିରୋତ୍ସନ୍ନାଶ୍ୱମେଧାହର୍ତ୍ତ୍ର' ଏହି ଯଥାର୍ଥ ବିଶେଷଣଦ୍ୱାରା ସମୁଦ୍ରଗୁପ୍ତଙ୍କର ପ୍ରଶଂସା କରା-ଯାଇ ଅଛି । ଏହାଙ୍କର ଅଶ୍ୱମେଧ କାଳୀନ ମୁଦ୍ରାମାନଙ୍କ ଉପରେ ତାଙ୍କର ନାମ 'ଅଶ୍ୱମେଧ ପରାକ୍ରମଃ' ବୋଲି ଲିଖିତ ହେବାର ଦେଖାଯାଏ । ସମୁଦ୍ରଗୁପ୍ତ ନିଜେ ଅସାଧାରଣ ପଣ୍ଡିତ, ରସିକ ଓ କଳାଭିଜ୍ଞ ଥିଲେ । ପଣ୍ଡିତମାନଙ୍କର ସମାବେଶ ଏହାଙ୍କର ଅତ୍ୟନ୍ତ ପ୍ରିୟ ଥିଲା । ସେ ନିଜେ ସମସ୍ତ ଶାସ୍ତ୍ର ଗମ୍ଭୀରଭାବେ ଅଧ୍ୟୟନ କରିଥିଲେ ଏବଂ ନିଜ କୁଶାଗ୍ରବୁଦ୍ଧିରେ ବୃହସ୍ପତି ଏବଂ ସଙ୍ଗୀତର ଅଦ୍ଭୁତ କୌଶଳରେ ତୁମ୍ବୁରୁ ଓ ନାରଦଙ୍କୁ ଲଜ୍ଜିତ କରି ଦେଉ

❋ See "Allahabad Stone Pillar Inscription of Samudragupta" (G. I. No. 1)

ଥିଲେ । ଉତ୍କୃଷ୍ଟ କାବ୍ୟ ରଚନା କରିଥିବାରୁ ତାଙ୍କୁ 'କବିରାଜ' ଉପାଧି ମିଳିଥିଲା । ହରିଷେଣ ପ୍ରଭୃତ କବିମାନେ ତାଙ୍କ ଠାରୁ କାବ୍ୟ ରଚନା ଶିକ୍ଷା କରିଥିଲେ—ଏ ସମସ୍ତ ପ୍ରୟାଗର ଶିଳା-ସ୍ତମ୍ଭରେ ଖୋଦିତ ଲେଖାରୁ ଜଣାଯାଏ ।

ଖ୍ରୀଷ୍ଟୀୟ. ୩୭୫ ସାଲ ଆଖପାଖ ସମୁଦ୍ରଗୁପ୍ତଙ୍କର ମୃତ୍ୟୁ ହୋଇଥିଲା । ତା ପରେ ତାଙ୍କର ପୁତ୍ର ଚନ୍ଦ୍ରଗୁପ୍ତ ବିକ୍ରମାଦିତ୍ୟ ସିଂହାସନ ଆରୋହଣ କରିଥିଲେ ବୋଲି ଏ ପର୍ଯ୍ୟନ୍ତ ସମସ୍ତେ ବୁଝି ଆସୁଥିଲେ । ପରନ୍ତୁ ଏହି କେତେ ବର୍ଷର ଅନୁସନ୍ଧାନରୁ ଜଣାଯାଏ—'ସମୁଦ୍ରଗୁପ୍ତଙ୍କ ପରେ ତାଙ୍କର ପୁତ୍ର ରାମଗୁପ୍ତ ରାଜ-ସିଂହାସନ ପାଇଥିଲେ । * ପଞ୍ଜାବ ଓ କାବୁଲର ଶାସକ କୁଶାନ ରାଜାମାନେ ସମୁଦ୍ରଗୁପ୍ତଙ୍କ ଠାରେ ନିଜ ମସ୍ତକ ନତ କରିଥିଲେ । କିନ୍ତୁ ତାଙ୍କ ମୃତ୍ୟୁ ପରେ ନିଜ ମସ୍ତକ ଟେକି ଉଠିଲେ ଏବଂ ରାଜ୍ୟରେ ଅଶାନ୍ତି ଉପୁଜାଇଲେ । ସେମାନଙ୍କର ଦମନ-ସକାଶେ ରାମଗୁପ୍ତ ସେମାନଙ୍କୁ ଆକ୍ରମଣ କରିଥିଲେ । ତାଙ୍କର ସହିତ ତାଙ୍କର ଭାଇ ଚନ୍ଦ୍ରଗୁପ୍ତ ଏବଂ ରାଣୀ ଧ୍ରୁବସ୍ୱାମିନୀ ମଧ୍ୟ ଥିଲେ । ଏହି ଆକ୍ରମଣରେ ସେ କେବଳ ଅପକୀର୍ତ୍ତି ଲାଭ କଲେ ଏବଂ ନିଜ-ରାଣୀଙ୍କୁ ଶତ୍ରୁ ଅନ୍ତଃପୁରକୁ ପଠାଇବେ ଏହି ଶର୍ତ୍ତରେ ସେ ଏବଂ ତାଙ୍କର ଅନୁଚରବର୍ଗ ମୁକ୍ତିଲାଭ କଲେ । ତାଙ୍କର ଭାଇ ଚନ୍ଦ୍ରଗୁପ୍ତ

* ଏ ବିଷୟରେ S. J.O. R. B. Vol XIV p. 223 ରେ ଡ଼ାଃ ଅଲତେକରଙ୍କର 'ଏକ ନବୀନ ଗୁପ୍ତ ରାଜା' ନାମକ ପ୍ରବନ୍ଧ ତଥା Ind. Ant. Vol L. XII 201-205 ପୃଷ୍ଠାରେ ପ୍ରକାଶିତ 'ରାମଗୁପ୍ତଙ୍କର ନୟା ପ୍ରକାଶ' ନାମକ ପ୍ରବନ୍ଧ ଦ୍ରଷ୍ଟବ୍ୟ ।

ବଡ଼ ବୀର ଓ ସ୍ୱକୁଳାଭିମାନୀ ଥିଲେ । ଏହି କାରଣରେ ସେ ବଡ଼ ବିଚଳିତ ହୋଇ ଥିଲେ । କିନ୍ତୁ ସେ ସମୟରେ ସେ ଶତ୍ରୁମାନଙ୍କର ପଞ୍ଜୁରିରେ ଆବଦ୍ଧ ଥିବାରୁ ନସ କରିବା ମାନିବା ଛଡ଼ା ତାଙ୍କର ଅନ୍ୟ ଗତି ନ ଥିଲା । ତଥାପି ସେ ବଡ଼ ଧୈର୍ଯ୍ୟବାନ୍ ଓ ଚତୁର ଥିଲେ । ସେ ନିଜେ ସ୍ତ୍ରୀ ବେଶ ଧାରଣ କରି ସ୍ତ୍ରୀବେଶଧାରୀ ନିଜ ସୈନିକମାନଙ୍କ ସହିତ ଶତ୍ରୁ ଶକରାଜାଙ୍କର ଶିବିରରେ ପ୍ରବେଶ କଲେ ଏବଂ ନିଜ ବାହୁବଳରେ ଶକ ରାଜାଙ୍କୁ ମାରିଦେଇ ତାଙ୍କର ସେନାକୁ ଅସ୍ତବ୍ୟସ୍ତ କରିଦେଲେ । ରାଣୀ ଧ୍ରୁବସ୍ୱାମିନୀଙ୍କର ନିଜ ପତିଙ୍କ ପ୍ରତି ଘୃଣା ଭାବ ଏବଂ ଦେବର ଚନ୍ଦ୍ରଗୁପ୍ତଙ୍କ ପ୍ରତି ଅନୁରାଗ ଜାତ ହେଲା । ପରେ ଚନ୍ଦ୍ରଗୁପ୍ତ ନିଜ ଭାଇ ରାମଗୁପ୍ତଙ୍କୁ ସିଂହାସନଚ୍ୟୁତ କରି ନିଜେ ସିଂହାସନରେ ବସିଲେ । ଗୁପ୍ତରାଜବଂଶର ପ୍ରଥା ଥିଲା—ପୁରୁଷାର୍ଥୀ କର୍ମବୀର କେବଳ ରାଜ୍ୟସିଂହାସନ ପାଇବେ । ଏଥିରୁ ଜଣାଯାଏ—ଚନ୍ଦ୍ରଗୁପ୍ତଙ୍କର ଏହି କାର୍ଯ୍ୟରେ କୁଶଳ ଓ ବିଚାରଶୀଳ ମନ୍ତ୍ରୀମାନଙ୍କର ପ୍ରବଳ ହାତ ଥିଲା । ତାପରେ ସେ ଧ୍ରୁବସ୍ୱାମିନୀଙ୍କୁ ବିବାହ କରି ଥିଲେ । ତାଙ୍କଠାରୁ କୁମାର ଗୁପ୍ତ ଓ ଗୋବିନ୍ଦଗୁପ୍ତ ନାମରେ ଦୁଇ ପୁତ୍ର ଜାତ ହୋଇଥିଲେ । ତାଙ୍କର 'କୁବେରନାଗା'-ନାମରେ ଅନ୍ୟ ଏକ ରାଣୀ ଥିଲେ । ତାଙ୍କ ଗର୍ଭରୁ ପ୍ରଭାବତୀ ଗୁପ୍ତା ନାମକ ଏକ କନ୍ୟା ଜାତ ହୋଇଥିଲା । ରାଜସିଂହାସନରେ ବସିବାମାତ୍ରେ ସେ ପ୍ରଥମେ ଉତ୍ତରରେ କୁଶାନ ରାଜାମାନଙ୍କୁ ମାରିଦେଲେ ଏବଂ ମାଳବ ଓ କାଠିଅବାଡ଼ରେ ଶାସନ କରୁଥିବା କ୍ଷତ୍ରପମାନଙ୍କୁ ଆକ୍ରମଣ କଲେ । ଏହି ଶକ ବଂଶୀୟ କ୍ଷତ୍ରପମାନେ କୁଶାନବଂଶୀୟ ରାଜାମାନଙ୍କଦ୍ୱାରା ନିଯୁକ୍ତ ସିନ୍ଧ, କାଠିଅବାଡ଼ ଓ ମାଳବ ପ୍ରାନ୍ତର ସାମନ୍ତ ରାଜା ଥିଲେ ।

ସେମାନଙ୍କର ଏହି ପ୍ରାନ୍ତମାନଙ୍କରେ ପ୍ରାୟ ୩୨୫ ବର୍ଷ ପର୍ଯ୍ୟନ୍ତ ଆଧିପତ୍ୟ ଥିଲା ଏବଂ ପରଶେଷରେ ଉତ୍ତରରେ ସେମାନଙ୍କର ସମ୍ରାଟଙ୍କର ସତ୍ତା ଯେତେବେଳେ ଏକବାରେ ଲୁପ୍ତ ହେବାକୁ ବସିଲା, ସେତେବେଳେ ସେମାନେ ବାହାରେ ନିଜକୁ କ୍ଷତ୍ରପ ବା ମହାକ୍ଷତ୍ରପ ବୋଲି ଘୋଷଣା କରୁଥିଲେ ମଧ୍ୟ କାର୍ଯ୍ୟତଃ ପୂର୍ଣ୍ଣଭାବେ ସ୍ୱତନ୍ତ୍ର ଥିଲେ । ଏହି ପ୍ରବଳ ଶତ୍ରୁମାନଙ୍କୁ ପରାସ୍ତ କରିବା ସକାଶେ କୌଣସି ଏକ ବଳିଷ୍ଠ ରାଜାଙ୍କର ସାହାଯ୍ୟର ଆବଶ୍ୟକତା ଥିଲା । ଏହି ସମୟରେ ଦକ୍ଷିଣରେ ବାକାଟକ ରାଜାମାନଙ୍କର ଉଦୟ ହୋଇ ଆସୁଥିଲା । ଏହିମାନଙ୍କର ବଂଶର ମୂଳପୁରୁଷ ବିନ୍ଧ୍ୟଶକ୍ତିଙ୍କର ନାମ ପୁରାଣମାନଙ୍କରେ ଏବଂ ଅଜନ୍ତାର ଏକ ଭଗ୍ନ ଲେଖରେ ଦେଖିବାକୁ ମିଳେ । ଅଜନ୍ତାରେ ତାଙ୍କୁ ଦ୍ୱିଜ ବୋଲି ସମ୍ବୋଧନ କରାଯାଇଅଛି । ଏହି ହେତୁ ଅନ୍ଧ୍ରମାନଙ୍କ ପରି ବାକାଟକମାନେ ମଧ୍ୟ ବ୍ରାହ୍ମଣ ବୋଲି ପ୍ରମାଣିତ ହୁଏ । ବିନ୍ଧ୍ୟଶକ୍ତି ମଗଧର ମହାରାଜ ଗୁପ୍ତଙ୍କର ସମକାଳୀନ ହେବେ । ଏହାଙ୍କର ପ୍ରଥମପୁତ୍ର ପ୍ରବରସେନ ଅଗ୍ନିଷ୍ଟୋମ ଆପ୍ତୋର୍ଯ୍ୟାମ ପ୍ରଭୃତି ଶ୍ରୌତ ଯଜ୍ଞମାନ କରିଥିଲେ । କାଳକ୍ରମେ ଏହି ବଂଶରେ ପୃଥ୍ୱୀ-ଷେଣ ନାମରେ ଏକ ପ୍ରବଳପରାକ୍ରମ ରାଜା ଥିଲେ, ସେ ସମୁଦ୍ରଗୁପ୍ତଙ୍କର ସମକାଳୀନ ଥିଲେ । ତାଙ୍କର ରାଜ୍ୟ ଉତ୍ତର ଦକ୍ଷିଣରେ ବିସ୍ତୃତ ଥିଲା । ସମୁଦ୍ରଗୁପ୍ତ ଦକ୍ଷିଣରେ ପୂର୍ବ ତଟବର୍ତ୍ତୀ ଦେଶମାନ ଜୟ କରିଥିଲେ କିନ୍ତୁ ପଶ୍ଚିମର ଦେଶମାନଙ୍କୁ ଜୟ ନ କରି ଫେରି ଆସିଥିଲେ । ଏଥିରୁ ଅନୁମାନ ହୁଏ—ସେ ଜାଣି ଶୁଣି ବାକାଟକମାନଙ୍କୁ ଛୁଇଁ ନ ଥିଲେ । ବାକାଟକ ଏବଂ କ୍ଷତ୍ରପ-ରାଜାମାନଙ୍କର ରାଜ୍ୟସୀମା ପରସ୍ପର ମିଳିତ ଥିଲା । ଏ ହେତୁ ସେମାନଙ୍କ ମଧ୍ୟରେ ରାଜନୈତିକ ସିଦ୍ଧାନ୍ତ ଅନୁଯାୟୀ ପରସ୍ପର

ଅସନ୍ତୋଷ ରହିଥିଲା । ଏ ହେତୁ ଚନ୍ଦ୍ରଗୁପ୍ତ ବାକାଟକମାନଙ୍କ ସହିତ ମୈତ୍ରୀ ସ୍ଥାପନ କରି କ୍ଷତ୍ରପମାନଙ୍କୁ ଆକ୍ରମଣ କଲେ ଏବଂ ଧ୍ୱସ୍ତ କରି ଦେଲେ । ରାଜନୈତିକ କାରଣବଶତଃ ଜମ୍ପନ୍ଧ ଏହି ସମ୍ବନ୍ଧକୁ ଦୃଢ଼ କରିବା ସକାଶେ ନିଜ କନ୍ୟା ପ୍ରଭାବତୀ ଗୁପ୍ତାଙ୍କୁ ପୃଥ୍ୱୀଷେଣଙ୍କର ଦ୍ୱିତୀୟ ପୁତ୍ର ରୁଦ୍ରସେନଙ୍କ ସହିତ ବିବାହ କରାଇଥିଲେ । ଏହି ଘଟନା ଖ୍ରୀଷ୍ଟୀୟ ୩୯୫ ସାଲର ଆଖପାଖ ସମୟର ଘଟନା ହୋଇଥିବ । ମୁଦ୍ରା ଏବଂ ଶିଳାଲେଖମାନଙ୍କର ପରୀକ୍ଷକମାନେ ଏହି ପରି ଅନୁମାନ କରନ୍ତି । *

ଚନ୍ଦ୍ରଗୁପ୍ତ, କ୍ଷତ୍ରପମାନଙ୍କୁ ସମୂଳେ ଉତ୍ପାଟନ କରି ମାଳବ ଓ କାଠିଆବାଡ଼—ଏହି ଦୁଇ ପ୍ରାନ୍ତକୁ ନିଜ ରାଜ୍ୟରେ ମିଶାଇ ଦେଲେ । ଉଜ୍ଜୟିନୀକୁ ନିଜ ରାଜଧାନୀ କଲେ ଏବଂ 'ବିକ୍ରମାଦିତ୍ୟ' ଉପାଧି ଧାରଣ କଲେ । ସେହି ଦିନଠାରୁ ଉଜ୍ଜୟିନୀ ସହିତ ବିକ୍ରମାଦିତ୍ୟଙ୍କର ନାମ ସମ୍ପୃକ୍ତ ହେଲା । ଏହା ପରେ କେତେବର୍ଷ ଉତ୍ତାରୁ ତାଙ୍କର ଜାମାତା ଦ୍ୱିତୀୟ ରୁଦ୍ରସେନଙ୍କର ମୃତ୍ୟୁ ହେଲା । ସେ ସମୟରେ ରୁଦ୍ରସେନଙ୍କର ଦିବାକରସେନ ଓ ଦାମୋଦରସେନ (ପ୍ରବରସେନ) ନାମରେ ଦୁଇ ପୁତ୍ର ଅତ୍ୟନ୍ତ ବାଳକ ଥିଲେ । ଏହେତୁ ଚନ୍ଦ୍ରଗୁପ୍ତ ନିଜ ଦରବାରର ଚତୁର କାର୍ଯ୍ୟଦକ୍ଷ ଅଧିକାରୀଙ୍କୁ ନିଜ ପୁତ୍ରିକା ପ୍ରଭାବତୀ ଗୁପ୍ତାଙ୍କ ରାଜକାର୍ଯ୍ୟ-ପରିଚାଳନାରେ ସାହାଯ୍ୟ କରିବାକୁ ବିଦର୍ଭ ଦେଶକୁ ପଠାଇ

* V. V. Mirasi : Vakataka Dynasty of C. P. and Berar, (Bulltion of the Nagpur University Historical Society)

ଥିଲେ । ପ୍ରବରସେନ ବୟଃପ୍ରାପ୍ତ ହେଲା ପରେ ରାଜସିଂହାସନ ଲାଭ କଲେ । ଏହି ସମୟରେ କାଳିଦାସ ବିଦର୍ଭ ଦେଶକୁ ଆସି ଥାଇ ପାରନ୍ତି ।

ଏହାପରେ ଚନ୍ଦ୍ରଗୁପ୍ତଙ୍କର ରାଜ୍ୟ ସମଗ୍ର ଉତ୍ତର ହିନ୍ଦୁସ୍ଥାନରେ ବିସ୍ତୃତ ହେଲା । ଦକ୍ଷିଣ ଭାରତରେ କୁନ୍ତଳ ଓ ବିଦର୍ଭ-ରାଜ୍ୟ ଶାସନ ତାଙ୍କର ଆଦେଶ ଅନୁଯାୟୀ ପରିଚାଳିତ ହେଉଥିଲା । ଏହାଙ୍କର ବିଶାଳ ସାମ୍ରାଜ୍ୟରେ ସର୍ବତ୍ର ହିନ୍ଦୁଧର୍ମ ପ୍ରସାର ଲାଭ କଲା । ଏହି ସମୟରେ ହିନ୍ଦୁଦେବତାମାନଙ୍କ ଉଦ୍ଦେଶ୍ୟରେ ଅର୍ପିତ ଦାନମାନଙ୍କର ଉଲ୍ଲେଖ ଲେଖମାନଙ୍କରେ ଦେଖିବାକୁ ମିଳେ । ଅଳ୍ପ ଦିନ ତଳେ ମିଳିଥିବା ମଥୁରାର ଏକ ଶିଳାଲେଖରେ ଏକ ଶୈବ ଆଚାର୍ଯ୍ୟ ଶିବଲିଙ୍ଗ ପ୍ରତିଷ୍ଠା କରିଥିବା ବିଷୟ ଉଲ୍ଲିଖିତ ହୋଇଅଛି । ଚନ୍ଦ୍ରଗୁପ୍ତଙ୍କର ଏକ ମାଣ୍ଡଳିକ ରାଜା ଉଦୟଗିରିରେ ବିଷ୍ଣୁ ଓ ଚଣ୍ଡୀଙ୍କର ମୂର୍ତ୍ତି ସ୍ଥାପନ କରିଥିଲେ । ଏହି ମୂର୍ତ୍ତିମାନ ବର୍ତ୍ତମାନ ସୁଦ୍ଧା ଅଛନ୍ତି । ଅନ୍ୟ ଏକ ଶିଳାଲେଖରେ ଚନ୍ଦ୍ରଗୁପ୍ତଙ୍କର ବୀରସେନ ନାମକ ଏକ ପରରାଷ୍ଟ୍ର ମନ୍ତ୍ରୀ ଶିବପୂଜା ସକାଶେ ଏକ ଗୁମ୍ଫା ନିର୍ମାଣ କରିଥିବା ବିଷୟ ଉଲ୍ଲିଖିତ ଅଛି । ବିଦର୍ଭରେ ପ୍ରଭାବତୀ ଗୁପ୍ତା ରାମଟେକରେ କାର୍ତ୍ତିକ ଶୁକ୍ଳ ଦ୍ୱାଦଶୀ ଦିନ ଶ୍ରୀରାମଚନ୍ଦ୍ରଙ୍କ ମନ୍ଦିରରେ ଏକ ବ୍ରାହ୍ମଣଙ୍କୁ ଦେଇଥିବା ତାମ୍ରପତ୍ର ପ୍ରସିଦ୍ଧ । ଚନ୍ଦ୍ରଗୁପ୍ତ ଓ ତାଙ୍କର ଜାମାତା ଦୁହେଁ ବିଷ୍ଣୁଭକ୍ତ ଥିଲେ । ମାତ୍ର ଚନ୍ଦ୍ରଗୁପ୍ତଙ୍କର ନାତି ଦ୍ୱିତୀୟ ପ୍ରବରସେନ ଶିବୋ-ପାସକ ଥିଲେ । ଏ ସମସ୍ତ ଉଲ୍ଲେଖରୁ ଚନ୍ଦ୍ରଗୁପ୍ତଙ୍କ ସାମ୍ରାଜ୍ୟ-ସମୟରେ ହିନ୍ଦୁଧର୍ମର ଉତ୍କର୍ଷ କେତେ ଦୂର ବଢ଼ିଥିଲା — ତାହା ଜଣାଯାଏ ।

ଚନ୍ଦ୍ରଗୁପ୍ତ ନିଜେ ବଡ଼ ପଣ୍ଡିତ, ରସିକ ଏବଂ ସଂସ୍କୃତ-ବିଦ୍ୟାର ଅଭିମାନୀ ଥିଲେ । ଉଜ୍ଜୟିନୀର ବିଦ୍ୱତ୍‌ପରିଷଦର ସମ୍ମୁଖରେ ସେ କାଳିଦାସାଦି କବିଙ୍କ ପରି ନିଜେ ପରୀକ୍ଷା ଦେଇଥିଲେ— ଏହା ପୂର୍ବ ପ୍ରକରଣରେ ଉଲ୍ଲିଖିତ ହୋଇ ଅଛି । ଏହାଙ୍କର ଏକ ସ୍ୱର୍ଣ୍ଣ ମୁଦ୍ରାରେ ତାଙ୍କୁ 'ରୂପକୃତି' ବୋଲି କୁହା ଯାଇ ଅଛି । ଏଥିରୁ ଜଣାଯାଏ—ସେ ଏକ ନାଟକ ଲେଖିଥିଲେ । ଚନ୍ଦ୍ରଗୁପ୍ତ ନିଜ ଅନ୍ତଃପୁରରେ ସଂସ୍କୃତ ଭାଷା ବ୍ୟବହାର କରିବାକୁ ହେବ ବୋଲି ନିୟମ କରାଇ ଥିଲେ । ତାଙ୍କ ସ୍ୱର୍ଣ୍ଣମୁଦ୍ରାମାନଙ୍କ ଉପରେ ଶ୍ଳୋକାର୍ଦ୍ଧରେ ଭିନ୍ନ ଭିନ୍ନ ଅଳଙ୍କାରିକ ବର୍ଣ୍ଣନା ଦେଖାଯାଏ । ତହିଁରୁ ଜଣାଯାଏ—ତାଙ୍କର ସଂସ୍କୃତଭାଷା ପ୍ରତି କିପରି ଗଭୀର ଅନୁରକ୍ତି ଥିଲା । ସଂସ୍କୃତ ଭାଷାକୁ ଏହିପରି ପ୍ରୋତ୍ସାହ ଦେବା ରାଜା ଯେତେବେଳେ ମିଳିଲେ, ସେତେବେଳେ ସେ ଅତ୍ୟନ୍ତ ସମୃଦ୍ଧ ହୋଇ ଉଠିଲା । ଚନ୍ଦ୍ରଗୁପ୍ତ ପଣ୍ଡିତମାନଙ୍କୁ ରାଜ୍ୟର ବଡ଼ ବଡ଼ ଅଧିକାର ପୂର୍ଣ୍ଣ ପଦମାନଙ୍କରେ ନିଯୁକ୍ତ କରୁଥିଲେ । ଏହାଙ୍କର ପରରାଷ୍ଟ୍ରମନ୍ତ୍ରୀ କୌତ୍ସଗୋତ୍ରୀୟ ବୀରସେନ ଶାବ, ବ୍ୟାକରଣ, ଅର୍ଥଶାସ୍ତ୍ର ଓ ନ୍ୟାୟଶାସ୍ତ୍ରରେ ପାରଙ୍ଗମ ଓ କବି ଥିଲେ । ଏହିପରି ତାଙ୍କର ଲେଖାରୁ ଜଣାଯାଏ । 'ମୁଦ୍ରାରାକ୍ଷସ' ନାଟକ ରଚୟିତା ବିଶାଖଦତ୍ତ ମଧ୍ୟ ଚନ୍ଦ୍ରଗୁପ୍ତଙ୍କର ରାଜସଭାରେ ଥିଲେ ବୋଲି କେତେକଙ୍କର ମତ । ବର୍ତ୍ତମାନ ସେହି କବିଙ୍କର ରଚିତ 'ଦେବୀ-ଚନ୍ଦ୍ରଗୁପ୍ତମ୍' ନାମକ ନାଟକର କେତେକ ଅଂଶ ମିଳିଅଛି । ସେଥିରୁ ଉପର୍ଯ୍ୟୁକ୍ତ ରାମଗୁପ୍ତଙ୍କର ବୃତ୍ତାନ୍ତ ଜଣାଯାଏ । ଏହା ଛଡ଼ା କାମନ୍ଦକଙ୍କର ନୀତିସାରନାମକ ଅର୍ଥଶାସ୍ତ୍ର ଗ୍ରନ୍ଥ ଏବଂ କେତେ ପୁରାଣ ଏହାଙ୍କ ସମୟରେ ରଚିତ ହୋଇଅଛି । ଏହି ସମୟରେ ସ୍ଥାପତ୍ୟ, ଶିଳ୍ପ, ଚିତ୍ରାଦି କଳାମାନ ପରିପୁଷ୍ଟି ଲାଭ କରିଥିଲା । \

ଗୁପ୍ତକାଳର କେତେକ ମନ୍ଦିର ମଧ୍ୟ ବର୍ତ୍ତମାନ କେତେକ ସ୍ଥାନରେ ଦୃଷ୍ଟିଗୋଚର ହୁଏ । ଉଦୟଗିରି ଏବଂ ଅନ୍ୟାନ୍ୟ ସ୍ଥଳରେ ଶିଳ୍ପକଳାର ନମୁନା ଏବଂ ଅଜନ୍ତାର ଗୁମ୍ଫାମାନଙ୍କରେ ଚିତ୍ରକଳାର କେତେକ ଚିହ୍ନ ଅବଶିଷ୍ଟ ରହିଛି । ସେ ସମୟରେ ଭାରତୀୟ ଶିଳ୍ପିଗଣ କିପରି କଳାମାନଙ୍କରେ ଧୁରୀଣ ଥିଲେ—ସେଥିରୁ ସହଜରେ କଳ୍ପନା କରି ହେବ ।

ଚନ୍ଦ୍ରଗୁପ୍ତଙ୍କର ରାଜ୍ୟରେ ସର୍ବତ୍ର ଶାନ୍ତି, ସୁବ୍ୟବସ୍ଥା ଓ ସୌହାର୍ଦ୍ଦ୍ୟ ଥିଲା । ଏହା ସେ ସମୟର ଲେଖମାନଙ୍କରୁ ପ୍ରମାଣିତ ହୁଏ । ହିନ୍ଦୁ, ବୌଦ୍ଧ, ଜୈନ ପ୍ରଭୃତି ଭାରତୀୟ ବିଭିନ୍ନ ଧର୍ମାବଲମ୍ବୀମାନଙ୍କୁ ନିଜ ନିଜ ଧର୍ମାଦେଶ ଅନୁଯାୟୀ ରହିବାକୁ ପୂର୍ଣ୍ଣ ସ୍ୱତନ୍ତ୍ରତା ଦିଆଯାଇ ଥିଲା । ସମୁଦ୍ରଗୁପ୍ତଙ୍କର ଦିଗ୍‌ବିଜୟରେ ରାଜ୍ୟ ବହୁ ପରିମାଣରେ ବଢ଼ି ଯାଇଥିଲା । ଅନେକ ରାଜା ତାଙ୍କୁ ଭେଟି ଓ କର ଦେଉଥିଲେ । ବ୍ୟବସାୟର ମାର୍ଗ ଖୋଲି ଥିଲା । ବୀର ଓ ଗୁଣୀମାନଙ୍କୁ ନିଜ ନିଜ ବୀର୍ଯ୍ୟ ଓ ଗୁଣ ଦେଖାଇବାକୁ ସୁଯୋଗ ମିଳୁଥିଲା ଏବଂ ବିଦ୍ୱତ୍ତାର ସମାଦର ହେବାକୁ ଲାଗିଲା । ମୁଦ୍ରାଶାସ୍ତ୍ରର ସିଦ୍ଧାନ୍ତ ହେଉଛି ବିଭବର ପ୍ରତିବିମ୍ବ ତତ୍କାଳୀନ ପ୍ରଚଳିତ ମୁଦ୍ରାମାନଙ୍କରେ ଦେଖାଯାଇ ଥାଏ । ଚନ୍ଦ୍ରଗୁପ୍ତଙ୍କର ସ୍ୱର୍ଣ୍ଣମୁଦ୍ରା ଭିନ୍ନ ଭିନ୍ନ ରକମର ଏବଂ ବହୁ ପରିମାଣରେ ମିଳୁଅଛି । ସେମାନଙ୍କରୁ ତାଙ୍କ ରାଜ୍ୟରେ ସର୍ବାଙ୍ଗୀଣ ଉନ୍ନତିର ପ୍ରବାହ ବହୁଥିଲା ବୋଲି ଅନୁମାନ କରାଯାଏ । ଫାହିୟାନ (ଚୀନ ପରିବ୍ରାଜକ) ଉତ୍ତର ହିନ୍ଦୁସ୍ଥାନରେ ଶହ ଶହ ମାଇଲ୍ ଯାତ୍ରା କରିଥିଲେ କିନ୍ତୁ କୌଣସି ସ୍ଥାନରେ ସୁଦ୍ଧା ଚୋର ଡକାଇତଙ୍କର ଭୟ ପାଇ ନ ଥିଲେ । ତହିଁରୁ ଚନ୍ଦ୍ରଗୁପ୍ତଙ୍କ ରାଜ୍ୟରେ ସୁବ୍ୟବସ୍ଥା

ଥିବା ପରିଚୟ ମିଳେ । ସମସ୍ତ ଲୋକେ ମୂର୍ଖାଁ ଓ ନିଷ୍ଠୁର ରହି ଗୁଣମାନଙ୍କର ଉନ୍ନତି କରିବାରେ ଏବଂ ଅନ୍ୟମାନଙ୍କୁ ଟପିଯିବାକୁ ସ୍ପର୍ଦ୍ଧା କରିବାରେ ତତ୍ପର ରହୁଥିଲେ । ଦେଶରେ ସର୍ବତ୍ର ଔଷଧାଳୟ ଓ ଧର୍ମଶାଳାମାନ ସ୍ଥାପିତ ହୋଇଥିଲା । ତଥା ସେମାନଙ୍କରେ ଅନ୍ନ, ଜଳ ଓ ଔଷଧ ବିନା ପଇସାରେ ବିତରଣ କରିବା ବ୍ୟବସ୍ଥା ଥିଲା । ରାଜ୍ୟ ଶାସନ ବିଶେଷ ଦକ୍ଷତା-ସହିତ ଚାଲୁଥିଲା । ଅପରାଧୀମାନଙ୍କୁ ଉତ୍କଟ ଦଣ୍ଡମାନ ଦିଆଯାଉ ନ ଥିଲା । ମୋଟାମୋଟିରେ କହିବାକୁ ଗଲେ ସେ ସମୟର ଲୋକ-ମାନଙ୍କୁ ଚନ୍ଦ୍ରଗୁପ୍ତଙ୍କର ରାଜ୍ୟରେ ରାମରାଜ୍ୟର ସୁଖ ମିଳୁଥିଲା ।

ଏହି ଗୁପ୍ତକାଳୀନ ପରିସ୍ଥିତିର ପ୍ରତିବିମ୍ବ କାଳିଦାସଙ୍କର କାବ୍ୟମାନଙ୍କରେ ସ୍ପଷ୍ଟଭାବେ ପ୍ରକାଶିତ । ପ୍ରଫେସର କୀଥଙ୍କର କହିବା ପ୍ରକାରେ କାଳିଦାସଙ୍କର ସମସ୍ତ ଗ୍ରନ୍ଥମାନଙ୍କରେ ତାତ୍କାଳିକ ପରିସ୍ଥିତି ବିଷୟରେ ଯେଉଁ ସନ୍ତୋଷ ଓ ଶାନ୍ତିର ଚିହ୍ନ ଦେଖାଯାଏ ସେ ସମସ୍ତ ଗୁପ୍ତକାଳୀନ ପରିସ୍ଥିତିର ଦ୍ୟୋତକ । ସେହି ପରି ତାଙ୍କର ଗ୍ରନ୍ଥମାନଙ୍କରେ ଯେଉଁ ଦିଗ୍‌ବିଜୟ, ଅଶ୍ୱମେଧ ପ୍ରଭୃତିର ବର୍ଣ୍ଣନା ଦେଖାଯାଏ, ସେ ସମସ୍ତରେ ଐତିହାସିକମାନେ ଗୁପ୍ତକାଳୀନ ପରିସ୍ଥିତି ସ୍ପଷ୍ଟଭାବେ ଦେଖିପାରନ୍ତି । ଦିଲୀପ, ରଘୁ, ରାମ ପ୍ରଭୃତି ଏକ ପରେ ଏକ ରାଜର୍ଷିମାନଙ୍କର ଚରିତ୍ର ସରସ ବାକ୍ୟରେ ବର୍ଣ୍ଣନ କଲା ସମୟରେ କାଳିଦାସଙ୍କର ଆଖି ଆଗରେ ସମୁଦ୍ରଗୁପ୍ତ-ଚନ୍ଦ୍ରଗୁପ୍ତ ସଦୃଶ ଶୂର, ଧୀର, ବିଦ୍ୱାନ୍ ପ୍ରତିଭା-ସମ୍ପନ୍ନ, ରସିକ ତଥା ଉଦାର ରାଜାଧିରାଜମାନଙ୍କ ଉଦାହରଣ ନାଚି ଯାଉଥିଲା । ବଶିଷ୍ଠଙ୍କ ଆଶ୍ରମାଭିମୁଖରେ ଯାଉଥିବା ଦିଲୀପଙ୍କୁ ବ୍ରାହ୍ମଣମାନଙ୍କୁ ଦିଆଯାଇ ଥିବା ଗ୍ରାମମାନଙ୍କରେ ଯଜ୍ଞସ୍ତମ୍ଭ

ଦେଖାଯାଉ ଥିଲା । ତାଙ୍କ ପ୍ରଜାମାନେ ମନୁଙ୍କଦ୍ୱାରା ନିର୍ଦ୍ଧାରିତ ମାର୍ଗରୁ ରେଖାମାତ୍ର ବିଚଳିତ ହେଉ ନ ଥିଲେ । ନିଜ ପାଖକୁ ଗୁରୁ ଦକ୍ଷିଣା ଦେବା ସକାଶେ ଉପସ୍ଥିତ ବ୍ରାହ୍ମଣ ବିମୁଖ ହୋଇ ଯିବେ ବୋଲି ରଘୁ କୁବେରଙ୍କୁ ଆକ୍ରମଣ କରିବାକୁ ନିଶ୍ଚୟ କରି ଥିଲେ । ଅତିଥିମାନଙ୍କ ରାଜ୍ୟରେ ବ୍ୟାପାରୀମାନଙ୍କୁ ନଦୀମାନ ନିଜ ଘରର କୂଅ ପରି ଦେଖାଯାଉଥିଲା ଏବଂ ସେମାନେ ବଣ ଅରଣ୍ୟରେ ନିଜ ଘର ପରି ନିଃଶଙ୍କ ହୋଇ ବିଚରଣ କରି ପାରୁଥିଲେ । ସେହି ପରି ପୃଥିବୀ ନିଜ ରକ୍ଷା ବିନିମୟରେ ଖଣିରୁ ରତ୍ନ, କ୍ଷେତ୍ରମାନଙ୍କରୁ ଉତ୍କୃଷ୍ଟ ଅନ୍ନସମ୍ପତ୍ତି ଏବଂ ଅରଣ୍ୟରୁ ହସ୍ତୀରୂପରେ ରାଜାଙ୍କୁ ନିଜ ଭେଟି ଅର୍ପଣ କରୁଥିଲା । ଉଜ୍ଜୟିନୀର ବଜାରରେ ଦୋକାନରେ କୋଟି କୋଟି ଢେଙ୍କାଯାକ ମୋତି, ହାର, ଶଂଖ, ସୀପ, ଇନ୍ଦ୍ରନୀଳମଣି ତଥା ଅନ୍ୟାନ୍ୟ ମଣି ମାଣିକ୍ୟ ବିସ୍ତୃତ ହେବା ଦେଖି ମନେ ହେଉଥିଲା ଯେ ବଜାରରେ ରତ୍ନାକର (ସମୁଦ୍ର)ର ସମସ୍ତ ରତ୍ନନିଧି ମେଳବାନ୍ଧି ଚାଲି ଆସିଛନ୍ତି ଏବଂ କେବଳ ପାଣି ସମୁଦ୍ରରେ ଅବଶିଷ୍ଟ ରହି ଅଛି । ବୈଭବ-ସମ୍ପନ୍ନ ହେବା ହେତୁ ଉଜ୍ଜୟିନୀର 'ବିଶାଳା'ନାମ ସାର୍ଥକ ହୋଇ ଅଛି । ନିଜ ପୁଣ୍ୟ କମିଯିବା ଦେଖି ସ୍ୱର୍ଗସ୍ଥ ଦେବତାମାନେ ଉଜ୍ଜୟିନୀ ଆସି ବାସ କରୁଥିଲେ ଏବଂ ଉଜ୍ଜୟିନୀ ନିଜ ଅବଶିଷ୍ଟ ପୁଣ୍ୟରୁ ସ୍ୱର୍ଗରୁ ଆଣିଥିବା ଏକ ସ୍ୱର୍ଗ ଖଣ୍ଡ ପରି ଶୋଭା ପାଉଥିଲା । ସୌରାଜ୍ୟବଶତଃ ବିଦର୍ଭ ଅତ୍ୟନ୍ତ ରମଣୀୟ ପ୍ରଦେଶ ହୋଇ ଉଠିଲା । ତାର ରାଜଧାନୀ ଅତ୍ୟନ୍ତ ସମୃଦ୍ଧ ଥିଲା । ଇତ୍ୟାଦି ବର୍ଣ୍ଣନା କାଳିଦାସଙ୍କ ଗ୍ରନ୍ଥମାନଙ୍କରୁ ପଢ଼ି ବହୁଶ୍ରୁତ ପାଠକମାନଙ୍କର ମନେ ହେବ— ଯେପରି ତାଙ୍କ ସମ୍ମୁଖରେ ସମସ୍ତ ଗୁପ୍ତକାଳ

ପ୍ରତ୍ୟକ୍ଷ ହୋଇ ଛୁଡ଼ା ହୋଇ ଅଛି । କୌଣସି କବିଙ୍କର ଗ୍ରନ୍ଥ-ମାନଙ୍କରେ ବିଶେଷତଃ ତାଙ୍କର ସାମାଜିକ ସ୍ଥିତିର ବର୍ଣ୍ଣନାରେ ତାହାଙ୍କ ପରିସ୍ଥିତିର ପ୍ରତିବିମ୍ବ ଅଜ୍ଞାତସାରରେ ପଡ଼ିଥାଏ । କାଳିଦାସଙ୍କର ଗ୍ରନ୍ଥମାନଙ୍କରେ ଯେଉଁ ପ୍ରତିବିମ୍ବ ଦେଖାଗଲେ ଏଥିରେ ଆଶ୍ଚର୍ଯ୍ୟ ହେବାର କୌଣସି କାରଣ ନାହିଁ ।



# ୩ ଜନ୍ମସ୍ଥାନ ସମସ୍ୟା

**Others abide our question. Thou art free !**
**We ask and ask-Thou smilest and art still,**
**Outtopping knowledge.***

**Mathew Arnold.**

'ଅନ୍ୟକବିମାନେ ଆମ ପ୍ରଶ୍ନର ଉତ୍ତର ଦିଅନ୍ତି ମାତ୍ର ତୁମେ ସେମାନଙ୍କଠାରୁ ଦୂରରେ । ଆମେ ବାରମ୍ବାର ପଚାରୁଛୁ । ତଥାପି ତୁମେ ଆମ ଜ୍ଞାନର ପରିଧିର ବାହାରେ ରହି ସ୍ମିତ ପ୍ରକାଶ କରି ତୁନି ରହୁଛ ।'

କାଳିଦାସଙ୍କର ଜୀବନକାଳ ବିଷୟରେ ନାନାବିଧ ମତ ପରୀକ୍ଷା କରି ଆମେ ପ୍ରଥମ ପରିଚ୍ଛେଦରେ ସ୍ଥିର କରିଛୁ ଯେ ସେ ଉଜ୍ଜୟିନୀର ଦ୍ୱିତୀୟ ଚନ୍ଦ୍ରଗୁପ୍ତ ବିକ୍ରମାଦିତ୍ୟଙ୍କ ଶାସନ ସମୟରେ ଥିଲେ । ତହିଁରୁ ମଧ୍ୟ ସ୍ପଷ୍ଟ ହେଉଅଛି ଯେ ତାଙ୍କ ଜୀବନର ଶେଷ ଭାଗ ସେ ଉଜ୍ଜୟିନୀରେ ଅତିବାହିତ କରିଥିଲେ । ଏ ବିଷୟରେ ସମସ୍ତେ ଏକମତ । ତେବେ ମଧ୍ୟ ଏହାଙ୍କର ମୂଳସ୍ଥାନ କେଉଁଠି, ଜନ୍ମଭୂମି କେଉଁ ପ୍ରଦେଶରେ, ସ୍ୱଭାବତଃ ସଂସ୍କାରକ୍ଷମ ଏହାଙ୍କ ଅନ୍ତରରେ ସର୍ବପ୍ରଥମେ କେଉଁ ପ୍ରଦେଶର ପ୍ରକୃତି ଓ ଓ ସଂସ୍କୃତିର ପ୍ରଭାବ ପଡ଼ିଥିଲା—ଏସମସ୍ତ ବିଷୟରେ ଦର୍ଶନିକମାନେ ଭିନ୍ନ ଭିନ୍ନ ମତ ପୋଷଣ କରନ୍ତି । ବର୍ତ୍ତମାନ ସେ ସମସ୍ତ ସଂକ୍ଷିପ୍ତଭାବେ ବିଚାର କରିବା ।

* ଇଂରେଜ ମହାକବି ସେକ୍ସପିୟରଙ୍କ ସମ୍ବନ୍ଧରେ କଥିତ ଏହି ଉକ୍ତି କବିକୁଳଗୁରୁ କାଳିଦାସଙ୍କ ବିଷୟରେ ମଧ୍ୟ ଅକ୍ଷରଶଃ ପ୍ରଯୋଜ୍ୟ ।

ବର୍ତ୍ତମାନ ସର୍ବପ୍ରଥମେ ଭାବୁକତାପ୍ରବଣ ବଙ୍ଗାଳୀଭାଇ-ମାନଙ୍କର ମତର ସମୀକ୍ଷା କରିବା । ସେମାନେ ଅଭିମାନ-ସହକାରେ କହନ୍ତି ଯେ ସମଗ୍ର ଭାରତର ଲଳାମଭୂତ ଏହି ମହାକବିଙ୍କର ଜନ୍ମ ତାଙ୍କର ପ୍ରଦେଶରେ କେବଳ ହୋଇଥିଲା । ସେମାନେ କଲିକତାରେ 'କାଳିଦାସ ସଂଶୋଧନ-ସମିତି' ନାମରେ ଏକ ଅନୁଷ୍ଠାନ ଗଢ଼ିଛନ୍ତି ଏବଂ ସେହି ଅନୁଷ୍ଠାନର ତତ୍ତ୍ୱାବ-ଧାନରେ ପ୍ରତିବର୍ଷ ଆଷାଢ଼ ପ୍ରତିପଦା ଦିନ ପ୍ରବନ୍ଧପଠନ, ବ୍ୟାଖ୍ୟାନ, ଗାୟନ, ବାଦନ ଇତ୍ୟାଦି କାର୍ଯ୍ୟକ୍ରମ ସହିତ 'କାଳିଦାସ ଉତ୍ସବ' ପାଳନ କରୁଅଛନ୍ତି । ସେମାନେ ସ୍ଥିର କରିଛନ୍ତି ଯେ ମୁର୍ଶିଦାବାଦର 'ଗଉଡ଼ାସିଂଗର' ନାମକ ଗ୍ରାମରେ କାଳିଦାସଙ୍କର ଜନ୍ମ ହୋଇଥିଲା । ସେ ସ୍ଥାନରେ ତାଙ୍କର ସ୍ମୃତି-ଚିହ୍ନ ମଧ୍ୟ ସ୍ଥାପନ କରିବାକୁ ସେମାନେ ଚେଷ୍ଟା କରୁଛନ୍ତି । ସେ ସ୍ଥାନରେ 'କାଳିଦାସ ଜନ୍ମପୀଠୋଦ୍ଧାର କମିଟି' ନାମରେ ଏକ କମିଟି ସ୍ଥାପନ କରି ଅଛନ୍ତି । ଏହି କମିଟିର ତତ୍ତ୍ୱାବଧାନରେ 'କାଳିଦାସ ପାଠଶାଳା' ନାମରେ ଏକ ବିଦ୍ୟାଳୟ ପରିଚାଳିତ ହେଉଅଛି ଏବଂ ପ୍ରତିବର୍ଷ ସରସ୍ୱତୀପୂଜାସମୟରେ ସାହିତ୍ୟ ସମ୍ମିଳନ ଏବଂ ଅନ୍ୟାନ୍ୟ ମନୋରଞ୍ଜକ କାର୍ଯ୍ୟକ୍ରମ ମଧ୍ୟ ଅନୁଷ୍ଠିତ ହେଉଅଛି । ସରକାରଙ୍କ ସାହାଯ୍ୟରେ ସେମାନେ ଏକ ପୁଷ୍କରିଣୀ ଖୋଳାଇ ତାକୁ 'କାଳିଦାସ-ଘାଟରେ' ବୋଲି ନାମ ଦେଇ ଅଛନ୍ତି । କାଳିଦାସଙ୍କର ତିନୋଟି ପତ୍ନୀ ଥିଲେ । ସେ ବିଭିନ୍ନ ସ୍ଥାନରେ ବିଭିନ୍ନ ସମୟରେ ଏହି ପତ୍ନୀମାନ ସହିତ ବସବାସ କରୁଥିଲେ । ସେ 'କୃଷ୍ଣାମାତଲା' ନାମକ ଗ୍ରାମରେ 'ବିଦ୍ୟୁନ୍ମାଳା' ନାମ୍ନୀ ପତ୍ନୀଙ୍କ ସହିତ କେତେକ ଦିନ ରହିଥିଲେ । 'ଶ୍ରୀପାଠ ଦୋଗାଛିଆ' ନାମକ ଗ୍ରାମରେ ଦ୍ୱିତୀୟ

ପତ୍ନୀଙ୍କର ପାଣିଗ୍ରହଣ କରିଥିଲେ ଏବଂ ନିଜ ପ୍ରନ୍ଥର ଶବାଦ ମଧ୍ୟ ସେହି ଗ୍ରାମରେ ସମ୍ପାଦନ କରିଥିଲେ । ଏହି ପ୍ରକାର କେତେକ କିମ୍ବଦନ୍ତୀ ବର୍ତ୍ତମାନ ସୁଦ୍ଧା ବଙ୍ଗଦେଶରେ ପ୍ରଚଳିତ ଅଛି * । ଆମେ ଆଗରୁ କହି ସାରିଛୁଁ— କିମ୍ବଦନ୍ତୀମାନଙ୍କୁ ପୂର୍ଣ୍ଣରୂପେ ବିଶ୍ୱସନୀୟ ପ୍ରମାଣ ବୋଲି ଧରିଯାଇ ପାରିବ ନାହିଁ । ଅତଏବ ବର୍ତ୍ତମାନ ଆମର କର୍ତ୍ତବ୍ୟ ହେଉଛି—ବଙ୍ଗାଳୀମାନେ କାଳିଦାସଙ୍କୁ ବଙ୍ଗାଳୀ ବୋଲି ପ୍ରମାଣିତ କରିବା ସକାଶେ ଯେଉଁ ସବୁ ପ୍ରମାଣ ଉପସ୍ଥାପିତ କରନ୍ତି, ସେମାନଙ୍କର ବିଚାର କରିବା ।

(କ) କବିଙ୍କର କାଳିଦାସ ନାମରୁ ହିଁ ପ୍ରମାଣିତ ହେଉଅଛି ଯେ କାଳିଦାସ ବଙ୍ଗାଳୀ ଥିଲେ । ପ୍ରାୟ ସବୁ ପ୍ରଦେଶର ପ୍ରାଚୀନ ପରମ୍ପରାଗତ ପଣ୍ଡିତ ଏହି ଆଖ୍ୟାୟିକା ଜାଣନ୍ତି ଯେ କାଳିଦାସ ପ୍ରଥମରେ ଏକବାରେ ଅପାଠୁଆ ଥିଲେ । କିନ୍ତୁ ପରେ ତାଙ୍କ ତପସ୍ୟାରେ କାଳୀ ତାଙ୍କ ପ୍ରତି ପ୍ରସନ୍ନ ହେଲେ ଏବଂ ତାଙ୍କର କୃପାରେ ସେ ପଣ୍ଡିତ ଓ ପ୍ରତିଭାସମ୍ପନ୍ନ କବି ହୋଇଥିଲେ । କାଳୀଦେବୀଙ୍କର ପୂଜା ବଙ୍ଗ ଦେଶରେ ସର୍ବତ୍ର ଅନୁଷ୍ଠିତ ହୁଏ ଏବଂ ବର୍ତ୍ତମାନ ସୁଦ୍ଧା ବଙ୍ଗଦେଶରେ କେତେକ ଲୋକ କାଳିଦାସ ନାମ ଧାରଣ କରନ୍ତି । ଏହି କାରଣରୁ ପ୍ରମାଣିତ ହୁଏ ଯେ ବଙ୍ଗଦେଶ କାଳିଦାସଙ୍କର ଜନ୍ମସ୍ଥାନ ଥିଲା ।

ଏହି ପ୍ରମାଣରେ ଦେଖି କିଛି ସତ୍ୟତା ଦେଖାଯାଏନାହିଁ । ଆମେ ଆଗେ ଦେଖାଇବୁ ଯେ କାଳିଦାସ ହଠାତ୍ କୌଣସି

* ଉକ୍ତ ବିବରଣ କାଳିଦାସ ସମିତିର 'କାଳିଦାସ ଜନ୍ମପୀଠ-ସଭାର ଅନୁଷ୍ଠାନ ପତ୍ର' ନାମକ ବଙ୍ଗଳା ପୁସ୍ତକରୁ ଗୃହୀତ ।

ଦେବୀଙ୍କର କୃପାରେ ଉଚ୍ଚଶ୍ରେଣୀର କବି ପାଲଟି ଯାଇ ଥିଲେ— ଏହି ପ୍ରକାର ପରମ୍ପରାଗତ ଲୌକିକ କିମ୍ବଦନ୍ତୀ କେତେ ନିରାଧାର । ଏହା ଛଡ଼ା ଅଧିକନ୍ତୁ ମଧ୍ୟ ଦେଖାଯାଏନାହିଁ ଯେ କାଳିଦାସ କାଳୀଦେବୀଙ୍କର ପରମ ଭକ୍ତ ଥିଲେ । ଏହାଙ୍କର କୌଣସି ଗ୍ରନ୍ଥର ପ୍ରାରମ୍ଭରେ କାଳୀଦେବୀଙ୍କର ସ୍ତୁତି କରାଯାଇ ନାହିଁ । କାଳିଦାସ-ରଚିତ ଋତୁ ସଂହାର ପ୍ରଭୃତି ସର୍ବଜନାଦୃତ ସାତୋଟି ଗ୍ରନ୍ଥ ମଧ୍ୟରୁ କେବଳ ଏକ ଗ୍ରନ୍ଥର ( କୁମାର ସମ୍ଭବର ) ଗୋଟିଏ ଶ୍ଳୋକରେ (୭, ୩୯) କେବଳ କାଳୀଦେବୀଙ୍କର ବର୍ଣ୍ଣନା ଅଛି, ତାହା ପୁଣି ଏପରି ସମୟରେ, ଯେତେବେଳେ କି ଭଗବାନ୍ ମହାଦେବ ବିବାହ ସକାଶେ ହିମାଳୟଙ୍କର ଘରକୁ ଯାଉଥିଲେ, ଯେତେ-ବେଳେ କାଳୀଦେବୀ ତାଙ୍କର ଅନୁଚର ବର୍ଗ ମଧ୍ୟରେ ଥିଲେ * ଏହି ପ୍ରସଙ୍ଗରେ ହୋଇ ଅଛି । ଏଥିରୁ ଏତିକି ସ୍ପଷ୍ଟ ହେଉଅଛି ଯେ କାଳୀଦେବୀଙ୍କଠାରେ ଭକ୍ତି ଥିବା ହେତୁ କବି 'କାଳିଦାସ'-ନାମ ଧାରଣ କରି ନ ଥିଲେ କିନ୍ତୁ ତାଙ୍କର ମା ବାପ ତାଙ୍କୁ ସେହି ନାମ ଦେଇଥିଲେ । ଉଜ୍ଜୟିନୀରେ ବର୍ତ୍ତମାନ ମଧ୍ୟ କାଳୀ-ଦେବୀଙ୍କର ମନ୍ଦିର ଦେଖାଯାଏ । ମଧ୍ୟ ଭାରତରେ କାଳୀ ଚାମୁଣ୍ଡା ପ୍ରଭୃତି ଦେବୀମାନଙ୍କର ପୂଜା କାଳିଦାସଙ୍କ ପରେ ପ୍ରାୟ ଶହେ ଦୁଇଶ ବର୍ଷ ପର୍ଯ୍ୟନ୍ତ ଥିଲା ପରି ପ୍ରମାଣ ଅଷ୍ଟମ ଶତାବ୍ଦୀରୁ

---

* କୁମାରସମ୍ଭବର ଅଷ୍ଟମ ସର୍ଗ ୪୯ ଶ୍ଳୋକରେ ମଧ୍ୟ ବର୍ଣ୍ଣିତ ଅଛି ଯେ ପାର୍ବତୀଙ୍କର ମନୋରଞ୍ଜନ ସକାଶେ କାଳୀ ବିକଟନୃତ୍ୟ କରି ଥିଲେ । ମାତ୍ର ସମାଲୋଚକମାନଙ୍କ ମତରେ ସେହି ସର୍ଗ ଏବଂ ତା ପରବର୍ତ୍ତୀ ସର୍ଗମାନ କାଳିଦାସଙ୍କର ନୁହେ । ଏ ବିଷୟରେ ଆଗାମୀ ୫ମ ପରିଚ୍ଛେଦରେ ବିଚାର କରାଯିବ ।

ଭବଭୂତିଙ୍କର ମାଳତୀମାଧବରେ ଦେଖିବାକୁ ମିଳେ । ଏହି ନାଟକର ଏକ ଦୃଶ୍ୟରେ ଏକ କାପାଳିକ ଚାମୁଣ୍ଡା ଦେବୀଙ୍କୁ ବଳି ଦେବା ସକାଶେ ମାଳତୀଙ୍କୁ ପଦ୍ମାବତୀ (ବର୍ତ୍ତମାନ ନରବର)ର ଶ୍ମଶାନକୁ ନେଇ ଯାଇଥିଲା । ତହିଁରୁ ସ୍ପଷ୍ଟ ଜଣାଯାଏ ଯେ କାଳିଦାସଙ୍କର ମା ବାପ କାଳୀଦେବୀଙ୍କର ଉପାସକ ଥିଲେ ଏବଂ ସେ ହେତୁ ସେମାନେ କବିଙ୍କୁ 'କାଳିଦାସ' ବୋଲି ନାମ ଦେଇ ଥିଲେ *। ପରେ କବି ସୌନ୍ଦର୍ଯ୍ୟପ୍ରିୟ ହେବା ହେତୁ କାଳୀଙ୍କର ଭକ୍ତ ନ ହୋଇ ଶିବଙ୍କର ଭକ୍ତ ହୋଇଥିଲେ । ହିନ୍ଦୁଧର୍ମର ଏହି ପରି ଉଦାହରଣ ସମୟରେ ମା ବାପ ଏକ ଦେବତାର ଉପାସକ ଥିଲେ, ତାଙ୍କର ପୁଅମାନେ ଅନ୍ୟଦେବତାମାନଙ୍କର ଉପାସକ ଥିଲେ—ଏହି ବିଷୟ ଇତିହାସରୁ ପ୍ରମାଣିତ ହୁଏ । ଦ୍ୱିତୀୟ ଚନ୍ଦ୍ରଗୁପ୍ତଙ୍କର ପୁତ୍ରିକା ପ୍ରଭାବତୀ ଗୁପ୍ତା ଏବଂ ତାଙ୍କର ସ୍ୱାମୀ ଦ୍ୱିତୀୟ ରୁଦ୍ରସେନ ଭଗବାନ୍ ବିଷ୍ଣୁଙ୍କର ଉପାସକ ଥିଲେ, ମାତ୍ର ତାଙ୍କର ପୁତ୍ର ଦ୍ୱିତୀୟ ପ୍ରବରସେନ ଶିବଭକ୍ତ ଥିଲେ । ଏହି ଉଦାହରଣଦ୍ୱାରା ପୂର୍ବୋକ୍ତ ମତ ପରିପୁଷ୍ଟ ହେଉଅଛି ।

(ଖ) କାଳିଦାସ ମେଘଦୂତରେ ଲେଖିଛନ୍ତି—ଯକ୍ଷ ରାମଗିରିରେ ମେଘକୁ 'ଆଷାଢ଼ସ୍ୟ ପ୍ରଥମ ଦିବସେ' ଅର୍ଥାତ୍ ଆଷାଢ଼ ମାସର ପ୍ରଥମ ଦିନ ଦେଖିଥିଲେ । ବଙ୍ଗଳାରେ ସୌରମାସର ଗଣନା ପ୍ରଚଳିତ । ଏହି ଗଣନା ଅନୁଯାୟୀ ଚୈତ୍ର, ବୈଶାଖ ପ୍ରଭୃତି

* ୧୯୩୬ ସାଲରେ ମଧ୍ୟପ୍ରଦେଶରୁ ବାକାଟକ ନୃପତି ଦ୍ୱିତୀୟ ପ୍ରବରସେନଙ୍କର ଏକ ତାମ୍ରଶାସନ ମିଳିଅଛି ।' ଏହାର ଲେଖକଙ୍କର ନାମ କାଳିଦାସ । ମାତ୍ର ସେ କବିକୁଳଗୁରୁ କାଳିଦାସ ହୋଇ ନ ପାରନ୍ତି ।

ମାସମାନଙ୍କର ଦିନମାନ ଉଁରେକ ମାସମାନଙ୍କର ଦିନଗଣନା ପର ୨୯ ଠାରୁ ଆରମ୍ଭ କରି ଏକତରିଶି ପର୍ଯ୍ୟନ୍ତ ଗଣାଯାଏ । ଏହି ଗଣନାରେ ଚନ୍ଦ୍ରମାସ ଗଣନାର ଶୁକ୍ଳପକ୍ଷ ଓ କୃଷ୍ଣପକ୍ଷର ନାମ ନିର୍ଦ୍ଦେଶ କରି ଦରକାର ହୁଏ ନାହିଁ କି ଏହି ଗଣନାର ମାସକୁ ଦୁଇପକ୍ଷରେ ମଧ୍ୟ ବିଭକ୍ତ କରାଯାଏ ନାହିଁ । କାଳିଦାସ ବଙ୍ଗାଳୀ ଥିବାରୁ 'ଆଷାଢ଼ସ୍ୟ ପ୍ରଥମ ଦିବସେ' ବୋଲି ଲେଖିଅଛନ୍ତି । ଲୋକ ଯେ କୌଣସି ସ୍ଥାନରେ ଜୀବିକା ନିର୍ବାହ କରୁଥିଲେ ମଧ୍ୟ ନିଜର ପୂର୍ବ ସଂସ୍କାର ଭୁଲି ପାରେ ନାହିଁ । ଏହି ନ୍ୟାୟରେ ସେ କାର୍ଯ୍ୟବଶତଃ ମାଳବ ବା ବିଦର୍ଭରେ ଥାଇ ପାରନ୍ତି, ମାତ୍ର ସେ ନିଜର ବଙ୍ଗୀୟ ଦିନଗଣନା ଭୁଲି ନଥିଲେ । ସେ ନିକେ ଏକ ଅସାଧାରଣ ଜ୍ୟୋତିଷୀ ଥିଲେ । ଜ୍ୟୋତିଷରେ ସେ 'ଜ୍ୟୋତିର୍ବିଦାଭରଣ' ନାମକ ଏକ ଉପାଦେୟ ଗ୍ରନ୍ଥ ମଧ୍ୟ ଲେଖିଅଛନ୍ତି । ଏହିହେତୁ ଏହା କୁହାଯାଇ ପାରିବ ନାହିଁ ଯେ ସୂର୍ଯ୍ୟୋଦୟଠାରୁ ପର ଦିନର ସୂର୍ଯ୍ୟୋଦୟପର୍ଯ୍ୟନ୍ତ ସମୟକୁ ଦିବସ ଏବଂ ସୂର୍ଯ୍ୟଙ୍କର ଭ୍ରମଣ ବିଭିନ୍ନ ହେବା ହେତୁ ତହିଁରେ ଯେଉଁ ସମୟରେ ୧୨ ଅଂଶର ଅନ୍ତର ହୁଏ, ତାହାକୁ ତିଥି କୁହାଯାଏ—ଏହି ସାଧାରଣ ବିଷୟ ମଧ୍ୟ ତାଙ୍କୁ ଜଣା ନ ଥିଲା ! ଏହି ହେତୁ ପକ୍ଷ ଓ ତିଥିର ଉଲ୍ଲେଖ ନକରି ସେ କେବଳ ଦିବସର ପ୍ରୟୋଗ କରି ଅଛନ୍ତି । ଏହା ଦ୍ୱାରା ସେ ବଙ୍ଗଦେଶୀୟ ବୋଲି ପ୍ରମାଣିତ ହୁଏ ।

ଏହି ପ୍ରମାଣ ମଧ୍ୟ ପରୀକ୍ଷା କଷଟିପଥରରେ ଖାପ ଖାଏ ନାହିଁ । 'ଆଷାଢ଼ମାସର ଆରମ୍ଭରେ ଏହି ଅର୍ଥ କାଳିଦାସଙ୍କର ଅଭିପ୍ରେତ ଥିଲା । ଏହିହେତୁ ସେ 'ଆଷାଢ଼ସ୍ୟ ପ୍ରଥମ ଦିବସେ' ବୋଲି ପ୍ରୟୋଗ କରି ଅଛନ୍ତି ।

ଯେପରି ଅର୍ଥ ଅଭିପ୍ରେତ ଥିଲାବେଳେ କାବ୍ୟରେ 'ଶୁକ୍ଳପକ୍ଷେ ପ୍ରତିପତ୍ତିଥୌ' ଏପରି ପ୍ରୟୋଗ କରିବା ସମ୍ଭବତ ହେବ ନାହିଁ । ଦ୍ୱିତୀୟ କଥା—ବର୍ତ୍ତମାନ ସମୟ ଗଣନା ବିଷୟରେ ଭାରତର ବିଭିନ୍ନ ପ୍ରାନ୍ତରେ ବର୍ତ୍ତମାନ ଯେପରି ବିଭିନ୍ନ ପଦ୍ଧତି ଅଛି, କାଳିଦାସଙ୍କ ସମୟରେ ମଧ୍ୟ ସେପରି ବିଭିନ୍ନ ପଦ୍ଧତି ଥିଲା ବୋଲି ପ୍ରଥମେ ପ୍ରମାଣିତ କରିବାକୁ ହେବ । ଏ ବିଷୟରେ ଖୋଦିତ ଶିଳାଲେଖ ପ୍ରମାଣମାନ ବିଶେଷ ବିଶ୍ୱାସଯୋଗ୍ୟ ଧରାଯାଏ । ଖ୍ରୀଷ୍ଟପୂର୍ବ ଏବଂ ଖ୍ରୀଷ୍ଟପର ଏକ ଶହ କି ଦୁଇ ଶହ ବର୍ଷ ପରେ ମହାରାଷ୍ଟ୍ରରେ ସାତବାହନ ଓ କ୍ଷତ୍ରପ ତଥା ମଥୁରାରେ କ୍ଷତ୍ରପ ଓ କୁଶାନ ବଂଶୀୟ କନିଷ୍କ ପ୍ରଭୃତି ରାଜାମାନଙ୍କ ଦ୍ୱାରା ଲିଖିତ କେତେକ ଶିଳାଲେଖରେ ଉଥିର ଉଲ୍ଲେଖ ଦେଖାଯାଏ—ତହିଁରୁ ଜଣାଯାଏ—ଏସ ସ୍ଥାନମାନଙ୍କରେ 'ବର୍ଷ'ରେ ଗ୍ରୀଷ୍ମ, ବର୍ଷା ଓ ହେମନ୍ତ ଏହି ତିନି ଋତୁ ଥିଲା । * ଦକ୍ଷିଣରେ ଏକ ଏକ ଋତୁ ଆଠପକ୍ଷ ବିଶିଷ୍ଟ ଏବଂ ଏକ ପକ୍ଷ ପନ୍ଦର ଦିନ ବୋଲି ଉତ୍ତରରେ ଏକ ଋତୁ ଚାରିମାସ ବିଶିଷ୍ଟ ଏବଂ ଏକମାସ ୩୦ ଦିନ ବୋଲି ଗଣାଯାଉ ଥିଲା ।* କାଠିଆବାଡ଼ ଓ ମାଳବରେ ସେ ସମୟରେ ଚୈତ୍ର,ବୈଶାଖ ପ୍ରଭୃତି ନାମ ବିଶେଷ ଭାବେ ପ୍ରଚଳିତ ନ ଥିଲା । କାଠିଆବାଡ଼ ଓ ମାଳବ ଶାକଦ୍ୱୀପମାନଙ୍କର ଆଶ୍ରୟ ଥିବା ଯୋଗୁଁ ଜ୍ୟୋତିର୍ବିଦ୍ୟା ଅଭ୍ୟାସକୁ ପ୍ରୋତ୍ସାହ ମିଳିଥିଲା ଏବଂ

* ନାସିକର ଗୁମ୍ଫାମାନଙ୍କରେ ବାଶିଷ୍ଠୀପୁତ୍ର ଶ୍ରୀପୁଲମାୟୀ ନାମକ ସାତବାହନ ରାଜାଙ୍କ ଲେଖରେ ଖୋଦିତ କାଳନିର୍ଦ୍ଦେଶ ଦେଖନ୍ତୁ— **'रञो वासिठिपुत्तस सिरि पुलमायिस संवछरे छठे ६ गिह्मपखे पंचमे ५ दिवसे'** (Ep. Ind. Vol.viii,p.59 )

ତୈିକାଦ ମାସ, କୃଷ୍ଣ-ଶୁକ୍ଳପକ୍ଷ ଏବଂ ତଥି ଇତ୍ୟାଦିର ପ୍ରଚଳନ ଭାରତବର୍ଷରେ ବର୍ତ୍ତମାନ ପ୍ରଚଳିତ କାଳ ଗଣନାନୁସାରେ ହୋଇ ଅଛି । ଏହି କାଳଗଣନା କ୍ଷତ୍ରପମାନଙ୍କର ପ୍ରାରମ୍ଭିକ ଲେଖମାନଙ୍କରୁ ମଧ୍ୟ ମିଳୁଅଛି । ତାପରେ କ୍ରମେ କ୍ରମେ ଧୀରେ ଧୀରେ ଅନ୍ୟ ପ୍ରଦେଶ-ମାନଙ୍କରେ ମଧ୍ୟ ଏହି ଗଣନା ପ୍ରଚୁର ଲାଭ କଲା । କିନ୍ତୁ ଠିକ୍ କରି କହି ହେବ ନାହିଁ ଯେ କାଳିଦାସଙ୍କ ସମୟରେ ଅର୍ଥାତ୍ ଖ୍ରୀଷ୍ଟୀୟ ଚତୁର୍ଥ ପଞ୍ଚମ ଶତାବ୍ଦୀରେ ମାଳବ ବା ବିଦର୍ଭରେ ପକ୍ଷ, ତଥିପ୍ରଭୃତି ଶବ୍ଦମାନଙ୍କର ଉପଯୋଗ ସାଧାରଣରୂପେ କରା ଯାଉଥିଲା । ଉଦାହରଣସ୍ୱରୂପ—ଦ୍ୱିତୀୟ ଚନ୍ଦ୍ରଗୁପ୍ତଙ୍କର ସେନାପତି ଅମ୍ରକାର୍ଦ୍ଦବଙ୍କର ସାଞ୍ଚୀରେ ଖୋଦିତ ଏକ ଲେଖର ଶେଷରେ 'ସଂ ୯୩ ଭାଦ୍ରପଦ ଦି ୪' ତଥା କୁମାରଗୁପ୍ତଙ୍କର ଶାସନ କାଳରେ ଖୋଦିତ ମାନକୁମାର ନାମକ ବୁଦ୍ଧର ମୂର୍ତ୍ତି-ଉପରେ 'ସଂବତ୍ ୧୨୯ ଜ୍ୟେଷ୍ଠ ମାସ ୧୮ ଦି' ଏହି ପରି କାଳ-ନିର୍ଦ୍ଦେଶ କରାଯାଇ ଅଛି । କାଳିଦାସଙ୍କର ମେଘଦୂତରେ ମଧ୍ୟ କାଳ ନିର୍ଦ୍ଦେଶ ଠିକ୍ ଏହି ପରି କରାଯାଇ ଅଛି । ଦ୍ୱିତୀୟ ପ୍ରବର-ସେନଙ୍କର ଦୁଦିୟାନାମକ ଗ୍ରାମର ତାମ୍ରଶାସନରେ 'ସଂବତ୍ସର ୨୩ ବର୍ଷାପକ୍ଷ ୪ ଦିବସ ୧୦' ଏହି ପ୍ରକାର ଉଲ୍ଲିଖିତ ହୋଇଅଛି । ଏଥିରୁ ସ୍ପଷ୍ଟ ହେଉଅଛି ଯେ ଏହି ସମୟରେ ମଧ୍ୟ ପ୍ରାଚୀନ ପଦ୍ଧତିରେ ପ୍ରଚୁର ପୂର୍ଣ୍ଣଭାବରେ ନଷ୍ଟ ହୋଇ ନ ଥିଲା । କେତେକ ଲେଖରେ ପୁଣି ଶୁକ୍ଳ ଓ କୃଷ୍ଣ ପକ୍ଷର ନିର୍ଦ୍ଦେଶ ଥାଇ ମଧ୍ୟ 'ଦିନ' ବଦଳରେ ପ୍ରୟୋଗ କରାଯାଇ ଅଛି କିନ୍ତୁ ତିଥିର ଉଲ୍ଲେଖ

* କନିଷ୍କଙ୍କ ଶାସନକାଳର ସାରନାଥର ବୌଦ୍ଧ ଛତ୍ରସ୍ତମ୍ଭରେ ଖୋଦିତ କାଳନିର୍ଦ୍ଦେଶ ଦେଖନ୍ତୁ—**महाराजस्य कनिष्कस्य सं ३ हे ३ दि २२ एतये पुर्वेये ।**

ନାହିଁ । * ଏଥିରୁ ଏତିକି ସ୍ପଷ୍ଟଭାବରେ ଜଣାଯାଉଛି ଯେ ଏହି ଓ ତଥି ସମ୍ବନ୍ଧୀ ସୂକ୍ଷ୍ମଭେଦ ଯାହା କି ବଙ୍ଗାଳୀମାନେ ବିଶେଷ କରି ଉଲ୍ଲେଖ କରନ୍ତି, ତାହା ସେ ସମୟରେ ବ୍ୟବହାରରେ ନ ଥିଲା । ଏ ହେତୁ 'ଅକାରସ୍ୟ ପ୍ରଥମ ଧବସେ' ଏହି ଉକ୍ତିରୁ କବିଙ୍କୁ ବଙ୍ଗାଳୀ ବୋଲି ଅନୁମାନ କରିବା ସମୁଚିତ ବୋଧ ହୁଏ ନାହିଁ ।

କାଳିଦାସଙ୍କର ଗ୍ରନ୍ଥମାନ କୌଣସି ପକ୍ଷପାତ ନ ରଖି ପଢ଼ିଲେ, ତହିଁରୁ ଏପରି ଗୋଟିଏ ହେଲେ ପ୍ରମାଣ ମିଳିବ ନାହିଁ, ଯାହାବଳରେ ସେ ବଙ୍ଗାଳୀ ବୋଲି କହି ହେବ । ଯେ କୌଣସି କବିଙ୍କ ବିଷୟ ଧରନ୍ତୁ—ପ୍ରାୟ ତାଙ୍କ ସମ୍ବନ୍ଧରେ ଆପଣ ଏତିକି ଦେଖି ପାରିବେ ଯେ ତାଙ୍କର ଜନ୍ମ ଯେଉଁ ସ୍ଥାନରେ ହୋଇଥିଲା, ଯେଉଁ ସ୍ଥାନରେ ସେ ଖେଳାବୁଲା କରି ଥିଲେ, ସେସ୍ଥାନର ସଂସ୍କାର ତାଙ୍କର ହୃଦୟ ପଟରେ ଅବଶ୍ୟ ପ୍ରତିବିମ୍ବିତ ହୋଇଥାଏ, ସେ ସ୍ଥାନ ପ୍ରତି ତାଙ୍କର ବିଶେଷ ପ୍ରେମ ଥାଏ, ଏବଂ ତାଙ୍କର ଗ୍ରନ୍ଥରେ ବହୁ ସ୍ଥାନରେ ସେ ସ୍ଥାନର ଉଲ୍ଲେଖ ଅବଶ୍ୟ ଥାଏ । କିନ୍ତୁ କାଳିଦାସଙ୍କର ଗ୍ରନ୍ଥମାନଙ୍କରେ ବଙ୍ଗ ଦେଶ ସମ୍ବନ୍ଧରେ ସେହି ଧରଣର ଉଲ୍ଲେଖ କୌଣସିଠାରେ ସୁଦ୍ଧା ମିଳେ ନାହିଁ । ଏ ହେତୁ କାଳିଦାସ ବଙ୍ଗାଳୀ ବୋଲି କହିବା ଭ୍ରମ ଛଡ଼ା ଅନ୍ୟ କିଛି ନୁହେଁ ।

ବର୍ତ୍ତମାନ କାଶ୍ମୀରରେ 'କାଳିଦାସଙ୍କର ଜନ୍ମ ହୋଇଥିଲା' ଏହି ବିଷୟର ବିଚାର କରିବୁଁ । ଦିଲ୍ଲୀ ବିଶ୍ୱବିଦ୍ୟାଳୟର ସଂସ୍କୃତା-

* ବିଶ୍ୱବର୍ମନଙ୍କର ଗଙ୍ଗଧାର ଶିଳାଲେଖ (E. i. No. 17.)

ଧ୍ୟାପକ ମହାମହୋପାଧ୍ୟାୟ ଲକ୍ଷ୍ମୀଧର କଲ୍ଲା ଏହି ମତ ପ୍ରକାଶ କରି ଅଛନ୍ତି ଏବଂ ସେ ଏକ ସ୍ୱତନ୍ତ୍ର ପୁସ୍ତକ * ଲେଖି କେତେକ ପ୍ରମାଣ ଦେଇ ସେହି ମତ ପରିପୁଷ୍ଟ କରିବାକୁ ଚେଷ୍ଟା କରି ଅଛନ୍ତି। ସେ ପୁସ୍ତକରେ ଦିଆଯାଇଥିବା ସମସ୍ତ ପ୍ରକରଣ ବିସ୍ତୃତରୂପରେ ବିଚାର କରିବା ଅସମ୍ଭବ। ତେବେ ସଂକ୍ଷେପରେ ତାଙ୍କର ଯୁକ୍ତି-ମାନଙ୍କର ସାରାଂଶ ଦେଇ ବିଚାର କରିବୁଁ।

"କାଳିଦାସଙ୍କର ଗ୍ରନ୍ଥମାନଙ୍କରେ ହିମାଳୟର ବର୍ଣ୍ଣନା ବିସ୍ତୃତ ଓ ସୂକ୍ଷ୍ମରୂପରେ କରି ଯାଇ ଅଛି—ଏହା ସମସ୍ତ ଲୋକେ ସ୍ୱୀକାର କରନ୍ତି। 'କୁମାରସମ୍ଭବ'ରେ ତ ହିମାଳୟର ବର୍ଣ୍ଣନାରେ କାବ୍ୟର ପ୍ରାରମ୍ଭ ହୋଇ ଅଛି। 'ମେଘଦୂତ'ରେ ବର୍ଣ୍ଣିତ ଯକ୍ଷଙ୍କର ନିବାସସ୍ଥଳ ଅଲକା ନଗରୀ ହିମାଳୟରେ ଥିଲା। 'ବିକ୍ରମୋର୍ବଶୀୟ'ରେ ପୁରୁରବା ଓ ଉର୍ବଶୀଙ୍କର ପ୍ରଥମ ମିଳନ କାଶ୍ମୀରସମୀପବର୍ତ୍ତୀ ଗନ୍ଧମାଦନ ପର୍ବତ ଉପରେ ହୋଇଥିଲା। ଏବଂ ପରେ ଉର୍ବଶୀଙ୍କ ବିଯୋଗ ସମୟରେ ରାଜା ଏହି ପର୍ବତରେ ବୁଲୁଥିଲେ। 'ରଘୁବଂଶ'ର ପ୍ରଥମ ସର୍ଗରେ ରାଜା ଦିଲୀପ ବଶିଷ୍ଠାଶ୍ରମକୁ ଯାଇଥିଲେ ବୋଲି ଉଲ୍ଲିଖିତ ହୋଇ ଅଛି। ଏହି ଆଶ୍ରମ ମଧ୍ୟ ହିମାଳୟରେ ଅବସ୍ଥିତ। 'ଶାକୁନ୍ତଳ'ରେ ମଧ୍ୟ ବର୍ଣ୍ଣିତ କଣ୍ୱ ତଥା ମାରୀଚ ଋଷିଙ୍କର ଆଶ୍ରମ ମଧ୍ୟ କବି ଏହି ପର୍ବତ-ରାଜରେ ନିର୍ଦ୍ଦେଶ କରି ଅଛନ୍ତି। ଏ ସମସ୍ତ ବିଷୟରୁ କବିଙ୍କର ହିମାଳୟ ପ୍ରତି କେତେଦୂର ପ୍ରଗାଢ଼ ପ୍ରେମ ଥିଲା—ଜଣାଯାଏ। ଏତକ ପ୍ରମାଣିତ କରାଯାଇ ପାରେ ଯେ ଏ ସମସ୍ତ ସ୍ଥାନ କାଶ୍ମୀରର ସିନ୍ଧୁନଦୀ ତଟରେ ଥିଲା। ଉଦାହରଣ ସ୍ୱରୂପ ଦେଖନ୍ତୁ—

* **Lakshmidhar Kalla : The Birth place of Kalidas (1926).**

ବଶିଷ୍ଠାଶ୍ରମ ପାଖରେ ଗଙ୍ଗା ପ୍ରବାହିତ ଥିଲା । ସେହି ସ୍ଥାନରେ ରାଜା ଦିଲୀପ ବଶିଷ୍ଠଙ୍କର ଯେଉଁ ଗାଈ ରକ୍ଷା କରୁଥିଲେ, ସେହି ଗାଈ ଉପରେ ଏକ ସିଂହ ପଡ଼ିଥିଲା । କାଳିଦାସ ସିଂହକୁ 'ଭୂତେଶ୍ୱର-ପାର୍ଶ୍ୱବର୍ତ୍ତୀ' ବୋଲି ନିର୍ଦ୍ଦେଶ କରିଅଛନ୍ତି । କାଶ୍ମୀରର ସୁପ୍ରସିଦ୍ଧ ଭୂତେଶ୍ୱର ତୀର୍ଥ ଏହି ସ୍ଥାନରେ ଅଛି । ସିନ୍ଧୁନଦୀ, ମାଳିନୀନଦୀ, ଶଚୀତୀର୍ଥ, ସୋମ ତୀର୍ଥ ଓ ବ୍ରହ୍ମସର ପ୍ରଭୃତି ତୀର୍ଥ ତଥା ଗଙ୍ଗାବତାର (ଘାଟ) ପ୍ରଭୃତି ସ୍ଥାନ ମଧ୍ୟ କାଶ୍ମୀରରେ ଦେଖାଯାଏ । ଅଭିଧାନ ସୌକର୍ଯ୍ୟ ସକାଶେ ଯଦ୍ୟପି କବି ଶଚୀତୀର୍ଥ ଓ ଗଙ୍ଗା-ବତାର ହସ୍ତିନାପୁର ନିକଟରେ ଥିଲା ବୋଲି ବର୍ଣ୍ଣନା କରି ଅଛନ୍ତି, ତଥାପି ପୂର୍ବରୁ ପରିଚିତ ଥିବାରୁ ଉକ୍ତ ସ୍ଥାନମାନ କାଳି-ଦାସଙ୍କ ମନରେ ସ୍ଥାନ ପାଇଥିବ । 'ରଘୁବଂଶ'ରେ (୨।୩୫) ବଶିଷ୍ଠଙ୍କ ଧେନୁ ଉପରେ ଝାମ୍ପ ମାରିଥିବା ସିଂହ ନିଜକୁ ନିକୁମ୍ଭର ମିତ୍ର ବୋଲି ନିର୍ଦ୍ଦେଶ କରିଅଛି । ପରିଶୀଳକମାନେ ଏହି ନିକୁମ୍ଭ କିଏ ଜାଣିପାରୁ ନାହାନ୍ତି । ମାତ୍ର କାଶ୍ମୀରର 'ନୀଳମତ ପୁରାଣ'ରେ ଏ ସମ୍ବନ୍ଧରେ ଏକ କଥା ଅଛି । ତାହା ହେଉଛି— କୁବେର ଦୁଷ୍ଟ ପିଶାଚମାନଙ୍କୁ ଯୁଦ୍ଧ କରି କାଶ୍ମୀରରୁ ବହିଷ୍କୃତ କରିବାକୁ ଏହି ନିକୁମ୍ଭକୁ ନିଯୁକ୍ତ କରିଥିଲେ । ଏଥିରୁ ଏତିକି ଜଣାପଡ଼େ ଯେ କାଳିଦାସଙ୍କୁ କାଶ୍ମୀରର ପୁରାଣ କଥାମାନ ଜଣା ଥିଲା । କାଳିଦାସଙ୍କ କାବ୍ୟମାନଙ୍କରେ କାଶ୍ମୀରର ଆଚାର-ବ୍ୟବହାରର ମଧ୍ୟ ପ୍ରତିବିମ୍ବ ପ୍ରତିଫଳିତ ଦେଖାଯାଏ । ବିବାହ-ସମୟରେ ଶାଶୁ ବା ଅନ୍ୟ ଯେ କୌଣସି ସୌଭାଗ୍ୟବତୀ ସ୍ତ୍ରୀ ବର-ଗଳାରେ ମାଳା ଲମ୍ବାଇ ଥାନ୍ତି । ଏହି ଆଚାର କାଶ୍ମୀର ଦେଶର ବିବାହ ପ୍ରଥାରେ ଅଛି । 'ରଘୁବଂଶ'ର ଷଷ୍ଠ ସର୍ଗରେ ଇନ୍ଦୁମତୀ-ଙ୍କର ସ୍ୱୟମ୍ବର ପ୍ରସଙ୍ଗରେ ଇନ୍ଦୁମତୀ ନିଜେ ନିଜ ହାତରେ

ଅଜଙ୍କର କଣ୍ଠରେ ପୁଷ୍ପହାର ଲମ୍ବାଇ ନ ଥିଲେ କନ୍ତୁ ନିଜର ଉପମାତା ସୁନନ୍ଦାଙ୍କ ହାତରେ ଲମ୍ବାଇଥିଲେ । ଧୀବର (କେଉଟ) ଜାତକୁ ତାର ନିନ୍ଦନୀୟ ବୃତ୍ତି (ମାଛ ମାରିବା) ହେତୁ ମନୁଷ୍ୟ ବହିଷ୍କୃତ (ଅସ୍ପୃଶ୍ୟ) ଜାତି ବୋଲି ମାନନ୍ତି । ଏହି ବିଷୟ 'ଈଶ୍ୱର-ପ୍ରତ୍ୟଭିଜ୍ଞାବିମର୍ଶିନୀ' ନାମକ ଏକ ଟୀକାରେ ଉଲ୍ଲିଖିତ ହୋଇଅଛି । 'ଶାକୁନ୍ତଳ'ରେ ମୁଦ୍ରିକା ଏକ କେଉଟଙ୍କୁ ମିଳିଛି । ନଗର ରକ୍ଷକ ସିପାହୀ ତାକୁ ଗିରଫ କରିଅଛି । ଏ ପ୍ରସଙ୍ଗରେ ଅନ୍ୟ ଏକ ସିପାହୀ କେଉଟର ବୃତ୍ତିକୁ ଲକ୍ଷ୍ୟ କରି 'ବିଶୁଦ୍ଧ ଇଦାନୀମାଜୀବଃ' (ବଡ଼ ପବିତ୍ର ବ୍ୟବସାୟ) ବୋଲି ଆକ୍ଷେପ କରିଅଛି ଏବଂ ସେ ଆକ୍ଷେପ ଶୁଣି ଧୀବର କହିଛି—ତାହା ତାହାର କୁଳଧର୍ମ, କଦାପି ନିନ୍ଦନୀୟ ନୁହେଁ । ଏହି ପ୍ରବନ୍ଧକରେ ଉପଯୁକ୍ତ କାଶ୍ମୀରର ସ୍ଥିତ ପ୍ରତିଫଳିତ । କାଳିଦାସ କାଶ୍ମୀରର ଶୈବମତାବଲମ୍ବୀ ଅର୍ଥାତ-ପ୍ରତ୍ୟଭିଜ୍ଞାଦର୍ଶନର ଉପାସକ ଥିଲେ । ଏହି ଦର୍ଶନରେ ଶିବ କେବଳ ସର୍ବବ୍ୟାପୀ ଏକ ତତ୍ତ୍ୱ ବୋଲି ସ୍ୱୀକାର କରାଯାଏ । ସୃଷ୍ଟିର ନିର୍ମାଣ ଶିବ ଓ ଶକ୍ତି ନାମକ ଶିବଙ୍କର ଦୁଇ ରୂପରୁ ଘଟିଥାଏ । ଶକ୍ତି ସାହାଯ୍ୟରେ ଶିବ ଚରାଚର ଜଗତର ସୃଷ୍ଟି କରନ୍ତି ଏବଂ ନିଜେ ଶକ୍ତିର ଆବରଣ ସ୍ୱୀକାର କରି ପ୍ରାଣୀ ବା ଆତ୍ମାରୂପରେ ପରିଣତ ହୁଅନ୍ତି । ପରେ ସଦ୍‌ଗୁରୁଙ୍କର ଉପଦେଶ ବା ଆଧ୍ୟାତ୍ମିକ ଦର୍ଶନର ଅଭ୍ୟାସ ଅଥବା ଯେ କୌଣସି ଅନ୍ୟ-କାରଣରୁ ଆତ୍ମାର 'ଆବରଣ' ନଷ୍ଟ ହୋଇ ଯାଏ, ସେତେବେଳେ ସେ ନିଜର ପୂର୍ଣ୍ଣରୂପ ଲାଭ କରନ୍ତି । ତା ପରେ ସେ ପରମାନନ୍ଦରେ ଲୀନ ହୋଇ ଯାନ୍ତି । ଏହି 'ତତ୍ତ୍ୱଜ୍ଞାନ'ରେ ଏକ ପ୍ରକାର ନିୟତି (ଅଦୃଷ୍ଟ ଶକ୍ତି) ବଶତଃ ଆତ୍ମା, ନିଜର ସତ୍‌ସ୍ୱରୂପକୁ ପାସୋରି-ଯାଏ । ପରେ କେତେକ କାରଣ ବଶତଃ ଯେତେବେଳେ ତାର

ସେହି ଯବନିକା—ଅବରଣ ଉଠିଯାଏ, ସେତେବେଳେ ନିଜର ସ୍ୱରୂପ ବୁଝିପାରେ । ଏହି କଳ୍ପନା ମୁଖ୍ୟ ଏବଂ ଏହି କଳ୍ପନା କାଳିଦାସଙ୍କର ସମସ୍ତ ନାଟକରେ ଦେଖାଯାଏ । ଉଦାହରଣ— ମାଳବିକାଗ୍ନିମିତ୍ର ନାଟକରେ ସିଦ୍ଧଙ୍କ ଆଦେଶରେ ମାଳବିକାଙ୍କୁ ବର୍ଷେ ପର୍ଯ୍ୟନ୍ତ ଅଜ୍ଞାତବାସରେ ରହିବାକୁ ହୋଇଥିଲା । ପରେ ଯେତେ-ବେଳେ ତାଙ୍କର ଦାସୀ ବିଦଶାକୁ ଆସନ୍ତି, ସେତେବେଳେ ବିଦର୍ଭ-ରାଜ କନ୍ୟା ରୂପେ ପରିଚିତ ହୁଅନ୍ତି । 'ବିକ୍ରମୋର୍ବଶୀୟ'ରେ ଉର୍ବଶୀ କୁମାର ବନରେ ପ୍ରବେଶ କରନ୍ତି ଏବଂ ପ୍ରବେଶମାତ୍ରେ କାର୍ତ୍ତିକେୟଙ୍କର ଶାପରେ ଲତାରୂପରେ ପରିଣତ ହୁଅନ୍ତି । ପରେ ରାଜା ସଂଗମନୀୟ ମଣି ପାଆନ୍ତି ଏବଂ ତା ପ୍ରଭାବରେ ଉର୍ବଶୀ ପୁଣି ପୂର୍ବରୂପ ଧାରଣ କରନ୍ତି । 'ଶାକୁନ୍ତଳ'ରେ ଦୁର୍ବାସାଙ୍କର ଦାରୁଣ ଶାପ ବଳରେ ଦୁଷ୍ୟନ୍ତ ଶକୁନ୍ତଳାଙ୍କୁ ଭୁଲିଯାଆନ୍ତି । କିନ୍ତୁ ମୁଦ୍ରିକା ଦେଖିଲାମାତ୍ରେ ତାଙ୍କର ପୂର୍ବ ସ୍ମୃତି ଜାଗରୁକ ହୁଏ । ଏ ସମସ୍ତ ଘଟନାରୁ ଜଣାଯାଏ ଯେ 'ପ୍ରତ୍ୟଭିଜ୍ଞାଦର୍ଶନ' ପ୍ରତି-ନାଟକରେ ନିଜର ପ୍ରଭାବ ବିସ୍ତାର କରିଅଛି । କବି ଶାକୁନ୍ତଳ-ନାଟକର ଭରତ ବାକ୍ୟରେ ଶଙ୍କରଙ୍କୁ ବିଶେଷଣ ରୂପେ 'ପରିଗତ ଶକ୍ତି' ପଦ ବ୍ୟବହାର କରି ଅଛନ୍ତି । ତହିଁରୁ ଜଣାଯାଉ ଅଛି— କାଳିଦାସ କାଶ୍ମୀରୀ ଥିଲେ । 'ମେଘଦୂତ'ରେ କୁବେରନଗରୀ ଅଳକାଠାରେ ଯକ୍ଷର ନିବାସ ସ୍ଥାନର ବର୍ଣ୍ଣନା ଦେଖାଯାଏ । ଯଦ୍ୟପି ସେ ବର୍ଣ୍ଣନାର ସ୍ଥାନେ ସ୍ଥାନେ କଳ୍ପନା ସ୍ଥାନ ପାଇଛି, ତଥାପି ସେ ବର୍ଣ୍ଣନାରେ କାଳିଦାସ ନିଜ ଜନ୍ମସ୍ଥାନର ବର୍ଣ୍ଣନା କରିଥିବା ମନେ ହୁଏ । କବି କହିଛନ୍ତି—ଅଳକାପୁରୀ କୈଳାସ ପର୍ବତରେ । ଏହି କୈଳାସ କାଶ୍ମୀରର 'ହରମୁକୁଟ' ନାମକ ପର୍ବତ । କୈଳାସରେ

ମହାଦେବଙ୍କର ବାସ ବୋଲି କବି କହିଛନ୍ତି । ମହାଦେବ ପ୍ରୟାଗ-ଠାରୁ 'ହରମୁକୁଟ' ପର୍ବତ ପର୍ଯ୍ୟନ୍ତ ଯେଉଁ ମାର୍ଗରେ ଯାଇଥିଲେ ସେହି ମାର୍ଗର ବର୍ଣ୍ଣନା 'ନୀଲମତ' ନାମକ ପୁରାଣରେ ବିଦ୍ୟମାନ । ସେହି ପୁରାଣରେ ଲେଖାଯାଇଛି—ନୈମିଷାରଣ୍ୟ, ଗଙ୍ଗାଦ୍ୱାର—କୁରୁକ୍ଷେତ୍ର, ବିଷ୍ଣୁପଦ, ହଂସଦ୍ୱାର ଓ ଉତ୍ତର ମାନସତୀର୍ଥ ପ୍ରଭୃତି ସ୍ଥାନ ଦେଇ ଶିବ ପ୍ରୟାଣ କରି ଥିଲେ । କାଳିଦାସ ଏ ମଧ୍ୟରୁ ଅନେକ ସ୍ଥାନର ବର୍ଣ୍ଣନା ଯକ୍ଷମୁଖରେ କରି ଅଛନ୍ତି । ଏଥିରୁ ନିଃସନ୍ଦେହରେ କୁହାଯାଇପାରେ ଯେ କବି ମେଘକୁ 'ହରମୁକୁଟ' ପର୍ବତକୁ ପଠାଇବା ଲକ୍ଷ୍ୟ କରି ଥିଲେ । ଅଳକାବାସୀ ଯକ୍ଷର ଘରର ବର୍ଣ୍ଣନା ହରମୁକୁଟ ପର୍ବତର ଉପତ୍ୟକାସ୍ଥ ପ୍ରାଚୀନ 'ମୟୂଗ୍ରାମ' ଓ ଆଧୁନିକ 'ମଣିଗ୍ରାମ'ରେ ଅକ୍ଷରେ ଅକ୍ଷରେ ଖାପ ଖାଉଛି । ଏହା ସମୀପରେ ଥିବା ପାହାଡ ଉପରୁ ଦେଖିଲେ ସେ ଗ୍ରାମର ଦୃଶ୍ୟ ସମ୍ପୂର୍ଣ୍ଣଭାବେ ଦେଖାଯାଏ । ତଳରେ ପଥରରେ ବନ୍ଧାହେବା ଏକ ସରୋବର ମଧ୍ୟ ଅଛି । ସେଠାର ଲୋକମାନେ ଏହି ସରୋବରକୁ ଅତି ପବିତ୍ର ମନେ କରନ୍ତି । ଏହାହିଁ ଯକ୍ଷଗୃହର ନିକଟବର୍ତ୍ତୀ ବାପିକା ହୋଇଥିବ । ଗ୍ରାମର କିଛି ଦୂରରେ ବଡ଼ ବଡ଼ ପଥରର ଶିଳାଗୃହ ବିଦ୍ୟମାନ । ସମ୍ଭବତଃ ସେ ସମସ୍ତ 'ମେଘଦୂତ' ବର୍ଣ୍ଣିତ କୁବେରଙ୍କର ପ୍ରାସାଦ । ତାର ଅତି ନିକଟରେ ନିମ୍ନଭାଗରେ ବଶିଷ୍ଠାଶ୍ରମ ଓ ଭୂତେଶଙ୍କର ପବିତ୍ର ଦେବାଳୟ । 'ମୟୂଗ୍ରାମ' ସେ ସମୟରେ ଯକ୍ଷମାନଙ୍କର ନିବାସସ୍ଥଳ ଥିଲା—ଏହି ପରି ପ୍ରତୀତ ହୁଏ । ୧୧ଶ ଶତାବ୍ଦୀ-ପର୍ଯ୍ୟନ୍ତ 'ମୟୂଗ୍ରାମ' ଇତିହାସରେ ପ୍ରସିଦ୍ଧ ଥିଲା । ନାନାପ୍ରକାର ଫୁଲ, ନୃତ୍ୟ-ଗୀତ, ସୁରାପାନ ପ୍ରଭୃତି ବିଷୟ ଯାହା କି 'ମେଘଦୂତ' ରେ ବର୍ଣ୍ଣିତ, ସେ ସମସ୍ତ କାଶ୍ମୀରରେ ସମ୍ଭବପର ।

ଏତାଦୃଶ ବର୍ଣ୍ଣନା କହ୍ଲଣଙ୍କର ରାଜତରଙ୍ଗିଣୀ ଓ ବହ୍ଲଣଙ୍କର 'ବିକ୍ରମାଙ୍କ ଦେବଚରିତ' ପ୍ରଭୃତି ଗ୍ରନ୍ଥମାନଙ୍କରେ ଦେଖିବାକୁ ମିଳେ । ଏ ହେତୁ ନିଜ ସମୟରେ ହୃଦନ୍ତର ଚରମସୀମାରେ ଉପନୀତ 'ମଯୁଗ୍ରାମ'ର ଅର୍ଥାତ୍ ନିଜ ଜନ୍ମଭୂମିର ବର୍ଣ୍ଣନାହିଁ କାଳିଦାସ ମେଘଦୂତରେ କରି ଅଛନ୍ତି ।

ଖ୍ରୀଷ୍ଟୀୟ ଷଷ୍ଠ ଶତାବ୍ଦୀରେ ହୂଣମାନେ କାଶ୍ମୀର ଆକ୍ରମଣ କରିଥିଲେ । ଏ ସମୟରେ କାଳିଦାସ ନିଜ ପତ୍ନୀ ଓ ଜନ୍ମଭୂମି ତ୍ୟାଗ କରିବାକୁ ବାଧ୍ୟ ହୋଇଥିଲେ ଏବଂ ଅନ୍ୟାନ୍ୟ କାଶ୍ମୀର ପଣ୍ଡିତ ପରି କୌଣସି ରାଜାଙ୍କର ଆଶ୍ରୟ ନେବା ଉଦ୍ଦେଶ୍ୟରେ ନାନାସ୍ଥାନ ଭ୍ରମଣ କରିଥିଲେ । 'ଋତୁସଂହାର'ର ବର୍ଣ୍ଣନାରୁ ଜଣାଯାଏ—ବିନ୍ଧ୍ୟ ପର୍ବତ ସନ୍ନିହିତ ପ୍ରଦେଶର ଉତ୍ତାପ କବିଙ୍କ ପକ୍ଷେ ଅସହ୍ୟ ହୋଇ ଥିଲା । ଏ ହେତୁ ସେ ନିଜ ପ୍ରିୟତମାଙ୍କୁ ବାରମ୍ବାର ମନେ ପକାଉ ଥିଲେ । ଯକ୍ଷର ବିରହଦଶା-ବର୍ଣ୍ଣନ ଛଳରେ ନିଜର ବିରହ ଦଶା କାଳିଦାସ ବର୍ଣ୍ଣନା କରି ଅଛନ୍ତି ବୋଲି ଫଳରେ ପ୍ରତିପାଦିତ ହେଉଅଛୁ । ଯକ୍ଷର ବାସସ୍ଥାନ କବିଙ୍କର ଜନ୍ମସ୍ଥାନ ଏବଂ ତାହା କାଶ୍ମୀରରେ କେବଳ ଥିଲା । ଏ ହେତୁ କାଳିଦାସ କାଶ୍ମୀରରେ ଜନ୍ମଗ୍ରହଣ କରିଥିଲେ ବୋଲି କୁହାଯାଇ ପାରେ ।

ଅଧ୍ୟାପକ ଲକ୍ଷ୍ମୀଧର କଲ୍ଲା ଅନେକ ପ୍ରମାଣ ଦେଇ ନିଜ ମତ ସାବ୍ୟସ୍ତ କରିବାକୁ ପ୍ରଯତ୍ନ କରି ଅଛନ୍ତି । କିନ୍ତୁ ତାଙ୍କର ଅଭୀଷ୍ଟ ସାଧିତ ହୋଇ ନାହିଁ । ଅଧ୍ୟାପକ କଲ୍ଲାଙ୍କର ଉପଯୁକ୍ତ ମତ ଉପରେ ନାନାପ୍ରକାର ଆକ୍ଷେପ କରାଯାଇ ପାରେ । ପ୍ରଥମ କଥା ଯେ 'କାଳିଦାସ' ଏହି ନାମଟି କାଶ୍ମୀରୀ ନୁହେଁ । ଗୁପ୍ତ, ନୂତନ

କ୍ଷେମେନ୍ଦ୍ର, କ୍ଷେମଙ୍କ, ମଙ୍ଖକ, ବିହ୍ଲଣ ଇତ୍ୟାଦି କାଶ୍ମୀରୀ ପଣ୍ଡିତ-ମାନଙ୍କର ନାମ ରାଜତରଙ୍ଗିଣୀ ଓ ଅନ୍ୟାନ୍ୟ ଗ୍ରନ୍ଥମାନଙ୍କରେ ଦେଖିବାକୁ ମିଳେ । ସେହି ନାମମାଳାରେ କାଳିଦାସଙ୍କର ନାମ ଦେଖାଯାଏ ନାହିଁ, ଦ୍ୱିତୀୟ କଥା—କାଳିଦାସ କାଶ୍ମୀରୀ ହୋଇ ଥିଲେ, କଲ୍ହଣଙ୍କ ପରି ସାବଧାନ, ଜିଜ୍ଞାସୁ, ଇତିହାସଲେଖକ କାଳିଦାସଙ୍କୁ କାଶ୍ମୀରୀ ବୋଲି ରାଜତରଙ୍ଗିଣୀରେ ବର୍ଣ୍ଣନା ନ କରି କ୍ଷାନ୍ତ ନଥାନ୍ତେ । ଏହି ଗ୍ରନ୍ଥରେ ବିଲ୍ହଣଙ୍କର ଜୀବନ ଚରିତ ସେପରି ବର୍ଣ୍ଣନା କରି ଅଛନ୍ତି, ତହିଁରୁ ଉପର୍ଯ୍ୟୁକ୍ତ ବିଷୟ ପ୍ରମାଣିତ ହେଉଅଛି । ଏହା ଛଡ଼ା କାଳିଦାସଙ୍କର ଅସାଧାରଣ ଭୌଗୋଳିକ ଜ୍ଞାନ ଥିଲା ବୋଲି ତାଙ୍କ ଗ୍ରନ୍ଥମାନଙ୍କରୁ ପ୍ରମାଣିତ ହେଉ ଅଛି । ଖାଲି ଭାରତବର୍ଷ ନୁହେଁ, ଭାରତବର୍ଷ ବାହାରେ ଯେଉଁ ସବୁ ପ୍ରଦେଶର ବର୍ଣ୍ଣନା କାଳିଦାସ 'ରଘୁବଂଶ,' ପ୍ରଭୃତି ଗ୍ରନ୍ଥରେ କରି ଅଛନ୍ତି ସେ ସମସ୍ତରେ ଭୌଗୋଳିକ ତ୍ରୁଟି ଦେଖାଯାଏ ନାହିଁ । କିନ୍ତୁ ପ୍ରତ୍ୟେକ ସ୍ଥାନର ବିଶେଷତ୍ୱ ଅତି ସଂକ୍ଷିପ୍ତ ଓ ଭାବପୂର୍ଣ୍ଣ ଶବ୍ଦରେ ଅଙ୍କିତ କରିବାରେ କାଳିଦାସଙ୍କର ସିଦ୍ଧହସ୍ତତା ଅତ୍ୟନ୍ତ ପ୍ରଶଂସନୀୟ । ଏତାଦୃଶ କବି କାଶ୍ମୀରର ଅପ୍‌ସରସ୍ତୀର୍ଥ, ଶଚୀ-ତୀର୍ଥ, ଶକାବତାର ପ୍ରଭୃତି ସ୍ଥଳମାନଙ୍କୁ କେବଳ ସଂସ୍ଥାନର ଅବଶ୍ୟକତାବଶତଃ ଜୋର କରି ଆଣି ହସ୍ତିନାପୁରର ଆଖପାଖରେ ରଖିଦେବେ ଏହିପରି କଳ୍ପନା ସଂଗତ ବୋଧ ହୁଏ ନାହିଁ । ଏମାନଙ୍କ ମଧ୍ୟରୁ କେତେକ ସ୍ଥଳର ନିର୍ଦ୍ଦେଶ ଅନ୍ୟଗ୍ରନ୍ଥମାନଙ୍କରେ ମଧ୍ୟ ଦେଖାଯାଏ । ଏ ହେତୁ ସେ ସମସ୍ତ ସ୍ଥଳ କେବଳ କାଶ୍ମୀରରେ ଥିଲା ବୋଲି କହି ହେବ ନାହିଁ । ଉଦାହରଣ ସ୍ୱରୂପ କୁହାଯାଇ ପାରେ—ମହାଭାରତରୁ ଜଣାଯାଏ—କଣ୍ୱଙ୍କର ଆଶ୍ରମ ମାଲିନୀନଦୀ ତଟରେ ଥିଲା । କାଳିଦାସ ମଧ୍ୟ ସେହି

ବର୍ଣ୍ଣନା କରି ଅଛନ୍ତି । କୈଳାଶ, ଅଳକା, ମନ୍ଦାକିନୀ ପ୍ରଭୃତି-ବର୍ଣ୍ଣନାରେ ଯେଉଁ ଭୌଗୋଳିକ ବର୍ଣ୍ଣନା ଅନ୍ୟାନ୍ୟ ଗ୍ରନ୍ଥମାନଙ୍କରେ ଦେଖାଯାଏ, ତାହାହିଁ କାଳିଦାସକୃତ ଗ୍ରନ୍ଥମାନଙ୍କରେ ଦେଖାଯିବା ଉଚିତ । ସାଧାରଣତଃ କେହିହେଲେ ଏ ସମସ୍ତ କାଶ୍ମୀରରେ ଥିଲି ବୋଲି ସ୍ୱୀକାର କରନ୍ତି ନାହିଁ । କାଳିଦାସଙ୍କ ଗ୍ରନ୍ଥମାନଙ୍କରେ ବର୍ଣ୍ଣିତ ନଦୀ, ତୀର୍ଥ, ଆଶ୍ରମ ପ୍ରଭୃତି 'ନୀଳମତ-ପୁରାଣ'ର କାଶ୍ମୀର ବର୍ଣ୍ଣନାରେ ଦେଖାଯାଏ । କିନ୍ତୁ ଏହି ପୁରାଣ ଏତେ ପ୍ରାଚୀନ ନୁହେଁ ଯେ ଚତୁର୍ଥ ବା ପଞ୍ଚମ ଶତାବ୍ଦୀର ହୋଇ-ପାରିବ । ଓଲଟା ଏପରି ଜଣାଯାଏ ଯେ ପଦ୍ମପୁରାଣ ପରି ଏହି ପୁରାଣରେ ମଧ୍ୟ ବ୍ୟକ୍ତି ଓ ସ୍ଥଳମାନଙ୍କର ନାମ ନିର୍ଦ୍ଦେଶ କାଳି-ଦାସଙ୍କର ଗ୍ରନ୍ଥମାନଙ୍କର ଆଧାରରେ କରାଯାଇ ଅଛି ।

କେବଳ କାଶ୍ମୀର ଅଗ୍ରହର ବ୍ୟବହାର ବିଷୟରେ ଅଧ୍ୟାପକ କଲ୍ଲା ଯେଉଁ ସବୁ ଉଦାହରଣ ଦେଇଛନ୍ତି, ସେ ସମସ୍ତ ମଧ୍ୟ ତାଙ୍କ ମତର ପରିପୋଷକ ନୁହନ୍ତି । ଧୀବରକୁ ସମାଜରୁ ବହିଷ୍କୃତ କରି ରଖାଯାଇଥିଲା ବୋଲି 'ଶାକୁନ୍ତଳ'ରେ କୌଣସି ଠାରେ ଉଲ୍ଲିଖିତ ହୋଇ ନାହିଁ । କାଳିଦାସଙ୍କ ସମୟରେ ଲୋକ-ମାନଙ୍କର ହୃଦୟରେ ବୌଦ୍ଧଧର୍ମର ପ୍ରଭାବ, ଏତେଦୂର ପ୍ରତି-ଫଳିତ ହୋଇଥିଲା ଯେ ଧୀବରର ବୃତ୍ତି ମଧ୍ୟ (ମାଛମାରିବା) ମଧ୍ୟ ଜୀବହିଂସା ହେତୁ ନିନ୍ଦନୀୟ ଧରାଯାଉଥିଲା । ଏ ହେତୁ କବି ସ୍ୱକାଳୀନ ଲୋକମାନଙ୍କୁ ଲକ୍ଷ୍ୟ କରି 'ଶାକୁନ୍ତଳ'ର ଏହି ପ୍ରବେଶ-କରେ କହିଛନ୍ତି ଯେ—ସ୍ୱଜାତିଗତ କର୍ମ କଲେ କୌଣସି ପାପ ନାହିଁ । ଏ ହେତୁ ନଗର ରକ୍ଷକର ଉକ୍ତି କେବଳ କାଶ୍ମୀର-

ପ୍ରଚଳିତ ବସ୍ତୁର ନିର୍ଦ୍ଦେଶର କଳ୍ପନା ବୋଲି ଭାବିବା ସମୁଚିତ ବୋଧ ହୁଏ ନାହିଁ ।

କାଳିଦାସଙ୍କର ତତ୍ତ୍ୱଜ୍ଞାନ ବସ୍ତୁର କାଳ ସମୟରେ ଆମେ ସେ କାଶ୍ମୀରୀ ଶୈବମତାବଲମ୍ବୀ ଥିଲେ କି ନାହିଁ—ଏହି ପ୍ରଶ୍ନର ଚର୍ଚ୍ଚା କରିବୁଁ । ବର୍ତ୍ତମାନ ଏତିକି କହିଲେ ଯଥେଷ୍ଟ ହେବ ଯେ ସେହି ମତ ଶଙ୍କରାଚାର୍ଯ୍ୟଙ୍କର 'କେବଳାଦ୍ୱୈତ' ମତ ସହିତ ଖାପ ଖାଉଛି । ସେ ହେତୁ ସମ୍ଭବତଃ ଶଙ୍କରାଚାର୍ଯ୍ୟଙ୍କର ପରେ କାଶ୍ମୀରରେ ସେ ମତର ପ୍ରଚାର ହୋଇଅଛି । ତା ଛଡ଼ା କାଳି-ଦାସଙ୍କର କୌଣସି ଗ୍ରନ୍ଥରେ ଏହି ମତର ସ୍ପଷ୍ଟ ରୂପରେ ଉଲ୍ଲେଖ ଦେଖାଯାଏ ନାହିଁ । ତାଙ୍କର ନାଟକରେ ଶାପବଶତଃ କେତେକ ସମୟ ପର୍ଯ୍ୟନ୍ତ ପ୍ରେମିକ ଯୁଗଳର ବିୟୋଗ ହୁଏ ଏବଂ ପୁଣି ମିଳନ ହୁଏ—ଏହି ବିଷୟ କଳ୍ପନା ପ୍ରସୂତ—ଏଥିରେ ସନ୍ଦେହ ନାହିଁ ମାତ୍ର ଏହି କଳ୍ପନା 'ପ୍ରତ୍ୟଭିଜ୍ଞାଦର୍ଶନ'ରୁ ନେଇଛନ୍ତି—ଏହି ଯୁକ୍ତିର କୌଣସି ଆଧାର ନାହିଁ । କାରଣ, ଏହି ଦର୍ଶନର କୌଣସି ସ୍ଥାନରେ କୁହାଯାଇ ନାହିଁ ଯେ ବିୟୋଗ ଯେପରି ଶାପ-ମୂଳକ ହୁଏ ସେପରି ଜୀବର ବନ୍ଧନ ମଧ୍ୟ ଶାପମୂଳକ ହୁଏ । 'ଶାକୁନ୍ତଳ'ରେ ଭରତ ବାକ୍ୟର 'ପରଗତ ଶକ୍ତି' ଏହି ବିଶେଷଣର ଅର୍ଥ 'ପାର୍ବତୀ ସହିତ' । ଏଥିରୁ କବି 'ପ୍ରତ୍ୟଭିଜ୍ଞାଦର୍ଶନ'ର ଉପାସକ କି କାଶ୍ମୀରୀ ଥିଲେ ବୋଲି ପ୍ରମାଣିତ ହୁଏ ନାହିଁ ।

ଏହା ସତ୍ୟ ଯେ କୌଣସି କବି ଯେ କୌଣସି ଘଟଣା ନିଜେ ଅନୁଭବ ନ କରି ଥିଲେ, ତାର ଚିତ୍ର ନିଜ ତୂଳିକାରେ ଭଲ କରି ଚିତ୍ରିତ କରି ପାରିବେ ନାହିଁ । କିନ୍ତୁ ଏଥିରୁ

କାଳିଦାସଙ୍କର ଘର ଅଳକାପୁରୀରେ ଥିଲା। ତାଙ୍କର ଘରର ବାପିକାରେ ମରକତ ସ୍ଫଟିକଶିଳାବଦ୍ଧ ସୋପାନ ଥିଲା,ବାପିକାରେ ସ୍ୱର୍ଣ୍ଣର ପଦ୍ମ ବିକଶିତ ହୋଇଥିଲା, ଏବଂ ସେହି ପଦ୍ମମାନଙ୍କ ବୈଦୁର୍ଯ୍ୟମଣିର ନାଡ଼ ଥିଲା—ଏପରି ଭାବିବା ସମୁଚିତ ବୋଧ ହୁଏ ନାହିଁ। ଉତ୍ତରମେଘରେ କବି ନିଜ ସ୍ୱଚ୍ଛନ୍ଦ କଳ୍ପନା ବଳରେ ଅଳକାନଗରୀର ଐଶ୍ୱର୍ଯ୍ୟ, ସୌନ୍ଦର୍ଯ୍ୟ ଓ ସୁଖୋପଭୋଗର ଅତି ଉଜ୍ଜ୍ୱଳ ବର୍ଣ୍ଣନା କରି ଅଛନ୍ତି। ସେ ସମସ୍ତରେ ବାସ୍ତବିକତାର ରୂପ ଦେଖିବା ସମୁଚିତ ନୁହେଁ। ଦ୍ୱିତୀୟକଥା—ଚତୁର୍ଥଶତାବ୍ଦୀରେ କାଳିଦାସଙ୍କ ସଦୃଶ କବି ଉତ୍ପନ୍ନ ହେବାର ଯୋଗ୍ୟ ପରିସ୍ଥିତି କାଶ୍ମୀରରେ ଥିଲା ବୋଲି ଠିକ୍ କହି ହେବ ନାହିଁ। ଏ ସମସ୍ତ କାରଣରୁ କାଳିଦାସ କାଶ୍ମୀରରେ ଥିବା ପ୍ରମାଣିତ ହୋଇ ପାରୁ ନାହିଁ।

କାଳିଦାସ ଭାରତବର୍ଷର ଅନେକ ପ୍ରଦେଶର ବିସ୍ତୃତ ବର୍ଣ୍ଣନା ନିଜ ଗ୍ରନ୍ଥମାନଙ୍କରେ କରି ଅଛନ୍ତି। ସେ ହେତୁ ପ୍ରତ୍ୟେକ ପ୍ରଦେଶ ତାଙ୍କୁ ନିଜର ମନେ କରନ୍ତି। ଉଦାହରଣ ସ୍ୱରୂପ କୁହାଯାଇ ପାରେ ତାଙ୍କର କେତେକ ଗ୍ରନ୍ଥରେ ବିଦର୍ଭ-ଦେଶର ବର୍ଣ୍ଣନା କରାଯାଇ ଅଛି। ତାଙ୍କର 'ମାଳବିକାଗ୍ନିମିତ୍ର' ନାଟକରେ ବିଦର୍ଭରାଜକନ୍ୟାଙ୍କର ପ୍ରେମକଥାର ଚିତ୍ରଣ ଅଛି। 'ମେଘଦୂତ'ର ରାମଗିରି ବର୍ତ୍ତମାନ ରାମଟେକ ନାଗପୁର ପାଖରେ ବିଦ୍ୟମାନ ବୋଲି ଏହା ପୂର୍ବରୁ କୁହାଯାଇ ଅଛି। 'ରଘୁବଂଶ'ରେ ମଧ୍ୟ ବିଦର୍ଭରାଜକନ୍ୟା ଇନ୍ଦୁମତୀଙ୍କର ସ୍ୱୟମ୍ବର ଏବଂ ତାଙ୍କର ଅକାଳମୃତ୍ୟୁରେ ଅଜଙ୍କର ଅସୀମ କରୁଣ କ୍ରନ୍ଦନ ସେଥିଁ

ସର୍ଗମାନଙ୍କରେ ବର୍ଣ୍ଣିତ, ସେହି ଷଷ୍ଠ ଓ ଅଷ୍ଟମ ସର୍ଗ ଅନ୍ୟାନ୍ୟ ସର୍ଗମାନଙ୍କ ଅପେକ୍ଷା ଅତ୍ୟନ୍ତ ଉତ୍କୃଷ୍ଟ ବୋଲି ଧରାଯାଏ । ପଞ୍ଚମ ସର୍ଗରେ 'ରଥ୍ୟାଂ ବିଦର୍ଭାଧିପରାଜଧାନୀମ୍' (୫.୪୦) 'ସୌଧଜାଲ୍ୟ-ରମ୍ୟାନପରେ ବିଦର୍ଭାନ୍ (୫, ୬୦) ଇତ୍ୟାଦି କାଳିଦାସଙ୍କର ଉକ୍ତିଗୁଡ଼ିକ ବିଦର୍ଭ ପ୍ରଦେଶର ତାତ୍କାଳିକ ସମୃଦ୍ଧି ଓ ସୁରମ୍ୟତା ବିଷୟରେ ସୁନ୍ଦର ଆଲୋକପାତ କରୁଅଛି । ସେ ନିଜର ସମସ୍ତ କାବ୍ୟମାନଙ୍କରେ ବୈଦର୍ଭୀ ରୀତିର ଏପରି ସୁନ୍ଦର ଓ ସର୍ବୋତ୍କୃଷ୍ଟ ସନ୍ନିବେଶ କରିଅଛନ୍ତି ଯେ ସମସ୍ତ ପଣ୍ଡିତ ତାକୁ ଆଦର୍ଶ କରି ନେଇଅଛନ୍ତି । ଏ ହେତୁ କାଳିଦାସ ବିଦର୍ଭଦେଶୀୟ ବୋଲି କୁହାଯାଇ ପାରେ । ଏକ ଜଣ ସମାଲୋଚକ ମଧ୍ୟ * କାଳିଦାସଙ୍କୁ ବିଦର୍ଭଦେଶୀୟ ବୋଲି ପ୍ରମାଣିତ କରିବାକୁ ଚେଷ୍ଟା କରିଛନ୍ତି ତଥାପି କବି ବିଦର୍ଭର କୌଣସି ଭାଗକୁ ବିଶେଷ କରି ବର୍ଣ୍ଣନା କରି ନାହାନ୍ତି । ଏ ହେତୁ ବିଦର୍ଭକୁ ଏହାଙ୍କର ଜନ୍ମଭୂମିରୂପେ ଗୌରବାନ୍ୱିତ କରାଯାଇ ନ ପାରେ ।

ସ୍ୱର୍ଗୀୟ ମହାମହୋପାଧ୍ୟାୟ ହରପ୍ରସାଦ ଶାସ୍ତ୍ରୀ ଏବଂ ଅଧ୍ୟାପକ ଶି. ମ. ପରାଞ୍ଜପେ ଦେଖାଇବାକୁ ଚେଷ୍ଟା କରି ଅଛନ୍ତି ଯେ କାଳିଦାସ ମେଘଦୂତରେ ବିଦିଶାର ଯେଉଁ ବର୍ଣ୍ଣନା କରିଅଛନ୍ତି ତହିଁରେ 'ବିଦିଶା'ର ଆଖପାଖ ଛଅଟି ସ୍ଥଳର ଉଲ୍ଲେଖ ଅଛି । ସେଥିରେ 'ନୀଚୈର୍ଗିରି' ନାମକ ପର୍ବତ ଏବଂ ବନନଦୀ, ନିର୍ବିନ୍ଧ୍ୟା, ସିନ୍ଧୁ, ଗନ୍ଧବତୀ ଓ ଗମ୍ଭୀରା ନାମକ ପାଞ୍ଚୋଟି ନଦୀ ସମ୍ମିଳିତ । ଏହି 'ନୀଚୈର୍ଗିରି' ନିଜ ନାମ ଅନୁସାରେ ଗୋଟାଏ ଛୋଟ ପର୍ବତ

* **F. G. Peterson: A Note on Kalidas. J. R. A. S. 1923 p. 729.**

ହୋଇଥିବ, ଅନ୍ୟ ଯାଙ୍ଗୋତିଯାକ ନଦୀ ଅପ୍ରସିଦ୍ଧ । ଏମାନଙ୍କ ମଧ୍ୟରୁ କେତେକ ଗ୍ରନ୍ଥରେ ବା ପୁରାତନ ବର୍ଣ୍ଣନାମାନଙ୍କରେ ଉଲ୍ଲିଖିତ ଏବଂ କେତେକ କେବଳ କାଳିଦାସଙ୍କଦ୍ୱାରା ବର୍ଣ୍ଣିତ ଏହି ହେତୁ ଏ ଗ୍ରନ୍ଥକ ଉଜ୍ଜୟିନୀ ଏବଂ ବିଦିଶାର ମଧ୍ୟବର୍ତ୍ତୀ ଯେ କୌଣସି ସ୍ଥାନରେ ଥିଲେ ବୋଲି ମାନିବାକୁ ହେବ । (ସାହିତ୍ୟସଂଗ୍ରହ ଭାଗ ୧ ପୃ ୧୬) ଏମାନଙ୍କର ବର୍ଣ୍ଣନାରୁ ଜଣାଯାଏ — ଏହି ପର୍ବତ ଏବଂ ଏହି ନଦୀମାନଙ୍କ ଉପରେ କାଳିଦାସଙ୍କର ଅସୀମ ପ୍ରେମ ଥିଲା । ଏ ହେତୁ ଅଧ୍ୟାପକ ପରାଞ୍ଜପେ କାଳିଦାସଙ୍କୁ ବିଦିଶାନିବାସୀ ଏବଂ ମହାମହୋପାଧ୍ୟାୟ ହରପ୍ରସାଦଶାସ୍ତ୍ରୀ ମନ୍ଦସୋରରେ ଯଶୋଧର୍ମଦେବଙ୍କର ଆଶ୍ରିତ ବୋଲି ସିଦ୍ଧ କରିଅଛନ୍ତି । କିନ୍ତୁ ଏହି ଯୁକ୍ତି ଠିକ୍ ବୋଲି କହି ହେବ ନାହିଁ । ଏହା ସତ କଥା ଯେ କାଳିଦାସ ବିଦିଶା ଓ ଉଜ୍ଜୟିନୀ ମଧ୍ୟରେ ପ୍ରବାହିତ ଛୋଟ ଛୋଟ ନଦୀମାନଙ୍କର ବର୍ଣ୍ଣନା କରି ଅଛନ୍ତି ଏବଂ ବିଦିଶାର ବର୍ଣ୍ଣନା ଦୁଇ ତିନି ପଦ୍ୟରେ ସମାପ୍ତ କରି ଅଛନ୍ତି । ଆମେ ପ୍ରଥମ ପ୍ରବନ୍ଧରେ ଦେଖାଇଦେଇଛୁ ଯେ ସେ ଯଶୋଧର୍ମ-ଦେବଙ୍କର ଶହେ ବା ଶହେ ପଚାଶ ବର୍ଷ ପୂର୍ବରୁ ଥିଲେ । କାଳିଦାସଙ୍କ ସମୟରେ କୌଣସି ପ୍ରବଳ ରାଜା ବିଦିଶାରେ ଥିଲା ପରି କୌଣସିଠାରେ ଦେଖାଯାଏ ନାହିଁ । ଯଦ୍ୟପି କାଳିଦାସ ଅନ୍ୟାନ୍ୟ ସ୍ଥଳ ଅପେକ୍ଷା ମନ୍ଦସୋର ଓ ବିଦିଶାର ବର୍ଣ୍ଣନା ଅଧିକ ମାତ୍ରାରେ କରି ଅଛନ୍ତି, ତଥାପି ସେ ବର୍ଣ୍ଣନାରେ ମାତୃଭୂମିର ପ୍ରେମର ଉତ୍କଣ୍ଠା ନାହିଁ ।

ପରନ୍ତୁ ବିଦିଶା ପରେ ଯେଉଁ ନଗରୀର ମାର୍ଗ କବି ଯକ୍ଷ-ଦ୍ୱାରା ନିର୍ଦ୍ଦେଶ କରାଇ ଅଛନ୍ତି, ତହିଁରୁ ସେ ଉଜ୍ଜୟିନୀର

ବର୍ଣ୍ଣନାରେ ଆମ୍ଭୁକୂଳ ଲୀନ ଥିଲାପରି ଦେଖାଯାଏ । ରାମଗିରିଠାରୁ କୈଳାଶ ପର୍ବତ ଅଭିମୁଖରେ ଯିବାକୁ ହେଲେ ବିଦଶା ଓ ମନ୍ଦସୋର ସିଧା ମାର୍ଗରେ ପଡ଼ିବେ କିନ୍ତୁ ଉଜ୍ଜୟିନୀ ବହୁତ ଦୂର ପଶ୍ଚିମରେ ରହିଯିବ । ଏହେତୁ ଉତ୍ତର ଦିଗ-ଅଭିମୁଖରେ ପ୍ରସ୍ଥିତ ମେଘପକ୍ଷେ ବାଟ ବଙ୍କା ହେଲେ ମଧ୍ୟ, ହେ ମେଘ, ତୁମେ ଉଜ୍ଜୟିନୀର ହର୍ମ୍ୟମାନଙ୍କ ଉପରେ କ୍ଷଣମାତ୍ର ରହି-ବାକୁ ଚେଷ୍ଟା କରିବ ବୋଲି ଯକ୍ଷ ମେଘକୁ ଅନୁରୋଧ କରିଅଛି । କାଳିଦାସ ୧୧ଟି ଶ୍ଳୋକରେ ଉଜ୍ଜୟିନୀର ଅପରିମିତ ସମ୍ପତ୍ତି, ଶିପ୍ରାନଦୀର ଶୀତଳ, ସୁଗନ୍ଧ, ମନ୍ଦ ସମୀରଣ, ଉଜ୍ଜୟିନୀ ସମ୍ବନ୍ଧୀ ପ୍ରାଚୀନ କଥାମାନ, ପ୍ରସିଦ୍ଧ ମହାକାଳମନ୍ଦିର, ସନ୍ଧ୍ୟାକାଳୀନ ଆରତିସମୟରେ ବେଶ୍ୟାନୃତ୍ୟ, ରାତ୍ରିରେ, ପ୍ରିୟତମଙ୍କ ଗୃହାଭିମୁଖରେ ଯାଉଥିବା ଅଭିସାରିକା— ଏ ସମସ୍ତର ବର୍ଣ୍ଣନା ଏତେ ରମଣୀୟ ଓ ହୃଦୟଗ୍ରାହୀ ରୂପରେ କରିଛନ୍ତି ଯେ ସେ ସମସ୍ତ ପଢ଼ିଲାବେଳେ ଉଜ୍ଜୟିନୀର ତତ୍କାଳୀନ ଦୃଶ୍ୟ ପାଠକ-ମାନଙ୍କ ଆଖିଆଗରେ ପୁରାପୁରି ନାଚିଲାପରି ଲାଗୁଅଛି । ଅଳକାକୁ ଛାଡ଼ିଦେଲେ କବି ଆଉ କୌଣସି ଦ୍ୱିତୀୟ ନଗରୀର ଏତେ ସୁନ୍ଦର ଓ ବିସ୍ତୃତ ବର୍ଣ୍ଣନ କରି ନାହାନ୍ତି—ଏହା ମନେ ରଖିବାକୁ ହେବ । ଅଳକା ଦିବ୍ୟ ସ୍ୱର୍ଗୀୟ ନଗରୀ । ଏହେତୁ ତାକୁ ବର୍ଣ୍ଣନା କଲାବେଳେ କବି ନିଜ କଳ୍ପନା ଶକ୍ତିର ସଦୁପ-ଯୋଗ କରି ଅଛନ୍ତି । କିନ୍ତୁ ଭୂଲୋକର ଆଉ କୌଣସି ଦ୍ୱିତୀୟ ନଗରୀ ଉପରେ ତାଙ୍କର ଏତେ ଦୂର ପ୍ରେମ ଦେଖାଯାଏ ନାହିଁ ଯାହାକି ଉଜ୍ଜୟିନୀ ଉପରେ ଥିଲା । ଏଥିରୁ ସ୍ପଷ୍ଟ ପ୍ରତୀତ ହେଉଛି ଯେ ତାଙ୍କର ବାଲ୍ୟକାଳ ଉଜ୍ଜୟିନୀରେ କେବଳ ଅତିବାହିତ ହୋଇଥିଲା ।

# ୪ ଚରିତ୍ରବିଷୟକ ଅନୁମାନ

(लोकोत्तराणां चेतांसि कोऽनु विज्ञातुमर्हति ।

ଉତ୍ତରରାମଚରିତ

(ଲୋକୋତ୍ତର ପୁରୁଷମାନଙ୍କର ହୃଦୟ କିଏ ଜାଣିପାରିବ ?)

କାଳିଦାସଙ୍କର ଚରିତ୍ର ସମ୍ବନ୍ଧରେ ନିମ୍ନଲିଖିତ କିମ୍ବଦନ୍ତୀ* ପ୍ରାଚୀନ ବଗୁର ପରମ୍ପରା ଅନୁସାରେ ପଣ୍ଡିତମାନଙ୍କ ମଧ୍ୟରେ ପ୍ରଚଳିତ—

କାଳିଦାସ ବ୍ରାହ୍ମଣ ବାଳକ ଥିଲେ । ପାଞ୍ଚ କି ଛ ବର୍ଷ ସମୟରେ ତାଙ୍କର ମା ବାପ ମରିଯାଇଥିଲେ ଏବଂ ସେ ଅନାଥ ହୋଇଯାଇ ଥିଲେ । ସୌଭାଗ୍ୟବଶତଃ ଏକ ଗଉଡ଼ର ଦୃଷ୍ଟି ଏହି ବାଳକ ଉପରେ ପଡ଼ିଥିଲା । ସେ ଏହି ମାତୃ ପିତୃ ହୀନ ବାଳକକୁ ନିଜ ଘରକୁ ନେଇ ଯାଇଥିଲା ଏବଂ ଭଲରୂପେ ଲାଳନ-ପାଳନ କରିଥିଲା । ଯେତେବେଳେ କାଳିଦାସ ବଡ଼ ହେଲେ, ସେତେବେଳେ ସେ ପ୍ରତିବେଶୀ ଗଉଡ଼ପିଲାମାନଙ୍କ ସହିତ ଖେଳ କସରତରେ ମାତିବାକୁ ଲାଗିଲେ । ଏହାଙ୍କର ଶରୀର ଗୌରବର୍ଣ୍ଣ, ସୁଗଠିତ ଏବଂ ହୃଷ୍ଟପୁଷ୍ଟ ଥିଲା । ଏ ହେତୁ ସେ ଗଉଡ଼ପିଲାମାନଙ୍କ ମଧ୍ୟରେ ଅତ୍ୟନ୍ତ ଗୌରବ ସହକାରେ

* R V. Tullur—Traditionary Account of Kalidasa (Iud. Ant. Vol. VII, P.P. 115-7)

ବଢ଼ୁଥିଲେ । ଅଠର ବର୍ଷ ପର୍ଯ୍ୟନ୍ତ ସେ ନିରକ୍ଷରକୁକ୍ଷି ଭିକ୍ଷାଗୃହୀ ହୋଇ ରହିଥିଲେ । ସେ ଯେଉଁ ନାଗରୀରେ ଥିଲେ,ସେ ନଗରୀର ରାଜାଙ୍କର ଏକ ସୁନ୍ଦରୀ ଓ ଗୁଣଶୀଳବତୀ ବିଦୂଷୀ କନ୍ୟା ଥିଲେ । କନ୍ୟାର ବିବାହଯୋଗ୍ୟ ବୟସ ଦେଖି ରାଜା ରୂପଗୁଣଯୌବନ-ସମ୍ପନ୍ନ ଅନେକ ବର ଖୋଜିଲେ । ମାତ୍ର ସେମାନଙ୍କ ମଧ୍ୟରୁ ଏକ ଜଣକୁ ମଧ୍ୟ ମନୋନୀତ କରି ପାରିଲେ ନାହିଁ । ପରିଶେଷରେ ସେ ଅଗତ୍ୟା ରାଜକୁମାରୀର ଯୋଗ୍ୟ ବର ଅନ୍ୱେଷଣ କରିବା ଭାର ନିଜ ମନ୍ତ୍ରୀଙ୍କ ଉପରେ ନ୍ୟସ୍ତ କଲେ । ମନ୍ତ୍ରୀ କୌଣସି କାରଣ ବଶତଃ ରାଜକୁମାରୀଙ୍କ ଉପରେ ପ୍ରତିଶୋଧ ନେବାକୁ ଚାହୁଁଥିଲେ । ସେ ସୌଧ ଉପରେ ରହି ରାଜ କନ୍ୟାଙ୍କ ସକାଶେ ଏକ ଗଣ୍ଡମୂର୍ଖ ଅସଦ୍ଗୁଣ ବର ଖୋଜୁଥିଲେ । ଏ ସମୟରେ ଗବାକ୍ଷ ସନ୍ଧିଙ୍କ ଗହଣରେ ସେହି ବ୍ରାହ୍ମଣ ବାଳକ ଯାଉଥିବା ଦେଖିଲେ । ହଠାତ୍ ତାଙ୍କ ମନକୁ ଏକ ଖିଆଲ ପ୍ରବେଶ କଲା । ସେ ସେହି ଗଣ୍ଡମୂର୍ଖ ବ୍ରାହ୍ମଣ କୁମାରକୁ ନିଜ ଘରକୁ ଡକାଇଲେ । ନାନା ପ୍ରକାର ବହୁମୂଲ୍ୟ ପଟ୍ଟବସ୍ତ୍ର ଓ ମହାର୍ଘ ଆଭରଣରେ ଅଲଂକୃତ କରି ସେ ଅନେକ ନବଯୁବକ ମଣ୍ଡିତମାନଙ୍କ ସହିତ ରାଜ ସଭାକୁ ନେଇଗଲେ ଏବଂ ରାଜାଙ୍କୁ ଜଣାଇଲେ ଯେ କାଶୀରୁ ଏହି ବଡ଼ ଦିଗ୍‌ଗଜ ପଣ୍ଡିତ ଆସି ଅଛନ୍ତି, ତାଙ୍କୁ ସାଦର ସତ୍କାର କରି ଆପଣ ପରୀକ୍ଷା କରନ୍ତୁ । ରାଜ ସଭାର ପଣ୍ଡିତମାନେ ରାଜାଙ୍କ ଆଦେଶରେ ଶାସ୍ତ୍ରାର୍ଥ କରିବାକୁ ପ୍ରସ୍ତୁତ ହୋଇଗଲେ । ମାତ୍ର ସମସ୍ତ ପଣ୍ଡିତ ତାଙ୍କର ଶିଷ୍ୟମାନଙ୍କ ଦ୍ୱାରା ପରାସ୍ତ ହେଲେ । ରାଜକୁମାରୀ ଏହି ବ୍ରାହ୍ମଣ କୁମାରଙ୍କୁ ଆଉ ପରୀକ୍ଷା କରିବାକୁ ଆବଶ୍ୟକ ମନେ କଲେ ନାହିଁ । ରାଜକୁମାରୀ ଏହି ବ୍ରାହ୍ମଣକୁମାରର ରୂପଲାବଣ୍ୟରେ

ମୁଗ୍ଧ ହୋଇଗଲେ । ଅଳ୍ପସମୟରେ ତାଙ୍କ ସହିତ ତାଙ୍କର ବିବାହ ମଧ୍ୟ ସମ୍ପନ୍ନ ହୋଇଗଲା । କିନ୍ତୁ ଦୁଇ ଗୁଣ ଦିନରେ ତାଙ୍କର ମୂର୍ଖତା ସେ ବୁଝି ଗଲେ । ସେତେବେଳେ ମାରିବା ଧମକ ଦେଇ ତାଙ୍କଠାରୁ ସମସ୍ତ ବୃତ୍ତାନ୍ତ ବୁଝି ପାରିଲେ । ତାଙ୍କର ବଡ଼ ଦୁଃଖ ହେଲା । କିନ୍ତୁ ବିବାହ କଲାପରେ କଅଣ କରି ପାରିବେ ? ତାଙ୍କୁ କାଳୀଦେବୀଙ୍କର ଉପାସନା କରିବାକୁ କହିଲେ । କାଳିଦାସ କାଳୀମନ୍ଦିରକୁ ଯାଇ ଆସନ ବାନ୍ଧି ଧ୍ୟାନରେ ବସିଲେ । ଦେବୀ ପ୍ରସନ୍ନ ହେବା ନ ଦେଖି ସେ ନିଜ ଶିର କର୍ତ୍ତନ କରିବାକୁ ବସିଲେ । ଏହାଙ୍କର ଭକ୍ତି ଓ ଦୃଢ଼ ନିଷ୍ଠା ଦେଖି କାଳୀ ପ୍ରସନ୍ନ ହେଲେ ଏବଂ ତାଙ୍କ ମସ୍ତକ ଉପରେ ନିଜ ବରଦ ହସ୍ତ ବୁଲାଇଲେ । ସେ ଦିନଠାରୁ ସେ ଅତ୍ୟନ୍ତ ବିଦ୍ୱାନ୍ ଓ ପ୍ରତିଭାସମ୍ପନ୍ନ କବି ହେଲେ ଏବଂ କାଳିଦାସ ନାମରେ ତାଙ୍କର ସୁଖ୍ୟାତି ହେଲା ।

କାଳୀମନ୍ଦିରରୁ ଫେରି କାଳିଦାସ ରାଜକୁମାରୀଙ୍କ ପାଖକୁ ଗଲେ । ରାଜକୁମାରୀ ପ୍ରଶ୍ନ କଲେ—'ଅସ୍ତି କଶ୍ଚିଦ୍ ବାଗ୍‌ବିଶେଷଃ ?' (ଆପଣଙ୍କର ବାଣୀରେ କିଛି ବିଶେଷତ୍ୱ ଅଛି କି ?) କାଳିଦାସଙ୍କର ବାଣୀ ଏ ସମୟରେ ଦେବୀଙ୍କର ଅନୁଗ୍ରହରୁ ପବିତ୍ର ହୋଇଯାଇଥିଲା । ଏହି ହେତୁ ସେ ରାଜକନ୍ୟାଙ୍କର ବାକ୍ୟର ପ୍ରତ୍ୟେକ ପଦ ନେଇ ଏକ ଏକ କାବ୍ୟ ରଚନା କଲେ । 'ଅସ୍ତି' ପଦ ନେଇ 'ଅସ୍ତ୍ୟୁତ୍ତରସ୍ୟାଂ ଦିଶି ଦେବତାତ୍ମା'ରେ ଆରମ୍ଭ କରି କୁମାର ସମ୍ଭବ, 'କଶ୍ଚିତ୍' ପଦ ନେଇ 'କଶ୍ଚିତ୍‌କାନ୍ତା-ବିରହଗୁରୁଣା'ରେ ଆରମ୍ଭ କରି ମେଘଦୂତ 'ବାକ୍'ପଦ ନେଇ 'ବାଗର୍ଥାବିବ ସମ୍ପୃକ୍ତୌ'ରେ ଆରମ୍ଭ କରି ରଘୁବଂଶ କାବ୍ୟ ରଚନା କଲେ । ଯେଉଁ ରାଜକନ୍ୟାଙ୍କଦ୍ୱାରା ସେ ମୂର୍ଖରୁ ମହାପଣ୍ଡିତ

ଓ କବି ହେଲେ, ତାଙ୍କୁ ସେ ମାତା ଓ ଗୁରୁରୂପେ ପୂଜା କରିବାକୁ ଲାଗିଲେ । ଏହି ବ୍ୟବହାରରେ ରାଜକନ୍ୟା ରାଗିଗଲେ ଏବଂ ଶାପ ଦେଲେ ଯେ ତାଙ୍କର ମୃତ୍ୟୁ ସ୍ତ୍ରୀ ହାତରେ ହେବ । ସେହି ଦିନଠାରୁ କାଳିଦାସଙ୍କର ଜୀବନର ପ୍ରବାହ ଏକବାରେ ବଦଳିଗଲା । ତାଙ୍କର ବହୁତ ସମୟ ବେଶ୍ୟା-ମାନଙ୍କର ସଂସ୍ରବରେ ବିତିବାକୁ ଲାଗିଲା । ଥରେ ସେ ନିଜ ମିତ୍ର କୁମାରଦାସଙ୍କୁ ଦେଖିବାସକାଶେ ସିଂହଳଦ୍ୱୀପ (ଲଙ୍କା) ଯାଇଥିଲେ ଏବଂ ସେଠାରେ ସେ ଏକ ବେଶ୍ୟାଠାରୁ ଶୁଣିଲେ ଯେ "କମଳେ କମଳୋତ୍ପତ୍ତିଃ ଶ୍ରୂୟତେ ନ ଚ ଦୃଶ୍ୟତେ" (ପଦ୍ମ ଉପରେ ପଦ୍ମର ଉତ୍ପତ୍ତି ଶୁଣାଯାଏ ମାତ୍ର ଦେଖାଯାଏ ନାହିଁ) ଏହି ଶ୍ଳୋକାର୍ଦ୍ଧର ପୂରଣ ସକାଶେ ରାଜା ବଡ଼ ପୁରସ୍କାର ଘୋଷଣା କରି ଅଛନ୍ତି । କାଳିଦାସ ସେହିକ୍ଷଣି

'ବାଳେ ତବ ମୁଖାମ୍ଭୋଜେ କଥମିନ୍ଦୀବର ଦ୍ୱୟମ୍'

(ହେ ବାଳେ ! ତୁମ ମୁଖକମଳ ଉପରେ ଦୁଇଟି (ନେତ୍ରରୂପ) ନୀଳ କମଳ କିପରି ଅଛି ? )

ଏହିପରି ପୂର୍ତ୍ତି କରିଦେଲେ । ସେହି ବେଶ୍ୟା ରାଜାଙ୍କ ପୁରସ୍କାର ଲୋଭରେ କାଳିଦାସଙ୍କୁ ହତ୍ୟା କରିଦେଲା । ଏଥିରେ ରାଜା କୁମାରଦାସଙ୍କର ସନ୍ଦେହ ହେଲା ଏବଂ ସେ ଭୟ ଦେଖାଇ ବେଶ୍ୟାକୁ କାଳିଦାସଙ୍କ ବିଷୟରେ ପଚାରିଲେ । ବେଶ୍ୟା ନିଜ ଅପରାଧ ସ୍ୱୀକାର କଲା । ନିଜ ମିତ୍ର କାଳିଦାସଙ୍କର ଶୋଚନୀୟ ମୃତ୍ୟୁ ଦେଖି ରାଜା ବିଶେଷ ଦୁଃଖିତ ହେଲେ । ତାଙ୍କର ଦୁଃଖ ଏପରି ସୀମାରେ ପହଞ୍ଚିଲା ଯେ ସେ ଉନ୍ମତ୍ତପ୍ରାୟ ହୋଇ କାଳିଦାସଙ୍କର ଚିତା ଉପରେ ଡେଇଁପଡ଼ି ଜଳିପୋଡ଼ି ମରିଗଲେ ।

ସ୍ୱର୍ଗୀୟ ମହାମହୋପାଧ୍ୟାୟ ଡ଼ାକ୍ତର ସତୀଶଚନ୍ଦ୍ର ବିଦ୍ୟାଭୂଷଣ କହନ୍ତି—ବର୍ତ୍ତମାନ ସୁଦ୍ଧା ସିଂହଳ ଦ୍ୱୀପରେ କାବର୍ଣ୍ଣୀନଦୀ ମୁହାଣପାଖରେ ମାତର ନାମକ ସ୍ଥାନକୁ ଏଠାରେ କାଳିଦାସଙ୍କର ଚିତା ଜଳିଥିଲା ବୋଲି ଲୋକମାନେ ଦର୍ଶକମାନଙ୍କୁ ଦେଖାଇ ଥାନ୍ତି ।

ରାଜସଭାରେ ଥିଲା ସମୟରେ କାଳିଦାସ ନିଜ ପ୍ରତିଭା ଓ ସମସ୍ୟାପୂର୍ତ୍ତିରେ ବଡ଼ ବଡ଼ ଦିଗ୍‌ଗଜ ପଣ୍ଡିତମାନଙ୍କୁ ଏବଂ ନିଜ ଆଶ୍ରୟଦାତା ବିକ୍ରମାଦିତ୍ୟଙ୍କୁ ମଧ୍ୟ ଅନେକ ସମୟରେ ଚକିତ କରି ଦେଉଥିଲେ । ଏହି ସବୁ ନାନା ପ୍ରକାର କିମ୍ବଦନ୍ତୀ ପଣ୍ଡିତ ସମାଜରେ ପ୍ରଚଳିତ ଥିବା ଦେଖାଯାଏ । ଏହିପରି କେତେକ କଥା ଏକାଦଶ ଶତାବ୍ଦୀର ବିଖ୍ୟାତ ଦାନବୀର ଭୋଜରାଜାଙ୍କର ସଭାର ପଣ୍ଡିତ ବଲ୍ଲାଳକବି ତାଙ୍କ ଭୋଜପ୍ରବନ୍ଧରେ ଦେଇ ଅଛନ୍ତି । ସେ ମଧ୍ୟରୁ ଦୁଇଟି ମନଗଢ଼ା କିମ୍ବଦନ୍ତୀ ନିମ୍ନରେ ଦିଆଗଲା—

ଏକ ସମୟରେ ଏକଜଣ ପଣ୍ଡିତ ରାଜାଙ୍କର ସଭାକୁ ଆସି ସମୁଦ୍ରବାଚକ ଛଅଟି ପଦବିଶିଷ୍ଟ ଏକପାଦ 'ଅମ୍ଭୋଧିର୍ଜଳଧିଃ, ପୟୋଧିରୁଦଧି ବାରାଂନିଧି ବାରିଧିଃ' ବୋଲି ପଢ଼ି ଘୋଷଣା କଲେ ଯେ ଯେ ସେ ପାଦ ପୂରଣ କରି ପାରିବ, ସେ ବିଜୟୀ ପଦ ପାଇବ । ସମସ୍ତ ପଣ୍ଡିତ ପରସ୍ପର ମୁଖ ଚାହିଁବାକୁ ଲାଗିଲେ । ସେମାନଙ୍କ ମଧ୍ୟରୁ କାଳିଦାସ ଆଗକୁ ଆସି ସମସ୍ୟା ପୂର୍ତ୍ତି କରି ନିମ୍ନ ଲିଖିତ ଶ୍ଳୋକ ପାଠ କଲେ—

अम्बा कुप्यति तात मूर्ध्नि विधृता गङ्गेयमुत्सृज्यतां
विद्वन् षण्मुख, सन्ततं मयि रता तस्याः गतिः का वद ।
कोपाटोपवशाद्विवृद्धवदनः प्रत्युत्तरं दत्तवान्
अम्भोधिर्जलधिः पयोधिरुदधि र्वारांनिधिर्वारिधिः ॥

"ଏକ ଦିନ କୁମାର କାର୍ତ୍ତିକେୟ ପିତା ମହାଦେବଙ୍କୁ କହିଲେ, ପିତୃଦେବ, ଆପଣଙ୍କର ମସ୍ତକରେ ଗଙ୍ଗାଙ୍କୁ ଦେଖି ମା କ୍ରୁଦ୍ଧ ହେଉଛନ୍ତି, ତାଙ୍କୁ ଆପଣ ଛାଡ଼ି ଦିଅନ୍ତୁ । ମହାଦେବ କହିଲେ-ଚତୁର ପୁତ୍ର, ସେ ତ ସବୁବେଳେ ମୋତେ ଆଶ୍ରୟ କରି ରହିଛି—ଛାଡ଼ିଦେଲେ ତାର କି ଗତି ହେବ କହ ।' ଏହା ଶୁଣିବା ମାତ୍ରେ କାର୍ତ୍ତିକେୟ କ୍ରୁଦ୍ଧ ହୋଇଗଲେ ଏବଂ ତାଙ୍କର ବିବୃତ ଛଅଟି ମୁଖରେ ଏକ ସଙ୍ଗେ ପ୍ରତ୍ୟୁତ୍ତର ଦେଲେ—'ଅମ୍ଭୋଧି, ଜଳଧି, ପୟୋଧି, ଉଦଧି, ବାରିଂନିଧି ବାରିଧି'—ଅର୍ଥାତ୍ ସମୁଦ୍ରକୁ ଯାଉ ।

ଈଶ୍ବରଙ୍କର ଅନୁଗ୍ରହ ବିନା ବିଦ୍ୟା ଉପାର୍ଜନ କରିବାକୁ ହେଲେ ବିଶେଷ କଷ୍ଟ ସ୍ୱୀକାର କରିବାକୁ ହୁଏ—ଏହା ଭଲ ରୂପେ କାଳିଦାସ ଜାଣିଥିଲେ । ଏହେତୁ କାଳିଦାସ ନିର୍ଧନ ଓ ଅପାଠୁଆ ବ୍ରାହ୍ମଣମାନଙ୍କୁ ରାଜଦରବାରରେ ବିଶେଷ ପାରିତୋଷିକ ଦିଆଇ ଦେଉଥିଲେ । ଏକ ସମୟରେ ଏକ ବ୍ରାହ୍ମଣ ରାଜସଭାରେ ଉପସ୍ଥିତ ହୋଇଥିଲେ । ସେ ବେଦର ପୁରୁଷସୂକ୍ତର କେବଳ ପ୍ରଥମ ମନ୍ତ୍ରର ପ୍ରଥମ ଦୁଇ ପାଦ ଜାଣିଥିଲେ ଏବଂ କେବଳ ସେତିକମାତ୍ର ରାଜ ସଭାରେ ଶୁଣାଇଲେ । ରାଜା ଭୋଜ ସେତିକି ମାତ୍ର ଶୁଣି କିପରି ପ୍ରସନ୍ନ ହେବେ ? କାଳିଦାସ ସଭାରେ ଉପସ୍ଥିତ ଥିଲେ । ସେ ଏହି ନିବୋଧ ବ୍ରାହ୍ମଣଙ୍କର ବିଷମ ପରିସ୍ଥିତି ବୁଝି ପାରିଲେ ଏବଂ ତାଙ୍କର ଜ୍ଞାନ ଭଣ୍ଡାର ସେତିକିରେ ଶେଷ ହୋଇ

ଗଲ୍ପ ବୋଲି ଧରନେଲେ । ସେହି ଗରିବ ବ୍ରାହ୍ମଣଙ୍କୁ ସାହାଯ୍ୟ କରିବାକୁ ଅଗଭର ହୋଇ ରାଜାଙ୍କୁ ଜଣାଇଲେ — ମହାରାଜ, ଏ ବ୍ରାହ୍ମଣ ଆପଣଙ୍କର ବଡ଼ ପ୍ରଶଂସା କରିଛନ୍ତି । ତାଙ୍କର ଉକ୍ତିର ତାତ୍ପର୍ଯ୍ୟ ହେଉଛି ।

**सहस्रशीर्षा पुरुषः सहस्राक्षः सहस्रपात् ।**
**चलित श्चकितश्छन्नस्तव सैन्ये प्रधावति ॥**

"ରାଜନ୍, ଆପଣଙ୍କର ସେନା ଦେଶ ଜୟ ଉଦ୍ଦେଶ୍ୟରେ ଅଭିଯାନ କଲେ ମାନେ ଶେଷଦେବ ପୃଥ୍ୱୀଭାରରେ ଦବିଯାଇ ବିଚଳିତ ହୋଇ ଯାଆନ୍ତି, ଇନ୍ଦ୍ର ବିସ୍ମିତ ହୁଅନ୍ତି ଏବଂ ସୂର୍ଯ୍ୟ ଧୂଳିରେ ଆଚ୍ଛନ୍ନ ହୋଇ ଯାଆନ୍ତି" । ଏହି ଶ୍ଳୋକରେ କାଳିଦାସ ଚତୁରତା ସହକାରେ ଯଥାସଂଖ୍ୟ ଅଳଙ୍କାରର ଚମତ୍କାର ଦେଖାଇ ମହାରାଜ ଭୋଜଙ୍କ ଠାରୁ ଏହି ଗରିବ ବ୍ରାହ୍ମଣକୁ ପ୍ରଭୁତ ଧନ ଦିଆଇଥିଲେ ।

ଏହିପରି ଅନେକ କିମ୍ବଦନ୍ତୀ ପଣ୍ଡିତମାନଙ୍କ ମଧ୍ୟରେ ପ୍ରଚଳିତ ଅଛି । ଏହି ଜାତୀୟ କିମ୍ବଦନ୍ତୀମାନଙ୍କ ଉପରେ କେତେଦୂର ବିଶ୍ୱାସ କରାଯାଇପାରେ, ଏହାର ବିଚାର ଏହି ପୁସ୍ତକର ପ୍ରଥମ ପରିଚ୍ଛେଦରେ ଆମେ ସ୍ପଷ୍ଟରୂପରେ କରିଅଛୁଁ । କାଳି-ଦାସଙ୍କ ଚରିତ ସମ୍ବନ୍ଧରେ ଏହି ଜାତୀୟ କିମ୍ବଦନ୍ତୀମାନ ଚତୁର୍ଦ୍ଦଶ ଶତାବ୍ଦୀର ଜୈନ ଗ୍ରନ୍ଥକାର ମେରୁତୁଙ୍ଗଙ୍କର ପ୍ରବନ୍ଧ-ଚିନ୍ତାମଣିରେ ଦେଖିବାକୁ ମିଳେ । ସେଥିରୁ ଜଣାଯାଏ — ସେ ସମସ୍ତ କାହାଣୀ କାଳିଦାସଙ୍କ ପରେ ପ୍ରାୟ ଏକ ହଜାର ବର୍ଷ ପରେ ପ୍ରଚଳିତ ହୋଇଅଛି । ବାଣ, ଅଭିନନ୍ଦ, ସୋଡ଼୍‌ଢଳପ୍ରଭୃତି

କବିମାନେ କାଳିଦାସଙ୍କର ପ୍ରଶସ୍ତିପର ପଦ୍ୟମାନ ଲେଖି ଅଛନ୍ତି। ସେ ସମସ୍ତ ପଦ୍ୟରେ ଏହି କାହାଣୀମାନଙ୍କ ସହିତ ଖାପ ଖାଇଲା ପରି କୌଣସି ଉଲ୍ଲେଖ ନାହିଁ। କାଳିଦାସ ଓ କୁମାରଦାସଙ୍କର ମିତ୍ରତା ବିଷୟରେ ଷୋଡ଼ଶଶତାବ୍ଦୀର ଏକ ସିଂହଳୀ ଗ୍ରନ୍ଥରେ ଉଲ୍ଲେଖ ଦେଖାଯାଏ। ଏ ହେତୁ ତାହା ମଧ୍ୟ ବିଶ୍ୱାସଯୋଗ୍ୟ ନୁହେଁ। ପ୍ରଫେସର କୀଥ * ପ୍ରମାଣିତ କରି ଅଛନ୍ତି ଯେ 'ଜାନକୀ-ହରଣ'ର ଲେଖକ କୁମାରଦାସ କେବେହେଲେ ସିଂହଳଦ୍ୱୀପର ରାଜା ନ ଥିଲେ କି ତାଙ୍କର ଶାସନକାଳ ୫୧୭-୫୨୬ ଖ୍ରୀଷ୍ଟାବ୍ଦର ଆଖ ପାଖ ସମୟରେ ନ ଥିଲା କିନ୍ତୁ ସେ ୭୦୦-୭୫୦ ଖ୍ରୀଷ୍ଟାବ୍ଦ ମଧ୍ୟରେ କବି ଥିଲେ। ପ୍ରଥମ ପରିଚ୍ଛେଦରେ ଅନେକ ପ୍ରମାଣ ଦେଇ ସ୍ଥିର କରାଯାଇ ଅଛି ଯେ କାଳିଦାସ ଖ୍ରୀଷ୍ଟୀୟ ଚତୁର୍ଥଶତାବ୍ଦୀର ଆଖପାଖ ସମୟର କବି। ଏଥିରୁ ସ୍ପଷ୍ଟ ଜଣାଯାଏ ଯେ ସେ ସମସ୍ତ ମନଗଢ଼ା କାହାଣୀଗୁଡ଼ିକ କେତେଦୂର ସତ୍ୟ।

କୌଣସି ବିଶ୍ୱାସଯୋଗ୍ୟ ପରମ୍ପରାଗତ ଆଖ୍ୟାୟିକା ନ ଥିବାରୁ କବିଙ୍କର ଚରିତ ତାଙ୍କର ସମସ୍ତ ଗ୍ରନ୍ଥ ପରିଶୀଳନ କରି କେବଳ ସଂଗ୍ରହ କରିବାକୁ ହୁଏ। ଏହା ବର୍ତ୍ତମାନ ସର୍ବବାଦି ସମ୍ମତ ଯେ ପ୍ରତ୍ୟେକ ଗ୍ରନ୍ଥକାରଙ୍କର ମତ, ପାଣ୍ଡିତ୍ୟ ଓ ସ୍ୱଭାବ ତାଙ୍କର ଗ୍ରନ୍ଥମାନଙ୍କରେ ପ୍ରତିଫଳିତ ହୋଇଥାଏ। ସେକ୍ସପୀୟରଙ୍କ ସଦୃଶ ଗ୍ରନ୍ଥକାରମାନଙ୍କର ଚରିତ ମଧ୍ୟ କୌଣସି ବିଶ୍ୱସନୀୟ ପ୍ରମାଣବଳରେ ଜଣା ଯାଉ ନ ଥିବାରୁ

* Keith—The Date of Kumaradasa, J. R. A. S. 1901 pp. 578-582.

ପାଶ୍ଚାତ୍ୟ ସମାଲୋଚକମାନେ ତାଙ୍କର ଗ୍ରନ୍ଥମାନଙ୍କରେ ଉଲ୍ଲିଖିତ ବିବିଧ ଚରିତସମ୍ବନ୍ଧୀ ଘଟନାମାନଙ୍କରୁ ଅନୁମାନ କରୁଅଛନ୍ତି । ସେମାନଙ୍କର ପଦ୍ଧତି ଅନୁସାରେ କାଳିଦାସଙ୍କର ଚରିତ ବିଷୟରେ ମଧ୍ୟ ଆଲୋକପାତ କରିବାକୁ ନିମ୍ନରେ ଚର୍ଚ୍ଚା କରାଯାଉ ଅଛି ।

କାଳିଦାସ ବ୍ରାହ୍ମଣ କୁଳରେ ଜନ୍ମଗ୍ରହଣ କରିଥିଲେ ଏ ବିଷୟରେ ସନ୍ଦେହ ନାହିଁ । ଅବଶ୍ୟ ଗୁପ୍ତକାଳରେ ଯେତେ-ବେଳେ ହିନ୍ଦୁଧର୍ମ ଓ ସଂସ୍କୃତବିଦ୍ୟାର ପୁନରୁଜ୍ଜୀବନ ହେଲା, ସେତେବେଳେ କ୍ଷତ୍ରିୟ ବୈଶ୍ୟ ପ୍ରଭୃତି ଇତର ଜାତୀୟ ଲୋକମାନେ ମଧ୍ୟ ସଂସ୍କୃତ ବିଦ୍ୟାରେ ପାରଙ୍ଗମ ଥିଲେ । ଏହା ସମୁଦ୍ରଗୁପ୍ତ, ଚନ୍ଦ୍ରଗୁପ୍ତ, ହରିଷେଣ ପ୍ରଭୃତିଙ୍କର ଅନୁଶାସନମାନଙ୍କର କବିତାନୈପୁଣ୍ୟବିଷୟକ ଉଲ୍ଲେଖରୁ ପ୍ରମାଣିତ ହୁଏ । ତଥାପି କାଳିଦାସଙ୍କର ପ୍ରତ୍ୟେକ ଗ୍ରନ୍ଥରେ ଋଷି, ବିଦ୍ୱାନ୍, ବ୍ରାହ୍ମଣ, ଯଜ୍ଞକର୍ତ୍ତା ଓ ଯାଜମାନିକପ୍ରଭୃତିଙ୍କର ସମ୍ମାନ-ସହକାରେ ବର୍ଣ୍ଣନା ଦେଖାଯାଏ । ବିଶେଷତଃ ଶାକୁନ୍ତଳରେ ବୈଦିକ ଛନ୍ଦରେ ନିବଦ୍ଧ ସ୍ୱରଚିତ ଶ୍ଳୋକ ଦେଖିବାକୁ ମିଳେ । ଏ ହେତୁରୁ ତାଙ୍କର ବ୍ରାହ୍ମଣଜାତି ବିଷୟରେ କୌଣସି ସନ୍ଦେହ ନାହିଁ । ବଙ୍ଗ ମନ୍ଦସୋରନିବାସୀ ବୋଲି ମ. ମ. ହରପ୍ରସାଦ ଶାସ୍ତ୍ରୀ କଳ୍ପନା କରି, 'ଦସୋରା' ବ୍ରାହ୍ମଣ ବୋଲି ନିର୍ଦ୍ଦେଶ କରି ଅଛନ୍ତି । ମାତ୍ର ତାଙ୍କର ମତ ଗ୍ରହଣୀୟ ହୋଇ ନ ପାରେ । କାରଣ ମନ୍ଦସୋର ଅପେକ୍ଷା ଉଜ୍ଜୟିନୀ ପ୍ରତି ତାଙ୍କର ଅଧିକ ସମ୍ବନ୍ଧ ଦେଖାଯାଏ ବୋଲି ଆମେ ଆଗରୁ କହି ସାରିଛୁ ।

ପୂର୍ବକାଳରେ ବିବିଧ ବିଦ୍ୟାର ଅଧ୍ୟୟନ ସକାଶେ ଭାରତର ବିଭିନ୍ନ ସ୍ଥାନରେ ଅନେକ ବିଦ୍ୟାପୀଠ ଥିଲା । ଏ

ପ୍ରସଙ୍ଗରେ ପଞ୍ଜାବର ତକ୍ଷଶୀଳା, ମଗଧର ନାଳନ୍ଦା, ସୌରାଷ୍ଟ୍ରର ବଲଭୀ ଓ ମାଳବର ଉଜ୍ଜୟିନୀ ଉଲ୍ଲେଖ ଯୋଗ୍ୟ । ଏହି ସ୍ଥଳମାନଙ୍କର ବିଦ୍ୟାପୀଠମାନଙ୍କର ସୁନ୍ଦର ବର୍ଣ୍ଣନା ପ୍ରାଚୀନ ପାଲୀସାହିତ୍ୟରେ ଏବଂ ଚୀନପରିବ୍ରାଜକମାନଙ୍କର ଭ୍ରମଣ-ବର୍ଣ୍ଣନାରେ ଦେଖିବାକୁ ମିଳେ । ଏହା ଛଡ଼ା ସ୍ଥାନେ ସ୍ଥାନେ ବିଦ୍ୱାନ୍ ବ୍ରାହ୍ମଣମାନଙ୍କ ଦ୍ୱାରା ପରିଚାଳିତ ଅନେକ ଗୁରୁକୁଳ ମଧ୍ୟ ଥିଲା । ଏମାନଙ୍କରେ ବେଦ, ବ୍ୟାକରଣ, ଜ୍ୟୋତିଷ ଆଦି ଶାସ୍ତ୍ର ଏବଂ ନ୍ୟାୟ ମୀମାଂସା ପ୍ରଭୃତି ଦର୍ଶନମାନ କେବଳ ପଢ଼ାଯାଉ ନ ଥିଲା, କିନ୍ତୁ ସୁଧାମୁମଧୁର କାବ୍ୟମାନଙ୍କର ରଚନା ସକାଶେ ମଧ୍ୟ ପ୍ରୋତ୍ସାହ ମିଳୁଥିଲା । ବାଣଙ୍କର ହର୍ଷଚରିତରେ ଏହାର ବିଶଦ ବର୍ଣ୍ଣନା ଅଛି । ବାଣକବି କାଳିଦାସଙ୍କର ଦୁଇଶବର୍ଷ ପରେ ଜନ୍ମଗ୍ରହଣ କରି ଥିଲେ । ତଥାପି ବାଣ ତାଙ୍କ ସମକାଳିକ ପରିସ୍ଥିତିର ଯେଉଁ ବର୍ଣ୍ଣନା କରି ଅଛନ୍ତି, ତହିଁରୁ ଜଣାଯାଏ—ସେ ପଦ୍ଧତି ବହୁଦିନରୁ ପ୍ରଚଳିତ ହୋଇ ଆସିଥିଲା । ସମ୍ଭବତଃ କାଳିଦାସଙ୍କର ଶିକ୍ଷା ମଧ୍ୟ ଏହିପରି କୌଣସି ଗୁରୁକୁଳରେ ସମ୍ପନ୍ନ ହୋଇ ଥିଲା । 'ରଘୁବଂଶ'ର ପ୍ରଥମ ସର୍ଗରେ ମହର୍ଷି ବଶିଷ୍ଠଙ୍କର ଆଶ୍ରମର ବର୍ଣ୍ଣନା ବଡ଼ ସୁନ୍ଦର ରୀତିରେ କରାଯାଇ ଅଛି । ରାଜା ଦିଲୀପ ନିଜ ଧର୍ମପତ୍ନୀ ସହିତ ସନ୍ଧ୍ୟା ସମୟରେ ଆଶ୍ରମରେ ଉପସ୍ଥିତ । ସେ ସମୟରେ ତପସ୍ୱୀମାନେ ବଣରୁ କୁଶ, ସମିଧ, ପୁଷ୍ପ ପ୍ରଭୃତି ଧରି ଆଶ୍ରମକୁ ଫେରି ଆସୁଥିଲେ । ଋଷିପତ୍ନୀମାନେ ପର୍ଣ୍ଣ-କୁଟୀର ଆଗରେ ଆଶ୍ରମ ହରିଣମାନଙ୍କୁ ଦାନା ଖୁଆଉଥିଲେ ଏବଂ ହରିଣମାନେ ସେମାନଙ୍କ ଗୃହପାଖରେ ସଞ୍ଚରଣ କରୁଥିଲେ । ଋଷିକନ୍ୟାମାନେ ବୃକ୍ଷମୂଳମଦାରେ ପାଣି ଢାଳି ପକ୍ଷୀମାନେ ବିନା ସଙ୍କୋଚରେ ପାଣି ପିଇପାରିବେ ବୋଲି ତରତର ହୋଇ

ଯାଉଥିଲେ । ଅଗଣାରେ ଧାନ ଗଦା ହୋଇଥିଲା ଏବଂ ହରିଣୀ-ମାନେ ଧାନଗଦା ପାଖରେ ବସି ରୋମନ୍ଥ କରୁଥିଲେ । ସାୟଂ-କାଳୀନ ହୋମର ହବ୍ୟଗନ୍ଧ ଆଶ୍ରମର ଚତୁଃପାର୍ଶ୍ୱରେ ଚହଟୁଥିଲା । ଦିଲୀପ ଏ ସମସ୍ତ ଦୃଶ୍ୟ ଦେଖିଥିଲେ । ପରେ ରାତିରେ ରାଜା ପର୍ଣ୍ଣଶାଳାରେ ଦର୍ଭଶଯ୍ୟା ଉପରେ ଶୟନ କଲେ ଏବଂ ପ୍ରଭାତରେ ବଶିଷ୍ଠଙ୍କ ଶିଷ୍ୟମାନଙ୍କର ବେଦାଧ୍ୟୟନ ଶବ୍ଦରେ ଜାଗି ଉଠିଲେ । ଏହି କାବ୍ୟର ପଞ୍ଚମ ସର୍ଗରେ ବରତନ୍ତୁ 'ଶାକୁନ୍ତଳ'ରେ କଣ୍ୱ ଓ ମାରୀଚ ତଥା 'ବିକ୍ରମୋର୍ବଶୀୟ'ରେ ଚ୍ୟବନମହର୍ଷିଙ୍କର ଆଶ୍ରମମାନଙ୍କର ଯେଉଁ ମନୋହର ବର୍ଣ୍ଣନା ଦେଖାଯାଏ, ସେଥିରୁ ଜଣାଯାଏ ଯେ କାଳିଦାସ ତାତ୍କାଳିକ ଆଶ୍ରମ ବ୍ୟବସ୍ଥା, ନିୟମ, ତଥା ଅଧ୍ୟୟନକ୍ରମ ସମ୍ବନ୍ଧରେ ଉତ୍ତମରୂପେ ପରିଚିତ ଥିଲେ ।

କାଳିଦାସ ଏକ ସ୍ଥାନରେ ବର୍ଣ୍ଣନା କରିଛନ୍ତି ଯେ, ଗୁରୁକୁଳମାନଙ୍କରେ ଚଉଦଟି ବିଦ୍ୟା ପଢ଼ା ଯାଉଥିଲା । ଯାଜ୍ଞ୍ୟ-ବଲ୍କ୍ୟ ସ୍ମୃତିରେ ଏହି ଚଉଦଟି ବିଦ୍ୟାର ନାମ ଏହି ପ୍ରକାରରେ ଦିଆଯାଇ ଅଛି—

**पुराण न्याय मीमांसाधर्मशास्त्राङ्गमिश्रिताः ।**
**वेदाः स्थानानि विद्यानां धर्मस्य च चतुर्दश ॥**

ଋଗ୍‌ବେଦ, ଶିକ୍ଷା, ବ୍ୟାକରଣ ଆଦି ଛଅଟି ଅଙ୍ଗ, ପୁରାଣ, ନ୍ୟାୟ, ମୀମାଂସା, ତଥା ଧର୍ମଶାସ୍ତ୍ର—ଏ ସମସ୍ତ ମିଶି ବିଦ୍ୟା ଚଉଦ ପ୍ରକାର ଏବଂ ଏ ସମସ୍ତ ଧର୍ମର ମୂଳଭୂତ ।" କବି ରାଜ-ଶେଖର ନିଜ 'କାବ୍ୟମୀମାଂସା' (୮ମ ଅଧ୍ୟାୟ)ରେ ପ୍ରାଚୀନ ଆଚାର୍ଯ୍ୟମାନଙ୍କର ମତ ବୋଲି ଉଲ୍ଲେଖ କରିଛନ୍ତି ଯେ କବି ଶ୍ରୁତି,

ସ୍ମୃତି, ଇତିହାସ, ପୁରାଣ, ଦର୍ଶନଶାସ୍ତ୍ର, ଶୈବପଞ୍ଚରାତ୍ର, ଅନ୍ୟ ମତଗ୍ରନ୍ଥ, ଅର୍ଥଶାସ୍ତ୍ର, କାମ ଶାସ୍ତ୍ର ଓ ନାଟ୍ୟ ଶାସ୍ତ୍ର, ରାଜସିଦ୍ଧାନ୍ତ,ଭିନ୍ନ ଭିନ୍ନ ଦେଶମାନଙ୍କର ଲୋକବ୍ୟବହାର, ଧନୁର୍ବେଦ, ରତ୍ନ-ପରୀକ୍ଷା ଏବଂ ଯୋଗଶାସ୍ତ୍ର ପ୍ରଭୃତି ବିଷୟମାନ ଅଧ୍ୟୟନ କରିବା ବିଧେୟ । କାଳିଦାସ ଏ ସମସ୍ତ ବିଷୟରୁ ଅଧିକାଂଶ ପୁଙ୍ଖାନୁପୁଙ୍ଖ-ରୂପେ ଅଧ୍ୟୟନ କରିଥିଲେ ବୋଲି ତାଙ୍କର କାବ୍ୟ ଓ ନାଟକ-ମାନଙ୍କର ପରିଶୀଳନରୁ ଜଣାଯାଏ ।

ଏ ବିଷୟରେ ବିଚାର କରିବା ପୂର୍ବରୁ ପ୍ରଥମେ ଏହି ଏକ ବା ଦୁଇଟି ବିଷୟ ଧ୍ୟାନ ଅଗରେ ରଖିବାକୁ ହେବ । ଏ ସମସ୍ତ ବିଷୟରୁ କୌଣସି ଗୋଟିଏ ବିଷୟରେ ମଧ୍ୟ କାଳିଦାସ କୌଣସି ମୌଳିକ ଗ୍ରନ୍ଥ ରଚନା କରି ନାହାନ୍ତି କି ସଂସ୍କୃତ ସାହିତ୍ୟର ଇତିହାସ ଲେଖି ତହିଁରେ ଏ ସମସ୍ତର ବିଚାର କରି ନାହାନ୍ତି । ଏହି ସମସ୍ତ ବିଷୟର ଉଲ୍ଲେଖ ସେ କଥାବସ୍ତୁ ବିନ୍ୟା-ସରେ, ଉପମାଦି ଅଳଙ୍କାରମାନଙ୍କର ପ୍ରୟୋଗରେ ବା ପାତ୍ର-ମାନଙ୍କର କଥୋପକଥନରେ ଅତି ପ୍ରାକୃତିକ ଭାବେ କରିଅଛନ୍ତି । କାଳିଦାସ ଅସାଧାରଣ ପଣ୍ଡିତ ହେଲେ ମଧ୍ୟ ନିତାନ୍ତ ବିନୀତ ଥିଲେ । ସେ ହେତୁ ସେ କୌଣସି ସ୍ଥଳରେ ନିଜ ପାଣ୍ଡିତ୍ୟ ପ୍ରକଟ କରିବାକୁ ଚେଷ୍ଟା କରି ନାହାନ୍ତି । ତଥାପି ତାଙ୍କର ଗ୍ରନ୍ଥ-ମାନ ବିବିଧ ବିଷୟରେ ପରିପୂର୍ଣ୍ଣ । କେତେକ ବିଷୟର ଉଲ୍ଲେଖ ସ୍ୱଳ୍ପ ମାତ୍ରାରେ ଏବଂ କେତେକ ବିଷୟର ଉଲ୍ଲେଖ ବିସ୍ତୃତ ଭାବରେ କରିଛନ୍ତି । ସେ ସମସ୍ତରୁ ତାଙ୍କର ଗଭୀର ଜ୍ଞାନର ପରିଚୟ ମିଳେ ।

କାଳିଦାସ ଯଦି କୌଣସି ଗୁରୁକୁଳରେ ଶିକ୍ଷା ଲାଭ କରିଥିବେ ତେବେ ଅବଶ୍ୟ ଏକ ବା ସମସ୍ତ ବେଦ ଅବଶ୍ୟ

ଅଧ୍ୟୟନ କରିଥିବେ । ଋଗ୍‌ବେଦ ଓ ଋଗ୍‌ବେଦର ଉଦାତ୍ତାଦି-ସ୍ୱରର ଉଲ୍ଲେଖ 'କୁମାରସମ୍ଭବ' (୧୨. ୧୨) ଓ 'ରଘୁବଂଶ (୧୫.୭୬)ରେ ଦେଖାଯାଏ । 'ମାଳବିକାଗ୍ନିମିତ୍ର'ରେ ଯଜୁର୍ବେଦୀୟ ଅଶ୍ୱମେଧଯାଗର ଏବଂ 'ରଘୁବଂଶ'ରେ ରାଜ୍ୟ ସଂରକ୍ଷଣ ସକାଶେ ଉପଯୋଗୀ ଅଥର୍ବବେଦ ମନ୍ତ୍ରମାନଙ୍କର ଉଲ୍ଲେଖ ଦେଖାଯାଏ । କାଳିଦାସ ନିଜ 'ବିକ୍ରମୋର୍ବଶୀୟ' ନାଟକର କଥାବସ୍ତୁ ଋଗ୍-ବେଦ (୧୦.୧୫) ଓ ଶତପଥ ବ୍ରାହ୍ମଣ (୫.୧-୨) ରୁ ଗ୍ରହଣ କରି ଅଛନ୍ତି । ତାଙ୍କର ଉପମାମାନଙ୍କରୁ ବ୍ରାହ୍ମଣଗ୍ରନ୍ଥମାନଙ୍କରେ ତାଙ୍କର ଅସାଧାରଣ ପରିଚୟ ଥିଲାପରି ପରିଚୟ ମିଳେ । ରାଜା ଦିଲୀପଙ୍କର ଧର୍ମପତ୍ନୀ ସୁଦକ୍ଷିଣା ଯଜ୍ଞପତ୍ନୀ ଦକ୍ଷିଣା ସଦୃଶ ଥିଲେ (ରଘୁ. ୧.୩୧) ସମ୍ଭବତଃ ଏହି ଭାବ 'ଯଜ୍ଞୋ ଗନ୍ଧର୍ବସ୍ତସ୍ୟ ଦକ୍ଷିଣା ଅପ୍‌ସରସଃ' ଏହି ବ୍ରାହ୍ମଣବାକ୍ୟରୁ ପରିଗୃହୀତ । 'ପରମେଶ୍ୱର ଜଳରେ ନିଜ ବୀର୍ଯ୍ୟ ନିକ୍ଷେପ କଲେ, ତହିଁରୁ ଚରାଚର ଜଗତର ସୃଷ୍ଟି ହେଲା', 'ସୃଷ୍ଟି ନିର୍ମାଣ ସକାଶେ ଭଗବାନ୍ ସ୍ତ୍ରୀପୁରୁଷରୂପ ଧାରଣ କରିଥିଲେ'—ଏତାଦୃଶ କଳ୍ପନା ଉପନିଷଦ୍ ଓ ମନୁ-ସ୍ମୃତିରୁ ଗ୍ରହଣ କରି 'କୁମାରସମ୍ଭବ'ରେ ସନ୍ନିବେଶିତ କରି ଅଛନ୍ତି । କବିଙ୍କର ମନୋବୃତ୍ତି କର୍ମକାଣ୍ଡ ଅପେକ୍ଷା ଅଧ୍ୟାତ୍ମବିଦ୍ୟା ପ୍ରତି ଅଧିକ ଆକୃଷ୍ଟ ଥିବା ଦେଖାଯାଏ । 'ମାଳବିକାଗ୍ନିମିତ୍ର'ରେ ସେ ଏକ ସ୍ଥାନରେ ଲେଖିଛନ୍ତି—ତିନି ବେଦର ଶୋଭା ଉପ-ନିଷଦ୍‌ମାନଙ୍କର ଅଧ୍ୟାତ୍ମବିଦ୍ୟା ଦ୍ୱାରା ହୋଇଥାଏ । 'କୁମାର-ସମ୍ଭବ'ରେ ବ୍ରହ୍ମା ଓ ଶିବଙ୍କର ଏବଂ 'ରଘୁବଂଶ'ରେ ବିଷ୍ଣୁଙ୍କର ସ୍ତୁତି ତାଙ୍କର ଉପନିଷଦମାନଙ୍କର ଅଧ୍ୟୟନର ପ୍ରସୂତ ଏକେଶ୍ୱର ବାଦର ନିଦର୍ଶନ । 'ଦ୍ରବଃ ସଂଘାତକଠିନଃ ସ୍ଥୂଳଃ

ସୂକ୍ଷ୍ମୋ ଲଘୁର୍ଗୁରିଃ । ବ୍ୟକ୍ତୋ ବ୍ୟକ୍ତେତରଶ୍ଚାସି' ଇତ୍ୟାଦି ପରସ୍ପର ବିରୋଧୀ ବିଶେଷଣମାନଙ୍କରେ କହାଯାଇଥିବା ବ୍ରହ୍ମାଙ୍କର ସ୍ତୁତି ପଢ଼ିଲାମାନେ 'ଅସ୍ଥୂଳମନଣ୍ୱ, ଅହ୍ରସ୍ୱମଦୀର୍ଘମ୍' ଇତ୍ୟାଦି ଉପନିଷଦ୍‌ର ବାକ୍ୟମାନ ମନେ ପଡ଼େ । ଉପନିଷଦ୍‌ମାନଙ୍କରେ ପରମତତ୍ତ୍ୱ ବ୍ରହ୍ମାଙ୍କର ଉଲ୍ଲେଖ ମଧ୍ୟ କୁମାରସମ୍ଭବରେ (୩.୧୫) କରା ଯାଇ ଅଛି । ବୋଧହୁଏ କବି ଭଗବଦ୍‌ଗୀତା ଭଲ ରୂପେ ପଢ଼ିଥିଲେ । କାରଣ ଭଗବଦ୍‌ଗୀତାରେ ଉଲ୍ଲିଖିତ ଅକ୍ଷର, କ୍ଷେତ୍ର, କ୍ଷେତ୍ରଜ୍ଞ ପ୍ରଭୃତି ସଂଜ୍ଞାମାନ ଓ ସମାଧିରେ ଚିତ୍ତକୁ ଲୀନ କରିଥିବା ଯୋଗୀ ନିବାତନିଷ୍କମ୍ପିତ ଦୀପ ସମାନ—ଇତ୍ୟାଦି ଉପମାମାନ ଏବଂ ସ୍ଥାବର ସୃଷ୍ଟିରେ ହିମାଳୟ ପରମେଶ୍ୱରଙ୍କର ବିଭୂତି— ଇତ୍ୟାଦି କଳ୍ପନା ଏ ସମସ୍ତର ଉପଯୋଗ କବି 'କୁମାରସମ୍ଭବରେ କରି ଅଛନ୍ତି । *

ଏହା ଛଡ଼ା କାଳିଦାସ ଭାରତୀୟ ଦର୍ଶନ ଓ ତାର ବିଭିନ୍ନ ଶାଖାମାନ ଅଧ୍ୟୟନ କରିଥିଲେ । ସମଗ୍ର ବିଶ୍ୱ ଏକତତ୍ତ୍ୱମୟ ବ୍ରହ୍ମା, ବିଷ୍ଣୁ ଓ ଶିବ ଏହି ତତ୍ତ୍ୱର ବିଭିନ୍ନ ରୂପମାତ୍ର—ଏହିରୂପେ ବେଦାନ୍ତ କଳ୍ପନା ତାଙ୍କର ସମସ୍ତ ଗ୍ରନ୍ଥରୁ ମିଳେ । ପୁରୁଷ (ଆତ୍ମା) ଉଦାସୀନ, ସୃଷ୍ଟିର ସବୁବିଧ ପ୍ରବୃତ୍ତି ପ୍ରକୃତିର କାର୍ଯ୍ୟ—ଏହି ସାଂଖ୍ୟ ସିଦ୍ଧାନ୍ତ 'କୁମାରସମ୍ଭବ' (୨.୧୩)ରେ ଉଲ୍ଲିଖିତ । କିନ୍ତୁ ଦ୍ୱୈତବାଦୀ ସାଂଖ୍ୟମାନଙ୍କର ଏହି ମତ ତାଙ୍କର ସମ୍ମତି ନ ଥିଲା । ସେ ପରମେଶ୍ୱରଙ୍କୁ ପ୍ରକୃତି ଓ ପୁରୁଷରୂପେ ଚିତ୍ରଣ କରି ଅଛନ୍ତି । ଯୋଗଶାସ୍ତ୍ରରେ କବିଙ୍କର ଅସାଧାରଣ ପରିଚୟ

* କୁମାରସମ୍ଭବ ୩, ୫୦; ୬, ୭୭; ୩, ୪୮ ଇତ୍ୟାଦି ।

ଥିଲା । 'କୁମାରସମ୍ଭବ'ରେ ତିନୋଟି ଶ୍ଳୋକରେ ଧ୍ୟାନସ୍ଥିତ ଶିବଙ୍କର ବର୍ଣ୍ଣନା ବଡ଼ ସୁନ୍ଦରଭାବେ କରି ଅଛନ୍ତି ଏବଂ ପରେ ଏକ ଶ୍ଳୋକରେ (୩,୫୮) ଯୋଗ ବଳରେ ହୃଦୟରେ ପରମେଶ୍ୱରଙ୍କର ସାକ୍ଷାତ୍କାର କରାଯାଇପାରେ ବୋଲି ସୂଚନା ଦେଇଛନ୍ତି । 'ପର୍ଯ୍ୟଙ୍କବନ୍ଧ' (କୁମାର ୩-୪୫) 'ବୀରାସନ' (ରଘୁ ୧୩.୫୨) ଇତ୍ୟାଦି ଯୋଗାସନମାନଙ୍କର ମଧ୍ୟ ନିର୍ଦ୍ଦେଶ କରି ଭିନ୍ନ ଭିନ୍ନ ସ୍ଥାନରେ କରି ଅଛନ୍ତି । ଯଦ୍ୟପି ନ୍ୟାୟ ଓ ବୈଶେଷିକ ଦର୍ଶନର ପାରିଭାଷିକ ସଂଜ୍ଞା ପ୍ରୟୋଗ କରିବା ସୁଯୋଗ କବିବରଙ୍କୁ ମିଳିନାହିଁ, ତଥାପି ସେହି ଦୁଇ ଦର୍ଶନରେ ମଧ୍ୟ କବିଙ୍କର ପୂର୍ଣ୍ଣ ପରିଚୟ ଥିଲା ବୋଲି ନିଃସଂଶୟରେ କୁହାଯାଇ ପାରେ । କାରଣ ରଘୁବଂଶରେ ଏକ ସ୍ଥାନରେ (୧୩,୧) ଶବ୍ଦକୁ ଆକାଶର ଗୁଣ ବୋଲି ଉଲ୍ଲେଖ କରି ବୈଶେଷିକ ମତ ନିର୍ଦ୍ଦେଶ କରିଅଛନ୍ତି । 'କୁମାରସମ୍ଭବ'ରେ ଶିବପାର୍ବତୀ ଏବଂ ରଘୁବଂଶରେ ଅଜ ଇନ୍ଦୁମତୀଙ୍କର ବିବାହ-ବର୍ଣ୍ଣନା ଗୃହ୍ୟସୂତ୍ରମାନଙ୍କର ଆଧାର ଉପରେ ପ୍ରତିଷ୍ଠିତ । ବିବାହ-ପରେ ପତିପତ୍ନୀ ଅନ୍ତତଃ ତିନିଦିନ ବ୍ରହ୍ମଚର୍ଯ୍ୟ ପାଳନ କରିବେ ଓ ଭୂପୃଷ୍ଠରେ ଶୟନ କରିବେ ଏହି ଗୃହ୍ୟସୂତ୍ର ନିୟମ ଶିବ ପାଳନ କରିଥିଲେ ବୋଲି କୁମାରସମ୍ଭବରେ (୭.୮୪) ବର୍ଣ୍ଣିତ ହୋଇଅଛି । ଦଲୀପଙ୍କର ପ୍ରଜାମାନେ ମନୁପ୍ରଦର୍ଶିତ ନିୟମ-ଅନୁଯାୟୀ ଚାଲୁଥିଲେ (ରଘୁ ୧,୧୭) ଧର୍ମଶାସ୍ତ୍ର ନିୟମ ଅନୁଯାୟୀ ନିଃସନ୍ତାନ ଲୋକର ସମ୍ପତ୍ତି ରାଜକୋଷକୁ ଯାଏ (ଶାକୁନ୍ତଳା ୬ଷ୍ଠ) ଏଥିରୁ ଜଣାଯାଏ କାଳିଦାସ ମନୁସ୍ମୃତିପ୍ରଭୃତି ଧର୍ମଶାସ୍ତ୍ର ଭଲ ଜାଣିଥିଲେ । ଏହା ଛଡ଼ା ତାଙ୍କର ବ୍ୟାକରଣ, ଅର୍ଥଶାସ୍ତ୍ର ଓ କାମ-ଶାସ୍ତ୍ରରେ ମଧ୍ୟ ଅସାଧାରଣ ଜ୍ଞାନ ଥିଲା । 'କୁମାରସମ୍ଭବ'ରେ 'ସ୍ଥିରଶାଯ୍ୟ କଟେ ସ୍ତ୍ରସା' (୨.୧୭) ଏହି ଶ୍ଳୋକର ଭାବ କର

'ଚତୁଷ୍ଟୟୀ ଶବ୍ଦାନାଂ ପ୍ରବୃତ୍ତିଃ' ଇତ୍ୟାଦି ପାତଞ୍ଜଳ ମହାଭାଷ୍ୟରୁ ଗ୍ରହଣ କରିଅଛନ୍ତି । ବିଶେଷତଃ ସେ ସ୍ଥାନେ ସ୍ଥାନେ ଉମା, ରଘୁ, ଅଜ, ଇନ୍ଦୁ, ତପନ, ଶେକରୁ ଇତ୍ୟାଦି ନାମ-ମାନଙ୍କର ବ୍ୟୁତ୍ପତ୍ତି କରି ସାର୍ଥକତା ଦେଖାଇଛନ୍ତି ଏବଂ କେତେକ ବ୍ୟାକରଣ ବିଷୟର ଉପମା ମଧ୍ୟ ଦେଇଛନ୍ତି । ଏଥିରୁ ତାଙ୍କର ବ୍ୟାକରଣ ଜ୍ଞାନର ପରିଚୟ ମିଳେ । ଅମେ ପୂର୍ବରୁ କହିସାରିଛୁ ଯେ ରାଜା ବିକ୍ରମାଦିତ୍ୟ କାଳିଦାସଙ୍କୁ ରାଜଦୂତରୂପେ କୁନ୍ତଳେଶ୍ୱରଙ୍କ ସଭାକୁ ପଠାଇଥିଲେ । ସେଥିରୁ ଜଣାଯାଏ ସେ ରାଜନୀତିଶାସ୍ତ୍ରରେ ଧୁରନ୍ଧର ଥିଲେ । ତାଙ୍କର ଗ୍ରନ୍ଥମାନଙ୍କର ପରିଶୀଳନରୁ ମଧ୍ୟ ଏ ବିଷୟ ପ୍ରମାଣିତ ହୁଏ । 'ମାଳବିକାଗ୍ନି-ମିତ୍ର'ରେ 'ଚିରକାଳରାଜ୍ୟାରୂଢ଼ ଶତ୍ରୁକୁ ଦମନ କରିବା ବଡ଼ କଷ୍ଟସାଧ୍ୟ' ଏ ବିଷୟରେ ତନ୍ତ୍ରକାରଙ୍କର ବଚନ ଉଦ୍ଧୃତ କରାଯାଇ ଅଛି । 'କୁମାରସମ୍ଭବ'ରେ (୩.୬) ଶୁକ୍ରନୀତିର ସୁସ୍ପଷ୍ଟ ଉଲ୍ଲେଖ ଦେଖାଯାଏ । ସପ୍ତାଙ୍ଗ, ଯାତବ୍ୟ, ପ୍ରକୃତି, ମୂଳ, ପର୍ଯ୍ୟନ୍ତ, ପାର୍ଷ୍ଣି ଇତ୍ୟାଦି ଅର୍ଥଶାସ୍ତ୍ରବ୍ୟବହୃତ ଅନେକ ପାରିଭାଷିକ ଶବ୍ଦ ସ୍ଥାନେ ସ୍ଥାନେ ପ୍ରଯୁକ୍ତ ହୋଇ ଅଛି । 'ରଘୁ ଧର୍ମବିଜୟୀ ଥିଲେ' 'ସୁହ୍ମଦେଶର ଲୋକମାନେ ବୈତସୀବୃତ୍ତି ଅବଲମ୍ବନ କରି ନିଜ ପ୍ରାଣ ରକ୍ଷା କଲେ' 'ବିଦର୍ଭର ରାଜା ଅଗ୍ନିମିତ୍ରଙ୍କର ପ୍ରକୃତ୍ୟମିତ୍ର (ସ୍ୱଭାବଶତ୍ରୁ) ଥିଲେ' ଇତ୍ୟାଦି ପ୍ରୟୋଗମାନଙ୍କରୁ କାଳିଦାସଙ୍କର ଅର୍ଥଶାସ୍ତ୍ରସମ୍ବନ୍ଧୀ ଜ୍ଞାନ ସୁସ୍ପଷ୍ଟ ହୁଏ । ରାତି ଓ ଦିନର ବିଭିନ୍ନ ସମୟରେ ରାଜା କି କି ବିଷୟର ଚର୍ଚ୍ଚା କରିବେ— ଏ ବିଷୟରେ ଅର୍ଥଶାସ୍ତ୍ରରେ ଯେଉଁ ନିୟମ ଅଛି, ରାଜା ଅତିଥି ସେ ଅନୁସାରେ ଚଳୁଥିଲେ ବୋଲି 'ରଘୁବଂଶ'ରେ ବର୍ଣ୍ଣିତ ହୋଇଅଛି । ଅର୍ଥଶାସ୍ତ୍ରର ନିୟମାନୁଯାୟୀ ଅଗ୍ନିମିତ୍ର, ପୁରୁରବା

ଓ ଦୁଷ୍ୟନ୍ତଙ୍କର ମନ୍ତ୍ରିପରିଷତ୍ ଗଠିତ ହୋଇ ଥିଲା ଏବଂ ଏହି ପରିଷଦର ନିର୍ଦ୍ଦେଶ ଅନୁଯାୟୀ ରାଜାମାନେ ରାଜ୍ୟ ପାଳନ କରୁଥିଲେ । ପୁରୁରବାଙ୍କ ରାଜଧାନୀରେ ନଗରାଧ୍ୟକ୍ଷ ରାଜ୍ୟର ବ୍ୟବସ୍ଥା କରୁଥିଲେ ବୋଲି କାଳିଦାସ ବର୍ଣ୍ଣନା କରି ଅଛନ୍ତି । ତାଙ୍କର ରାଜନୈତିକ ଦୃଷ୍ଟିକୋଣ ଅତି ଉନ୍ନତ ଧରଣର ଥିଲା । ଏହା ଦୁଷ୍ୟନ୍ତ, ରଘୁ, ଦିଲୀପ ଇତ୍ୟାଦି ରାଜର୍ଷିମାନଙ୍କର ଉଦାର ଚରିତ୍ର ବର୍ଣ୍ଣନାରୁ ଜଣାଯାଏ । ଏ ସମସ୍ତର ବିସ୍ତୃତ ଚର୍ଚ୍ଚା ଏକ ପ୍ରକରଣରେ କଲେ ସମୁଚିତ ହେବ ।

ଅର୍ଥଶାସ୍ତ୍ର ପରି କାମଶାସ୍ତ୍ର ମଧ୍ୟ କବି ଅତି ସୂକ୍ଷ୍ମରୂପେ ଅଧ୍ୟୟନ କରିଥିଲେ । ପ୍ରଥମ ପ୍ରକରଣରେ କୁହାଯାଇଅଛି ଯେ କଣ୍ୱମୁନି ଶକୁନ୍ତଳାଙ୍କୁ ଯେଉଁ ଉପଦେଶ ଦେଇଥିଲେ, ତାର ଅଧିକାଂଶ 'ବାତ୍ସ୍ୟାୟନକାମସୂତ୍ର'ରୁ ଗୃହୀତ ହୋଇଅଛି ବେଶୀ କଥା ଦୂରେ ଥାଉ, 'ଶାକୁନ୍ତଳ' ନାଟକରେ ଦୁଷ୍ୟନ୍ତ ଓ ଶକୁନ୍ତଳାଙ୍କର ସଖୀମାନଙ୍କ ମଧ୍ୟରେ ଯେଉଁ ରମଣୀୟ କଥୋପକଥନ ତାହା କବି ବାତ୍ସ୍ୟାୟନଙ୍କର କାମସୂତ୍ରର କନ୍ୟାସମ୍ପ୍ରଯୁକ୍ତକ-ନାମକ ଅଧିକରଣକୁ ଆଧାର କରି ଲେଖି ଅଛନ୍ତି । ଯୁବତୀ ଲଜ୍ଜା-ପରବଶ ହେଲେ ମଧ୍ୟ ନିଜ ପ୍ରିୟତମଙ୍କ ସହିତ କପଟ ବ୍ୟବହାର କରିବେ—ତାହା ବାତ୍ସ୍ୟାୟନ ଏହି ଅଧିକରଣରେ ବର୍ଣ୍ଣନା କରି ଅଛନ୍ତି । ସେ ନିଜ ସଖୀମାନଙ୍କ ଦ୍ୱାରା ପ୍ରିୟତମଙ୍କ ସହିତ ସମ୍ଭାଷଣ ଆରମ୍ଭ କରିବେ । କଥୋପକଥନ କଲାବେଳେ ମସ୍ତକ ନତ କରି ସ୍ମିତ କରିବେ । ସଖୀ ଅଲୋକ ପ୍ରକାଶ କଲେ ସେ ତହିଁରେ ସମ୍ମତ ହେବେ ନାହିଁ । ସଖୀ ଜାଣିଶୁଣି ନାୟିକା ମୋତେ ଏହା କହୁଛନ୍ତି ବୋଲି କହିଲେ ନାୟିକା ତାହା ସ୍ୱୀକାର

କରିବେ ନାହିଁ । ପ୍ରିୟତମ ନାୟିକାର ଉତ୍ତର ଗୁହିଲେ ମଧ୍ୟ ନାୟିକା ଏକ ଶବ୍ଦ ମଧ୍ୟ ମୁହଁରେ ପ୍ରକାଶ କରିବେ ନାହିଁ, ଯଦି ପ୍ରକାଶ କରନ୍ତି ତ ମୁଁ କିଛି ଜାଣେନାହିଁ ବୋଲି ଅସ୍ପଷ୍ଟ ରଡ଼ିବେ । ପ୍ରିୟତମଙ୍କୁ ଦେଖି କଟାକ୍ଷପାତ କରିବେ ଏବଂ ସ୍ମିତ ପ୍ରକାଶ କରିବେ । କାଳିଦାସ ଉପର୍ଯ୍ୟୁକ୍ତ ପ୍ରକରଣ ଲିଖିତ କାମସୂତ୍ରର ସୂଚନାଗୁଡ଼ିକକୁ ଅତି ସୁନ୍ଦର ଭାବେ ବର୍ଣ୍ଣିତ କରି ଅଛନ୍ତି । ପାର୍ବତୀଙ୍କର ପାଣିଗ୍ରହଣ ସମୟରେ ମହାଦେବଙ୍କର ଶରୀର ସ୍ୱେଦପୂର୍ଣ୍ଣ ହୋଇଗଲା ଏବଂ ପାର୍ବତୀଙ୍କର ଶରୀର ପୁଲକିତ ହୋଇଗଲା ବୋଲି କାଳିଦାସ ବର୍ଣ୍ଣନା କରିଅଛନ୍ତି । ମାତ୍ର ଏହି ବର୍ଣ୍ଣନା କାମସୂତ୍ରର ପ୍ରଥମ ସମାଗମ ବର୍ଣ୍ଣନା ସହିତ ଖାପ ଖାଉନାହିଁ । ସମ୍ଭବତଃ କବିଙ୍କର ବୟସ୍କତା ବଶତଃ ଏହା ପ୍ରମାଦ ଘଟିଛି । କିନ୍ତୁ ସେ ପ୍ରମାଦ ରଘୁବଂଶର ଅଜ ଇନ୍ଦୁମତୀଙ୍କର ପ୍ରଥମ ସମାଗମ ବର୍ଣ୍ଣନରେ ଦେଖାଯାଏ ନାହିଁ । ସମ୍ଭବତଃ ସ୍ପଷ୍ଟ ଅମିଳ ପରେ ସେ ପ୍ରମାଦ ଦୂର କରି ଠିକ୍ କାମସୂତ୍ରର ବର୍ଣ୍ଣନ ଅନୁଯାୟୀ ସେ ଦୁହିଙ୍କର ପ୍ରଥମ ସମାଗମ ବର୍ଣ୍ଣନ କରି ଅଛନ୍ତି । କାମସୂତ୍ରରେ ନଗରବାସୀ, ବିଳାସୀ ଓ ଦାକ୍ଷିଣ୍ୟ ସମ୍ପନ୍ନ ନାଗରକମାନଙ୍କର ବିସ୍ତୃତ ବର୍ଣ୍ଣନା ଦେଖାଯାଏ । କବି ସେ ସମସ୍ତ ଦୃଷ୍ଟିରେ ରଖି 'ସାଧୁ, ଆର୍ଯ୍ୟ ! ନାଗରକୋଽସି' 'ଅନ୍ୟସଂକ୍ରାନ୍ତ ପ୍ରେମାଣୋ ନାଗରକା ଅଧିକଂ ଦକ୍ଷିଣା ଭବନ୍ତି ।' ଏହି ପରି ବିକ୍ରମୋର୍ବଶୀୟରେ ଏବଂ ଶାକୁନ୍ତଳରେ 'ନାଗରକବୃତ୍ତ୍ୟା ସାନ୍ତ୍ୱୟେନାମ୍' ବୋଲି ଲେଖିଅଛନ୍ତି । ଅଗ୍ନିମିତ୍ରଙ୍କର ପ୍ରେମସମ୍ବନ୍ଧରେ ସାହାଯ୍ୟକାରୀ ବିଦୂଷକଙ୍କୁ ରାଣୀ ଇରାବତୀ 'କାମତନ୍ତ୍ରସଚିବ' ବୋଲି ଉପାଧି ଦେଇଛନ୍ତି । ଏ ସମସ୍ତ ଆଲୋଚନା କଲେ କବିଙ୍କର କାମଶାସ୍ତ୍ରରେ ଅସାଧାରଣ ଜ୍ଞାନ ଥିଲା ପରି ସିଦ୍ଧ ହୁଏ ।

'ଶାକୁନ୍ତଳ' ପ୍ରଭୃତି ସଦୃଶ ଅତି ଉତ୍କୃଷ୍ଟ ନାଟକ ପ୍ରଣେତା ନାଟ୍ୟଶାସ୍ତ୍ର ଭଲରୂପେ ଜାଣିଥିଲେ ବୋଲି କହିବା ଦରକାର ନାହିଁ । ନାଟ୍ୟ ଶାସ୍ତ୍ରକାର ଭରତମୁନି ନିଜ ପ୍ରଣୀତ ଅଷ୍ଟରସାତ୍ମକ 'ଲକ୍ଷ୍ମୀସ୍ୱୟମ୍ବର' ନାମକ ନାଟକ ଅପ୍ସରାମାନଙ୍କଦ୍ୱାରା ସ୍ୱର୍ଗରେ ଅଭିନୀତ କରାଇଥିଲେ । ସେ ସମୟରେ ଉର୍ବଶୀ କଥୋପକଥନ କଲାବେଳେ ଅଜ୍ଞାତସାରରେ ଏକ ଅପରାଧ କରି ପକାଇଲେ, ଯାହାଫଳରେ ମୁନି ତାଙ୍କୁ ଶାପ ଦେଇଥିଲେ । ଏ ବିଷୟ 'ବିକ୍ରମୋର୍ବଶୀୟ' (୩ୟ ଅଙ୍କରେ) ବର୍ଣ୍ଣିତ ହୋଇଅଛି । ସେ ସ୍ଥଳରେ କବି, ସନ୍ଧି, ବୃତ୍ତି, ରାଗ ଇତ୍ୟାଦି ପାରିଭାଷିକ ସଂଜ୍ଞାମାନ ପ୍ରୟୋଗ କରି ଅଛନ୍ତି । 'ମାଳବିକାଗ୍ନିମିତ୍ର'ର ପ୍ରଥମାଙ୍କ ବର୍ଣ୍ଣନାରୁ ଜଣାଯାଏ—ନାଟ୍ୟଶାସ୍ତ୍ର ପରି ସାଭିନୟ ଗୀତାଦି ନୃତ୍ୟକଳାରେ ମଧ୍ୟ କାଳିଦାସଙ୍କର ଅସାଧାରଣ ଜ୍ଞାନ ଥିଲା । ଏ ପ୍ରସଙ୍ଗରେ କବି ଛଳିକ, ଛବିକ, ପଞ୍ଚାଙ୍ଗାଭିନୟ ଇତ୍ୟାଦି ପାରିଭାଷିକ ସଂଜ୍ଞାମାନ ବ୍ୟବହାର କରି ଅଛନ୍ତି ।

କାଳିଦାସ ଜ୍ୟୋତିଷ, ଆୟୁର୍ବେଦ ଓ ଧନୁର୍ବେଦ ମଧ୍ୟ ଭଲକରି ଶିଖିଥିଲେ । 'ଜାମିତ୍ର' 'ଉଚ୍ଚସ୍ଥ' (କୁମାର ୭.୧, ରଘୁ ୩.୧୩) ଇତ୍ୟାଦି ପାରିଭାଷିକ ସଂଜ୍ଞାମାନଙ୍କରୁ ତାଙ୍କର ଗ୍ରହ ଜ୍ୟୋତିଷ ସମ୍ବନ୍ଧୀ ଜ୍ଞାନର ପରିଚୟ ମିଳେ । 'ତାରକାସୁର ଧୂମକେତୁ ସଦୃଶ ଲୋକମାନଙ୍କର ବିନାଶ ସକାଶେ ଉତ୍ପନ୍ନ ହୋଇଥିଲା' (କୁମାର ୨, ୩୨) ଶତ୍ରୁଙ୍କୁ ଆକ୍ରମଣ କରିବା ରାଜା ଯେପରି ଶୁକ୍ରଯୁକ୍ତ ଦିଗ ବର୍ଜନ କରନ୍ତି, ସେହିପରି ମଦନ ନନ୍ଦୀଙ୍କ ଦୃଷ୍ଟି ପରିହାର କରି ମହାଦେବଙ୍କର ତପୋବନରେ ପ୍ରବେଶ କଲେ । (କୁମାର ୩,୪୩) ଚନ୍ଦ୍ରଙ୍କର ଉତ୍ତରାଫାଲ୍‌ଗୁନି

ନକ୍ଷତ୍ର ସହିତ ଯେତେବେଳେ ଯୋଗ ହୁଏ, ସେତେବେଳେ ମୈତ୍ର ମୁହୂର୍ତ୍ତ ହୁଏ, ସେମିତି ସମୟରେ ସୌଭାଗ୍ୟବତୀ ପୁତ୍ରବତୀ ନାରୀମାନେ ପାର୍ବତୀଙ୍କର ବାଳ ବାନ୍ଧିଥିଲେ (କୁମାର ୭—୬) 'ମଙ୍ଗଳ ଯେପରି ବକ୍ରଗତିରେ ପୂର୍ବରାଶିକୁ ଆସନ୍ତି, ସେପରି କାଳେ ଯଦି ରାଣୀ ଇରାବତୀ ଆସନ୍ତି'(ମାଳବିକାଗ୍ନି)ଇତ୍ୟାଦି ଉଲ୍ଲେଖରୁ ତାଙ୍କର ଗଭୀର ଜ୍ୟୋତିଃଶାସ୍ତ୍ରଜ୍ଞାନର ପରିଚୟ ମିଳେ। ରାତିର ନିସ୍ତବ୍ଧ ସମୟରେ ଚନ୍ଦ୍ର ତଥା ନକ୍ଷତ୍ରମାନଙ୍କୁ ଦେଖିବା ତାଙ୍କର ଅଭ୍ୟାସ ଥିଲା। ନ ହେଲେ 'ଏଷ ଚନ୍ଦ୍ରଲେଖାଦ୍ୱିତୀୟ-ମୁର୍ବଶୀଂ ଗୃହୀତ୍ୱା ବିଶାଖାସମୀପଗତ ଇବ ଚନ୍ଦ୍ର ଉପସ୍ଥିତୋ ରାଜର୍ଷିଃ।' (ବିକ୍ରମ ୧ମ ଅଙ୍କ) 'କମଳ ଚନ୍ଦ୍ରଂ ଯଦି ବିଶାଖେ ଶଶାଙ୍କଲେଖାମନୁବର୍ତ୍ତେତେ' (ଶାକୁନ୍ତଳ ୩) ଏହିପରି ସୁନ୍ଦର ଉପମା ଓ ସ୍ୱଭାବୋକ୍ତିମାନ ଲେଖିପାରି ନ ଥାନ୍ତେ। 'ବୈଦ୍ୟମାନେ କହନ୍ତି, ଭୋଜନ ସମୟରେ···ଦୋଷ ହୁଏ। (ମାଳ ୪) 'ମିତ୍ର! ମାଳବିକା ତୁମ ଆଗରେ ଏପରି ଦେଖାଯାନ୍ତି, ଯେପରି ମଦ୍ୟ-ପାନରେ ଭୋଳ ଲୋକ ଆଗରେ ମିଶ୍ରୀ (ମାଳ ୩) ଇତ୍ୟାଦି ରାଜାଙ୍କ ପ୍ରତି ବିଦୂଷକଙ୍କର ପରିହାସବଚନରୁ ତଥା 'ପ୍ରିୟ ହେଲେ ମଧ୍ୟ ଦୁଷ୍ଟ ଲୋକକୁ ସର୍ପଦଷ୍ଟ ଅଙ୍ଗୁଳିପରି ସେ (ଦିଲୀପ) ତ୍ୟାଗ କରି ଦେଉଥିଲେ।' (ରଘୁ ୧, ୨୮) ଏତାଦୃଶ ଉପମାମାନଙ୍କରୁ ମଧ୍ୟ ଆୟୁର୍ବେଦରେ ତାଙ୍କର ପରିଚୟ ଥିବା ପରି ଜଣାଯାଏ। 'ଆଲୀଢ଼' 'ବାଜନୀରାଜନା' ଇତ୍ୟାଦି ପାରିଭାଷିକ ଶବ୍ଦମାନଙ୍କରୁ ତଥା 'ଆରଣ୍ୟକ ହସ୍ତୀ ରାଜାଙ୍କର ଅବଧ୍ୟ' ଇତ୍ୟାଦି ଉଲ୍ଲିଖିତ ନିୟମମାନଙ୍କରୁ ଧନୁର୍ବେଦରେ ମଧ୍ୟ ତାଙ୍କର ଜ୍ଞାନ ଥିଲା ପରି ପ୍ରତୀତ ହୁଏ।

କାଳିଦାସଙ୍କର ଗ୍ରନ୍ଥମାନଙ୍କର ପରିଶୀଳନରୁ ଜଣାଯାଏ— ବ୍ୟାକରଣ, ଅର୍ଥଶାସ୍ତ୍ର, ଜ୍ୟୋତିଃଶାସ୍ତ୍ର ପ୍ରଭୃତି ତର୍କ କର୍କଶ ବୁଦ୍ଧି ପ୍ରଧାନ ଶାସ୍ତ୍ରମାନଙ୍କ ସହ ସଂଗୀତ, ଚିତ୍ରକଳା, ପ୍ରସାଧନ-କଳା ପ୍ରଭୃତି ପ୍ରୟୋଗସାଧ୍ୟ ଲଳିତକଳାମାନଙ୍କରେ ମଧ୍ୟ କାଳି-ଦାସଙ୍କର ଅସାଧାରଣ ଜ୍ଞାନ ଥିଲା । ବାଦ୍ୟ ଚାରିପ୍ରକାର— ବୀଣା ପ୍ରଭୃତି ତନ୍ତୁବାଦ୍ୟ, ମୃଦଙ୍ଗ ପ୍ରଭୃତି ଚର୍ମ ବାଦ୍ୟ, ମୁରଲୀ ପ୍ରଭୃତି ଛିଦ୍ରଯୁକ୍ତ ବାଦ୍ୟ, ତାଳ ଖଞ୍ଜଣି ପ୍ରଭୃତି ଘନ ବାଦ୍ୟ । ଏ ସମସ୍ତ କାଳିଦାସ ସ୍ୱଗ୍ରନ୍ଥରେ ବର୍ଣ୍ଣନ କରି ଅଛନ୍ତି । ନାରଦମୁନି ଗୋକର୍ଣ୍ଣ-କ୍ଷେତ୍ରସ୍ଥ ମହାଦେବଙ୍କ ଦର୍ଶନ କରିବାକୁ ଯାଉଥିଲେ । ସେ ସମୟରେ ତାଙ୍କର ବୀଣାର ପୁଷ୍ପମାଳା ଇନ୍ଦୁମତୀଙ୍କର ବକ୍ଷସ୍ଥଳରେ ପଡ଼ିଲା ଏବଂ ତା' ଫଳରେ ତାଙ୍କର ମୃତ୍ୟୁ ହେଲା । ଏହି ଘଟନା ରଘୁବଂଶରେ ବର୍ଣ୍ଣିତ । 'କୁମାର ସମ୍ଭବ'ର ଏକ ସ୍ଥଳରେ କବି ବର୍ଣ୍ଣନା କରି ଅଛନ୍ତି— ପ୍ରାତଃକାଳରେ ସ୍ତୁତିମାନଙ୍କର ଆରୋହାବରୋହ ଅନୁସରଣ କରି ତାରମାନଙ୍କରେ ହସ୍ତ ସଂଚାଳନ କରୁଥିବା କିନ୍ନରମାନଙ୍କର ମଙ୍ଗଳ ଗୀତରେ ମହା-ଦେବଙ୍କର ଜାଗରଣ ହୋଇଥିଲା । ଏହା ସୀତାର ସଦୃଶ ତନ୍ତୁ-ବାଦ୍ୟ । ମେଘଦୂତରେ ମଧ୍ୟ ଯକ୍ଷପତ୍ନୀ ସୁମଧୁର କଣ୍ଠରେ ନିଜ ପ୍ରିୟତମଙ୍କର ଗୁଣବର୍ଣ୍ଣନପର ଗୀତ ଗାଇବାକୁ ଯିବାବେଳେ ବୀଣା ଅଶ୍ରୁଜଳରେ ସିକ୍ତ ହେଉଥିଲା ଏବଂ ସେ ତାହା ପୋଛିପୋଛି କରୁଥିଲେ ବୋଲି ବର୍ଣ୍ଣନା ଦେଖାଯାଏ । ସମ୍ଭବତଃ ଅନ୍ୟାନ୍ୟ ବାଦ୍ୟ ଅପେକ୍ଷା କବି ମୃଦଙ୍ଗବାଦ୍ୟକୁ ଅଧିକ ଭଲ ପାଉଥିଲେ । ଏହାଙ୍କର ପ୍ରାୟ ସମସ୍ତ କାବ୍ୟରେ ମୃଦଙ୍ଗ ବାଦ୍ୟର ବର୍ଣ୍ଣନା ଅଛି । 'ମାଳବିକାଗ୍ନିମିତ୍ର'ରେ ଏକ ସ୍ଥାନରେ ମୃଦଙ୍ଗ ବାଜିଲେ ନୃତ୍ୟାରମ୍ଭର ସୂଚନା ମିଳେ ବୋଲି ଉଲ୍ଲେଖ ଦେଖାଯାଏ । କବି

ମେଘଦୂତରେ ସଂଗୀତ ସମୟରେ ମୃଦଙ୍ଗ ବାଜେ ବୋଲି ବର୍ଣ୍ଣନା କରି ଅଛନ୍ତି । 'ରଘୁବଂଶ'ରେ ରାଜା ଅଗ୍ନିବର୍ଣ୍ଣ ନର୍ତ୍ତକୀ ନୃତ୍ୟ କଲାବେଳେ ମୃଦଙ୍ଗ ବଜାଇ ତାଳ ଦେଉଥିଲେ । ଅନେକ ସ୍ଥାନରେ ମୃଦଙ୍ଗବାଦ୍ୟ ଧ୍ୱନିକୁ ମେଘନାଦ ମନେ କରି ମୟୂର-ମାନେ ନୃତ୍ୟ କରନ୍ତି ବୋଲି ବର୍ଣ୍ଣିତ ହୋଇଅଛି । ଏହା ଛଡ଼ା ରଘୁଙ୍କର ଜନ୍ମ ସମୟରେ,ଇନ୍ଦୁମତୀଙ୍କର ସ୍ୱୟମ୍ବରରେ ଓ ଅତିଥି-ରାଜାଙ୍କର ରାଜ୍ୟାରୋହଣାଦି ଉତ୍ସବରେ ଭେରୀତୂରୀ ପ୍ରଭୃତି ବାଦ୍ୟ ଓ ଯୁଦ୍ଧବର୍ଣ୍ଣନାରେ ଶଙ୍ଖବାଦ୍ୟର ଉଲ୍ଲେଖ ଦେଖାଯାଏ । କାଳି-ଦାସ ଏକ ଉପମାରେ କହିଛନ୍ତି ଯେ ସୁସ୍ୱର ବାଜୁଥିଲେ ମନ ପ୍ରସନ୍ନ ହୁଏ ମାତ୍ର ବେସୁର ବାଜୁଥିଲେ ଉଦ୍‌ବିଗ୍ନ ହୁଏ । ଏଥିରୁ ତାଙ୍କର ବାଦ୍ୟ ବଜାଇବା ଅଭିରୁଚିର ପରିଚୟ ମିଳେ ।

କାଳିଦାସଙ୍କର ଗ୍ରନ୍ଥମାନଙ୍କରେ ଗାନର ମଧ୍ୟ ବର୍ଣ୍ଣନା ଦେଖାଯାଏ । ମାଳବିକାଗ୍ନିମିତ୍ରରେ ପ୍ରଥମାଙ୍କରେ ମାଳବିକା ରାଜାଙ୍କ ପ୍ରତି ନିଜର ପ୍ରେମ ସାଭିନୟ ଗାନଦ୍ୱାରା ପ୍ରକାଶ କରି ଅଛନ୍ତି । 'ଶାକୁନ୍ତଳ'ର ପ୍ରସ୍ତାବନାରେ ନଟୀ ବିଦ୍ୱତ୍‌ପରିଷଦର ମନୋରଞ୍ଜନ ସକାଶେ ଗ୍ରୀଷ୍ମବର୍ଣ୍ଣନାତ୍ମକ ଗୀତ ଗାଇଛନ୍ତି ଯାହା ଶୁଣି ପ୍ରେକ୍ଷକମାନେ ଲୀନ ହୋଇଯାଇ ଚିତ୍ରାର୍ପିତ ହେଲା ପରି ରହିଥିଲେ । ପଞ୍ଚମାଙ୍କରେ ଉପେକ୍ଷିତା ହଂସପଦିକା ରାଣୀ ରାଗଯୁକ୍ତ ଗୀତ ଗାଇ ଅପ୍ରତ୍ୟକ୍ଷଭାବେ ରାଜାଙ୍କର ଭର୍ତ୍ସନା କରିଅଛନ୍ତି । 'କୁମାରସମ୍ଭବ'ରେ ମଦନଦାହ ପରେ କିନ୍ନରୀ ପାର୍ବତୀଙ୍କର ଗଦ୍‌ଗଦ ମଧୁର କଣ୍ଠରେ ଗୀତ ବିଧୁରବିଜୟ ଗାନ ଶୁଣି କିନ୍ନରୀମାନେ ଅଶ୍ରୁ ମୋଚନ କରୁଥିଲେ । 'ରଘୁବଂଶ'ରେ କୁଶ ଓ ଲବଙ୍କର ସୁମଧୁର କଣ୍ଠରେ ଗୀତ ମନୋହର ରାମଚରିତ ଶୁଣି

ସମସ୍ତ ସଭା ଶୋକାକୁଳ ହୋଇ ଉଠିଥିଲା । ଏ ସମସ୍ତ ପ୍ରସଙ୍ଗରୁ କବି ସୁସ୍ୱର ଗାନ ଶ୍ରୋତାମାନଙ୍କ ଉପରେ ପ୍ରଭାବିତ କରେ, ତାହା ଦେଖାଇ ଦେଇଛନ୍ତି । ମୂର୍ଚ୍ଛନା, ଧ୍ୱନି, ବର୍ଣ୍ଣପରିଚୟ, ଷଡ଼ଜ, ମଧ୍ୟମ ଇତ୍ୟାଦି ଗାନବାଦନର ପାରିଭାଷିକ ଶବ୍ଦମାନ ଏହାଙ୍କର ଗ୍ରନ୍ଥମାନଙ୍କରେ ଦୃଷ୍ଟ ହୁଏ । ଏ ହେତୁ ସେ ସଙ୍ଗୀତଜ୍ଞ ଥିଲେ ବୋଲି ସ୍ପଷ୍ଟ ପରିଚୟ ମିଳେ ।

ନୃତ୍ୟ, ଗୀତ, ବାଦ୍ୟ ପ୍ରଭୃତି କଳାମାନଙ୍କ ପରି ଚିତ୍ର-କଳାରେ ମଧ୍ୟ କାଳିଦାସଙ୍କର ଅସାଧାରଣ ପରିଚୟ ଥିଲା । ସେ ନିଜ କାବ୍ୟମାନଙ୍କରେ କାଗଜ ଓ ଭିତ୍ତି ଉପରେ ଅଙ୍କିତ ଚିତ୍ର, ସ୍ତମ୍ଭମାନଙ୍କରେ ଉତ୍କୀର୍ଣ୍ଣ ଆକୃତି ଓ ଦେବମୂର୍ତ୍ତିମାନଙ୍କର ଉଲ୍ଲେଖ କରିଅଛନ୍ତି । ଏହାଙ୍କର ଗ୍ରନ୍ଥମାନଙ୍କରେ ଦୁଷ୍ୟନ୍ତ, ପୁରୁରବା, ଯକ୍ଷ, ରାଜା ଅଗ୍ନିବର୍ଣ୍ଣ, ଯକ୍ଷପତ୍ନୀ—ଏ ସମସ୍ତ ଉତ୍ତମ ଚିତ୍ରକାର ରୂପେ ଚିତ୍ରିତ ହୋଇ ଅଛନ୍ତି । 'ମାଳବିକାଗ୍ନିମିତ୍ର'ର ଧାରଣୀ ଓ ଶାକୁନ୍ତଳର ଶକୁନ୍ତଳାଙ୍କର ସଖୀମାନେ ଚିତ୍ରକଳାର ଅନୁରାଗିଣୀ ଥିଲେ । ଏହାଙ୍କର ନାଟକମାନଙ୍କରେ ଅନେକ ଘଟନା ଚିତ୍ର ଦର୍ଶନ ଅଥବା ଚିତ୍ରଲେଖନ ପ୍ରସୂତ । ମାଳବିକାଗ୍ନିମିତ୍ରରେ ମାଳବିକାଙ୍କର ପ୍ରଥମ ଦର୍ଶନ ଏକ ଚିତ୍ରରେ ଧାରିଣୀଙ୍କର ଦାସୀ-ରୂପରେ ଘଟିଥିଲା ଏବଂ ତାଙ୍କର ସୌନ୍ଦର୍ଯ୍ୟରେ ରାଜା ମୁଗ୍ଧ ହୋଇ ଥିଲେ । ଚିତ୍ରରେ ଇରାବତୀଙ୍କ ସନ୍ତୁଷ୍ଟ ଭାବରେ ଗୁହିଁ ଥିବା ରାଜାଙ୍କୁ ଦେଖି ମାଳବିକାଙ୍କର ହୃଦୟରେ ଈର୍ଷା ଜାତ ହୋଇଥିଲା । ମେଘଦୂତରେ ବିରହୀ ଯକ୍ଷ ବିରହ ଦୁଃଖ ଅପନୋ-ଦନ ଆଶାରେ ପ୍ରଣୟକୁପିତା ପ୍ରିୟତମାର ରୂପ ଶିଳାଉପରେ ଗେରୁରେ ଲେଖି ନିଜକୁ ଚରଣ ତଳେ ପଡ଼ିଲା ପରି ଲେଖିବାକୁ

ଯାର ବାରମ୍ବାର ଉତ୍ଥିତ ଅଶ୍ରୁଜଳରେ ଧୁଆଁଳି ଅଙ୍ଗୁଳି ଧୋଇବାରୁ ବିଫଳପ୍ରଯତ୍ନ ହୋଇ ଅଛୁ । 'ଶାକୁନ୍ତଳ'ରେ ଶକୁନ୍ତଳାଙ୍କର ପ୍ରତ୍ୟାଖ୍ୟାନ ପରେ ପଶ୍ଚାତ୍ତାପଜର୍ଜରିତ ରାଜା କଣ୍ୱାଶ୍ରମରେ ଶକୁନ୍ତଳା-ଙ୍କର ପ୍ରଥମ ଦର୍ଶନର ଚିତ୍ର ଲେଖି ଅଛନ୍ତି । ଏହିପରି ନାନା ପ୍ରକାର ପ୍ରସଙ୍ଗରେ କାଳିଦାସ କଥାବସ୍ତୁର ସଂବିଧାନର ବୈଚିତ୍ର୍ୟ ପ୍ରତିପାଦନ ଓ ବିକାଶ ସକାଶେ ଚିତ୍ରକଳାର ଯଥାଯଥଭାବେ ଉପଯୋଗ କରି ଅଛନ୍ତି । ଉପରି ଲିଖିତ ଘଟଣାରେ ଦୁଷ୍ୟନ୍ତଙ୍କ ଦ୍ୱାରା ଲିଖିତ ଶକୁନ୍ତଳାଙ୍କର ଚିତ୍ର ଅସମ୍ପୂର୍ଣ୍ଣ ଥିଲା, ତାକୁ ପୂର୍ଣ୍ଣ କରିବା ରାଜାଙ୍କର ଅଭିପ୍ରେତ ଥିଲା ବୋଲି ନିମ୍ନଲିଖିତ ଶ୍ଳୋକର ବର୍ଣ୍ଣନାରୁ ଜଣାଯାଏ । ଏଥିରୁ ସ୍ପଷ୍ଟରୂପେ ଜଣାଯାଏ ଯେ ଧିନ୍ଦର ଚିତ୍ର ଲେଖିବାକୁ ହେଲେ ପୃଷ୍ଠଭୂମିର ଆବଶ୍ୟକତା କେତେ-ଦୂର ଆବଶ୍ୟକ ତାହା କବି ଭଲରୂପେ ଜାଣିଥିଲେ ।

**कार्या सैकतलीनहंसमिथुना स्रोतोवहा मालिनी**
**पादास्तामभितो निसर्गमधुरा गौरीगुरोः पावनाः ।**
**शाखालम्बितवल्कलस्य च तरोर्निर्मातुमिच्छाम्यधः**
**शृङ्गे कृष्णमृगस्य वामनयनं कंडूयमानां मृगीम् ।**

ଶାକୁନ୍ତଳ ୬ । ୧୭

(ଏହି ଚିତ୍ରରେ ବର୍ତ୍ତମାନ ସୁଦ୍ଧା ମାଳିନୀ ନଦୀ, ତାର ପୁଳିନରେ ଆସୀନ ହଂସଯୁଗଳ, ପାର୍ଶ୍ୱଦେଶରେ ହିମାଳୟର ପବିତ୍ର ପବନ ଉପତ୍ୟକା ଏବଂ ତଦୁପରି ଉପବିଷ୍ଟ ହରିଣ, ଗୋଟିଏ ବିଶାଳ ବୃକ୍ଷ, ତହିଁରେ ଲମ୍ବିଥିବା ବଲ୍କଳ ଏବଂ ବୃକ୍ଷତଳରେ କୃଷ୍ଣମୃଗର ଶିଙ୍ଗ ଉପରେ ବାମନୟନକୁ କୁଣ୍ଡାଉଥିବା ମୃଗୀ — ଏ ସମସ୍ତ ଲେଖିବାକୁ ହେବ) ।

ରାଜାଙ୍କ ଲିଖିତ ଚିତ୍ର ଏତେ ସରସ ଓ ସ୍ୱାଭାବିକ ଥିଲା ଯେ ସମୀପରେ ଅବସ୍ଥିତ ଶକୁନ୍ତଳାଙ୍କର ମାତା ମେନକାଙ୍କର ସଖୀ ଚିତ୍ରକୁ ଦେଖି ସାକ୍ଷାତ୍ ଶକୁନ୍ତଳା ଆଗରେ ଥିଲି ପରି ମନେ କରିଥିଲେ । ତାପରେ ରାଜା ବର୍ଣ୍ଣନା କରିଛନ୍ତି ଯେ ଶକୁନ୍ତଳାଙ୍କର ଶରୀରରେ ତାଙ୍କର ଅଭିମତ ପ୍ରସାଧନ ମଧ୍ୟ ଲେଖିବେ । ସ୍ପଷ୍ଟରୂପେ, ଭାବନାକୌଶଳ, ସମୁଚିତ ଅଳଙ୍କାର ପ୍ରଭୃତି ବିଷୟମାନଙ୍କର ଅତି ସୂକ୍ଷ୍ମଭାବରେ ବର୍ଣ୍ଣନ କରିଥିବା କବି ନିଜେ ନିଶ୍ଚୟ ନିପୁଣ ଚିତ୍ରକାର ଏଥିରେ ସନ୍ଦେହ ନାହିଁ । 'କୁମାରସମ୍ଭବ'ରେ ଯୌବନ ପ୍ରଭାବିତ ପାର୍ବତୀଙ୍କର ପ୍ରତ୍ୟେକ ଅଙ୍ଗର ସୁସ୍ପଷ୍ଟ ପରିଚୟ ଦେବାକୁ ଯାଇ କବି ଚିତ୍ରକାରଦ୍ୱାରା ଧୀରେ ଧୀରେ ଉନ୍ମିଳିତ ଚିତ୍ର ସହିତ ଉପମା ଦେଇ ଅଛନ୍ତି । ଚିତ୍ରକାର ପ୍ରଥମରେ ସୂକ୍ଷ୍ମ ରେଖାମାନଙ୍କରେ ଚିତ୍ରର ବାହ୍ୟରୂପ (Outlines) ଲେଖେ, ପରେ ତୂଳିକାରେ ରଙ୍ଗ ଦେଇ ରଞ୍ଜିତ କରେ । ବାହ୍ୟ ରେଖାମାନଙ୍କଦ୍ୱାରା ଚିତ୍ରର ପ୍ରତ୍ୟେକ ଭାଗ ଅଲଗା ଅଲଗା ଦେଖାଯାଏ କିନ୍ତୁ ରଙ୍ଗ ଚଢ଼ାଇଲାପରେ ଚିତ୍ରର ରୂପ ସ୍ପଷ୍ଟଭାବରେ ବ୍ୟକ୍ତ ହୁଏ । ତୂଳିକାଦ୍ୱାରା ଯେପରି ଚିତ୍ର ଉନ୍ମୀଳିତ ହୁଏ ଏହି ଉପମା କବି ସ୍ୱୟଂ ଚିତ୍ରକାର ନ ହୋଇଥିଲେ କଦାପି ଦେଇ ପାରିବେ ନାହିଁ । ଶ୍ରୀଯୁକ୍ତ ଓଗଲେ * ଏହି ମତ ପୋଷଣ କରନ୍ତି ଏବଂ ସେହିମତ ସର୍ବଜନାଦୃତ ହେବା ବାଞ୍ଛନୀୟ । କାଳିଦାସଙ୍କର ସମୟରେ ଅଜନ୍ତା ଗୁମ୍ଫାମାନଙ୍କରେ ଚିତ୍ରମାନ ଅଙ୍କିତ ହୋଇ ରହିଥିଲା ପରି ପ୍ରମାଣ ମିଳେ । ଏ ସମସ୍ତରୁ ସେ ସମୟରେ ଚିତ୍ରକଳା ଉନ୍ନତ ଧରଣର ଥିଲା ବୋଲି ପ୍ରମାଣିତ ହୁଏ ।

* କେ. ଲ. ଓଗଲେଙ୍କର 'କାଳିଦାସ ଆଣି ଚିତ୍ରକଳା' — ବିଶ୍ୱ-ବିଜ୍ଞାନ ବିସ୍ତାର ପୁ. ୫୮, ପୃ ୩୫୭ ଦ୍ରଷ୍ଟବ୍ୟ ।

କାଳିଦାସ ନିଜ ଦେଶର ଇତିହାସ ଓ ଭୂଗୋଳ ଭଲରୂପେ ଜାଣିଥିଲେ । 'ମାଳବିକାଗ୍ନିମିତ୍ର'ରେ ବର୍ଣ୍ଣିତ ଘଟନା କେତେ ଶହ ବର୍ଷ ପୂର୍ବର ହେଲେ ମଧ୍ୟ କାଳିଦାସ ସେ ସମସ୍ତ ପୁଂଖାନୁପୁଙ୍ଖରୂପେ ଜାଣିଥିଲେ, ଏବଂ ତାହାଙ୍କର ପରମ୍ପରିତ ସହିତ ମଧ୍ୟ ପରିଚିତ ଥିଲେ । ଏହା ମାଳବିକାଗ୍ନିମିତ୍ର ପରିଶୀଳନରୁ ଜଣାଯାଏ । ଅଳ୍ପକେତେ ଦିନ ତଳେ ଡ଼ା. ଶ୍ରୀ ବ୍ୟଂ. କେତକର କହିଛନ୍ତି ଯେ କାଳିଦାସଙ୍କର 'ମାଳବିକାଗ୍ନିମିତ୍ର'ରେ ପୁଷ୍ୟମିତ୍ର ସେନାପତି ପଦରେ ନିଯୁକ୍ତ ଥିଲା ପରି ବର୍ଣ୍ଣନା କରାଯାଇ ଅଛି ମାତ୍ର ସେ ନିଜ ସ୍ୱାମୀଙ୍କୁ ହତ୍ୟା କରି ରାଜସିଂହାସନ ଦଖଲ କରି ଥିଲେ—ଏ ବିଷୟର ଉଲ୍ଲେଖ ନାହିଁ । ତା ପରେ ସେ ସଙ୍ଗେ ସଙ୍ଗେ ଅଶ୍ୱମେଧ ଯଜ୍ଞ କଲାପରି ବର୍ଣ୍ଣିତ ହୋଇ ଅଛି । ଏଥିରୁ ଜଣାଯାଏ—କାଳିଦାସ ରାଜ୍ୟତନ୍ତ୍ରଅନଭିଜ୍ଞ ଥିଲେ ଅଥବା ପୁଷ୍ୟମିତ୍ରଙ୍କର ଉତ୍କର୍ଷ ଦେଖାଇବାକୁ ଯାଇ ନିଜେ ନିଜ ବିବେକବୁଦ୍ଧିକୁ ଜଳାଞ୍ଜଳି ଦେଇଥିଲେ । ତା ଛଡ଼ା ପୁଷ୍ୟମିତ୍ର ଯେଉଁ ଯଜ୍ଞ କରିଥିଲେ, ତାହା ଅଶ୍ୱମେଧ ଯଜ୍ଞ ଏ ବିଷୟରେ କୌଣସି ପ୍ରମାଣ ନାହିଁ । କାଳିଦାସଙ୍କୁ ଯେଉଁ ସବୁ ଐତିହାସିକ ସାଧନ ମିଳିଥିଲା ଆଜିକାଲି ସେ ସମସ୍ତ ମିଳୁ ନ ଥିବାରୁ ଉପରଲିଖିତ ମତ ଖଣ୍ଡନ କରିବା ବଡ଼ କଠିନ । ବଡ଼ ଭାଗ୍ୟର କଥା—ତତ୍କାଳୀନ ଶିଳାଲେଖମାନଙ୍କରୁ ବିଶ୍ୱାସ ଯୋଗ୍ୟ ପ୍ରମାଣ ମିଳିଅଛି । ତହିଁରୁ ଜଣାଯାଏ ଯେ ପୁଷ୍ୟମିତ୍ର ଗୋଟିଏ ନୁହେଁ, ଦୁଇଟି ଅଶ୍ୱମେଧ ଯଜ୍ଞ କରିଥିଲେ * ରାଜ ସିଂହାସନ ଉପରେ ବସିଲାପରେ ମଧ୍ୟ ସେ ସେନାପତି ପଦ ଅକ୍ଷୁଣ୍ଣ ରଖିଥିଲେ ।

* Ep. Ind. Vol. XX, p. 54.

ସୁତରାଂ କାଳିଦାସଙ୍କ ମସ୍ତକ ଉପରେ ଉପରଲିଖିତ ଦୁଇଟି ଅପରାଧ ଲଦି ଦିଆଯାଇ ପାରିବ ନାହିଁ। ବରଂ ତାଙ୍କର ଐତିହାସିକ ଜ୍ଞାନ ଦୃଢ଼ ଥିଲା ବୋଲି କୁହାଯାଇ ପାରିବ।

କାଳିଦାସଙ୍କର ଗ୍ରନ୍ଥମାନଙ୍କରେ ଅନେକ ଦେଶ, ପର୍ବତ ନଦୀ ଓ ନଗରମାନଙ୍କର ବର୍ଣ୍ଣନା ଅଛି। ସେ ବର୍ଣ୍ଣନାରେ ତିଳେ ହେଲେ ଭ୍ରମ ପ୍ରମାଦ ଦେଖାଯାଏ ନାହିଁ। 'କୁମାରସମ୍ଭବ'ର ଆରମ୍ଭରେ ଓ ମେଘଦୂତରେ କବି ହିମାଳୟର ଯଥାଯଥ ବର୍ଣ୍ଣନା ବିସ୍ତୃତ ରୂପରେ କରି ଅଛନ୍ତି। ଭାରବି ତଥା ଅନ୍ୟାନ୍ୟ କବି-ମାନେ ମଧ୍ୟ ହିମାଳୟର ବର୍ଣ୍ଣନା କରି ଅଛନ୍ତି। କିନ୍ତୁ ସେମାନେ ବାସ୍ତବିକତା ଅପେକ୍ଷା କଳ୍ପନା ଉପରେ ବେଶି ଆସ୍ଥା ଦେଇଛନ୍ତି। ହିମାଳୟ ଯାତ୍ରୀ ତଥା ଗ୍ରୀଷ୍ମକାଳରେ ପରିଭ୍ରମଣ କରିବା ଲୋକେ କହନ୍ତି ଯେ କାଳିଦାସ ହିମାଳୟ ଉପରେ ମେଘର ଦୃଶ୍ୟ ତଥା ରାତିରେ ପ୍ରକାଶମାନ ଔଷଧି ପ୍ରଭୃତିର ବର୍ଣ୍ଣନା ଅତି-ସୁନ୍ଦର ଭାବେ କରି ଅଛନ୍ତି। ବଂକ୍ଷୁ ବା ସିନ୍ଧୁ ନଦୀର ତଟ-ପ୍ରଦେଶରେ କେସର ବୃକ୍ଷ ଥାଏ—ଏହା ଅନ୍ୟ କୌଣସି କବି ବର୍ଣ୍ଣନା କରି ନାହାନ୍ତି। ବଙ୍ଗ ଦେଶରେ ଶାଳିଧାନ୍ୟ, ଦକ୍ଷିଣରେ ତାମ୍ରପର୍ଣ୍ଣୀ ତଟରେ ମୁକ୍ତା କାରଖାନା ପ୍ରଭୃତିର ବର୍ଣ୍ଣନା କବି ବାସ୍ତବିକ ଲକ୍ଷ୍ୟ ରଖି କରିଛନ୍ତି। ଏଥିରୁ ପ୍ରମାଣିତ ହେଉଅଛି ଯେ କାଳିଦାସ ନିଜେ ଦୂରବର୍ତ୍ତୀ ପ୍ରଦେଶମାନଙ୍କୁ ଯାଉଥିଲେ ଏବଂ ପ୍ରକୃତି ପର୍ଯ୍ୟବେକ୍ଷଣ କରୁଥିଲେ। ତଥା ଚନ୍ଦ୍ରଗୁପ୍ତଙ୍କ ସମୟରେ କାର୍ଯ୍ୟବଶତଃ ଦୂରଦେଶମାନଙ୍କୁ ପ୍ରେରିତ ଅଧିକାରୀ ଏବଂ ବିଭିନ୍ନ ଦେଶରୁ ଆଗତ ବ୍ୟବସାୟୀମାନଙ୍କ ଠାରୁ ଐତିହାସିକ ତଥା ଭୌଗୋଳିକ ତଥ୍ୟମାନ ସଂଗ୍ରହ କରୁଥିଲେ।

ଏହା କହିବା ଅବଶ୍ୟକ ନୁହେଁ ଯେ କବି ଉପରଲିଖିତ ବିଷୟମାନଙ୍କ ଛଡ଼ା କୋଣ ଛନ୍ଦ ତଥା ଅଳଙ୍କାର ଆଦି ଗ୍ରନ୍ଥମାନଙ୍କରେ ମଧ୍ୟ ଅସାଧାରଣ ଜ୍ଞାନ ସମ୍ପାଦନ କରିଥିଲେ । କବି ରାଜଶେଖର କାବ୍ୟରଚନେଚ୍ଛୁ କବିମାନେ ପ୍ରଥମେ ପୁରାତନ କବିମାନଙ୍କର କାବ୍ୟମାନ ପରିଶୀଳନ କରିବେ ବୋଲି ନିର୍ଦ୍ଦେଶ କରି ଅଛନ୍ତି । କାଳିଦାସଙ୍କର ଗ୍ରନ୍ଥମାନଙ୍କରୁ ପ୍ରତ୍ୟକ୍ଷ ଓ ଅପ୍ରତ୍ୟକ୍ଷ ପ୍ରମାଣ ବଳରେ କୁହାଯାଇପାରେ ଯେ କବି ପୂର୍ବକାଳର ବ୍ୟାସ ବାଲ୍ମୀକି ଆଦି ପ୍ରଣୀତ ମହାଭାରତ ରାମାୟଣାଦି ଗ୍ରନ୍ଥ, ପୁରାଣ, ଅଶ୍ୱଘୋଷ ପ୍ରଭୃତିଙ୍କର କାବ୍ୟ ତଥା ଭାସ ସୌମିଲ୍ଲ-କବିପୁତ୍ର ପ୍ରଭୃତି ନାଟକକାରମାନଙ୍କର ନାଟକ ଭଲରୂପେ ଅଧ୍ୟୟନ କରି ଗଭୀର ଜ୍ଞାନ ସମ୍ପାଦନ କରିଥିଲେ । ଶାନ୍ତିପର୍ବୀୟ 'ରାଜା କାଳସ୍ୟ କାରଣମ୍' * ଏହି ଉକ୍ତି 'ରଘୁବଂଶ'ର 'କ୍ଷତାତ୍ କିଲ ତ୍ରାୟତ ଇତି କ୍ଷତ୍ରିୟଃ' ଏହିପରି କ୍ଷତ୍ରିୟ ଶବ୍ଦର ବ୍ୟୁତ୍ପତ୍ତି, 'ମାଳବିକାଗ୍ନିମିତ୍ର'ର ଚଳିକ ପୁଷ୍ପ ପ୍ରଭୃତି ଶବ୍ଦମାନଙ୍କର ଶ୍ଳିଷ୍ଟ କଳ୍ପନା ଅବଶ୍ୟ କବି ମହାଭାରତରୁ ନେଇ ଅଛନ୍ତି । ରାମାୟଣ ବର୍ଣ୍ଣିତ ବର୍ଷା ଓ ହେମନ୍ତ ଋତୁର ଛାୟା ଋତୁସଂହାରରେ ପଡ଼ିଅଛି । 'ରଘୁବଂଶ'ରେ ବର୍ଣ୍ଣିତ ରାଜାମାନଙ୍କର ବଂଶାବଳୀ ସେ ପ୍ରାଚୀନ ପୁରାଣ ମାନଙ୍କରୁ ସଂଗ୍ରହ କରି ଅଛନ୍ତି । ପ୍ରଥମରୁ କହିଛୁଁ ଯେ ସେ ଅଶ୍ୱଘୋଷଙ୍କର କାବ୍ୟମାନ ଭଲ ରୂପେ ପଢ଼ିଥିବେ । ଆଗାମୀ ଷଷ୍ଠ ପ୍ରକରଣରେ ପ୍ରତିପାଦିତ କରାଯିବ ଯେ ସେ ଭାସାଦି ନାଟକକାରମାନଙ୍କର କେତେକ କଳ୍ପନା ତଥା

---

* मुनयोऽपि व्याहरन्ति—राजा कालस्य कारणमिति ।

ଘଟନା ନିଜ ପ୍ରତିଭାବଳରେ ଅତି ରମଣୀୟ ରୂପେ ଚିତ୍ରିତ କରି ଅଛନ୍ତି ।

ମନୁଷ୍ୟ କେତେ ପ୍ରଖର ପ୍ରତିଭାର ବିଦ୍ୱାନ୍, କଳାକାର ଓ ଶାସ୍ତ୍ରଜ୍ଞ ହେଲେ ମଧ୍ୟ ଯେଉଁ ପର୍ଯ୍ୟନ୍ତ ସେ ନିଜ ଜୀବନକୁ ବିଶୁଦ୍ଧ କରି ଗଢ଼ି ନାହାନ୍ତି, ସେ ପର୍ଯ୍ୟନ୍ତ ସେ କଦାପି ଉଚ୍ଚ କୋଟିର ସାହିତ୍ୟ ରଚନା କରିପାରିବେ ନାହିଁ । 'କବିଙ୍କର ସ୍ୱଭାବ ଯେପରି ତାଙ୍କର କାବ୍ୟ ସେହିପରି, ଚିତ୍ରକାର ଯେପରି ତାଙ୍କର ଚିତ୍ର ମଧ୍ୟ ସେହିପରି । ଏହା ଏକ ସାମାନ୍ୟ ନିୟମ ବୋଲି ରାଜଶେଖର ଯାହା ଲେଖିଛନ୍ତି, ତାହା ସତ୍ୟ ( କାବ୍ୟମୀମାଂସା ଅ ୧୦ ) ଦୁର୍ଭାଗ୍ୟର କଥା ଯେ କାଳିଦାସଙ୍କର ଚରିତ୍ରଗତ ବିଶ୍ୱସନୀୟ ଘଟନାମାନ ଅତଶୀଘ୍ର ଲୁପ୍ତ ହୋଇଗଲା ଏବଂ ସେମାନଙ୍କ ସ୍ଥାନରେ ମନଗଢ଼ା ଅନେକ କଥା ଦେଖାଗଲା । ଏ ହେତୁ ତାଙ୍କର ଚରିତ୍ର ଲୋକମାନଙ୍କ ଆଗରେ ଅତିରଞ୍ଜିତରୂପରେ ଉପସ୍ଥିତ ହୋଇ ଅଛି । ଏ ହେତୁ ଆମ୍ଭେ ରାଜଶେଖରଙ୍କର ଉକ୍ତି ଅନୁଯାୟୀ ତାଙ୍କର ଗ୍ରନ୍ଥମାନଙ୍କରୁ ତାଙ୍କର ଚରିତ୍ର ପରୀକ୍ଷା କରିବୁଁ ।

କାଳିଦାସଙ୍କର ସମସ୍ତ ଗ୍ରନ୍ଥ ପର୍ଯ୍ୟାଲୋଚନା କଲେ ଜଣାଯାଏ, ସେ ବଡ଼ ବିଳାସୀ ଓ ବିନୋଦୀ ସ୍ୱଭାବର ଥିଲେ । ଏହାଙ୍କର ସମସ୍ତ ଗ୍ରନ୍ଥରେ ଶୃଙ୍ଗାର ରସର ପ୍ରାଧାନ୍ୟ ଦେଖାଯାଏ । ଏ ହେତୁ ଏକ ସୁଭାଷିତରେ ସେ 'କବିତା ଦେବୀଙ୍କର, ବିଳାସ' ବୋଲି ବର୍ଣ୍ଣିତ । ତାଙ୍କର ବିନୋଦୀ ସ୍ୱଭାବର ଛାୟା ତାଙ୍କର ନାଟକ-ମାନଙ୍କର କେତେକ ମନୋରଞ୍ଜନ ଘଟନା ବିଶେଷତଃ ତାଙ୍କର ବିଦୂଷକପାତ୍ର ଚିତ୍ରଣରୁ ବ୍ୟକ୍ତ ହୁଏ । କାଳିଦାସ ବଡ଼ ସରଳ-

ହୃଦୟ ଥିଲେ । ସେ କହିଛନ୍ତି—ଜଣଙ୍କ ସହିତ ସାତ ପାଦ ଚାଲିଲେ ବା ସାତ ପଦ କଥା ହେଲେ ମିତ୍ରତା ହୋଇଥାଏ । (କୁମାର ୫,୩୯ ରଘୁ ୨-୪୮) ପ୍ରକୃତିମାନଙ୍କର ସ୍ତ୍ରୀ ପ୍ରତି ପ୍ରେମ ଚଞ୍ଚଳ ମାନ ମିତ୍ର ପ୍ରେମ ଚିରସ୍ଥାୟୀ (କୁମାର ୪, ୨୮) ଏହି ଉକ୍ତିରୁ ତାଙ୍କର ମିତ୍ର ପ୍ରେମର ମହାନୀୟତା କଳ୍ପନା କରିପାରିବା ତାଙ୍କର ହୃଦୟ ଅତ୍ୟନ୍ତ କୋମଳ ଥିଲା । ଦିବସରେ ସୂର୍ଯ୍ୟଙ୍କର ପ୍ରକାଶରେ ନିଷ୍ପ୍ରଭ ଚନ୍ଦ୍ରକଳାକୁ ଦେଖି ତାଙ୍କର ବିଶେଷ ଦୁଃଖ ହେଉଥିଲା । (କୁମାର ୫,୪୮) ସମାଜରେ ଧୀବର ସଦୃଶ ସରଳ-ପ୍ରକୃତିର ଲୋକମାନଙ୍କର ଚରିତ୍ର ମଧ୍ୟ ସେ ଅତି ମନୋହର ଭାବେ ଚିତ୍ରିତ କରି ଅଛନ୍ତି । ଏହି ଜାତୀୟ ଲୋକମାନଙ୍କ ପ୍ରତି ତାଙ୍କର ସହାନୁଭୂତି ମଧ୍ୟ ଥିଲା । ସେ ଯେ କୌଣସି ବ୍ୟକ୍ତିର ସ୍ୱାଭାବିକ ମର୍ମ ଚିତ୍ରଣ କରିବାରେ ସିଦ୍ଧହସ୍ତ ଥିଲେ । ନ ହେଲେ 'ଶାକୁ-ନ୍ତଳ'ର ରୂପ ପରିବର୍ତ୍ତନ କରୁଥିବା ପୁଲିସର ଚିତ୍ର ଏତେ ସୁନ୍ଦର-ଭାବେ କରିପାରି ନ ଥାନ୍ତେ ! 'ସ୍ତ୍ରୀ ପୁମାନିତ୍ୟନାସ୍ଥୈଷା ବୃତ୍ତିଂ ହି ମହିତଂ ସତାମ୍' (କୁମାର ୬-୧୨) ଏହି ଉକ୍ତିରୁ ଜଣାଯାଏ—ସେ ବ୍ୟକ୍ତି ଅପେକ୍ଷା ଗୁଣର ସମଧିକ ଆଦର କରୁଥିଲେ । ତାଙ୍କର ନିରତିଶୟ ପ୍ରେମ କେବଳ ମନୁଷ୍ୟମାନଙ୍କ ଉପରେ ଆବଦ୍ଧ ନ ଥିଲା, କିନ୍ତୁ ମୃଗ, ମୟୂର ପ୍ରଭୃତି ଅନ୍ୟାନ୍ୟ ପ୍ରାଣୀମାନଙ୍କ ପ୍ରତି ମଧ୍ୟ ଉନ୍ମୁକ୍ତ ଥିଲା । ସେ 'ଶାକୁନ୍ତଳ'ର ଚତୁର୍ଥ ଅଙ୍କରେ ଦେଖାଇ ଦେଇଛନ୍ତି—ଯଦି ଆମେ ତାଙ୍କୁ ପ୍ରେମ କରିବା, ତେବେ ସେମାନେ ଆମ୍ଭଙ୍କୁ ପ୍ରେମ କରିବେ । ଏହାଙ୍କର ପାତ୍ରମାନେ ଲତା ବୃକ୍ଷମାନଙ୍କୁ ନିଜ ସନ୍ତାନ ପରି ପ୍ରେମ କରନ୍ତି । ମେଘଦୂତରେ ତଥା ଅନ୍ୟାନ୍ୟ ଗ୍ରନ୍ଥମାନଙ୍କରେ ସେ ଅନେକ ବୃକ୍ଷ, ଲତା ଓ ପୁରୁଷମାନଙ୍କର

ବର୍ଣ୍ଣନା ମନୋହର ଭାବେ କରିଅଛନ୍ତି । ତହିଁରୁ ତାଙ୍କର ପ୍ରକୃତର ଯଥାର୍ଥ ସୌନ୍ଦର୍ଯ୍ୟାନୁଭୂତିର ପରିଚୟ ମିଳେ ।

କାଳିଦାସଙ୍କ ବିଷୟରେ ପ୍ରବାଦ ଅଛି ଯେ ତାଙ୍କର ଚରିତ ନିର୍ଦ୍ଦୋଷ ନ ଥିଲା । ମାତ୍ର ତାଙ୍କର ଗ୍ରନ୍ଥମାନଙ୍କରୁ ଏ ସମ୍ବନ୍ଧରେ କୌଣସି ସୂଚନା ମିଳୁନାହିଁ । ସେ ଗୃହସ୍ଥାଶ୍ରମକୁ 'ସର୍ବୋପକାରକ୍ଷମ' କହି ପ୍ରଶଂସା କରି ଅଛନ୍ତି । 'ପତିପତ୍ନୀଙ୍କର ପ୍ରେମ ସତ୍ୟ-ସନାତନ । 'ଭଗବାନ୍ ମହାଦେବଙ୍କ ସଦୃଶ ଅସାଧାରଣ ଇନ୍ଦ୍ରିୟନିଗ୍ରହକାରୀ ଯୋଗିଙ୍କୁ ଯେତେବେଳେ ପ୍ରେମ ବ୍ୟାକୁଳ କରି ଦେଉଅଛି, ଅନ୍ୟାନ୍ୟ ଲୋକଙ୍କ କଥା ଇଅଣି କହିବା' ଏହି ପରି 'କୁମାରସମ୍ଭବ'ରେ ସ୍ତ୍ରୀମାନଙ୍କପ୍ରତି ଅତ୍ୟନ୍ତ ଆଦର ପ୍ରକାଶ କରି ଅଛନ୍ତି । ସ୍ତ୍ରୀମାନଙ୍କ ବ୍ୟତୀତ କୌଣସି ଧର୍ମକାର୍ଯ୍ୟ ଏକବାରେ ଅସମ୍ଭବ, (କୁମାର ୬,୧୩) ବରକନ୍ୟାଙ୍କର ବିବାହ-ସମ୍ବନ୍ଧ ସ୍ଥାପନରେ ସ୍ତ୍ରୀମାନେ ବଡ଼ ଚତୁର । (କୁମାର ୬,୩୨) ପୁରୁଷ ନିଜ ଝିଅର ବିବାହରେ ପ୍ରାୟ ନିଜ ସ୍ତ୍ରୀର ଇଙ୍ଗିତରେ ଚାଳିତ ହୁଏ (କୁମାର ୬-୮୫) ଇତ୍ୟାଦି କୁମାରସମ୍ଭବରେ ଦେଖାଯାଏ । ତଦ୍ୱାରା କବି ସୂଚନା ଦେଇଛନ୍ତି ଯେ ପାରିବାରିକ ଜୀବନ ସୁଖମୟ କରିବାକୁ ହେଲେ ପତି ପତ୍ନୀ ଉଭୟେ ପରସ୍ପର ମତ ଗ୍ରହଣ କରିବାକୁ ହେବ । ଏହାଙ୍କର ସମସ୍ତ ସ୍ତ୍ରୀପାତ୍ର ପ୍ରେମିକା, ମୃଦୁସ୍ୱଭାବା ଓ ଲଳିତକଳାନିପୁଣା । 'ରଘୁବଂଶ'ର ଅଜ ବିଳାପରେ ଆଦର୍ଶପତ୍ନୀର ସ୍ୱରୂପ ଦେଖାଇଛନ୍ତି । ସେ 'ରଘୁବଂଶ'ରେ ଇନ୍ଦୁମତୀ ଅଜଙ୍କର ଘରର ସ୍ୱାମିନୀ, କଠିନ ସମସ୍ୟାରେ ଉପଦେଶକ ମନ୍ତ୍ରୀ, ଏକାନ୍ତ ସମୟରେ ପ୍ରିୟସଙ୍ଗୀ, ଲଳିତ କଳାରେ ପ୍ରିୟଶିଷ୍ୟା ଥିଲେ ବୋଲି ଉଲ୍ଲେଖ କରି

ଅଛନ୍ତି । 'କୁମାରସମ୍ଭବ'ରେ 'ପ୍ରିୟେଷୁ ସୌଭାଗ୍ୟଫଳା ହି ଚାରୁତା (୫-୧) 'ସ୍ତ୍ରୀଣାଂ ପ୍ରିୟାଲୋକଫଳୋ ହି ବେଷଃ (୭-୨୨) ଇତ୍ୟାଦି ଉକ୍ତିର୍ ଏବଂ ମେଘଦୂତର ଯକ୍ଷପତ୍ନୀଙ୍କର ବର୍ଣ୍ଣନରୁ ପତିବ୍ରତା ସ୍ତ୍ରୀ ବିଷୟରେ କାଳିଦାସଙ୍କର ଧାରଣା କିପରି ଥିଲା ଜଣାଯାଏ । ବେଶ୍ୟା ଘରେ ପଡ଼ି ରହିବା କବିଙ୍କ ହାତରେ ଇନ୍ଦୁମତୀ, ଯକ୍ଷପତ୍ନୀ, ଶକୁନ୍ତଳା, ସୀତାଙ୍କ ସଦୃଶୀ ସ୍ୱାଭିମାନିନୀ, ସୁଶୀଳା, ପ୍ରେମମୟୀ ପତିବ୍ରତାମାନଙ୍କର ଚରିତ୍ର-ଚିତ୍ରଣ କଦାପି ସମ୍ଭବପର ନୁହେଁ ।

କାଳିଦାସଙ୍କର ପ୍ରେମିକ ହୃଦୟ ଛୋଟ ଛୋଟ ପିଲାମାନଙ୍କର ସହବାସରେ ପ୍ରସନ୍ନ ହେଉଥିଲା । (ରଘୁ ୩, ୨୪) ସେ ଏକ ସ୍ଥାନରେ ଲେଖିଛନ୍ତି—ସନ୍ତାନ ଉତ୍ପନ୍ନ ହେଲେ ପତି ପତ୍ନୀଙ୍କର ପରସ୍ପର ପ୍ରେମ କମିଯାଏ ନାହିଁ ପ୍ରତ୍ୟୁତ ବଢ଼ିଥାଏ । 'ରଘୁ-ବଂଶ'ରେ (୧-୬୯) ସେ ସନ୍ତାନର ପ୍ରଶଂସା କରିବାକୁ ଯାଇ 'ତପସ୍ୟା ଓ ଦାନର ପୁଣ୍ୟ କେବଳ ପରଲୋକରେ ସୁଖ ଦିଏ କିନ୍ତୁ ବିଶୁଦ୍ଧ ବଂଶର ସନ୍ତାନ ଇହ ଓ ପରଲୋକରେ ସୁଖ ଦିଏ' ବୋଲି କହିଛନ୍ତି । ଏହାଙ୍କର କାବ୍ୟମାନଙ୍କର ଅନେକସ୍ଥାନରେ ଛୋଟ ଛୋଟ ପିଲାମାନଙ୍କର ସୁନ୍ଦର ବର୍ଣ୍ଣନା ଦେଖାଯାଏ । 'ଶିଶୁ ରଘୁ ନିଜ ଧାଈର ନିର୍ଦ୍ଦେଶ ଅନୁସାରେ ପ୍ରଣାମ କରି ପିତାଙ୍କର ଆନନ୍ଦ ବଢ଼ାଇଥିଲେ' (ରଘୁ ୩, ୨୫) ଏହି ଶ୍ଳୋକଟି ସାହିତ୍ୟ-ଦର୍ପଣକାର ସ୍ୱଭାବୋକ୍ତି ଅଳଙ୍କାରର ଉଦାହରଣ ସ୍ୱରୂପ ଦେଇଛନ୍ତି । 'ଶାକୁନ୍ତଳ'ରେ ଯେଉଁମାନଙ୍କର ଦନ୍ତକଳିକା ନୂଆଁ କରି ବାହାରି ଥାଏ, ଯେଉଁମାନେ ବିନା କାରଣରେ ହସନ୍ତି, ଯେଉଁମାନଙ୍କର କଥା ସ୍ପଷ୍ଟ ନ ହେଲେ ମଧ୍ୟ ଶୁଣିବାକୁ ଭଲ ଲାଗେ, ସେହିପରି ପିଲାମାନଙ୍କୁ କୋଳରେ ଧରି ସେମାନଙ୍କର

ଧୂଳିଧୂସରିତ ଅଙ୍ଗମାନଙ୍କ ସଂଶ୍ରବରେ ଯେଉଁମାନେ ନିଜ ଅଙ୍ଗ ମଳିନ କରନ୍ତି, ସେମାନେ ଧନ୍ୟ ! ଏହିପରି ସୁନ୍ଦର ବର୍ଣ୍ଣନା ଦେଖାଯାଏ । ଏ ନିଜ ନାଟକମାନଙ୍କରେ ଦେଖାଇଛନ୍ତି ଯେ ଦୁଷ୍ୟନ୍ତ ଓ ପୁରୁରବା ନିଜ ନିଜ ପୁଅ ବୋଲି ଜାଣି ନ ଥିଲେ ମଧ୍ୟ, ପିଲାମାନଙ୍କୁ ଦେଖିବାମାତ୍ରେ ସନ୍ତାନସ୍ନେହରେ ଉଚ୍ଛୁଳିପଡ଼ି ଥିଲେ । ଏହିପରି ବର୍ଣ୍ଣନା କରି କବି ସନ୍ତାନସ୍ନେହ ମନୁଷ୍ୟର ଏକ ନୈସର୍ଗିକ କୋମଳଭାବନା ବୋଲି ପ୍ରତିପାଦିତ କରିଅଛନ୍ତି । ମନୁଷ୍ୟର ଜୀବନରେ ଏପରି କେତେକ ଘଟଣା ଘଟେ ଯାହାଦ୍ୱାରା କରୁଣରସର ଉଦ୍ରେକ ହୁଏ । ଝିଅ ଶାଶୁ ଘରକୁ ଯିବାର ଦୃଶ୍ୟ ଅତ୍ୟନ୍ତ କାରୁଣ୍ୟୋଦ୍ଦୀପକ । କବି 'ଶାକୁନ୍ତଳ'ର ଚତୁର୍ଥ ଅଙ୍କରେ ଏହି ମର୍ମସ୍ପର୍ଶୀ ସ୍ନେହଭରା ପିତାଙ୍କର ହୃଦୟବିଦାରକ ଦୃଶ୍ୟ ଅତି ସରସଭାବରେ ଚିତ୍ରଣ କରି ଅଛନ୍ତି । କାଳିଦାସ ନିଜ ଜୀବନରେ ଏହି ଅପତ୍ୟସ୍ନେହ-ବିଷୟ ଅନୁଭବ କରି ନ ଥିଲେ କଦାପି ଏତେ ସରସଭାବରେ ଚିତ୍ରଣ କରି ପାରନ୍ତେ ନାହିଁ ।

କାଳିଦାସ ଦ୍ୱିତୀୟ ଚନ୍ଦ୍ରଗୁପ୍ତ ସଦୃଶ ଉଦାର ସମ୍ରାଟଙ୍କର ଆଶ୍ରୟରେ ଥିଲେ ଏବଂ ତାଙ୍କ ଜୀବନର ଶେଷଭାଗ ରାଜ-ଦରବାରରେ ଅତିବାହିତ ହୋଇଥିଲା । ସେତେବେଳେ ରାଜ ସଭାରେ ବାଣିମାନ କବିଙ୍କର ଦୃଷ୍ଟିରେ, ରାଜସଭାର ଅଗ୍ରବର୍ତ୍ତୀବଳୀର ଗୁଳିଚଳିଣି, ରାଜାଙ୍କର ଇଚ୍ଛା-ଅନିଚ୍ଛା, ସମସ୍ତ ଅନୁଯାୟୀ ରାଜ ସେବକମାନଙ୍କୁ ଆଦର କରି କାର୍ଯ୍ୟସାଧନ କରିବାପ୍ରଭୃତି ବିଷୟ-ଗୁଡ଼ିକ ଅତ୍ୟନ୍ତ ପରିଚିତ ଥିଲା । ଏହି ବିଷୟ ମନରେ ରଖି

'କୁମାରସମ୍ଭବ'ର ତୃତୀୟସର୍ଗରେ ଇନ୍ଦ୍ରଙ୍କର ସଭା ବର୍ଣ୍ଣନା ପଢ଼ିବାର କଥା । ଆଶ୍ରିତ ପ୍ରତି ରାଜାମାନଙ୍କର ଗୌରବ ଆଦର ନିଜର ପ୍ରୟୋଜନ ଅନୁସାରେ ଚାରିଗୁଣ ହୋଇଥାଏ (କୁମାର ୩,୧) 'ଚତୁର ଲୋକ ଉପଯୁକ୍ତ ସମୟରେ ପ୍ରଭୁଙ୍କୁ ପ୍ରାର୍ଥନା କରି କାର୍ଯ୍ୟ ସିଦ୍ଧ କରିଥାଏ ।' (କୁମାର ୬, ୧୩) ଇତ୍ୟାଦି ଉକ୍ତିମାନ କାଳିଦାସଙ୍କର ନିଜ ଅନୁଭୂତିର ସୂକ୍ଷ୍ମ ନିଦର୍ଶନ । ଭଗବାନ୍ ମହାଦେବ ବିବାହସଜ୍ଜାରେ ବରରୂପେ ଗଲାବେଳେ ନିଜ ଗଣମାନଙ୍କର ହସ୍ତସ୍ଥିତ ଖଡ଼୍ଗରେ ନିଜରୂପ ଦେଖିଲେ । ସୂର୍ଯ୍ୟ ତାଙ୍କଉପରେ ଛତ୍ର ଧାରଣ କଲେ, ବ୍ରହ୍ମା ଓ ବିଷ୍ଣୁ ତାଙ୍କର ଜୟଧ୍ୱନି କଲେ । ତାପରେ ଇନ୍ଦ୍ରାଦିଦେବତାମାନେ ଦର୍ଶନ କରିବା ଅଭିଳାଷରେ ନନ୍ଦୀଙ୍କୁ ସଙ୍କେତ ଦେଲେ ଏବଂ ସେ ସେମାନଙ୍କୁ ମହାଦେବଙ୍କ ସମ୍ମୁଖକୁ ନେଇଗଲେ । ସେମାନେ ବିନୟସହକାରେ ପ୍ରଣାମ କଲେ । ମହାଦେବ ମସ୍ତକ ଚାଳନରେ ବ୍ରହ୍ମାଙ୍କୁ, ବାକ୍ୟରେ ବିଷ୍ଣୁଙ୍କୁ, ସ୍ମିତହାସ୍ୟରେ ଇନ୍ଦ୍ରଙ୍କୁ ଏବଂ କଟାକ୍ଷପାତରେ ଅନ୍ୟାନ୍ୟ ଦେବତାମାନଙ୍କୁ ସମ୍ମାନ ପ୍ରଦର୍ଶନ କଲେ—ଏହି ବର୍ଣ୍ଣନାରେ ରାଜସଭାର ପୌର୍ବାପର୍ଯ୍ୟକ୍ରମ ଏବଂ ଯୋଗ୍ୟତାନୁସାରେ ସମ୍ମାନପ୍ରଦର୍ଶନର ଏକ ନିଖୁଣ ଚିତ୍ର ଅଙ୍କନ କରିଅଛନ୍ତି । ରାଜସଭାରେ ରହିବା ଫଳରେ କାଳିଦାସଙ୍କର ବାଣୀ ସଂଯତ, ମାର୍ଜିତ ଓ ଶିଷ୍ଟ ହେବା ଦେଖାଯାଏ । 'ବିକ୍ରମୋ-ର୍ବଶୀୟ'ରେ ଉର୍ବଶୀ ସ୍ୱର୍ଗକୁ ଫେରିଲାବେଳେ ଚିତ୍ରଲେଖା ଦ୍ୱାରା କହିପଠାଇଛନ୍ତି 'ମହାରାଜାଙ୍କର ଅନୁମତି ମିଳିଲେ ମୁଁ ପ୍ରିୟସଖୀଭଳି ଆପଣଙ୍କର କୀର୍ତ୍ତିକୁ ସ୍ୱର୍ଗକୁ ନେଇ ଯାଆନ୍ତି' । 'ଶାକୁନ୍ତଳରେ' ପ୍ରିୟମ୍ବଦା ଦୁଷ୍ୟନ୍ତଙ୍କୁ କହିଛନ୍ତି—'ମହାରାଜାଙ୍କର

ମଧୁର ସମ୍ଭାଷଣ ଫଳରେ ମୋର ଧୈର୍ଯ୍ୟ ହେଉଅଛି । ଅତଏବ ମୁଁ ଆପଣଙ୍କୁ ପଚାରିବାକୁ ସାହସ କରି ପାରୁଛି—ଆପଣ ଯେଉଁ ରାଜର୍ଷି ବଂଶକୁ ଅଳଂକୃତ କରି ଅଛନ୍ତି ? କେଉଁ ଦେଶବାସୀଙ୍କୁ ନିଜ ବିରହରେ ପର୍ଯ୍ୟାକୁଳ କରି ଅଛନ୍ତି ? କାହିଁକି ବା ନିଜର କୋମଳ ଶରୀରକୁ ତପୋବନାଗମନଜନିତ କ୍ଳେଶର ଭାଗୀ କରି ଅଛନ୍ତି ?' ଏ ସମସ୍ତ ଉକ୍ତିରୁ ତାଙ୍କର ରାଜସଭୋଚିତ ଶିଷ୍ଟାଚାର-ଜ୍ଞାନର ପରିଚୟ ମିଳେ ।

କାଳିଦାସ ଅସାଧାରଣ ପଣ୍ଡିତ ଥିଲେ ମଧ୍ୟ ଅତ୍ୟନ୍ତ ବିନୀତ ଥିଲେ । 'ମାଳବିକାଗ୍ନିମିତ୍ର' ଓ 'ବିକ୍ରମୋର୍ବଶୀୟ' ନାଟକ ତଥା 'ମେଘଦୂତ' 'କୁମାରସମ୍ଭବ' ପ୍ରଭୃତି କାବ୍ୟ ଲେଖିଲା ପରେ ଯେ କୌଣସି ଗ୍ରନ୍ଥକାରଙ୍କର ନିଜ କାବ୍ୟ ନେଇ ଅଭିମାନ ହେବା କଥା । ଏ ସମସ୍ତ କାବ୍ୟ ଅପେକ୍ଷା ନିମ୍ନସ୍ତରର ଗ୍ରନ୍ଥ ରଚନା କରି ପଣ୍ଡିତରାଜ ଜଗନ୍ନାଥ କପରି ଦର୍ପୋକ୍ତି ପ୍ରକାଶ କରି ଅଛନ୍ତି, ତାହା ସମସ୍ତେ ଭଲ କରି ଜାଣନ୍ତି । ପରନ୍ତୁ 'ଶାକୁନ୍ତଳ' ସଦୃଶ ଅଦ୍ୱିତୀୟ ନାଟକ ଓ 'ରଘୁବଂଶ' ପରି ନାନାରସସମ୍ବଳିତ ଅନୁପମ ମହାକାବ୍ୟ ପଣ୍ଡିତମାନଙ୍କର ସମ୍ମୁଖରେ ଉପସ୍ଥାପିତ କରି ମଧ୍ୟ କବି କେତେ ନମ୍ରତା ପ୍ରକାଶ କରି ଅଛନ୍ତି ! କାଳିଦାସ ବିନୀତ ହେଲେ ମଧ୍ୟ ରାଜସଭାରେ ରହି ବାହାଦୁରି କରୁଥିବା ଇତର ପଣ୍ଡିତମାନଙ୍କର ପରି ସ୍ୱାଭିମାନଶୂନ୍ୟ ନ ଥିଲେ, ନ ହେଲେ ତାଙ୍କ ମୁଖରୁ ପୂର୍ବକଥିତ 'ଇହ ନିବସତି ମେରୁଃ' ଇତ୍ୟାଦି ଉକ୍ତି କଦାପି ବାହାରି ନଥାନ୍ତା ଏବଂ ସ୍ୱାଭିମାନିନୀ ଶକୁନ୍ତଳା ଓ ସୀତାଙ୍କର ଚରିତ୍ରଚିତ୍ରଣ ଏଡ଼େ ମନୋହରଭାବେ ତାଙ୍କ କଲମରେ ହୋଇପାରି ନ ଥାନ୍ତା । ଏହିପରି ଉଦାର, ପଣ୍ଡିତ, କଳାକାର,

ପ୍ରେମିକ, ବନୋଦୀ, ଚତୁର, ପୁରୁଷରତ୍ନଙ୍କ ଚରିତ ବିଷୟରେ ମନ ଗଢ଼ା କେତେକ କଥା ଉପରେ ନିର୍ଭର କରି ଅଯଥା ରଚନା କରିବା ଏବଂ ତାହା ପରମ୍ପରାଭିମାନୀ ଲୋକମାନେ ଆଜି ପର୍ଯ୍ୟନ୍ତ ବିଶ୍ୱାସ କରିବା କେବଳ ଦୈବର ଦୁର୍ଭେଷ୍ଟିତ ନୁହେ ତ ଆଉ କଅଣ ହୋଇପାରେ ?

କାଳିଦାସଙ୍କର ଜୀବନ ପ୍ରଣାଳୀ ଓ ଦିନଚର୍ଯ୍ୟା କିପରି ଥିଲା—ଏ ବିଷୟ ଜାଣିବା ସକାଶେ କୌଣସି ବିଶ୍ୱାସଯୋଗ୍ୟ ପ୍ରମାଣ ମିଳି ନାହିଁ । ରାଜଶେଖରଙ୍କର 'କାବ୍ୟମୀମାଂସା'ରେ (୧୦ମ ଅଧ୍ୟାୟ) ଆଦର୍ଶ କବିଙ୍କର ଜୀବନ ଯାପନ ପ୍ରଣାଳୀର ବର୍ଣ୍ଣନା ଦେଖାଯାଏ । ତାହା ଅବଶ୍ୟ କାଳ୍ପନିକ, ତଥାପି ବାସ୍ତ-ବିକତାର ବିଶେଷ ଦୂରରେ ବୋଲି କୁହାଯାଇ ପାରିବ ନାହିଁ । 'କବି' ସବୁବେଳେ ପବିତ୍ର ରହିବେ । ସେହି ପବିତ୍ରତା ତିନି ପ୍ରକାର ବାଚିକ, ମାନସିକ ଓ ଶାରୀରିକ । ପ୍ରଥମ ଦୁଇ ପ୍ରକାର ପବିତ୍ରତା ଶାସ୍ତ୍ର ଅଧ୍ୟୟନ ଫଳରେ ସମ୍ପାଦିତ ହୋଇଥାଏ । ଶାରୀ-ରିକ ପବିତ୍ରତାରେ ହସ୍ତପାଦର ନଖ କର୍ତ୍ତନ, ତାମ୍ବୂଳ ସେବନ, ଶରୀରରେ ସୁଗନ୍ଧିଦ୍ରବ୍ୟ ଲେପନ, ଉତ୍ତମ ବସ୍ତ୍ର ପରିଧାନ, ମସ୍ତକରେ କୁସୁମ ଧାରଣ ପ୍ରଭୃତି ବିଷୟ ଅନ୍ତର୍ଭୁକ୍ତ । ବିଶୁଦ୍ଧ ଆଚରଣ କେବଳ ସରସ୍ୱତୀଙ୍କର ଆକର୍ଷକ । କବିଙ୍କର ଗୃହ, ସ୍ୱଚ୍ଛ, ଲିପାପୋଛା ଓ ଧୂଳି ବିରହିତ ହେବା ବାଞ୍ଛନୀୟ । ସେ ଘରେ ଛଅଟି ଋତୁର ଉପଯୋଗୀ ବିଭିନ୍ନ ସ୍ଥାନମାନ ରହିବ । ଗୃହ ପାଖରେ ବୃକ୍ଷ, ବାଟିକା, କ୍ରୀଡ଼ା ପର୍ବତ, ବାପୀ, ପୁଷ୍କରିଣୀ, ନହର, ମୟୂର ହରିଣ ପ୍ରଭୃତି ପଶୁ, ସାରସ, ଚକ୍ରବାକ, ହଂସ ଚକୋର, ଶୁକସାରିକାଦି ପକ୍ଷୀ, ଅତପତାପ ନିବାରଣ ସକାଶେ

ଯନ୍ତ୍ରଧାରାଗୃହ ଓ ଲତାମଣ୍ଡପ ପ୍ରଭୃତି ରହିବ । କାବ୍ୟରଚନାରେ ଶ୍ରାନ୍ତ ମନକୁ ଆରାମ ଦେବା ସକାଶେ ସେଠାରେ କୌଣସି ପ୍ରକାର ଗୋଳମାଳ ରହିବନାହିଁ । କବିଙ୍କର ପରିଚାରକ ଅପଭ୍ରଂଶ ଭାଷାପ୍ରବୀଣ, ଦାସୀମାନେ ମାଗଧୀଭାଷାଭିଜ୍ଞ ଏବଂ ଅନ୍ତଃପୁରର ସେବକମାନେ ପ୍ରାକୃତ ସଂସ୍କୃତଭାଷାଭିଜ୍ଞ ଏବଂ ମିତ୍ରମାନେ ସକଳ ଭାଷାରେ ପାରଙ୍ଗମ ହେବେ । କବିଙ୍କର ଲେଖକ ସର୍ବଭାଷାକୁଶଳ, ଶୀଘ୍ରବାକ୍, ସୁନ୍ଦର ଅକ୍ଷର ଲେଖକ, ନାନାବିଧ ଚିହ୍ନ ଅଭ୍ୟାସୀକ, ନାନାବିଧ ଲିପିର ଅଭିଜ୍ଞ ଏବଂ ସ୍ୱୟଂ କାବ୍ୟରଚନାରେ ନିପୁଣ ହେବା ଉଚିତ । ଏହିପରି ସର୍ବଗୁଣସମ୍ପନ୍ନ ମନୁଷ୍ୟ ସବୁବେଳେ ତାଙ୍କ ପାଖରେ ରହିବା ସମ୍ଭବପର ନ ହେଲେ କେତେକ ଗୁଣରେ ନ୍ୟୂନ ବ୍ୟକ୍ତି ମଧ୍ୟ ରହି ପାରିବେ । ସମୟର ନିୟନ୍ତ୍ରଣ ନ କଲେ କୌଣସି କାର୍ଯ୍ୟ କରି ହେବ ନାହିଁ । ଏହେତୁ କବି ଦିନ ଓ ରାତିକୁ ଏକ ଏକ ପ୍ରହରରୂପ ଆଠ ଭାଗରେ ବିଭକ୍ତ କରିବେ । ପ୍ରାତଃକାଳରେ ସନ୍ଧ୍ୟାବନ୍ଦନ ପରେ କବି ସାରସ୍ୱତସୂକ୍ତ ଜପ କରିବେ । ତା ପରେ ନିଜ ବିଦ୍ୟାଭବନରେ ପ୍ରସନ୍ନଚିତ୍ତରେ ନିଜ କାବ୍ୟରଚନାର ଉପଯୋଗୀ ଗ୍ରନ୍ଥମାନ ଏକ ପ୍ରହର ପର୍ଯ୍ୟନ୍ତ ଅଧ୍ୟୟନ କରିବେ । ଏହିପରି ଅଧ୍ୟୟନ କରିବା ଫଳରେ ପ୍ରତିଭାର ବିକାଶ ହୋଇଥାଏ । ତାର ଦ୍ୱିତୀୟ ପ୍ରହରରେ କାବ୍ୟରଚନା କରିବେ । ତୃତୀୟ ପ୍ରହରରେ ସ୍ନାନ କରି ଭୋଜନ କରିବେ । ଭୋଜନ ପରେ ମିତ୍ରମାନଙ୍କ ସହିତ ସାହିତ୍ୟଚର୍ଚ୍ଚା, ସମସ୍ୟାପୂରଣ ଓ କାବ୍ୟରଚନାର ବିବିଧ ଅଙ୍ଗର ଚର୍ଚ୍ଚା କରିବେ । ଚତୁର୍ଥ ପ୍ରହରରେ ନିଜ ରଚିତ କାବ୍ୟର ପରୀକ୍ଷା ନିଜେ କରିବେ ବା ମିତ୍ରମାନଙ୍କଦ୍ୱାରା କରାଇବେ । ରଚନା ସ୍ରୋତରେ ଭାସି କବି ନିଜ ଗୁଣ ଦୋଷ ବିବେଚନା କରିବାକୁ

ନିଜ ବିବେକ ଖଟାଇ ପାରନ୍ତି ନାହିଁ । ଏ ହେତୁ ପରୀକ୍ଷା ଅବଶ୍ୟକ ହୁଏ । ସେ ସମୟରେ ଅନାବଶ୍ୟକ ବିଷୟ ବାଦଦେବେ ଯାହା ସରସ, ତାକୁ ରଖିବେ, କିଛି ଅସଂଗତ ଥିଲେ, ତାକୁ ସଂଶୋଧନ କରିବେ, କୌଣସି ଅଭାବ ଥିଲେ, ତାହା ପୂରଣ କରିବେ । ଯାହାର ପରୀକ୍ଷା ହୋଇ ଯାଇଛି, ସେ ସମସ୍ତ ରାତିରେ ସୁନ୍ଦର ଅକ୍ଷରରେ ଲେଖି ରଖିବେ । ଦ୍ୱିତୀୟ ଓ ତୃତୀୟ ପ୍ରହରରେ ସୁଖରେ ନିଦ୍ରା କରିବେ । ଗାଢ଼ ନିଦ୍ରା ହେଲେ ସ୍ୱାସ୍ଥ୍ୟ ଭଲ ରହେ । ଚତୁର୍ଥ ପ୍ରହରରେ ଶଯ୍ୟା ତ୍ୟାଗ କରିବେ । କାରଣ ବ୍ରାହ୍ମମୁହୂର୍ତ୍ତରେ ମନ ପ୍ରସନ୍ନ ରହେ ଓ ଭିନ୍ନ ଭିନ୍ନ ବିଷୟରେ ଆଖି ଆଗରେ ଉପସ୍ଥିତ ହୁଏ ।” ରାଜଶେଖରଙ୍କର ଏହି ବର୍ଣ୍ଣନାରେ ଅବଶ୍ୟ କେତେକ ସ୍ଥଳରେ ଅତିଶୟୋକ୍ତି ରହିଛି, ତଥାପି ବିକ୍ରମାଦିତ୍ୟଙ୍କ ସଦୃଶ ଦାନଶୂର ସାର୍ବଭୌମ ସମ୍ରାଟଙ୍କର ଆଶ୍ରୟ ପାଇବା ସୌଭାଗ୍ୟ ଲାଭ କରିଥିବା କବି କାଳିଦାସଙ୍କର ଦିନଚର୍ଯ୍ୟା ଉପରଲିଖିତ ରୀତିରେ ଥିଲା—ଏଥିରେ କିଛି ହେଲେ ଅସମ୍ଭବ ଦେଖାଯାଏ ନାହିଁ ।

କାଳିଦାସଙ୍କର ପରମାୟୁ କେତେ ଥିଲା—ଏ ବିଷୟରେ ନିଶ୍ଚିତରୂପେ କିଛି ସ୍ଥିର କରିହେଉ ନାହିଁ । ଅନୁମାନ ବଳରେ ହିଁ ଯାହା କିଛି ନିରୂପଣ କରିବାକୁ ହେବ । କାଳିଦାସଙ୍କର କାବ୍ୟମଧ୍ୟରେ ଋତୁସଂହାର ଓ ନାଟକରେ ‘ମାଳବିକାଗ୍ନିମିତ୍ର’ ସର୍ବ ପ୍ରଥମ ରଚନା ଓ ‘ରଘୁବଂଶ’ର ସର୍ବଶେଷରଚନା ଅଷ୍ଟାଦଶ ସର୍ଗରେ ଛଅବର୍ଷ ବୟସରେ ସିଂହାସନାରୂଢ଼ ସୁଦର୍ଶନନାମକ ବାଳକ ରାଜାଙ୍କର ବର୍ଣ୍ଣନା ୧୫ଟି ଶ୍ଳୋକରେ ସୁନ୍ଦର ଭାବରେ କରି ଅଛନ୍ତି । ‘ରଘୁବଂଶ’ର ଅନ୍ତିମ ରାଜାମାନଙ୍କର ଅନୁକ୍ରମଣୀ

ବିଷ୍ଣୁପୁରାଣ ବର୍ଣ୍ଣିତ ବଂଶାବଳୀ ସହିତ ବେଶୀ ଖାପ ଖାଏ । କିନ୍ତୁ ବିଷ୍ଣୁପୁରାଣରେ ବା ଅନ୍ୟ କୌଣସି ପୁରାଣରେ ସୁଦର୍ଶନ ବାଲ୍ୟାବସ୍ଥାରେ ସିଂହାସନାରୂଢ଼ ହେବାର ଉଲ୍ଲେଖ ଦେଖାଯାଏ ନାହିଁ । ଏଥିରୁ ଅନୁମାନ କରାଯାଏ କି ସେ ବିଷୟ କବି ପ୍ରତ୍ୟକ୍ଷରେ ଦେଖି ତାହା ଲିପିବଦ୍ଧ କରି ଅଛନ୍ତି ।

ଆମେ ଆଗରୁ କହି ରଖିଛୁ ଯେ ବାକାଟକ ନୃପତି ଦ୍ୱିତୀୟ ରୁଦ୍ରସେନଙ୍କର ଯୁବାବସ୍ଥାରେ ମୃତ୍ୟୁ ହେଲା ପରେ, ତାଙ୍କର ନାବାଳକ ପୁତ୍ର ଦିବାକର ସେନ ସିଂହାସନାରୂଢ଼ ହୋଇଥିଲେ । ସେ ସମୟରେ ତାଙ୍କର ବୟସ ୫ ବା ୬ ବର୍ଷରୁ ଅଧିକ ନ ଥିଲା, କାରଣ ତାଙ୍କର ମା ପ୍ରଭାବତୀ ଗୁପ୍ତା ତାଙ୍କନାମରେ ଅନ୍ତ କମରେ ୧୩ ବର୍ଷ ରାଜ୍ୟ ଶାସନ କରିଥିଲେ । ଏ ସମୟରେ ଦ୍ୱିତୀୟ ଚନ୍ଦ୍ରଗୁପ୍ତ ନିଜ ପୁତ୍ରିକାକୁ ରାଜ୍ୟଶାସନରେ ସାହାଯ୍ୟ କରିବାକୁ ବିଦର୍ଭକୁ ଏକ ବିଶ୍ୱସନୀୟ ଅଧିକାରୀ ପଠାଇଥିଲେ । କାଳିଦାସ ସମ୍ଭବତଃ ଏହି ବିଶ୍ୱସନୀୟ ଅଧିକାରୀ ରୂପେ ଯାଇ ଥିଲେ—ଏହି ଅନୁମାନ ମଧ୍ୟ ଆଗରୁ କରାଯାଇ ଅଛି । ସେ ସମୟରେ ବିଦର୍ଭରେ ବାଳକ ରାଜାଙ୍କର ଯେଉଁ ରାଜ୍ୟଶାସନ ଦୃଶ୍ୟ କବି ଦେଖିଥିଲେ, ସେହି ଦୃଶ୍ୟ କବିଙ୍କ ବାଳକ ସୁଦର୍ଶନରାଜାଙ୍କର ତାଦୃଶ ବର୍ଣ୍ଣନାର ବିଷୟବସ୍ତୁ ଯୋଗାଇଥିଲା । ଦିବାକରସେନ ସାବାଳକ ହେବାର ଅଳ୍ପ ସମୟ ପରେ ମୃତ୍ୟୁ ମୁଖରେ ପତିତ ହୋଇ ଥିଲେ । ତା ପରେ ତାଙ୍କର ସାନ ଭାଇ ଦାମୋଦର ସେନ ବା ଦ୍ୱିତୀୟ ପ୍ରବରସେନ ପ୍ରାୟ ୩୦ ବର୍ଷ ରାଜତ୍ୱ କରି ଥିଲେ । ଏହା ତାଙ୍କର ତାମ୍ରପତ୍ରର ଉଲ୍ଲେଖମାନଙ୍କରୁ ଜଣାଯାଏ । ଏହି ପ୍ରବରସେନ ସିଂହାସନାରୂଢ଼ ହେବା ଅଳ୍ପ ସମୟ ପରେ

'ସେତୁବନ୍ଧ' ନାମକ ପ୍ରାକୃତ କାବ୍ୟର ରଚନା ଆରମ୍ଭ କରିଥିଲେ । ରଚନାରେ ନାନା ପ୍ରକାର ବାଧା ବିଘ୍ନ ଘଟିଥିଲା । ତାହା ସେ ନିଜେ ଏକ ଗାଥାରେ (ସେତୁ ୧,୯୬ ରେ) ପ୍ରକାଶ କରି ଅଛନ୍ତି । ସେ ସମୟରେ କାବ୍ୟ ରଚନାରେ କାଳିଦାସ ତାଙ୍କୁ ବିଶେଷ ସାହାଯ୍ୟ କରିଥିଲେ, ଯାହା ଫଳରେ ସେତୁବନ୍ଧ କାଳିଦାସଙ୍କର ରଚିତ ବୋଲି ପ୍ରବାଦ ହୋଇଅଛି । 'ମାଳବିକାଗ୍ନିମିତ୍ର' ପ୍ରାୟ ଖ୍ରୀଷ୍ଟାବ୍ଦ ୩୯୫ ସାଲରେ ରଙ୍ଗମଞ୍ଚରେ ଅଭିନୀତ ହୋଇଥିଲାବୋଲି ଆମେ ଆଗରେ କହିଛୁଁ । ସେ ସମୟରେ କାଳିଦାସ ତରୁଣ ଅର୍ଥାତ୍ ୨୫ ବର୍ଷ ବୟସ୍କ ହୋଇଥିବେ । ଦ୍ୱିତୀୟ ପ୍ରବରସେନ ଖ୍ରୀଷ୍ଟାବ୍ଦ ୪୨୦ ସାଲ୍ ଆଖପାଖ ସମୟରେ ସିଂହାସନାରୂଢ଼ ହୋଇ ଥିଲେ—ଏହା ବିବିଧ ପ୍ରମାଣ ଦ୍ୱାରା ସ୍ଥିର ହୋଇଅଛି । ଏ ସମୟରେ କାଳିଦାସଙ୍କର ବୟସ ୫୦ ବର୍ଷରୁ କମ ହୋଇ ନ ଥିବ । ତା ପରେ ସେତୁବନ୍ଧର ରଚନା ହୋଇଥିବ । ଏ ହେତୁ ମୃତ୍ୟୁ-ସମୟକୁ କାଳିଦାସଙ୍କର ବୟସ ୪୦ ବର୍ଷରୁ କମ୍ ହୋଇ ନ ଥିବ । ସଂସ୍କୃତ ଲଳିତ ସାହିତ୍ୟରେ କାଳିଦାସଙ୍କ ସମାନ ଗ୍ରନ୍ଥ ରଚନା ରାଜଶେଖରଙ୍କୁ ଛାଡ଼ି ଦେଲେ ଆଉ କୌଣସି କବି କରି ନାହାନ୍ତି । ଏ ହେତୁ କାଳିଦାସଙ୍କର ଆୟୁଃକାଳ ସମ୍ବନ୍ଧରେ ଉପର ଲିଖିତ ଅନୁମାନ ଅସଙ୍ଗତ ଦେଖାଯାଏ ନାହିଁ ।



# ୪—କାଳିଦାସଙ୍କର କାବ୍ୟ

**'क इह रघुकारे न रमते ।' —सुभाषित**

(ରଘୁବଂଶକାର କାଳିଦାସଙ୍କଠାରେ କାର ମନ ରଞ୍ଜିତ ନ ହେବ ?)

କୌଣସି ସର୍ବୋତ୍ତମ ଗ୍ରନ୍ଥର ଲେଖକଙ୍କର ନାମ ଥରେ ପ୍ରସିଦ୍ଧ ହୋଇଗଲେ, ତାଙ୍କ ପରେ ତାଙ୍କ ନାମରେ ଅନେକ ଗ୍ରନ୍ଥ ପ୍ରକାଶ ପାଇଥାଏ । ନିଜେ ପ୍ରସିଦ୍ଧି ଲାଭ କରିବାଅପେକ୍ଷା, ତାଙ୍କ ପ୍ରଣୀତ ଗ୍ରନ୍ଥର ଆଦର ଓ ପ୍ରଚାର ଅଧିକ ହେଉ—ଏହା ପ୍ରାଚୀନ ଗ୍ରନ୍ଥକାରମାନଙ୍କର ଅଭିପ୍ରେତ ଥିଲା । ଫଳରେ ଅତୀବ ନିମ୍ନସ୍ତରର ଗ୍ରନ୍ଥ ମଧ୍ୟ ପ୍ରସିଦ୍ଧଗ୍ରନ୍ଥକାରଙ୍କର ନାମରେ ପ୍ରଚଳିତ କରାଯାଉଥିଲା । ସ୍ଥଳ ବିଶେଷରେ ଏକନାମରେ ଅନେକ ଗ୍ରନ୍ଥକାର ମଧ୍ୟ ଭିନ୍ନ ଭିନ୍ନ ସମୟରେ ଜାତ ହେଉଥିଲେ । ସମୟର ପ୍ରଖର ପ୍ରଭାବରେ ତାଙ୍କର ବ୍ୟକ୍ତିଗତ ଭେଦ ନଷ୍ଟ ହୋଇଯାଉ ଥିଲା ଏବଂ ସେମାନଙ୍କ ମଧ୍ୟରୁ ଏକ ପ୍ରସିଦ୍ଧ ବ୍ୟକ୍ତିବିଶେଷରେ ଅନ୍ୟବ୍ୟକ୍ତିମାନେ ଲୀନ ହୋଇ ଯାଉଥିଲେ । ସମ୍ଭବତଃ କାଳିଦାସଙ୍କ ବିଷୟରେ ମଧ୍ୟ ଏହାହିଁ ଘଟିଅଛି । ଅଫ୍ରେକ୍ଟ ସାହେବ ନିଜ 'ବୃହତ୍ ସଂସ୍କୃତଗ୍ରନ୍ଥ ସୂଚୀ'ରେ କାଳିଦାସଙ୍କ ନାମରେ ୩୦ ରୁ ୩୫ଟି ଗ୍ରନ୍ଥ ନିର୍ଦ୍ଦେଶ କରି ଅଛନ୍ତି । ସେମାନଙ୍କ ମଧ୍ୟରେ କାବ୍ୟ-ନାଟକ ଛଡ଼ା ଜ୍ୟୋତିଷ, ରତ୍ନପରୀକ୍ଷା, ଦେବତାସ୍ତୁତିପ୍ରଭୃତି ବିଭିନ୍ନ ବିଷୟକ ଗ୍ରନ୍ଥମାନ ରହିଛି । ସେ ମଧ୍ୟରୁ ବହୁତ ଗ୍ରନ୍ଥ

କାଳିଦାସଙ୍କ ନାମରେ ପ୍ରଚଳିତ ହୋଇ ଅଛି ଅଥବା କାଳିଦାସ ନାମଧାରୀ ଅନ୍ୟ କୌଣସି ଗ୍ରନ୍ଥକାରମାନଙ୍କଦ୍ୱାରା କାଳିଦାସଙ୍କ ବହୁତ ସମୟପରେ ରଚିତ ହୋଇଅଛି । ଉଦାହରଣସ୍ୱରୂପ ନଳୋଦୟ କାବ୍ୟ କିଆଯାଇପାରେ । କବି ଏହି କାବ୍ୟରେ ଯମକ ଅନୁପ୍ରାସପ୍ରଭୃତି ଅଳଙ୍କାରମାନଙ୍କ ଉପଯୋଗ ଏତେ ପରିମାଣରେ କରି ଅଛନ୍ତି ଯାହା ଫଳରେ ଅନେକ ସ୍ଥଳରେ ଅର୍ଥବୋଧ କଠିନ ହେଉଅଛି । 'ରଘୁବଂଶ' ପ୍ରଭୃତି କାବ୍ୟମାନଙ୍କରେ କାଳିଦାସ ଶବ୍ଦାଳଙ୍କାର ପ୍ରଭୃତିର ପ୍ରୟୋଗରେ ବିଶେଷ ଉତ୍ସୁକ ଥିଲାପରି ଦେଖାଯାଏ ନାହିଁ । ଏ ହେତୁ ଅନେକ ପଣ୍ଡିତ ସ୍ଥିର କରିଥିଲେ ତାହା କାଳିଦାସଙ୍କର ରଚନା ନୁହେଁ । କିନ୍ତୁ ବର୍ତ୍ତମାନ ଅନେକ ଗବେଷଣା ପରେ ତାହା ଖ୍ରୀଷ୍ଟୀୟ ଦଶମଶତାବ୍ଦୀରେ ଉତ୍ପନ୍ନ ବାସୁଦେବ ନାମକ କବିଙ୍କର ରଚନା ବୋଲି ପ୍ରମାଣିତ ହୋଇ ସାରିଲାଣି । * ସେ ସମସ୍ତ କାବ୍ୟର ଚର୍ଚ୍ଚା କରିବା ଆମର ଲକ୍ଷ୍ୟ ନୁହେଁ ।

'ଋତୁସଂହାର', 'ମାଳବିକାଗ୍ନିମିତ୍ର', 'କୁମାରସମ୍ଭବ', 'ବିକ୍ରମୋର୍ବଶୀୟ' 'ମେଘଦୂତ' 'କୁନ୍ତଳେଶ୍ୱରଦୌତ୍ୟ' 'ଶାକୁନ୍ତଳ' ଓ 'ରଘୁବଂଶ' ଏହି ଆଠଟି ଗ୍ରନ୍ଥ କାଳିଦାସଙ୍କଦ୍ୱାରା ପ୍ରଣୀତ ଏହା ଛଡ଼ା 'ସେତୁବନ୍ଧ' ଅଥବା 'ରାବଣବଧ' ନାମକ ପ୍ରାକୃତକାବ୍ୟ ଯାହା ପ୍ରବରସେନଙ୍କ ନାମରେ ପ୍ରସିଦ୍ଧ, ତାର ରଚନାରେ କାଳି-ଦାସଙ୍କର ହାତ ଥିଲା ବୋଲି ଆମେ ଆଗରୁ ଅନୁମାନ କରିଅଛୁଁ ।

---

* **A. S. R. Aiyar : Authorship of the Nalodaya. J. R. A. S. for 1925 p. 263 f.**

'କୁନ୍ତଳେଶ୍ୱର ଦୌତ୍ୟ'କୁ ଛାଡ଼ି ଅନ୍ୟ ସମସ୍ତ କାବ୍ୟ ନାଟକ ବର୍ତ୍ତମାନ ମିଳୁଅଛି । 'କୁନ୍ତଳେଶ୍ୱରଦୌତ୍ୟ' ମଧ୍ୟ କାଳିଦାସଙ୍କର ରଚନା ବୋଲି କ୍ଷେମେନ୍ଦ୍ର ନିଜ 'ଔଚିତ୍ୟବିଚାରଚର୍ଚ୍ଚା'ରେ (୧୩୯ ପୃଷ୍ଠାରେ) କହି ଅଛନ୍ତି । ରାଜଶେଖରକୃତ 'କାବ୍ୟମୀମାଂସା' ଓ ଭୋଜଙ୍କର 'ଶୃଙ୍ଗାର ପ୍ରକାଶ' ନାମକ ଗ୍ରନ୍ଥରେ 'କୁନ୍ତଳେଶ୍ୱର-ଦୌତ୍ୟ'ରୁ କେତେକ ଅଂଶ ଉଦ୍ଧୃତ କରି ଯାଇ ଅଛି । ଅବଶିଷ୍ଟ ଗ୍ରନ୍ଥମାନଙ୍କ ମଧ୍ୟରେ 'ଋତୁସଂହାର' 'କୁମାରସମ୍ଭବ' 'ମେଘଦୂତ' ଓ 'ରଘୁବଂଶ' କାବ୍ୟ, 'ମାଳବିକାଗ୍ନିମିତ୍ର', 'ବିକ୍ରମୋର୍ବଶୀୟ' ଓ 'ଅଭିଜ୍ଞାନଶାକୁନ୍ତଳ' ନାଟକ । ଏହି ଆଠୋଟି ଗ୍ରନ୍ଥ ଉପର-ନିର୍ଦ୍ଦିଷ୍ଟ କ୍ରମଅନୁସାରେ ସମ୍ଭବତଃ ରଚିତ ହୋଇଅଛି । ଏହି ପରିଚ୍ଛେଦରେ କାଳିଦାସଙ୍କର କାବ୍ୟମାନଙ୍କର ଏବଂ ଆଗାମୀ ପରିଚ୍ଛେଦରେ ନାଟକମାନଙ୍କର ସମୀକ୍ଷଣ କରିବୁଁ ।

କାଳିଦାସଙ୍କର କାବ୍ୟମାନଙ୍କର ସମୀକ୍ଷା କରିବା ପୂର୍ବରୁ ପ୍ରଥମେ ତାଙ୍କର ପୂର୍ବବର୍ତ୍ତୀ କବିମାନଙ୍କର ଗ୍ରନ୍ଥମାନଙ୍କର ସିଂହାବ-ଲୋକନ ନ୍ୟାୟରେ ସମାନ୍ୟ ସମୀକ୍ଷଣ କରିବା ଉଚିତ । ଯଦ୍ୟପି ଅତ୍ୟନ୍ତ ପ୍ରାଚୀନ ସଂସ୍କୃତ କାବ୍ୟ ଗ୍ରନ୍ଥମାନ ବର୍ତ୍ତମାନ ଲୁପ୍ତ ହୋଇସାରି ଅଛି, ତଥାପି କାବ୍ୟକଳାର ଉଦ୍ଭବ ବୈଦିକ-କାଳରେ ଭଲରୂପେ ହୋଇଥିଲା—ଏହା ନିଶ୍ଚିତ । ଯେଉଁମାନେ ଋଗ୍‌ବେଦରେ ନାନା ଅଳଙ୍କାରରେ ଉଷାଦେବୀଙ୍କର ସୁନ୍ଦରବର୍ଣ୍ଣନା କରିଛନ୍ତି, ଯେଉଁମାନେ ବରୁଣଦେବତାଙ୍କର ସୂକ୍ତମାନଙ୍କରେ ନିଜ ହୃଦୟର ଭାବ ବ୍ୟକ୍ତ କରି କ୍ଷମାଯାଚନା କରି ଅଛନ୍ତି, ଯେଉଁ-ମାନଙ୍କର ଦାନସ୍ତୁତି ସୂକ୍ତର ଯୁଦ୍ଧ ବର୍ଣ୍ଣନା ବର୍ତ୍ତମାନ ସୁଦ୍ଧା ଋଗ୍‌ବେଦର ଶ୍ରୀବୃଦ୍ଧି କରୁଅଛି, ସେହି ଆଦିଋଷିମାନଙ୍କୁ ଶୃଙ୍ଗାର,

ଥିଲା, କାରଣ ଶରଯାସ୍ପକ କାବ୍ୟ ରଚନା କରିବା ଅଜ୍ଞାତ ଥିଲା ? କିନ୍ତୁ ଉପରଲିଖିତମତେ ସେମାନଙ୍କ ରଚିତ କାବ୍ୟମାନ ବର୍ତ୍ତମାନ ନାମ ମାତ୍ରରେ ମୁଦ୍ରା ବନ୍ଦ୍ୟମାନ ନାହିଁ । ବର୍ତ୍ତମାନ କାବ୍ୟମାନଙ୍କ ମଧ୍ୟରୁ ସବୁଠାରୁ ପ୍ରାଚୀନ କାବ୍ୟ ହେଉଛି ରାମାୟଣ । ରାମାୟଣରେ ବର୍ଣ୍ଣିତ ରାମଚନ୍ଦ୍ରଙ୍କର ପିତୃଭକ୍ତି, ଭରତଙ୍କର ଭ୍ରାତୃଭକ୍ତି ଘଟଣାମାନ ଅତ୍ୟନ୍ତ ହୃଦୟସ୍ପର୍ଶୀ । କବି ସେ ସମସ୍ତ ପ୍ରସଙ୍ଗମାନ ଅତି ଦକ୍ଷତାର ସହିତ ବର୍ଣ୍ଣନା କରି ଅଛନ୍ତି । ରାମାୟଣର ବିବିଧ କଳ୍ପନା, ଶବ୍ଦ ପ୍ରୟୋଗ, ଓ ଉପମା ପ୍ରଭୃତି ଅଳଙ୍କାରରେ ଅଶ୍ୱଘୋଷ, କାଳିଦାସ ପ୍ରଭୃତି କବିମାନେ ନିଜ ନିଜ କାବ୍ୟମାନ ଅଳଂକୃତ କରି ଅଛନ୍ତି । ଉଦାହରଣ ସ୍ୱରୂପ ଅଶ୍ୱଘୋଷଙ୍କର ବୁଦ୍ଧଚରିତ ନିଆଯାଉ । ଏହି କାବ୍ୟର ବୁଦ୍ଧଙ୍କର ଅନ୍ତଃପୁରରେ ନିଦ୍ରିତ ସ୍ତ୍ରୀମାନଙ୍କର ବର୍ଣ୍ଣନା, ରାମାୟଣର ସୁନ୍ଦରକାଣ୍ଡରେ ବର୍ଣ୍ଣିତ, ହନୁମାନଙ୍କ ଦ୍ୱାରା ପ୍ରତ୍ୟକ୍ଷୀକୃତ ରାବଣର ଅନ୍ତଃପୁରସ୍ତ୍ରୀମାନଙ୍କର ବର୍ଣ୍ଣନା ସହିତ ଖାପ ଖାଉଅଛି । କବି ଏହା କଳ୍ପନା ରାମାୟଣରୁ ନେଇ ଅଛନ୍ତି । ଅନ୍ୟାନ୍ୟ ମହାକାବ୍ୟ ପରି ଏଥିରେ ମଧ୍ୟ ଭିନ୍ନ ଛନ୍ଦର ସମାବେଶ ଦେଖାଯାଏ ।

କିନ୍ତୁ ରାମାୟଣ କେତେ ଜ୍ୟୋତିଦେଶ ହେଲେ ମଧ୍ୟ ଏକ ଧାର୍ମିକ ଭାବନାରେ ରଚିତ ମହାକାବ୍ୟ । ଲୌକିକ ଦୃଷ୍ଟିରେ ରଚିତ ପ୍ରାଚୀନ କାବ୍ୟମାନଙ୍କର ଉଲ୍ଲେଖ କେଉଁଠାରେ ମିଳୁଅଛି କି ନାହିଁ ଦେଖିବା କଥା । 'ପତଞ୍ଜଳିକୃତ ବ୍ୟାକରଣ ମହାଭାଷ୍ୟ'ରେ ଉଦାହରଣସ୍ୱରୂପ କେତେକ କାବ୍ୟର ଶ୍ଳୋକଖଣ୍ଡମାନ ସ୍ଥାନେ ସ୍ଥାନେ ଉଦ୍ଧୃତ ହେବା ଦେଖାଯାଏ । ଖ୍ରୀଷ୍ଟପୂର୍ବ ୧୫୦ ବର୍ଷ ପୂର୍ବେ ପତଞ୍ଜଳି ଥିଲେ—ଏହା ନିଶ୍ଚିତ ଏବଂ ଏହା

କାରଣରୁ ଏହି ଉଦାହରଣମାନଙ୍କର ମହତ୍ତ୍ୱ ମଧ୍ୟ ବେଶୀ । 'ବର-ତନୁ ସମ୍ବଦନ୍ତି କୁକ୍କୁଟାଃ' 'ପ୍ରିୟାଂ ମୟୂରଃ ପ୍ରତିନର୍ତ୍ତୟତି', 'ପ୍ରଥମେ ଉଦ୍ଧୃତା ମତିମତା ଧୃଥିବୀ' ଇତ୍ୟାଦି ଉଦାହରଣ ମହାଭାଷ୍ୟରେ ପ୍ରସଙ୍ଗବଶତଃ ସ୍ଥାନ ପାଇଅଛି । ଏ ସମସ୍ତ ଉଦାହରଣରୁ ଜଣାଯାଏ ମହର୍ଷିଙ୍କ ସମୟରେ ବିବିଧବୃତ୍ତ ନିବଦ୍ଧ, ଅଳଙ୍କାରଯୁକ୍ତ ଅନେକ କାବ୍ୟ ବ୍ୟବହାରରେ ଥିଲା । ସେ ସମୟରେ ମଧ୍ୟ କାବ୍ୟ ନିର୍ମାଣ କଳା ପ୍ରଚଳିତ ଥିଲା—ଏହା ପ୍ରାଚୀନ ଶିଳାଲେଖମାନଙ୍କରୁ ପ୍ରମାଣିତ ହୁଏ । ଉଦାହରଣ ସ୍ୱରୂପ କାଠିଆବାଡ଼ର ଜୁନାଗଡ଼ ନାମକ ନଗର ସମୀପରେ ଛତ୍ରପରୁଦ୍ରଦମନଙ୍କର ଶିଳାଲେଖ । ଏହି ଶିଳାଲେଖରୁ ଜଣାଯାଏ-ଯେ ଯେଉଁ ଶିଳାଲେଖ ଲେଖିଥିଲେ, ସେ କାବ୍ୟକଳା ଭଲରୂପେ ଜାଣିଥିଲେ ।

ଯଦ୍ୟପି ଏହି ଲେଖଟି ଆଳଙ୍କାରିକ ଭାଷା ଓ କାବ୍ୟ-ଦୃଷ୍ଟିରେ ଲକ୍ଷିତ, ତଥାପି ଏହା ଗଦ୍ୟମୟ । କାଳିଦାସଙ୍କୁ ଯେଉଁ ସବୁ ଗ୍ରନ୍ଥରୁ ପ୍ରେରଣା ମିଳିଥିଲା, ସେ ସମସ୍ତ କରାଳକାଳଗର୍ଭରେ ବିଲୀନ ହୋଇଅଛି । ଭାଗ୍ୟବଶତଃ ସେ ସମସ୍ତ ଗ୍ରନ୍ଥମାନଙ୍କ ମଧ୍ୟରୁ କବି ଅଶ୍ୱଘୋଷଙ୍କର ଗ୍ରନ୍ଥମାନ ବର୍ତ୍ତମାନ ମିଳୁଅଛି । ଏହି ଗ୍ରନ୍ଥମାନଙ୍କରୁ ତାତ୍କାଳିକ କାବ୍ୟରଚନାର ସ୍ୱରୂପ କଳ୍ପନା କରାଯାଇପାରେ । ଅଶ୍ୱଘୋଷ ଅଯୋଧ୍ୟାବାସୀ ବ୍ରାହ୍ମଣ ଥିଲେ । ତାଙ୍କ ରଚିତ କାବ୍ୟମାନଙ୍କରୁ ପରିଚୟ ମିଳେ—ସେ ଉପନିଷଦ୍, ଭଗବଦ୍‌ଗୀତା, ସାଂଖ୍ୟପ୍ରଭୃତି ଦର୍ଶନମାନଙ୍କରେ ଅସାଧାରଣ ପଣ୍ଡିତ ଥିଲେ । କେତେ ସମୟପରେ ସେ ବୌଦ୍ଧ ଧର୍ମ ଅବଲମ୍ବନ କଲେ । ଅଶ୍ୱଘୋଷଙ୍କ ରଚିତ 'ସୌନ୍ଦରନନ୍ଦ' ଓ

'ବୁଦ୍ଧଚରିତ' ଏହି ଦୁଇଟି କାବ୍ୟ ସଂସ୍କୃତ ସାହିତ୍ୟ ଜଗତରେ ତାଙ୍କର ନାମ ଅମର କରି ରଖିବ । 'ସୌନ୍ଦରନନ୍ଦ'ରେ ଅଠରଟି ସର୍ଗ ଅଛି । ଏହି ଅଠର ସର୍ଗରେ ଭଗବାନ୍ ବୁଦ୍ଧ ନିଜ ସାବତ ଭାଇଙ୍କୁ ନିଜ ଧର୍ମରେ ଦୀକ୍ଷିତ କରିବା ବିଷୟ ବର୍ଣ୍ଣିତ ହୋଇଅଛି । 'ବୁଦ୍ଧଚରିତ'ରେ ୧୭ଟି ସର୍ଗ ଅଛି । ଏଥିରୁ ପ୍ରଥମ ୧୩ଟି ସର୍ଗ ଅଶ୍ୱଘୋଷକୃତ ଏବଂ ଶେଷ ଚାରି ସର୍ଗ ଅମୃତାନନ୍ଦ ନାମକ କବିଙ୍କଦ୍ୱାରା ରଚିତ । ପ୍ରଥମ ୧୩ ସର୍ଗରେ ବୁଦ୍ଧଙ୍କ ଜନ୍ମଠାରୁ ମାର ବିଜୟପର୍ଯ୍ୟନ୍ତ ଘଟଣାମାନ ବର୍ଣ୍ଣିତ ହୋଇଅଛି ।

'ସୌନ୍ଦରନନ୍ଦ' କାବ୍ୟର ଶେଷରେ କବି ସ୍ପଷ୍ଟଭାବେ ଲେଖିଛନ୍ତି ଯେ ସେ କାବ୍ୟ ନିଜ ପ୍ରସିଦ୍ଧି ପାଇଁ ଲେଖି ନାହାନ୍ତି । କିନ୍ତୁ ସଂସାରିକ ବିଷୟୋପଭୋଗରେ ନିମଗ୍ନ ଜନତାର ଧ୍ୟାନ ବୌଦ୍ଧଧର୍ମ ପ୍ରବର୍ତ୍ତିତ ମୋକ୍ଷ ପ୍ରତି ଆକର୍ଷଣ କରିବା ଉଦ୍ଦେଶ୍ୟରେ ଲେଖିଛନ୍ତି । ଅଶ୍ୱଘୋଷ ନିଜେ ଏକ ପ୍ରତିଭାଶାଳୀ କବି ଥିଲେ ଏବଂ ରାମାୟଣ ପ୍ରଭୃତି ଗ୍ରନ୍ଥମାନ ଅନୁଶୀଳନ କରିବା ଫଳରେ ନିଜ କାବ୍ୟମାନ ରୁଚିର ଓ କାବ୍ୟ ଗୁଣମାନଙ୍କରେ ପରିପୂର୍ଣ୍ଣ କରିଥିଲେ । ଏହାଙ୍କର କବିତା ସୁନ୍ଦର ଓ ଅତ୍ୟାକାମନୋହର । ବୁଦ୍ଧ ଓ ନନ୍ଦଙ୍କ ଚରିତ୍ରରୁ ସଂଗୃହୀତ ପ୍ରସଙ୍ଗମାନଙ୍କରେ ବର୍ଣ୍ଣନା ଅଳଙ୍କାର ମଣ୍ଡିତ ଭାଷାରେ କରାଯାଇଛି । ନନ୍ଦଙ୍କ ଭିକ୍ଷୁ ରୂପେ ପରିଣତ କାଳପରେ ତାଙ୍କର ହୃଦୟେଶ୍ୱରୀ ସୁନ୍ଦରୀଙ୍କର ବିଳାପ, ଗୌତମ ଉଦ୍ୟାନକୁ ଯିବା ସମୟରେ ପୁରଲଳନାମାନଙ୍କର ବିଭ୍ରମ ଗୌତମ ଗୃହ ତ୍ୟାଗକଲା ରାତ୍ରିରେ ବର୍ଣ୍ଣିତ ସ୍ତ୍ରୀମାନଙ୍କର ବୀଭତ୍ସରୂପ, ଗୌତମଙ୍କ ବନରେ ଛାଡ଼ି ଏକାକୀ ଛନ୍ଦକଙ୍କର କପିଳବସ୍ତୁ ପ୍ରତ୍ୟାବର୍ତ୍ତନ, ଗୌତମଙ୍କର ବିୟୋଗରେ ପୁରବାସୀମାନଙ୍କର

ବିଳାସ ଇତ୍ୟାଦିର ବର୍ଣ୍ଣନା ଏତେଦୂର କଳ୍ପଣୋପାଦକ ଏବଂ କବି ଏ ସବୁ ଏପରି ସରସଭାବେ ବର୍ଣ୍ଣନା କରିଛନ୍ତି ଯେ ସେ ସମସ୍ତ ଶ୍ଳୋକମାନେ ସହୃଦୟଜନମାନଙ୍କର ହୃଦୟରେ କରୁଣ ରସର ଉଦ୍ରେକ କରାଇଥାନ୍ତି । ପ୍ରଥମ ପରିଚ୍ଛେଦରେ ଆମେ ଅଶ୍ୱଘୋଷ ଓ କାଳିଦାସଙ୍କର କାବ୍ୟଗତ କଳ୍ପନାସାମ୍ୟର କେତେକ ଉଦାହରଣ ଦେଖାଇ ଅଛୁଁ । ତହିଁରୁ ପ୍ରମାଣିତ ହୁଏ—କାଳିଦାସ ଅଶ୍ୱଘୋଷଙ୍କର କାବ୍ୟମାନ ଭଲରୂପେ ପରିଶୀଳନ କରିଥିଲେ । କାଳିଦାସଙ୍କ ରଚନାରେ ଅଶ୍ୱଘୋଷଙ୍କର ପୂର୍ଣ୍ଣ ଛାୟା ପଡ଼ିଅଛି । ଏ ବିଷୟରେ ଅଦ୍ଭୁତ ଅନେକ ଉଦାହରଣ ଦିଆଯାଇପାରେ, ଯେଉଁମାନଙ୍କରେ କାଳିଦାସ ଓ ଅଶ୍ୱଘୋଷଙ୍କର ରଚନାରେ କେବଳ ଶବ୍ଦ ସାଦୃଶ୍ୟ ନୁହେଁ ଅର୍ଥ ସାଦୃଶ୍ୟ ମଧ୍ୟ ପରିଲକ୍ଷିତ ହେବ । ଉଦାହରଣ—

**बभूव स हि संवेगः श्रेयसस्तस्य वृद्धये ।**
**धातोरधिरिवाख्याते पठितोऽक्षरचिन्तकैः ॥**

ସୌନ୍ଦରନନ୍ଦ ୧୨,୯

ଏହିପ୍ରକାର ବ୍ୟାକରଣ ବିଷୟକ ଉପମା 'ତଥାବିଦେନ ଧବି ଦେବସଙ୍ଘା ଦବୈର୍ଯିକ ଙାଷ୍ୟମିବସ୍ୟାଙ୍ଗ ଚକ୍ରୁଃ' ସୂର୍ଯ୍ୟ 'କାର୍ଯଯ୍ୟ କୃତ୍ୱା ହି ବିବେକମାଦୌ ମୃଶୋଽଧିଗନ୍ତୁଂ ପରସୋ ବିବେକଃ' ଇତ୍ୟାଦି ଅପାଣିନୀୟ ପ୍ରୟୋଗମାନଙ୍କର ଅନୁକରଣ କାଳିଦାସ ଅଶ୍ୱଘୋଷଙ୍କ କାବ୍ୟରୁ କରି ଅଛନ୍ତି । * କିନ୍ତୁ କାଳିଦାସ ନିଜେ ନିର୍ଦୋଷ ତଥା ବଡ଼ ସାବଧାନତା ସହିତ

* ରଘୁବଂଶ ୧୫, ୯; ୯, ୬୧; ୪, ୩ ଦ୍ରଷ୍ଟବ୍ୟ ।

ରଚନା କରିବା କବି ଥିଲେ । ସେ ଅଶ୍ୱଘୋଷଙ୍କ କାବ୍ୟମାନଙ୍କର ଅନେକ ଭ୍ରମ ପ୍ରମାଦ ଦୂର କରିଥିଲେ । ଉଦାହରଣ ସ୍ୱରୂପ 'ଆକାର୍ଷୀମ୍' 'ଅବର୍ଧିଷ୍ଟ' ସଦୃଶ କଷ୍ଟକର ଶବ୍ଦ ପ୍ରୟୋଗ, 'ନୃପୋ-ପବର୍ଷ୍ୟ' ସମାନ ସନ୍ଧି, ତଥା 'ଗୃହ୍ୟ', 'ବିବର୍ଦ୍ଧୟିତ୍ୱା', 'ସମ୍ପାଳୟିତ୍ୱା ସଦୃଶ ଅଶୁଦ୍ଧ କ୍ରିୟାରୂପ, ଭଟ୍ଟିକାବ୍ୟ ପରି 'ଅବର୍ଧିଷ୍ଟ' 'ଅବୃଧତ୍' ଇତ୍ୟାଦି ତୃତୀୟ ଭୂତକାଳର ବୈକଳ୍ପିକ କ୍ରିୟାରୂପ—ଇତ୍ୟାଦିର ପ୍ରୟୋଗ ବାହୁଲ୍ୟ ଅନୁଚିତ ମନେ କରି କାଳିଦାସ ସତର୍କ ହୋଇ ପରିତ୍ୟାଗ କରି ଅଛନ୍ତି । ଅଶ୍ୱଘୋଷଙ୍କ କାବ୍ୟଗତ ଯଥାସଂଖ୍ୟ, ପାଦାନ୍ତ ଯମକପ୍ରଭୃତି ପରି ନୀରସ ଓ କୃତ୍ରିମ ଅଳଙ୍କାରମାନ ଏବଂ ପଢ଼ିବାକୁ କଠିନ ଛନ୍ଦମାନଙ୍କୁ କାଳିଦାସ ଖୁବ୍ ସାବଧାନତା-ସହକାରେ ନିଜକାବ୍ୟରେ ସନ୍ନିବେଶିତ କରି ନାହାନ୍ତି । କାଳି-ଦାସ ଭ୍ରମରର ବୃତ୍ତି ଅବଲମ୍ବନ କରି ଅଶ୍ୱଘୋଷଙ୍କର କାବ୍ୟଗତ କେବଳ ସୁନ୍ଦର ଭାବକୁ ଆହରଣ କରି ନିଜ କାବ୍ୟମାନଙ୍କରେ ସନ୍ନିବେଶିତ କରିଅଛନ୍ତି ।

ଅଶ୍ୱଘୋଷଙ୍କ ପରେ ତାଙ୍କଠାରୁ ଅଧିକ ସରସ କାବ୍ୟ ରଚନା କରିଥିବା ଅନେକ ପ୍ରତିଭାଶାଳୀ କବି ଥାଇ ପାରନ୍ତି, ମାତ୍ର ସେମାନଙ୍କର କୌଣସି କାବ୍ୟ ଏ ପର୍ଯ୍ୟନ୍ତ ମିଳି ନାହିଁ । କାଳି-ଦାସଙ୍କ ପୂର୍ବରୁ କେତେ ସୁନ୍ଦର ଓ ନିର୍ଦ୍ଦୋଷ କାବ୍ୟ ରଚିତ ହୋଇଥିଲା, ତାହାର ପରିଚୟ ପ୍ରୟାଗର ଶିଳାସ୍ତମ୍ଭ ପ୍ରଶସ୍ତିରୁ* ମିଳେ । ଏହି ପ୍ରଶସ୍ତି ଚମ୍ପୂକାବ୍ୟର ଏକ ସୁନ୍ଦର ଉଦାହରଣ । ଏହାର ପ୍ରଥମାର୍ଦ୍ଧ କେବଳ ପଦ୍ୟ ଏବଂ ଦ୍ୱିତୀୟାର୍ଦ୍ଧ ଅଧିକାଂଶ ଗଦ୍ୟମୟ । ଏହାର ଗଦ୍ୟ ଭାଗରେ ଆଳଙ୍କାରିକ ବିଧାନଅନୁଯାୟୀ

* Fleet: Gupta Inscriptions No. 1.

ଚନ୍ଦ୍ରର ସମସ୍ତ ପଦ ସ୍ରଗ୍ଧରା ଛନ୍ଦରେ ଲେଖା ହୋଇଥିଲେ ମଧ୍ୟ ଅନୁପ୍ରାସ, ଉପମା, ଶ୍ଳେଷପ୍ରଭୃତି ଅନେକ ଅଳଙ୍କାରମାନଙ୍କର ପରିମିତ ଉପଯୋଗ ଓ ଯେଉଁମାନଙ୍କର ବିଶେଷ ରମଣୀୟତା ଦେଖାଯାଏ । ଶ୍ଳୋକଗୁଡ଼ିକର ପୂର୍ବ ଭାଗ ସ୍ଥାନେ ସ୍ଥାନେ ବକ୍ରୋକ୍ତି ହୋଇ ଥିଲେ ପ୍ରଶସ୍ତିର ପୂର୍ଣ୍ଣ ସ୍ଥାନେ ସ୍ଥାନେ ଗୌରବ ହୋଇଅଛି । ତଥାପି ନିମ୍ନଲିଖିତ ଶ୍ଳୋକରୁ ରଚୟିତା ହରିଷେଣଙ୍କର କାବ୍ୟ ପ୍ରତିଭାର ପରିଚୟ ମିଳିପାରେ ।

**आर्यो हीत्युपगुह्य भावपिशुनैरुत्कर्णितै रोमभिः**
**सभ्येषूच्छ्वसितेषु तुल्यकुलजम्लानाननोद्वीक्षितः ।**
**स्नेहव्याकुलितेन बाष्पगुरुणा तत्त्वेक्षिणा चक्षुषा**
**यः पित्राभिहितो निरीक्ष्य निखिलां पाह्येवमुर्वीमिति ॥**

ଏହି ଶ୍ଳୋକରେ ଚନ୍ଦ୍ରଗୁପ୍ତ ନିଜ ବୃଦ୍ଧାବସ୍ଥାରେ ସମୁଦ୍ରଗୁପ୍ତଙ୍କୁ ସିଂହାସନର ଉତ୍ତରାଧିକାରୀ କରିବା ସମୟର ମନୋହର ବର୍ଣ୍ଣନା କରାଯାଇ ଅଛି । ଏହି ଶ୍ଳୋକର ଉତ୍କର୍ଷ ବିଷୟରେ ଡାକ୍ତର ବୁଲରଙ୍କ ମୁକ୍ତକଣ୍ଠରେ କହି ଅଛନ୍ତି—'ଏହି ପ୍ରସଙ୍ଗର ବର୍ଣ୍ଣନା ଏହାଠୁ କମ ଶବ୍ଦରେ ଏବଂ ଅଧିକ ସଜୀବତା ସହିତ ଚିତ୍ରିତ କରିବା କଠିନ । ଏହି ଶ୍ଳୋକରେ ଗୋଟିଏ ହେଲେ ପଦ ଅଧିକ ବା ନିରର୍ଥକ ନୁହେଁ । ଏହାକୁ ପଢ଼ିଲେ ପାଠକମାନଙ୍କ ବୃଦ୍ଧ ଚନ୍ଦ୍ରଗୁପ୍ତଙ୍କର ରାଜସଭାର ଦୃଶ୍ୟ ଆଖି ଆଗରେ ଉପସ୍ଥିତ ହୁଏ । ଏକ ପାଖରେ ରାଜସିଂହାସନ ଆମ୍ଭଙ୍କୁ କେବଳ ମିଳୁ—ଏହି ଅଭିଳାଷରେ ତାଙ୍କର ପୁତ୍ରମାନେ ଉପବିଷ୍ଟ, ଅନ୍ୟ ପାଖରେ ସମ୍ରାଟ୍ କୌଣସି ଅଯୋଗ୍ୟ ବ୍ୟକ୍ତିଙ୍କୁ ରାଜ୍ୟର ଉତ୍ତରାଧିକାରୀ କରି ନିଯୁକ୍ତ ନ କରନ୍ତୁ—ଏହି ଆଶଙ୍କାରେ ଭୟଭୀତ

ସଭାସଦ୍‌ଗଣ ଜର୍ଣ୍ଣୟର ପ୍ରତୀକ୍ଷାରେ ସମାସୀନ । ଏହି ଅବକାଶରେ 'ଏ କେବଳ ଉପଯୁକ୍ତ ଅଧିକାରୀ' ଏପରି କହି ଚନ୍ଦ୍ରଗୁପ୍ତ ପ୍ରେମାପ୍ଲୁତ ଓ ଗଦ୍‌ଗଦ ଚିତ୍ତରେ ସମୁଦ୍ରଗୁପ୍ତଙ୍କୁ ଆଲିଙ୍ଗନ କରି ଏବଂ ପ୍ରେମାଶ୍ରୁପୂର୍ଣ୍ଣ ତତ୍ତ୍ୱାନ୍ୱେଷୀ ନେତ୍ରରେ ନିରୀକ୍ଷଣ କରି କହିଲେ – 'ତୁମେ ଏହି ସମଗ୍ର ପୃଥିବୀ ପାଳନ କର' । ଏହା ଶୁଣି ଅନ୍ୟ ରାଜକୁମାରମାନଙ୍କର ମୁଖ ନିଷ୍ପ୍ରଭ ହୋଇଗଲା ଏବଂ ସଭାସଦ୍‌ମାନେ ସନ୍ତୋଷରେ ଉଚ୍ଛ୍ୱସିତ ହୋଇ ଉଠିଲେ । ଏହି ପଦ୍ୟ ଅଳ୍ପ କେତେକ ଶବ୍ଦରେ ଭାବଗମ୍ଭୀର, ସରସ ଓ ଉଜ୍ଜ୍ୱଳ ଚିତ୍ର ଅଙ୍କନ କରି ଭାରତୀୟ କାବ୍ୟକଳାର ଉତ୍ତମ ଉଦାହରଣ ହୋଇ ଅଛି ।' ଏହା ପରେ ମେଘଦୂତ ସଦୃଶ ସର୍ବାଙ୍ଗସୁନ୍ଦର ସର୍ବୋତ୍ତମ କାବ୍ୟର ଯଦି ରଚନା ହେଲା । ଏଥିରେ ଆଶ୍ଚର୍ଯ୍ୟ ହେବାର କଅଣ ଅଛି ?

## ଋତୁସଂହାର

କାଳିଦାସଙ୍କର ଗ୍ରନ୍ଥମାନଙ୍କ ମଧ୍ୟରେ 'ଋତୁସଂହାର' ନିମ୍ନସ୍ତରର ଗ୍ରନ୍ଥ ବୋଲି ଧରାଯାଏ । କେତେକ ପଣ୍ଡିତ ସନ୍ଦେହ କରନ୍ତି—ହୁଏତ ଏହି କାବ୍ୟ କାଳିଦାସଙ୍କଦ୍ୱାରା ରଚିତ ନୁହେଁ କିନ୍ତୁ ସେମାନଙ୍କ ଅଟକଳ ଭିତ୍ତିହୀନ । ଏହା ଅନେକ ପ୍ରମାଣଦ୍ୱାରା ସିଦ୍ଧ କରାଯାଇପାରେ । ବଲ୍ଲଭ ଦେବଙ୍କର 'ସୁଭାଷିତାବଳୀ'ରେ 'ଋତୁସଂହାର'ର ଦୁଇଟି ଶ୍ଳୋକ (୬, ୧୭ ଓ ୨୦) ଉଦ୍ଧୃତ ହୋଇ ଅଛି । ପ୍ରଥମ ପରିଚ୍ଛେଦରେ ଆମେ ଦେଖାଇ ଦେଇଛୁ—ଖ୍ରୀଷ୍ଟୀୟ ୪୭୩ ସାଲର ମନ୍ଦସୋରର ପ୍ରଶସ୍ତିରେ 'ଋତୁସଂହାର'ର କେତେ ଶ୍ଳୋକର ଛାୟା ପଡ଼ିଅଛି । ତହିଁରୁ ଜଣାଯାଉ ଅଛି—ସେ କାବ୍ୟ ଖ୍ରୀଷ୍ଟୀୟ ପଞ୍ଚମ ଶତାବ୍ଦୀର ପୂର୍ବବର୍ତ୍ତୀ । ଋତୁବର୍ଣ୍ଣନା କାଳିଦାସଙ୍କର ଅତ୍ୟନ୍ତ ପ୍ରିୟ ଥିଲା । ସେ ନିଜର ପ୍ରତ୍ୟେକ କାବ୍ୟରେ

କୌଣସି ଗୋଟିଏ ଋତୁର ବର୍ଣ୍ଣନା କରି ଅଛନ୍ତି । କବି 'କୁମାରସମ୍ଭବ'ରେ ବସନ୍ତର, 'ବିକ୍ରମୋର୍ବଶୀୟ' ଓ 'ମେଘଦୂତ'ରେ ବର୍ଷାଋତୁର, 'ଶାକୁନ୍ତଳ'ରେ ଗ୍ରୀଷ୍ମର ଏବଂ 'ରଘୁବଂଶ'ରେ ପ୍ରାୟ ସମସ୍ତ ଋତୁର ବର୍ଣ୍ଣନା କରି ଅଛନ୍ତି । ସରସ୍ୱତୀଦେବୀଙ୍କର ଅର୍ଚ୍ଚନା କଲାବେଳେ ପ୍ରକୃତି ବର୍ଣ୍ଣନା ଛନ୍ଦ ଅତି କେଉଁ ସରଳ ଓ ସରସ ବିଷୟ କବି ଗ୍ରହଣ କରନ୍ତେ ? ଏହି ଧରଣର କାବ୍ୟରେ କୌଣସି କଥାନକର ସମ୍ବନ୍ଧ ରହୁ ନଥିବାରୁ ଯେତେବେଳେ ସ୍ଫୂର୍ତ୍ତି ହେବ, ସେତେବେଳେ ଶ୍ଳୋକ ରଚନା କରି ଯୋଗ କରାଯାଇ ପାରେ । ଆମେ ଦ୍ୱିତୀୟ ପରିଚ୍ଛେଦରେ କହିଅଛୁଁ—ଦ୍ୱିତୀୟ ତୃତୀୟ ଶତାବ୍ଦୀରେ ହିନ୍ଦୁସ୍ଥାନରେ କୁଶାନ-ସାମ୍ରାଜ୍ୟ ହେବା ଫଳରେ ପୂର୍ବ ଓ ପଶ୍ଚିମର ଦେଶମାନଙ୍କ ସହିତ ବ୍ୟବସାୟର ସମଧିକ ଉନ୍ନତି ଘଟିଥିଲା । ଦେଶର ସ୍ତରଅଙ୍ଗେ ସମ୍ପତ୍ତିର ସ୍ରୋତ ବହୁଥିଲା । ଐଶ୍ୱର୍ଯ୍ୟର ଅଭିବୃଦ୍ଧି ସହିତ ବିଳାସପ୍ରିୟତା ମଧ୍ୟ ବଢ଼ିଥିଲା । ଫଳରେ ମଧ୍ୟମ ଶ୍ରେଣୀର ଲୋକମାନଙ୍କର ଅଭିରୁଚି ଲଳିତକଳା ପ୍ରତି ବିଶେଷ ଭାବରେ ଆକୃଷ୍ଟ ହୋଇଥିଲା । ବାତ୍ସ୍ୟାୟନକୃତ 'କାମ-ସୂତ୍ର'ରେ ନାଗରିକର ବିବିଧ କଳାଭିଜ୍ଞତା ଓ ବିଳାସପ୍ରିୟତାର ସବିଶେଷ ବର୍ଣ୍ଣନା ଦେଖାଯାଏ । ତହିଁରୁ ତାଙ୍କର ଯେ ସମସ୍ତ ଗୁଣରୁ ଲଳିତକଳା ଓ ସାହିତ୍ୟ ପ୍ରତି କିପରି ପ୍ରେରଣା ମିଳୁଥିଲା ତାର ପରିଚୟ ମିଳେ । ପ୍ରତ୍ୟେକ ନାଗରିକର ଶୟନ ପ୍ରକୋଷ୍ଠରେ ଏକ ଉନ୍ନତ ସ୍ଥାନ ଉପରେ କେଶ ରଚନା ସକାଶେ ଆବଶ୍ୟକ ସାମଗ୍ରୀ, ପୁଷ୍ପମାଳା, ତାମ୍ବୂଳ, ଅତର, ଅନ୍ୟାନ୍ୟ ସୁଗନ୍ଧି ପଦାର୍ଥ ରଖାଯାଉଥିଲା । ଏକ କୋଣରେ ବୀଣା, ଚିତ୍ରଲେଖନଉପଯୋଗୀ ରଙ୍ଗ, ତୂଳିକା ପ୍ରଭୃତି ଉପକରଣ ଏବଂ ତା ପାଖରେ ଖଣ୍ଡେ ପୁର

ଖଣ୍ଡ କାବ୍ୟ ମଧ୍ୟ ରଖାଯାଉଥିଲା । ସନ୍ଧ୍ୟା ସମୟରେ ନାଗରକ ଋତୁ ଅନୁଯାୟୀ ଉପଯୁକ୍ତ ପୋଷାକ ପିନ୍ଧି ଆଜିକାଲି ଜେଣ୍ଟଲ୍-ମେନ୍‌ସ୍ କ୍ଳବ୍ ଓ ସୋସାଇଟିକୁ ମନୋରଞ୍ଜନ ସକାଶେ ଭଦ୍ର-ଲୋକମାନେ ଯେପରି ଯାଆନ୍ତି ସେହିପରି ସେ ସମୟରେ ଗୋଷ୍ଠୀ ବା ଯେଉଁଠାରେ ମିତ୍ର ଓ ରସିକମାନେ ସମବେତ ହୁଅନ୍ତି, ସେହି ସମାଜକୁ ଯାଉଥିଲେ । ତାତ୍କାଳିକକାବ୍ୟରଚନା, ସମସ୍ୟା-ପୂରଣ, ପ୍ରଶ୍ନମାଳା ପ୍ରତିଯୋଗିତା (ଶ୍ଳୋକାନ୍ତ୍ୟ) ପ୍ରଭୃତି ମନୋ-ରଞ୍ଜନ କାର୍ଯ୍ୟରେ ସନ୍ଧ୍ୟା ସମୟତକ ଅତିବାହିତ କରୁଥିଲେ । ଉକ୍ତ ସ୍ଥାନମାନଙ୍କରେ ସମୟ ସମୟରେ ବିବିଧ କଳାଭିଜ୍ଞା ଚତୁର ବିଦୁଷୀ ବେଶ୍ୟାମାନଙ୍କୁ ମଧ୍ୟ ଆମନ୍ତ୍ରିତ କରାଯାଉଥିଲା, ସମୟ-ସମୟରେ ନାଗରକମାନେ ବେଶ୍ୟାମାନଙ୍କର ଘରେ ସମବେତ ହେଉଥିଲେ । ଏହିପରି ପ୍ରସଙ୍ଗ କ୍ରମେ କାବ୍ୟ ରଚନା ଓ କଳା-ପ୍ରବୀଣତା ଦେଖାଇବା ସକାଶେ ପରସ୍ପର ପ୍ରତିସ୍ପର୍ଦ୍ଧାର ଉପକ୍ରମ ହେଉଥିଲା । ଋତୁ ବର୍ଣ୍ଣନ ପ୍ରଭୃତି ବିଷୟମାନ ମଧ୍ୟ ସେ ସମୟରେ ଆଲୋଚିତ ହେଉଥିଲା । ଯେଉଁ ସମୟରେ 'ଋତୁସଂହାର' ରଚିତ ହୋଇଥିଲା, ସେ ସମୟରେ ସମ୍ଭବତଃ କାଳିଦାସ କୌଣସି ରାଜା ବା ମହାରାଜଙ୍କର ଆଶ୍ରୟରେ ନ ଥିଲେ । କାରଣ ଏହି କାବ୍ୟରେ କୌଣସି ରାଜା ବା ରାଜାଶ୍ରୟର ପ୍ରତ୍ୟକ୍ଷ ବା ଅପ୍ରତ୍ୟକ୍ଷ ଉଲ୍ଲେଖ ଦେଖାଯାଏ ନାହିଁ । କେତେକ ଶ୍ଳୋକ କେବଳ କଳ୍ପନା ପ୍ରସୂତ । ଆଉ କେତେକ ଶ୍ଳୋକ ନିଜ ପ୍ରିୟତମାକୁ ଲକ୍ଷ୍ୟ କରି ଲିଖିତ । କେତେକ ଶ୍ଳୋକରେ 'ସ୍ତ୍ରୀମାନଙ୍କର ସହବାସରେ, ଗ୍ରୀଷ୍ମକାଳ ତୁମର ସୁଖଦାୟକ ହେଉ' ଏହି ଭାବ ପୁରୁଷକୁ ସମ୍ବୋଧନ କରି

ଲେଖାଯାଇ ଅଛି । ଏ ସମସ୍ତରୁ ଜଣାଯାଉଅଛି—କାଳିଦାସ ଏହି ଖଣ୍ଡକାବ୍ୟଟି ନାଗରିକ ସମାଜରେ ଲେଖିଥିଲେ ।

'ଋତୁ ସଂହାର' କାବ୍ୟରେ ଛଅଟି ସର୍ଗ ଅଛି । ପ୍ରତ୍ୟେକ ସର୍ଗରେ ୧୬ ଠାରୁ ୨୮ ପର୍ଯ୍ୟନ୍ତ ଶ୍ଳୋକ ଅଛି । ଏହି ସର୍ଗ ମାନଙ୍କରେ ଗ୍ରୀଷ୍ମ, ବର୍ଷା, ଶରତ୍, ହେମନ୍ତ, ଶିଶିର ଓ ବସନ୍ତ— ଏହି ଛଅଟି ଋତୁର କ୍ରମ ଅନୁସାରେ ବର୍ଣ୍ଣନା କରାଯାଇ ଅଛି । ପ୍ରତ୍ୟେକ ଋତୁର ବର୍ଣ୍ଣନାରେ ସେହି ସେହି ଋତୁର ବୃକ୍ଷ, ଲତା, ଓ ପଶୁ ପକ୍ଷୀ ଉପରେ ପ୍ରଭାବ, ସେହି ସେହି ଋତୁର ଆଗମନରେ କାମିଜନର ଚିତ୍ତବୃତ୍ତି ଓ ବ୍ୟବହାରରେ ସମ୍ଭାବ୍ୟମାନ ପରିବର୍ତ୍ତନ ଏବଂ ସେମାନଙ୍କ ହୃଦୟରେ ନାନାବିଧ ଚିନ୍ତାର ଉତ୍ଥାନ ପ୍ରଭୃତି ବିଷୟ କବି ସୁନ୍ଦର ଭାବେ ବର୍ଣ୍ଣନ କରି ଅଛନ୍ତି । ଉଦାହରଣ ସ୍ୱରୂପ ଗ୍ରୀଷ୍ମ ଋତୁର ବର୍ଣ୍ଣନା ଦେଖନ୍ତୁ—

**रवेर्मयूखैरतितापितो भृशं विदह्यमानः पथि तप्तपांसुभिः ।**
**अवाङ्मुखो जिह्मगतिः श्वसन् मुहुः फणी मयूरस्य तले निषीदति ॥**

ଋତୁ ୧,୧୩

ଏହି ଶ୍ଳୋକରେ କବି ଦେଖାଇଛନ୍ତି ଯେ 'ସୂର୍ଯ୍ୟଙ୍କର ଅତ୍ୟନ୍ତ ପ୍ରଖର କିରଣମାନଙ୍କଦ୍ୱାରା ଉପରଭାଗରେ ଏବଂ ଅତି ଉଷ୍ଣ ଧୂଳିମାନଙ୍କଦ୍ୱାରା ତଳଭାଗରେ ଉତ୍ତାପ ଅଧିକ ହେବାରୁ ସନ୍ତାପ ଓ ଓ ବ୍ୟାକୁଳତା ବଶତଃ ଦୀର୍ଘଶ୍ୱାସ ଛାଡୁଥିବା ବକ୍ରଗତି ସର୍ପ ନିଜର ସହଜ ଶତ୍ରୁତା ଭୁଲିଯାଇ ମୟୂରର ଛାଇତଳେ ଆଶ୍ରୟ ନେଉଅଛି । ଗ୍ରୀଷ୍ମକାଳର ଚନ୍ଦ୍ରାଲୋକ ଅତ୍ୟନ୍ତ ସୁଖପ୍ରଦ । ଶୀତଳଜଳରେ ଅବଗାହନ କରିବାକୁ ଇଚ୍ଛା ହୁଏ । ରାତିରେ

ସ୍ଫଟିକତଳରେ ଖୋଲାଜାଗାରେ ପ୍ରିୟତମା ସହିତ କାମୋଦ୍ଦୀପକ ସୁରାପାନ ଓ ବୀଣା ବାଦନ କରି କାମୁକ ବିଳାସୀମାନେ ରାତି ଯାପନ କରନ୍ତି । ରାତିରେ ପ୍ରାସାଦ ଛାତ ଉପରେ ସୁଖନିଦ୍ରିତ ବିଳାସିନୀମାନଙ୍କର ମୁଖକାନ୍ତି ଦେଖି ଚନ୍ଦ୍ର ଲଜ୍ଜାରେ ନିଷ୍ପ୍ରଭ ହୋଇଯାଏ । ଇତ୍ୟାଦି ବର୍ଣ୍ଣନାଦ୍ୱାରା କବି ଗ୍ରୀଷ୍ମଋତୁରେ ବିଳାସୀମାନଙ୍କର ଜୀବନବୃତ୍ତିଗତ ପରିଣାମ ଦେଖାଇ ଅଛନ୍ତି । ଗ୍ରୀଷ୍ମ ପରେ ବର୍ଷା ଆସେ । ଏ ସମୟରେ ତୃଷାର୍ତ୍ତ ଚାତକପକ୍ଷୀମାନଙ୍କର ଯାଚନାରେ ଜଳଭାରବିନତ ଜଳଧର ମନୋହର ଗର୍ଜନ ଧ୍ୱନି କରି ଜଳ ବରଷେ ଏବଂ ପଥିକମାନଙ୍କୁ ନିଜ ପ୍ରେୟସୀମାନଙ୍କର ବିରହବ୍ୟାକୁଳ କରେ ଇତ୍ୟାଦି ବର୍ଷାଋତୁରେ ବର୍ଣ୍ଣନା କରାଯାଇଅଛି । ଶରତର ବର୍ଣ୍ଣନା ଦେଖନ୍ତୁ ।

**काशांशुका विकचपद्ममनोज्ञवक्त्रा**
**सोन्मादहंसरवनूपुरनादरम्या ।**
**आपक्वशालिरुचिरानतगात्रयष्टिः**
**प्राप्ता शरन्नववधूरिव रूपरम्या ॥**

ଋତୁ ୩,୧

'ଧବଳ କାଶ ପରି ସୁନ୍ଦର ଶାଢ଼ୀ ପିନ୍ଧିଥିବା, ବିକଶିତ ପଦ୍ମପରି ମନୋହରମୁଖୀ, ଉନ୍ମତ୍ତହଂସଧ୍ୱନି ପରି ନୂପୁରଧ୍ୱନିବିଶିଷ୍ଟା, ପକ୍ୱଶାଳି ଧାନ ସଦୃଶ କ୍ଳାନ୍ତସୁନ୍ଦରଶରୀରା, ନବବଧୂ ସଦୃଶ ରମଣୀୟ ଏହି ଶରତଋତୁର ରାତିଗୁଡ଼ିକ ଚନ୍ଦ୍ରଙ୍କର ପ୍ରଭାରେ, ନଦୀଗୁଡ଼ିକ ହଂସମାନଙ୍କରେ, ସରୋବର ସାରସପକ୍ଷୀମାନଙ୍କରେ, ବନସ୍ଥଳୀ ପୁଷ୍ପଭାରରେ ବିନମ୍ର ସପ୍ତପର୍ଣ୍ଣ ବୃକ୍ଷ-

ମାନଙ୍କରେ ଏବଂ ଉପବନ ମାଲଞ୍ଚପ୍ରାନ୍ତରେ ଶୋଭା ଦେଖାଯାନ୍ତି । ଚତୁର୍ଥ ଓ ପଞ୍ଚମ ସର୍ଗରେ କବି ହେମନ୍ତ ଓ ଶିଶିର ଋତୁର ବର୍ଣ୍ଣନା କରି ଅଛନ୍ତି । କିନ୍ତୁ ଏହି ବର୍ଣ୍ଣନା ପ୍ରଥମ ତିନି ସର୍ଗର ବର୍ଣ୍ଣନା ପରି ମନୋହର ନୁହେଁ । ଏହି ଦୁଇଟି ଋତୁରେ ପ୍ରକୃତି-ସୁନ୍ଦରୀର ନେତ୍ରାହ୍ଲାଦକ ପୁଷ୍ପ ପ୍ରଭୃତି ଅଳଂକାର ଦେଖାଯାଏ ନାହିଁ । ଏ ହେତୁ କବି କେବଳ ଚାରି ପାଞ୍ଚୋଟି ଶ୍ଲୋକରେ ପ୍ରକୃତିର ବର୍ଣ୍ଣନା ଶେଷ କରି ଦେଇଛନ୍ତି । ଶେଷ ସର୍ଗରେ ବସନ୍ତର ବର୍ଣ୍ଣନା ଅତ୍ୟନ୍ତ ରମଣୀୟ । ଏହି ଋତୁରେ ବୃକ୍ଷ ସପୁଷ୍ପ, ସରୋବର ପଦ୍ମଯୁକ୍ତ, କାମିନୀମାନେ କାମବଶ, ପବନ ପରିମଳଯୁକ୍ତ, ସନ୍ଧ୍ୟାସମୟ ସୁଖକର ଓ ଦିବସ ରମଣୀୟ; ଏହି ପରି ଗୋଟିଏ ଶ୍ଲୋକରେ କବି ବସନ୍ତ ଋତୁର ରମଣୀୟତା ଦେଖାଇ ଅଛନ୍ତି । ଏହି ବର୍ଣ୍ଣନା ଅତ୍ୟନ୍ତ ମନୋହର ଏବଂ ସ୍ୱଭାବୋକ୍ତିରେ ପରିପୂର୍ଣ୍ଣ । ବସନ୍ତ ସମୀରଣର ବର୍ଣ୍ଣନା ଦେଖନ୍ତୁ—

**आकम्पयन् कुसुमिताः सहकारशाखा**
**विस्तारयन् परभृतस्य वचांसि दिक्षु ।**
**वायुर्विवाति हृदयानि हरन्नराणां**
**नीहारपातविगमात् सुभगो वनान्ते ॥**

ଋତୁ ୬, ୨୮

'କାକର ପଡ଼ିବା ବନ୍ଦ ହୋଇଯିବାରୁ ସୁଖକର ପବନ ବିକଶିତ ଆମ୍ବ ଗଛର ଡାଳମାନଙ୍କୁ କମ୍ପିତ କରି, ଚାରି ଦିଗରେ କୋକିଳର କୂଜନକୁ ପ୍ରସାରିତ କରି, ଲୋକମାନଙ୍କର ମନ ଆକର୍ଷଣ କରି ପ୍ରବାହିତ ହେଉଅଛି ।' ଇତ୍ୟାଦି ବର୍ଣ୍ଣନା

କରିଯାଇ ଅଛୁ । ଏହି ଶ୍ଳୋକରେ କାଳିଦାସରଚିତ ପ୍ରୌଢ଼ସମ୍ପୃକ୍ତ କାବ୍ୟରେ ପରିଦୃଶ୍ୟମାନ ଗାମ୍ଭୀର୍ଯ୍ୟ, ଲାଳିତ୍ୟ ପ୍ରଭୃତି ଗୁଣ ଦୃଷ୍ଟି-ଗୋଚର ହୁଏ ।

ଉପରଲିଖିତ ବର୍ଣ୍ଣନାମାନଙ୍କରୁ ଏବଂ ଋତୁସଂହାର-କାବ୍ୟର ଅନ୍ୟାନ୍ୟ ଶ୍ଳୋକମାନଙ୍କରୁ ଜଣାଯାଏ କବିଙ୍କର ମନ ବାହ୍ୟପ୍ରକୃତି ଓ ଶୃଙ୍ଗାର ଦିଗରେ ବିଶେଷ ଆକୃଷ୍ଟ ଥିଲା । 'ଋତୁସଂହାର'ରେ କବି ସ୍ୱଭାବୋକ୍ତି ପ୍ରତି ବିଶେଷ ଆସ୍ଥା ଦେଇଛନ୍ତି । କେତେକ ସ୍ଥାନରେ ଉପମା, ଉତ୍ପ୍ରେକ୍ଷା, ରୂପକପ୍ରଭୃତି ଅଳଙ୍କାର ଉଲରୂପେ ସନ୍ନିବେଶିତ କରିଅଛନ୍ତି । କିନ୍ତୁ ଉତ୍ତରକାଳୀନ କାବ୍ୟମାନଙ୍କରେ ଅଳଙ୍କାରମାନଙ୍କର ଯେଉଁ ରମଣୀୟତା, ତାହା ଦୃଷ୍ଟିଗୋଚର ହୁଏ ନାହିଁ । ଅର୍ଥାନ୍ତର ନ୍ୟାସ ପରି ଲଳିତ ଓ ମଧୁର ଅଳଙ୍କାରର ଗୋଟିଏ ଉଦାହରଣ ମଧ୍ୟ ଋତୁସଂହାରରେ ଦେଖାଯାଏ ନାହିଁ । କବିଙ୍କର ଶବ୍ଦରଚନାରେ ମଧ୍ୟ ଲାଳିତ୍ୟ ପରିଲକ୍ଷିତ ହୁଏ ନାହିଁ । କେତେକ ସ୍ଥଳରେ ପୁନରୁକ୍ତ 'ତଡ଼ିଲ୍ଲତା ଶକ୍ରଧନୁର୍ବିଭୂଷିତାଃ ପୟୋଧରାଃ (୨।୨।୧୯) ଇତ୍ୟାଦି ସ୍ଥଳମାନଙ୍କରେ ଲତାଦି ଶବ୍ଦମାନଙ୍କର ଅନାବଶ୍ୟକ ପ୍ରୟୋଗ, କେତେକ ସ୍ଥଳରେ ବ୍ୟାକରଣ ନିୟମଭଙ୍ଗ ପ୍ରଭୃତି ଦୋଷମାନ ମଧ୍ୟ ଦେଖାଯାଏ । ଏହି କାବ୍ୟ ରଚନା କାଳ-ସମୟରେ ସମ୍ଭବତଃ କାଳିଦାସଙ୍କ ଆଖି ଆଗରେ ବାଲ୍ମୀକିରାମାୟଣର କିଷ୍କିନ୍ଧାକାଣ୍ଡରେ ବର୍ଣ୍ଣିତ ବର୍ଷା ଓ ଶରତ୍ ଋତୁର ବର୍ଣ୍ଣନା ନାଚୁଥିଲା । ନିମ୍ନଲିଖିତ ଉଦାହରଣ ମାନଙ୍କରେ ଶବ୍ଦ ପ୍ରୟୋଗ ଓ କଳ୍ପନାର ସାମ୍ୟ କିପରି ଅଛୁ, ତୁଳନା କରି ଦେଖନ୍ତୁ—

ରାମାୟଣ —

बालेन्द्रगोपान्तरचित्रितेन विभाति भूमिर्नवशाद्वलेन।
गात्रानुपृक्तेन शुकप्रभेण नारीव लाक्षोक्षितकम्बलेन॥

୪,୨୮,୨୮

ଋତୁସଂହାର —

प्रभिन्नवैदूर्य्यनिभैस्तृणांकुरैः समाचिता प्रोत्थितकन्दलीदलैः।
विभाति शुक्लेतररत्नभूषिता वराङ्गनेव क्षितिरिन्द्रगोपकैः॥

୨,୫

ଈ

ଜାଜ୍ୱଲ୍ୟମାନ ମରକତମଣି ସଦୃଶ ହରିଦ୍‌ବର୍ଣ୍ଣ ତୃଣାଙ୍କୁର-ମାନଙ୍କରେ ଆଚ୍ଛାଦିତ ଓ ଉଠିଥିବା କଦଳୀଦଳରେ ବ୍ୟାପ୍ତ ଭୂମି ଇନ୍ଦ୍ରଗୋପମାନଙ୍କଦ୍ୱାରା ରକ୍ତବର୍ଣ୍ଣ ମଣିଅଳଙ୍କାରରେ ବିଭୂଷିତା ସୁନ୍ଦରୀ ଲଳନା ପରି ଶୋଭା ପାଉଅଛି।

ବର୍ଷା ଋତୁରେ ଶାଗୁଆ ତୃଣ ଉପରେ ରକ୍ତବର୍ଣ୍ଣର ଇନ୍ଦ୍ର-ଗୋପ ଦେଖାଯାନ୍ତି। ଏମାନଙ୍କର ବର୍ଣ୍ଣନା ରାମାୟଣରେ ଲାକ୍ଷା-ଉପମାନରେ ଏବଂ ଋତୁସଂହାରରେ ରକ୍ତବର୍ଣ୍ଣ ରତ୍ନୋପମାନରେ କରାଯାଇ ଅଛି। କାଳିଦାସଙ୍କର ଉପମା ସରସ। ମାତ୍ର ବାଲ୍ମୀକି ନୂତନ ହରିଦ୍‌ବର୍ଣ୍ଣ ତୃଣ ଭୂମି ସହିତ ହରିଦ୍‌ବର୍ଣ୍ଣ ବସନର ମନୋହର ଉପମା ଦେଇ ଅଛନ୍ତି, କିନ୍ତୁ କାଳିଦାସ ସେ ପର୍ଯ୍ୟନ୍ତ ଯାଇପାରି ନାହାନ୍ତି। ରାମାୟଣର ଅନ୍ୟାନ୍ୟ ଶ୍ଳୋକମାନଙ୍କରେ ମଧ୍ୟ କବି ନବ ନବ କଳ୍ପନା ଓ ଉତ୍ପ୍ରେକ୍ଷାଦି ଅଳଙ୍କାରମାନ ଯଥା-ଯଥଭାବେ ସନ୍ନିବେଶିତ କରି ଋତୁ ବର୍ଣ୍ଣନାକୁ ଅଧିକ ରମଣୀୟ କରି ଅଛନ୍ତି। ତା ଆଗରେ ଋତୁ ସଂହାରର ଋତୁ ବର୍ଣ୍ଣନା ଠିକଏ ନୀରସ ଓ ସାଧାରଣ ଦେଖାଯାଉ ଅଛି। ପୁଣି ଏହି କାବ୍ୟଦ୍ୱାରା

କବିଙ୍କର ସୃଷ୍ଟି ନିରୀକ୍ଷଣରେ ଉଜ୍ଜ୍ୱଳ ନୈସର୍ଗିକୀ ପ୍ରତିଭା ଓ ବିକାଶୋନ୍ମୁଖ କଳାନୈପୁଣ୍ୟ କଳ୍ପନା ଆମର ଦୃଷ୍ଟିଗୋଚର ହୁଏ । ଏଥିରୁ ଅନୁମାନ କରାଯାଏ ଯେ ଏହି କାବ୍ୟ ହେତୁ କାଳିଦାସଙ୍କର ବିଶେଷ ଖ୍ୟାତି ହୋଇଥିଲା । ଏହା ପରେ ଅତିଶୀଘ୍ର ଦ୍ୱିତୀୟ ଚନ୍ଦ୍ରଗୁପ୍ତ ବାକାଟକମାନଙ୍କର ସାହାଯ୍ୟରେ କ୍ଷତ୍ରପମାନଙ୍କୁ ପରାଜିତ କରି, ସେମାନଙ୍କର ମାଳବ ଓ କାଠିଆବାଡ଼ ପ୍ରାନ୍ତମାନ ନିଜ ରାଜ୍ୟରେ ମିଶାଇ ଥିଲେ ଏବଂ ଉଜ୍ଜୟିନୀ ନିଜର ରାଜଧାନୀ କରିଥିଲେ । ବାକାଟକମାନଙ୍କ ସହିତ ସ୍ଥାପିତ ସମ୍ବନ୍ଧ ସୁଦୃଢ଼ କରିବା ସକାଶେ ସେ ରୁଦ୍ରସେନବାକାଟକଙ୍କ ସହିତ ନିଜ କନ୍ୟା ପ୍ରଭାବତୀଙ୍କର ବିବାହ କରାଇ ଥିଲେ । ଏହି ବିବାହ ସମୟରେ ସମ୍ଭବତଃ କାଳିଦାସ ରଙ୍ଗମଞ୍ଚରେ 'ମାଳବିକାଗ୍ନିମିତ୍ର' ଉପସ୍ଥାପିତ କରି ଥିଲେ । ଏହି ନାଟକ ବିଷୟରେ ଆଗାମୀ ପରିଚ୍ଛେଦରେ ବିଚାର କରାଯିବ । ଏହି ନାଟକ ଦ୍ୱାରା କାଳିଦାସ ଓ ଚନ୍ଦ୍ରଗୁପ୍ତଙ୍କ ମଧ୍ୟରେ ଯେଉଁ ସ୍ନେହସମ୍ବନ୍ଧ ସ୍ଥାପିତ ହୋଇଥିଲା ତାହା କ୍ରମେ କ୍ରମେ ବଢ଼ିଥିଲା । କେତେକ ବର୍ଷ ପରେ ଧ୍ରୁବା-ଦେବୀଙ୍କ ଗର୍ଭରୁ ଚନ୍ଦ୍ରଗୁପ୍ତଙ୍କର କୁମାରଗୁପ୍ତ ନାମକ ପୁତ୍ର ଜାତ ହୋଇଥିଲା । ସେ ସମୟରେ କାଳିଦାସ 'କୁମାରସମ୍ଭବ' କାବ୍ୟ ରଚନା କରିଥିଲେ । ବର୍ତ୍ତମାନ ଆମେ ଏହି କାବ୍ୟର ସମୀକ୍ଷଣ କରିବୁଁ ।

## କୁମାରସମ୍ଭବ

ବର୍ତ୍ତମାନ ମିଳୁଥିବା 'କୁମାରସମ୍ଭବ'ରେ ୧୭ଟି ସର୍ଗ ଅଛି । କେତେକ କହନ୍ତି—ପ୍ରଥମେ ଏଥିରେ ୨୨ ସର୍ଗ ଥିଲା । ଏହି କାବ୍ୟ ବିଷୟରେ କେତେକଙ୍କର ଧାରଣା ଯେ କାଳିଦାସ୍ଙ୍କ

ଏହି କାବ୍ୟ ପୂର୍ଣ୍ଣ କରିପାରି ନ ଥିଲେ, କେବଳ ପ୍ରଥମ ଆଠ ସର୍ଗ କାଳିଦାସ କରିଥିଲେ । ସୁପ୍ରସିଦ୍ଧ ଟୀକାକାର ମଲ୍ଲିନାଥ ଏହି ଆଠ ସର୍ଗର କେବଳ ଟୀକା କରି ଅଛନ୍ତି, ଅନ୍ୟସର୍ଗମାନଙ୍କର ଟୀକା କରି ନାହାନ୍ତି । ଏ ବିଷୟରେ ଆମେ ପରେ ବିଚାରକରିବୁଁ ।

ଏକ ସମୟରେ ତାରକାସୁର ବ୍ରହ୍ମାଙ୍କ ବରରେ ଉନ୍ମତ୍ତ ହୋଇ ଦେବତାମାନଙ୍କୁ ବହୁତ ପୀଡ଼ା ଦେଲା । ଦେବତାମାନେ ବ୍ରହ୍ମାଙ୍କର ଆଦେଶ ଅନୁଯାୟୀ ଶିବ ଓ ପାର୍ବତୀଙ୍କର ବିବାହ କରାଇଲେ । ଫଳରେ ଉଭୟଙ୍କର ସଂଯୋଗରେ କାର୍ତ୍ତିକେୟଙ୍କର ଜନ୍ମ ହେଲା । ତାରକାସୁରର ବଧ ସକାଶେ ତାଙ୍କୁ ଦେବସେନାର ସେନାପତି କରାଗଲା ଏବଂ ତାଙ୍କ ହାତରେ ଏହି ଉଗ୍ର ଅସୁରର ସଂହାର ହେଲା—ଏହି ବିଷୟ ଏହି କାବ୍ୟରେ ବର୍ଣ୍ଣିତ ହୋଇ ଅଛି । କାବ୍ୟର ପ୍ରଥମ ସର୍ଗରେ ବଡ଼ ସୁନ୍ଦର ଭାବେ ହିମାଳୟର ବର୍ଣ୍ଣନା କରାଯାଇ ଅଛି । ପାର୍ବତୀଙ୍କର ଜନ୍ମ, ଶୈଶବ ଓ ଯୌବନର ବର୍ଣ୍ଣନା ମଧ୍ୟ ଅତୀବ ମନୋହର । ଏକ ସମୟରେ ନାରଦ ମହର୍ଷି ପାର୍ବତୀଙ୍କୁ ପିତା ହିମାଳୟଙ୍କ ପାଖରେ ବସିଥିବା ଦେଖି ଭବିଷ୍ୟଦ୍‌ବାଣୀ କହିଲେ ଯେ ସେହି କନ୍ୟା ଶିବଙ୍କର ଅର୍ଦ୍ଧାଙ୍ଗିନୀ ହେବେ । ଏହି କଥାରେ ବିଶ୍ୱାସ କରି ହିମାଳୟ କନ୍ୟା ଯୌବନରେ ପଦାର୍ପଣ କଲେ ମଧ୍ୟ ବିବାହ ବିଷୟରେ ମୋଟେ ଚିନ୍ତା କରୁ ନଥିଲେ । ସେ ସମୟରେ ଭଗବାନ୍ ଶିବ ହିମାଳୟରେ ରହି ତପସ୍ୟା କରୁଥିଲେ । ପର୍ବତରାଜ ହିମାଳୟ ତାଙ୍କର ସେବା କରିବାକୁ ନିଜ ଝିଅକୁ ଆଦେଶ ଦେଲେ । (୧ମ ସର୍ଗ) ଏ ସମୟରେ ଦେବତାମାନେ ତାରକାସୁର ଦ୍ୱାରା ଉତ୍ପୀଡ଼ିତ ହୋଇ ବ୍ରହ୍ମାଙ୍କର ଶରଣ ଗତ ହେଲେ । ବ୍ରହ୍ମା ଦେବତାମାନଙ୍କର ସ୍ତୁତିରେ

ସନ୍ତୁଷ୍ଟ ହୋଇ କହିଲେ –'ମୁଁ ନିଜେ ତାଙ୍କୁ ବର ଦେଇଅଛି, ଅତଏବ ମୋ ଦ୍ୱାରା ତାର ବିନାଶ ଅସମ୍ଭବ । ଆପଣମାନେ ଚେଷ୍ଟା କରି ପାର୍ବତୀ ପରମେଶ୍ୱରଙ୍କର ବିବାହ ସମ୍ପାଦନ କରନ୍ତୁ । ତାଙ୍କର ପୁତ୍ର ତାରକାସୁରକୁ ମାରି ଆପଣମାନଙ୍କୁ ଅଭୟ ଦେବ' । (୨ୟ ସର୍ଗ) ଇନ୍ଦ୍ର କାମଦେବଙ୍କୁ ନିଜ ସଭାକୁ ଡକାଇଲେ ଏବଂ ସମାଧିସ୍ଥ ଶିବଙ୍କର ହୃଦୟରେ ପାର୍ବତୀଙ୍କ ପ୍ରତି ପ୍ରୀତି ଉତ୍ପାଦନ କରାଇବା ଭାର ଦେଲେ । କାମଦେବ ନିଜ ପତ୍ନୀ ରତି ଓ ମିତ୍ର ବସନ୍ତକୁ ସଙ୍ଗେ ନେଇ ହିମାଳୟରେ ଉପସ୍ଥିତ ହେଲେ । ସେଠାରେ ମହାଦେବଙ୍କର ହୃଦୟରେ କାମବାସନାର ବୀଜ ବପନ କରିବା ସକାଶେ ପ୍ରଥମେ ବସନ୍ତ ସମଗ୍ର ଆଶ୍ରମରେ ନିଜ ସାମ୍ରାଜ୍ୟ ବିସ୍ତାର କଲା । ମହାଦେବ ଯେଉଁ ଲତାଗୃହରେ ସମାଧିସ୍ଥ ଥିଲେ, ତାର ଦ୍ୱାରରେ ଦ୍ୱାରପାଳ ନନ୍ଦୀ ପହରା ଦେଉ ଥିଲେ । କାମଦେବ ତାଙ୍କ ଆଖିରେ ଧୂଳି ପକାଇ ଭିତରେ ପ୍ରବେଶ କଲେ । ସମାଧିସ୍ଥ ଶିବ ଏ ସମୟରେ ପରମାତ୍ମଦର୍ଶନରେ ଲୀନ ଥିଲେ । କେତେକ ସମୟ ପରେ ସମାଧି ଭଗ୍ନ ହେବା ପରେ ମହାଦେବଙ୍କର ଅନୁମତି ନେଇ ନନ୍ଦୀ ପାର୍ବତୀଙ୍କୁ ଭିତରେ ପ୍ରବେଶ କରାଇଲେ । ପାର୍ବତୀ ତାଙ୍କ ଚରଣରେ ପୁଷ୍ପାଞ୍ଜଳି ସମର୍ପଣ କରି ଗଙ୍ଗା ନଦୀରେ ଉତ୍ପନ୍ନ ପଦ୍ମମାନଙ୍କର ଶୁଷ୍କ ବୀଜ-ମାଳା ଶିବଙ୍କୁ ଭେଟି ଦେବାକୁ ଅଗ୍ରରେ ଉପସ୍ଥିତ ହେଲେ । ଶିବ ମାଳା ସ୍ୱୀକାର କଲା ସମୟରେ କାମଦେବ ଉପଯୁକ୍ତ ଅବକାଶ ପାଇ ନିଜ ଧନୁରେ ସମ୍ମୋହନନାମକ ବାଣ ଯୋଖିଲେ । ତା ଫଳରେ ମହାଦେବଙ୍କର ଚିତ୍ତବୃତ୍ତି କ୍ଷଣିକ ସକାଶେ ବିଚଳିତ ହୋଇ ଉଠିଲା । କିନ୍ତୁ ସେ ତତ୍‌କ୍ଷଣେ ଚିତ୍ତବୃତ୍ତି ଦମନ କରି, ଚିତ୍ତ ବିକ୍ଷୋଭର କାରଣ ଅନୁସନ୍ଧାନ କଲେ ଏବଂ

ଦେଖିଲେ ଯେ ସନ୍ଧ୍ୟାଶରେ କାମଦେବ ଧନୁରେ ଶର ଯୋଗ କରି ବୀରାସନରେ ଅସୀନ । କ୍ରୋଧରେ ତୃତୀୟ ନେତ୍ର ଖୋଲି ଦେଲେ ଏବଂ ତନ୍ନିର୍ଗତ ଅଗ୍ନିରେ କାମଦେବ ଜଳିଯାଇ ଭସ୍ମ ହୋଇଗଲେ । (ଖ) ନିଜ ପତିଙ୍କର ସେହି ଦୁର୍ଦ୍ଦଶା ଦେଖି ରତି ଏକାବାରେ ମୂର୍ଚ୍ଛିତ ହୋଇଗଲେ । ଚେତନା ଲଭ କରି ଅତି କରୁଣ ସ୍ୱରରେ ବିଳାପ କରିବାକୁ ଲାଗିଲେ । ପ୍ରିୟତମଙ୍କର ମିତ୍ର ବସନ୍ତ ତାଙ୍କୁ ସାନ୍ତ୍ୱନା ଦେବା ସକାଶେ ଉପସ୍ଥିତ ହେଲେ । ତାଙ୍କୁ ଦେଖି ରତିଙ୍କର ଦୁଃଖ ଦୁଇଗୁଣ ହେଲା । ସେ ପୂର୍ବ ଅନୁଭୂତ ବିଷୟମାନ ସ୍ମରଣ କରି ଶୋକରେ ବିହ୍ୱଳ ହୋଇ ଅତି ସ୍ପଷ୍ଟ ଭାବରେ ରୋଦନ କରିବାକୁ ଲାଗିଲେ । ଅତ୍ୟନ୍ତ ଦୁଃଖରେ ଚିତାରେ ଆତ୍ମବିସର୍ଜ୍ଜନ କରିବାକୁ ବାହାରିଲେ । ସେ ସମୟରେ ଆକାଶବାଣୀ ଶୁଣାଗଲା ଯେ ଶିବ ଯେତେବେଳେ ପାର୍ବତୀଙ୍କର ପାଣି ଗ୍ରହଣ କରିବେ, ସେତେବେଳେ କାମଦେବଙ୍କୁ ପ୍ରାଣ ଦାନ କରିବେ । ସେ ପର୍ଯ୍ୟନ୍ତ ତୁମେ ଶରୀର ରକ୍ଷାକର । (୪ର୍ଥ ସର୍ଗ)

ପାର୍ବତୀ ନିଜ ଆଖି ଆଗରେ କାମଦେବଙ୍କର ଦୁର୍ଦ୍ଦଶା ଦେଖି ନିରାଶ ହେଲେ ଏବଂ ଶିବଙ୍କୁ ପତିରୂପେ ପାଇବା ସକାଶେ କଠୋର ତପସ୍ୟା କଲେ । ଶିବ ତାଙ୍କର ତପଶ୍ଚରଣରେ, ସନ୍ତୁଷ୍ଟ ହୋଇ ବ୍ରହ୍ମଚାରୀ ବେଶରେ ତପଃକ୍ଲିଷ୍ଟା ପାର୍ବତୀଙ୍କ ସମୀପରେ ଉପସ୍ଥିତ ହେଲେ । ପାର୍ବତୀ ବ୍ରହ୍ମଚାରୀଙ୍କୁ ପୂଜା କଲେ । ବ୍ରହ୍ମଚାରୀ ପଚାରିଲେ— 'ସମସ୍ତ ଅନୁକୂଳ ସୁଖସାଧନ ଥିଲେ ମଧ୍ୟ ଏହି ଯୌବନାବସ୍ଥାରେ କଠୋର ତପସ୍ୟା କରିବାର ଉଦ୍ଦେଶ୍ୟ କଅଣ?' ପାର୍ବତୀ ନିଜ ସଖୀମୁଖରେ ଜଣାଇଲେ ଯେ ସେ ଶିବଙ୍କ ଠାରେ ଆସକ୍ତ, ଏବଂ ତାଙ୍କୁ ପତିରୂପେ ପାଇବା ସକାଶେ

ଘୋର ତପସ୍ୟା କରି ନିଜ ଶରୀରକୁ କଷ୍ଟ ଦେଉ ଅଛନ୍ତି । ଏହା ଶୁଣି ବ୍ରହ୍ମଚାରୀ ଶିବଙ୍କର ଗର୍ହିତ ନିନ୍ଦା କରିବାକୁ ଲାଗିଲେ । ଶିବଙ୍କର ସର୍ପଭୂଷଣ, ରକ୍ତାକ୍ତ ଗଜଚର୍ମୋତ୍ତରୀୟ, ଶ୍ମଶାନବାସ, ଦରିଦ୍ରତା, ତୃତୀୟ ନେତ୍ରଜନିତ କୁରୂପତା ପ୍ରଭୃତିର ନିନ୍ଦାତ୍ମକ ବିସ୍ତୃତ ବର୍ଣ୍ଣନା କରି ଏପରି କଦାକାର ବର ପାଇବା ସକାଶେ କଠୋର ତପସ୍ୟା କରିବା ଅନୁଚିତ ବୋଲି ପ୍ରକାଶ କଲେ । ବ୍ରହ୍ମଚାରୀଙ୍କର ଭାଷଣ ଶୁଣି ପାର୍ବତୀ କ୍ରୋଧାଗ୍ନିରେ ଜଳି ଉଠିଲେ ଏବଂ ତାଙ୍କର ସମସ୍ତ ବାକ୍ୟ ଖଣ୍ଡନ କରି, ଶିବଙ୍କୁ ବରରୂପେ ପାଇବାକୁ ନିଜର ଅଟଳ ବିଶ୍ୱାସ ପ୍ରକାଶ କଲେ । ବ୍ରହ୍ମଚାରୀ ଆଉ କିଛି କହିବାକୁ ଯାଉଥିଲେ, ମାତ୍ର ପାର୍ବତୀ ସେଠାରୁ ଯିବାକୁ ଉଦ୍ୟତ ହେଲେ । ସେତିକିବେଳେ ବ୍ରହ୍ମଚାରୀ ନିଜ ରୂପ ଧାରଣ କରି ପାର୍ବତୀଙ୍କୁ ବାରଣ କଲେ ଏବଂ କହିଲେ—'ଆଜିଠାରୁ ମୁଁ ତୁମର କଠୋର ତପସ୍ୟାରେ ପ୍ରସନ୍ନ ହୋଇ ଦାସ ହେଲି ।' ( ୫ମ ସର୍ଗ ) ଏହା ପରେ ମହାଦେବ ଅରୁନ୍ଧତୀ ସହିତ ସପ୍ତର୍ଷିମାନଙ୍କୁ ଡକାଇ ପାର୍ବତୀଙ୍କ ସହିତ ବିବାହ ପ୍ରସ୍ତାବ କରିବାକୁ ହିମାଳୟଙ୍କ ପାଖକୁ ପଠାଇଲେ । ହିମାଳୟ ନିଜ ପତ୍ନୀଙ୍କର ସ୍ୱୀକୃତି ନେଇ ଆନନ୍ଦସହକାରେ ସେ ପ୍ରସ୍ତାବ ଗ୍ରହଣ କଲେ । ( ୬ଷ୍ଠ ସର୍ଗ ) ଶୁଭ ମୁହୂର୍ତ୍ତରେ ପାର୍ବତୀଙ୍କ ସହିତ ମହାଦେବଙ୍କର ବିବାହ ସମ୍ପନ୍ନ ହେଲା । ଏହି ମାଙ୍ଗଳିକ ଉତ୍ସବ ପ୍ରସଙ୍ଗରେ ପାର୍ବତୀଙ୍କର ବେଶଭୂଷା ସଖୀମାନଙ୍କର ପରିହାସ, ଶିବଙ୍କର ବିବାହାର୍ଥ ଅନୁଚର ଗହଣରେ ପ୍ରସ୍ଥାନ, ବର ଦର୍ଶନାର୍ଥ ପୁରବାସିନୀ ଲଳନାମାନଙ୍କର ସମ୍ଭ୍ରମ, ବିବାହୋତ୍ସବ—ଏ ସମସ୍ତ ଅତିରମଣୀୟଭାବେ ବର୍ଣ୍ଣିତ ହୋଇଅଛି । (୭ମ ସର୍ଗ) ବିବାହପରେ ଶିବ ପାର୍ବତୀଙ୍କ ସହିତ

ନାନାବିଧ ଭୋଗବିଳାସରେ ଶତ ଶତ ଋତୁ ଅତିବାହିତ କଲେ (୮ମ ସର୍ଗ) ଇନ୍ଦ୍ରାଦି ଦେବତାମାନେ ଅଗ୍ନିଙ୍କୁ କପୋତରୂପରେ ଶିବପାର୍ବତୀଙ୍କର ଦ୍ୱାର ସ୍ଥାନକୁ ପଠାଇଲେ । ପ୍ରଥମେ ଶିବ ଅତ୍ୟନ୍ତ କ୍ରୁଦ୍ଧ ହେଲେ ମାତ୍ର ଯେତେବେଳେ ତାଙ୍କୁ ସମସ୍ତ ବିଷୟ ଜଣାଇଲେ, ସେତେବେଳେ ଶାନ୍ତ ହେଲେ ଏବଂ ନିଜ ବୀର୍ଯ୍ୟ ଅଗ୍ନି ମୁଖରେ ନିକ୍ଷେପ କଲେ । ଅଗ୍ନି ସେହି ବୀର୍ଯ୍ୟ ସହି ନପାରି ଇନ୍ଦ୍ରଙ୍କୁ ଜଣାଇଲେ ଏବଂ ତାଙ୍କର ପରାମର୍ଶରେ ସ୍ୱର୍ଗଗଙ୍ଗାରେ ତ୍ୟାଗ କଲେ । (୯ମ ସର୍ଗ) ଗଙ୍ଗା ମଧ୍ୟ ସେହି ବୀର୍ଯ୍ୟ ଧାରଣ କରି ପାରିଲେ ନାହିଁ । ସ୍ନାନାର୍ଥ ଆଗତ ଛଅକୃତ୍ତିକାଙ୍କ ଶରୀରରେ ଢାଳିଦେଲେ । ତା ଫଳରେ ସେମାନଙ୍କର ଗର୍ଭୋଦୟ ହେଲା । ସେମାନେ ସେ ଗର୍ଭଭାର ମଧ୍ୟ ସହ୍ୟ କରିପାରିଲେ ନାହିଁ । ସେମାନେ ଶରବଣରେ ସେ ଗର୍ଭ ତ୍ୟାଗକରି ଚାଲିଗଲେ । (୧୦ମ ସର୍ଗ) ସେ ସମୟରେ ଶିବ ଓ ପାର୍ବତୀ ବିମାନରେ ସେହି ମାର୍ଗ ଦେଇ ଯାଉଥିଲେ । ସେମାନଙ୍କ ଦୃଷ୍ଟି ସେହି ବାଳକ ଉପରେ ପଡ଼ିଲା । ତାଙ୍କର ବୀର୍ଯ୍ୟରେ ସେ ଜାତ ବୋଲି ଶିବଙ୍କଠାରୁ ଶୁଣି ପାର୍ବତୀ ତାଙ୍କୁ ଗ୍ରହଣ କଲେ । ସେ ଛଅ ଦିନରେ ବଡ଼ ହୋଇ ସକଳ ଶସ୍ତ୍ର ଓ ଶାସ୍ତ୍ରରେ ପାରଙ୍ଗମ ହୋଇଗଲେ । ଏହି ପରି କୁମାରଙ୍କର ଜନ୍ମ ହେଲା । (୧୧ଶ ସର୍ଗ) ପରେ ଇନ୍ଦ୍ରାଦି ଦେବତାମାନଙ୍କର ପ୍ରାର୍ଥନାରେ ମହାଦେବ ତାଙ୍କୁ ଦେବସେନାର ସେନାପତିରୂପେ ସ୍ୱର୍ଗକୁ ପଠାଇଲେ । (୧୨ଶ ସର୍ଗ) ଦେବତାମାନେ କାର୍ତ୍ତିକେୟଙ୍କୁ ସେନାପତି କରି ତାରକାସୁରକୁ ଆକ୍ରମଣ କଲେ । (୧୩ଶ ସର୍ଗ) ସେ ମଧ୍ୟ ଯୁଦ୍ଧପାଇଁ ପ୍ରସ୍ତୁତ ହେଲା । ନାନାବିଧ ଦୁଃଶକୁନ ଦେଖାଗଲେ ମଧ୍ୟ କାର୍ତ୍ତିକେୟଙ୍କ ସହିତ

ଯୁଦ୍ଧ କଲା । ବଡ଼ ଲୋମହର୍ଷଣ ଯୁଦ୍ଧ ହେଲା ଏବଂ କୁମାରଙ୍କ ବାଣରେ ତାରକାସୁର ମଲା । ସ୍ୱର୍ଗରୁ ଦେବତାମାନେ କୁମାରଙ୍କର ଉପରେ ପୁଷ୍ପବୃଷ୍ଟି କଲେ । ବର୍ତ୍ତିମାନ ଇନ୍ଦ୍ର ନିଶ୍ଚିନ୍ତ ହେଲେ (୧୩ – ୧୭) ।

କୁମାରସମ୍ଭବରେ ୧୭ ସର୍ଗରୁ କେବଳ ପ୍ରଥମ ଆଠସର୍ଗ-ଉପରେ ଅରୁଣଗିରନାଥ, ମଲ୍ଲିନାଥ ପ୍ରଭୃତିଙ୍କର ଟୀକା ଦେଖାଯାଏ । ଏହି କାବ୍ୟର 'କୁମାରସମ୍ଭବ' ନାମ ଦିଆଯାଇ ଥିବାରୁ କେତେକ ଲୋକ ଅନୁମାନ କରନ୍ତି—କବି କୁମାରଙ୍କ ଜନ୍ମ ପର୍ଯ୍ୟନ୍ତ ଘଟନା କେବଳ ଲିପିବଦ୍ଧ କରି ଅଛନ୍ତି । କିନ୍ତୁ ଏହି ଯୁକ୍ତିଯୁକ୍ତ ଯୁକ୍ତିସଙ୍ଗତ ନୁହେଁ । କାରଣ କୁମାରସ୍ୱାମୀଙ୍କର ଜନ୍ମୋତ୍ସବ ଉପଲକ୍ଷରେ ଏହି କାବ୍ୟ ରଚନା କରାଯାଇଥିଲା । ଏ ହେତୁ କବି ଏହି କାବ୍ୟକୁ ସମ୍ଭବତଃ 'କୁମାରସମ୍ଭବ' ବୋଲି ନାମ ଦେଇ ଅଛନ୍ତି । ଏହା ଛଡ଼ା ପ୍ରଥମ ଆଠ ସର୍ଗରେ କୁମାର ଜନ୍ମ ଅବଧି ଇତିବୃତ୍ତ ନାହିଁ— ଏହା ଉପରଲିଖିତ ସାରାଂଶରୁ ସ୍ପଷ୍ଟ ହେଉ ଅଛି । ଏହେତୁ ଏହା ଅସମ୍ପୂର୍ଣ୍ଣ ରହିଯାଇ ଅଛି ବୋଲି ଅନୁମାନ କରାଯାଇପାରେ । ସପ୍ତମ ଓ ଅଷ୍ଟମ ସର୍ଗରେ ଶିବ-ପାର୍ବତୀଙ୍କର ସମ୍ଭୋଗବର୍ଣ୍ଣନା ଅତ୍ୟନ୍ତ ନଗ୍ନ ଓ ମର୍ଯ୍ୟାଦାରହିତ । ଏହା ରୁଚିପୂର୍ଣ୍ଣ ନ ହେବାରୁ ଆନନ୍ଦବର୍ଦ୍ଧନପ୍ରଭୃତି ଆଳଙ୍କାରିକ-ମାନେ କବିଙ୍କ ଦୋଷ ବ୍ୟକ୍ତ କରି ଅଛନ୍ତି (ଧ୍ୱନ୍ୟାଲୋକ ୧୪୭ ପୃଷ୍ଠା ଦ୍ରଷ୍ଟବ୍ୟ) । କେତେକ କହନ୍ତି— ଶୃଙ୍ଗାରର ଏତାଦୃଶ ନଗ୍ନବର୍ଣ୍ଣନାରେ ପାର୍ବତୀ କ୍ରୁଦ୍ଧ ହୋଇ ଶାପ ଦେଇଥିଲେ । ତା ଫଳରେ କାବ୍ୟ ଅସମ୍ପୂର୍ଣ୍ଣ ରହିଗଲା । ଟୀକାକାର ଅରୁଣଗିରିନାଥ ଏହି କିମ୍ବଦନ୍ତୀ ସ୍ପଷ୍ଟଭାବେ ଉଲ୍ଲେଖ

କର ଅଛନ୍ତି । ଏହି ବିବରଣୀରୁ ଜଣାଯାଏ—କାଳିଦାସଙ୍କ ସମୟରେ ମଧ୍ୟ ଏହି ପରି ଆକ୍ଷେପ ହେଉଥିଲା । ସମ୍ଭବତଃ ଏହି ହେତୁ କାଳିଦାସ କୁମାର ସମ୍ଭବକୁ ଅସମ୍ପୂର୍ଣ୍ଣ କରି ରଖିଦେଲେ । କାରଣ ଯାହା ହେଉ ପଛେ, ଅଷ୍ଟମ ସର୍ଗ ପରେ ଥିବା ଅନ୍ୟସର୍ଗଗୁଡ଼ିକ କାଳିଦାସଙ୍କଦ୍ୱାରା ରଚିତ ହୋଇ ନାହିଁ । ପ୍ରଥମଭାଗରେ ସର୍ଗମାନଙ୍କ ଶ୍ଳୋକସଂଖ୍ୟା କମ୍ ଦେଖାଯାଏ । ଷାଠିଏ ଶ୍ଳୋକରୁ କମ୍ ଶ୍ଳୋକ ଥିବା ସର୍ଗ 'ରଘୁବଂଶ'ରେ ଦୁଇଟି ଓ କୁମାରସମ୍ଭବର ପ୍ରଥମ ଅଠସର୍ଗାତ୍ମକ ପ୍ରଥମଭାଗରେ ଗୋଟିଏ ମାତ୍ର । ଠିକ୍ ଏହାର ଓଲଟା ଅଷ୍ଟମ ସର୍ଗପରେ ଥିବା କୁମାରସମ୍ଭବର ଦ୍ୱିତୀୟ ଭାଗରେ ଥିବା ୯ଟି ସର୍ଗରୁ ସାତଟି ସର୍ଗରେ ୬୦ରୁ କମ୍ ଶ୍ଳୋକସଂଖ୍ୟା ଦେଖାଯାଏ । ଏହି ଶ୍ଳୋକମାନଙ୍କର ଭାଷାଶୈଳୀ ମଧ୍ୟ ପୂର୍ବଭାଗର ଭାଷାଶୈଳୀଠାରୁ ସମ୍ପୂର୍ଣ୍ଣ ପୃଥକ୍ । ଉପମା, ଅର୍ଥାନ୍ତରନ୍ୟାସପ୍ରଭୃତି ଅଳଙ୍କାରମାନଙ୍କର ମଧ୍ୟ କାଳିଦାସଙ୍କର ଅନ୍ୟାନ୍ୟ ଗ୍ରନ୍ଥ ଓ କୁମାରସମ୍ଭବର ପୂର୍ବଭାଗରେ ଯେପରି ରମଣୀୟ ସରସ ସମାବେଶ ଦେଖାଯାଏ, ଏହି ଭାଗରେ ସେପରି ସରସ ସମାବେଶ ଦେଖାଯାଏ ନାହିଁ । 'ଉମାବତେ ସୁରେନ୍ଦ୍ରେଣା-ଦଶ୍ଚ ମାନବମ୍ମସିନମ୍' (୧୦,୪) ଇତ୍ୟାଦି ସ୍ଥଳରେ ଯତିଭଙ୍ଗ 'ମତ୍ୟୈକଧ୍ୱମ୍' (୧୨,୩୬) 'ମଦ୍ଭିଗ୍ରହମଧ୍ୟ' (୧୦,୪୨), 'ଧନୁ-ଶ୍ଚକେଷ୍ୟମାଣମ୍' (୧୩,୨୧) ଇତ୍ୟାଦି ଅଶୁଦ୍ଧ ପ୍ରୟୋଗ 'ଚ' 'ହି' ଇତ୍ୟାଦି ପାଦପୂରକ ଅବ୍ୟୟମାନଙ୍କର ବହୁଳ ପ୍ରୟୋଗ 'ଅହୋ ଅହୋ ଦେବଗଣାଃ ସୁରେନ୍ଦ୍ରମୁଖାଃ ଶୃଣୁଧ୍ୱଂ ବଚନଂ ମମୈତେ' (୧୨,୫୪) ଇତ୍ୟାଦି ସଦୃଶ ନୀରସ ରଚନାମାନ ପ୍ରମାଣିତ କରନ୍ତି ଯେ 'କୁମାରସମ୍ଭବ'କୁ ଅସମ୍ପୂର୍ଣ୍ଣ ଦେଖି କାଳିଦାସଙ୍କର ଉତ୍ତରକାଳୀନ କୌଣସି ନିମ୍ନସ୍ତରର କବି ବାକି

ସାହସ କରି ପୂର୍ଣ୍ଣ କରି ଅଛନ୍ତି । ଅଶ୍ୱଘୋଷକୃତ 'ବୁଦ୍ଧଚରିତ'-ବିଷୟରେ ମଧ୍ୟ ଏହି ପରି କୁହାଯାଇ ପାରେ । ଆମେ ପୂର୍ବରୁ ଏ ବିଷୟରେ ଆମର ମତ ବ୍ୟକ୍ତ କରିଅଛୁଁ ।

ଏହି କାବ୍ୟରେ ମହାଦେବ, ପାର୍ବତୀ ଓ କାମଦେବଙ୍କର ବିବିଧ ଚେଷ୍ଟା ବର୍ଣ୍ଣନାରେ କବି ନିଜର ସମସ୍ତ ଶକ୍ତି ବ୍ୟୟିତ କରି ଅଛନ୍ତି । ମହାଦେବ ଓ ପାର୍ବତୀ ଅସାଧାରଣ ଆଦର୍ଶ ଦିବ୍ୟ ଦମ୍ପତି । ଜଣେ ତ୍ରିଲୋକର ପିତା, ଅନ୍ୟ ଜଣକ ମାତା । ଏହି ପରି ଅଲୌକିକ ବିଭୂତିଦ୍ୱୟର ମାନସିକ ବିକାର ବର୍ଣ୍ଣନା କଲା ସମୟରେ କବି ଅନୌଚିତ୍ୟ ପରିହାର କରିବା ଅତ୍ୟନ୍ତ ଆବଶ୍ୟକ ଥିଲା । ପରନ୍ତୁ କବି କେବଳ ଅଦ୍ଭୁତ ରୂପରେ ବର୍ଣ୍ଣନା କରିଥିଲେ ସମ୍ପ୍ରଦାୟ ପାଠକ ତାଙ୍କୁ ଏତେ ପ୍ରେମରେ ଦେଖି ନଥାନ୍ତେ । କବି ଏହି ମର୍ଯ୍ୟାଦାକୁ ଅତ୍ୟନ୍ତ କୌଶଳରେ ନିର୍ବାହ କରି ଅଛନ୍ତି । ଚେତନଚିଦ୍ ସ୍ୱରୂପିଣୀ, ସଦାତପଶ୍ଚର୍ଯ୍ୟାରତ, ଶିବଙ୍କୁ ତପେ ମାନ ବିକ୍ଷୁବ୍ଧ ହେବା ଦେଖି, କାରଣ ଅନ୍ୱେଷଣ କରି, କାରଣଭୂତ କାମଦେବଙ୍କୁ ଧ୍ୱସ୍ତ କରିଥିବା କଠୋରହୃଦୟ ଭଗବାନ୍ ମହାଦେବ ପାର୍ବତୀଙ୍କର ଉଗ୍ର ତପସ୍ୟା ଓ ସହଜ ପ୍ରେମରେ ପ୍ରସନ୍ନ ହୋଇ ଅଛନ୍ତି ଏବଂ ତାଙ୍କ ସହିତ ବିବାହ କରିବାକୁ ଉତ୍କଣ୍ଠିତ ହୋଇ ପ୍ରତୀକ୍ଷା କରୁ ଅଛନ୍ତି । ପରେ ତାଙ୍କ ସହିତ ବିବିଧ ବିଳାସଯୁକ୍ତ ପ୍ରଣୟକେଳି କରୁ ଅଛନ୍ତି । ସନ୍ଧ୍ୟା-ବନ୍ଦନାଦି ନିତ୍ୟ ନୈମିତ୍ତିକ କ୍ରିୟାକଳାପ କଲାବେଳେ ଅଧିକ ସମୟ ବ୍ୟୟ କଲେ ପାର୍ବତୀ କ୍ରୁଦ୍ଧ ହେଉଛନ୍ତି ଏବଂ ସେ ତାଙ୍କୁ ଅନୁନୟ ବିନୟ କରି ପ୍ରସନ୍ନ କରୁ ଅଛନ୍ତି—ଇତ୍ୟାଦି ବର୍ଣ୍ଣନା କବି ଅତି ସରସ ଓ ମନୋହରଭାବରେ କରି ଅଛନ୍ତି । ନିଜର

ଅନୁପମ ସୌନ୍ଦର୍ଯ୍ୟ ନେଇ ଯାହାଙ୍କର ଅତ୍ୟନ୍ତ ଅଭିମାନ, ପୁଣି ଯେ କନ୍ଦର୍ପଙ୍କୁ ଦଗ୍ଧ ହେବା ଦେଖି ନିରାଶା ହୋଇ ମହାଦେବଙ୍କୁ ପତିରୂପେ ପାଇବାକୁ ଅତ୍ୟନ୍ତ ଉଗ୍ର ତପସ୍ୟା କରି ନିଜ ସୁକୁମାର ଶରୀରକୁ ଅତ୍ୟନ୍ତ କଷ୍ଟ ଦେଉଛନ୍ତି ଯେ ଗୁରୁଜନଙ୍କ ସମ୍ମୁଖରେ ଅତ୍ୟନ୍ତ ବିନୀତ ଅଥଚ ଦୁର୍ଜ୍ଜନମାନଙ୍କୁ ବାଗ୍‌ବାଣରେ ବିଦ୍ଧ କରନ୍ତି, ସେ ପୁଣି ପତିଙ୍କର ସନ୍ଧ୍ୟା ବନ୍ଦନାରେ ଅଧିକ ସମୟ ଦେଖି ସପତ୍ନୀ ସମାନ ମତ୍ସରଗ୍ରସ୍ତ—ଏହିପରି ଭାବରେ ପାର୍ବତୀଙ୍କର ବର୍ଣ୍ଣନା କବି ଅତ୍ୟନ୍ତ କୌଶଳ ସହକାରେ କରି ଅଛନ୍ତି । ସେହିପରି ସମଗ୍ର ବ୍ରହ୍ମାଣ୍ଡରେ ଅଖଣ୍ଡ ସାମ୍ରାଜ୍ୟ ବିସ୍ତାର କରି ଅଭିମାନଗ୍ରସ୍ତ, ସାକ୍ଷାତ୍ ଯୋଗିରାଜ ମହାଦେବଙ୍କର ଧୈର୍ଯ୍ୟ ଭଙ୍ଗ କରି ମୋହଜାଲରେ ଆବଦ୍ଧ କରିବାକୁ ଗର୍ବ ପ୍ରକାଶ କରିଥିବା କନ୍ଦର୍ପ ମଧ୍ୟ ହୃଦୟରେ ଶଙ୍କା ରଖି ନନ୍ଦୀଙ୍କ ଆଖିରେ ଧୂଳି ପକାଇ ଚୋର ପରି ମହାଦେବଙ୍କର ଆଶ୍ରମରେ ପ୍ରବେଶ କରି ଅଛନ୍ତି । ଏ ସମସ୍ତ ବର୍ଣ୍ଣନା କବି ଅତି ନିପୁଣତା ସହିତ ଚିତ୍ରିତ କରି ଅଛନ୍ତି ।

ପ୍ରଥମ ଆଠ ସର୍ଗରେ ସମସ୍ତ ବର୍ଣ୍ଣନା କବି ଅତ୍ୟନ୍ତ କୁଶଳତା ସହକାରେ କରି ଅଛନ୍ତି । ପ୍ରଥମ ସର୍ଗରେ ହିମାଳୟର ବର୍ଣ୍ଣନା, ତୃତୀୟ ସର୍ଗରେ ଅକାଳିକ ବସନ୍ତଋତୁର ପ୍ରାଦୁର୍ଭାବରେ ବନଶ୍ରୀର ବର୍ଣ୍ଣନା, ଚତୁର୍ଥ ସର୍ଗରେ ରତି ବିଳାପ, ପଞ୍ଚମ ସର୍ଗରେ ବଟୁବେଶଧାରୀ ମହାଦେବ ଓ ପାର୍ବତୀଙ୍କର କଥୋପକଥନ, ଏ ସମସ୍ତ ବିଷୟ ଅତି ପ୍ରସାଦଗୁଣପୂର୍ଣ୍ଣ ଶୈଳୀରେ ଅତିଉତ୍ତମରୂପେ ଚିତ୍ରିତ କରାଯାଇ ଅଛି । ଏହି କାବ୍ୟରେ ସଂଯୋଗ ଓ ବିପ୍ରଲମ୍ଭରୂପ ଦ୍ୱିବିଧ ଶୃଙ୍ଗାର ଓ କରୁଣ ରସର ପ୍ରାଧାନ୍ୟ ଦେଖାଯାଏ । ଉକ୍ତ ବିସ୍ତୃତ ଭାବରେ କାବ୍ୟରେ ବର୍ଣ୍ଣିତ ଉତ୍କୃଷ୍ଟ ବର୍ଣ୍ଣନାମାନ

ଦିଅଯାଇପାରୁ ନାହିଁ । ତଥାପି କେତେ ଉଦାହରଣ ପାଠକମାନଙ୍କ ସମ୍ମୁଖରେ ଉପସ୍ଥାପିତ କରୁଅଛୁଁ —

**आमेखलं संचरतां घनानां छायामधःसानुगतां निषेव्य ।**
**उद्वेजिता वृष्टिभिराश्रयन्ते शृङ्गाणि यस्यातपवन्ति सिद्धाः ॥**

କୁମାର, ୧, ୫

ହିମାଳୟରେ ବାସ କରୁଥିବା ସିଦ୍ଧମାନେ ପର୍ବତମଧ୍ୟଭାଗରେ ସଞ୍ଚରଣ କରୁଥିବା ମେଘମାନଙ୍କର ତଳଶିଖର ଉପରେ ପଡ଼ୁଥିବା ଛାୟା ସେବନ କଲାବେଳେ ବୃଷ୍ଟିଦ୍ୱାରା ପୀଡ଼ିତ ହେଲେ ଉଚ୍ଚଶିଖର ଅନ୍ୱେଷଣ କରି ସୂର୍ଯ୍ୟପ୍ରକାଶର ସୁଖ ଅନୁଭବ କରନ୍ତି ।

**कुबेरगुप्तां दिशमुष्णरश्मौ गन्तुं प्रवृत्ते समयं विलङ्घ्य ।**
**दिग् दक्षिणा गन्धवहं मुखेन व्यलीकनिःश्वासमिवोत्ससर्ज ॥**

କୁମାର ୩, ୨୫

ମର୍ଯ୍ୟାଦା ଲଂଘନ କରି ପ୍ରିୟତମ ଚାଲିଗଲେ ପତ୍ନୀ ବିରହଦୁଃଖରେ ଯେପରି ଦୀର୍ଘ ଶ୍ୱାସ ଛାଡ଼ନ୍ତି, ସେହିପରି ସୂର୍ଯ୍ୟ ଅସମୟରେ ଉତ୍ତର ଦିଗକୁ ଗଲେ ଦକ୍ଷିଣଦିଗ ମଳୟାନିଳରୂପ ଦୁଃଖନିଃଶ୍ୱାସ ଛାଡ଼ିଲା ।

ମଦନଦାହ ପରେ ରତିଙ୍କର ବିଳାପ ପଢ଼ି ଯେଉଁ ସହୃଦୟ ପାଠକର ଅଶ୍ରୁ ବିଗଳିତ ନ ହେବ, ସେପରି ପାଠକ ବିରଳ । ରତି ନିଜ ଆଖିଆଗରେ ପତିଙ୍କୁ ଭସ୍ମ ହେବା ଦେଖି ମୂର୍ଚ୍ଛିତ ହୋଇ ଯାଇଛନ୍ତି । କେତେକ ସମୟ ପରେ ଚେତନା ଲାଭ କରି ଭୂମି-ଉପରେ ଗଡ଼ିଯାଇ ବିଳାପ କରୁଅଛନ୍ତି । ତାଙ୍କର କେଶାବଳୀ

ହସ୍ତବିଗ୍ରସ୍ତ ହୋଇଅଛୁ, ତାଙ୍କର ବିଳାପ ଶୁଣି ସମସ୍ତ ବନ କାନ୍ଦି ଉଠୁଛି । ପତିଙ୍କର ବିବିଧ ଗୁଣ ଓ ସ୍ନେହପୂର୍ଣ୍ଣ ବିଳାସ ସ୍ମରଣ କରି ରୋଦନ କରୁଅଛନ୍ତି । ଏହି ବର୍ଣ୍ଣନା ଅତ୍ୟନ୍ତ ହୃଦୟଦ୍ରାବକ । ଉଦାହରଣ ସ୍ୱରୂପ ନିମ୍ନଲିଖିତ ଶ୍ଳୋକ ଦେଖନ୍ତୁ—

**हृदये वससीति मत्प्रियं यदवोचस्तदवैमि कैतवम् ।**
**उपचारपदं न चेदिदं त्वमनङ्गः कथमक्षता रतिः ॥**

କୁମାର ୪,୨

ତୁମେ ସବୁବେଳେ କହୁଥିଲ—'ତୁମେ ମୋ ହୃଦୟରେ ସବୁବେଳେ ରହିଅଛ ।' ମୁଁ ଭାବୁଛି—ସେ ସମସ୍ତ ମିଛ । କେବଳ ମୋର ମନ ଭୁଲାଇବାକୁ କହୁଥିଲ । ନହେଲେ ତୁମର ଶରୀର ଭସ୍ମ ହେଲା ପରେ ତୁମ ହୃଦୟରେ ଥିବା ରତି କିପରି ଭସ୍ମ ନ ହୋଇ ରହିଛି ? ଏହି ଶ୍ଳୋକର ଶବ୍ଦଗୁଡ଼ିକ ବଡ଼ ସରଳ, ଭାଷା ଅଳଙ୍କାରିକ ନୁହେଁ ତଥାପି ରତିଙ୍କର ବିଳାପର ବର୍ଣ୍ଣନା ଅତ୍ୟନ୍ତ ଗମ୍ଭୀର ଭାବେ କରାଯାଇ ଅଛି ।

ପଞ୍ଚମ ସର୍ଗରେ ବ୍ରହ୍ମଚାରୀଙ୍କର ଛଳୋକ୍ତି ଓ ପାର୍ବତୀଙ୍କର ଖଣ୍ଡନପର ଉତ୍ତରମାନ ଅଦ୍ୱିତୀୟ । ଯେତେବେଳେ ବ୍ରହ୍ମଚାରୀ 'ହେ ଦେବ ଅକିଞ୍ଚନ, ଶ୍ମଶାନବାସୀ ବିରୂପାକ୍ଷ' ବୋଲି ମହାଦେବଙ୍କର ନିନ୍ଦା ପାର୍ବତୀଙ୍କୁ ଶୁଣାଇଲେ, ସେତେବେଳେ ପାର୍ବତୀ କହି ଅଛନ୍ତି—

**अकिञ्चनः सन् प्रभवः स सम्पदां त्रिलोकनाथः पितृसद्मगोचरः ।**
**स भीमरूपः शिव इत्युदीर्यते न सन्ति याथार्थ्यविदः पिनाकिनः ॥**

କୁମାର ୫,୭୭

'ସେ ନିଜେ ଧନହୀନ ହେଲେ ମଧ୍ୟ ଅନ୍ୟମାନଙ୍କୁ ସମ୍ପତ୍ତି ଦେଇ ପାରନ୍ତି, ଶ୍ମଶାନରେ ରହିଲେ ମଧ୍ୟ ତିନି ଲୋକର ଅଧିପତି । ସେ ଭୟଙ୍କରରୂପ (ବିରୂପାକ୍ଷ) ହେଲେ ମଧ୍ୟ ଲୋକେ ତାଙ୍କୁ 'ଶିବ' (ମଙ୍ଗଳମୟ ବା କଲ୍ୟାଣକାରୀ) ବୋଲି କହନ୍ତି । ସତକଥା କହିବାକୁ ଗଲେ—ମହାଦେବଙ୍କର ଯଥାର୍ଥ ସ୍ୱରୂପ କେହି ହେଲେ ଜାଣି ନାହାନ୍ତି । ମହାଦେବଙ୍କର ଜାତି ଓ ଜନ୍ମ କେହି ଜାଣନ୍ତି ନାହିଁ ବୋଲି ବ୍ରହ୍ମଚାରୀଙ୍କର ଆକ୍ଷେପ ଶୁଣି ପାର୍ବତୀ ଉତ୍ତର ଦେଇଛନ୍ତି—

**विवक्षता दोषमपि च्युतात्मना त्वयैकमीशं प्रति साधु भाषितम् ।**
**यमामनन्त्यात्मभुवोऽपि कारणं कथं स लक्ष्यप्रभवो भविष्यति ॥**

କୁମାର ୫, ୮୧

ଅସ୍ଥିରଜ୍ଞାନ ହୋଇ, ନିର୍ଦୋଷ ମହାଦେବଙ୍କର ଦୋଷପରେ ଦୋଷ ଦେଖାଇବାକୁ ଚେଷ୍ଟା କଲେ ମଧ୍ୟ ତୁମ ମୁହଁରୁ ଗୋଟିଏ ସତ କଥା ବାହାରି ପଡ଼ିଛି । ତୁମେ ଯାହା କହୁଛ—ଶିବଙ୍କର ଜନ୍ମର କୌଣସି ଠିକଣା ନାହିଁ—ତାହା ଠିକ୍ । ଯାହାଙ୍କଠାରୁ ବ୍ରହ୍ମାଙ୍କର ମୂଳ ଉତ୍ପତ୍ତି ହୋଇ ଅଛି, ସେହି ଅନାଦି ଶିବଙ୍କର ଜନ୍ମ ଠିକଣା କିପରି କିଏ କଳନା କରି ପାରିବ ?

ଯେଉଁ ଅର୍ଥାନ୍ତରନ୍ୟାସରେ ଅନୁଭବର ସାରସର୍ବସ୍ୱ ପରିପୂର୍ଣ୍ଣ, ସେହିପରି ଅର୍ଥାନ୍ତରନ୍ୟାସ ଉକ୍ତିଗୁଡ଼ିକ କାଳିଦାସଙ୍କର ବିଶ୍ୱବ୍ୟାପିନୀ ଅସାଧାରଣ ପ୍ରତିଭାର ପରିଚୟ ପ୍ରଦାନ କରନ୍ତି । 'ଏକୋ ହି ଦୋଷୋ ଗୁଣସନ୍ନିପାତେ ନିମଜ୍ଜତୀନ୍ଦୋଃ କିରଣେଷ୍ୱିବାଙ୍କଃ' (୧,୩) [ଯେଉଁଠାରେ ଶହ ଶହ ଗୁଣ ଅଛି, ସେଠାରେ ଗୋଟାଏ ଦୋଷ କୌଣସିମତେ ତାର ମହତ୍ତ୍ୱ କମାଇପାରେ ନାହିଁ,

ପ୍ରତ୍ୟୁତ ସେହି ଗୁଣରାଶିରେ ଚନ୍ଦ୍ରକିରଣରେ କଳଙ୍କ ପରି ବିଲୀନ ହୋଇଯାଏ ।] 'ସ୍ୱଜନସ୍ୟ ହି ଦୁଃଖମଗ୍ରତୋ ବିବୃତଦ୍ୱାରମିବୋପଜାୟତେ' (୪, ୨୬) (ନିଜ ଲୋକମାନଙ୍କ ଆଗରେ ଦୁଃଖ ଏପରି ବାହାରେ ଯେପରି ହୃଦୟର କବାଟ ଖୋଲା ହୋଇଯାଇଛି) 'ନ ରତ୍ନମନ୍ୱିଷ୍ୟତି, ମୃଗ୍ୟତେ ହି ତତ୍' (୫,୪୫) ('ରତ୍ନ କାହାକୁ ଖୋଜେ ନାହିଁ, କିନ୍ତୁ ଲୋକେ ରତ୍ନକୁ ଖୋଜନ୍ତି') 'ମନୋରଥାନାମଗତିର୍ନ ବିଦ୍ୟତେ' (୫,୬୦) (ମନୋରଥର ଅଗମ୍ୟ ହୋଇ କୌଣସି ବିଷୟ ନାହିଁ) । ଇତ୍ୟାଦି । ଏହିପରି ନାନା ପ୍ରକାର ଉକ୍ତିମାନ କୁମାରସମ୍ଭବରେ ବେଶି ପରିମାଣରେ ଦେଖାଯାଏ । ଏ ସମସ୍ତ ଆଜିକାଲି ମଧ୍ୟ ଚଳନ୍ତିମାଳି ରୂପରେ ପ୍ରଚଳିତ ଅଛି ।

କାଳିଦାସ କୁମାରସମ୍ଭବର କଥାବସ୍ତୁ କେଉଁ ଗ୍ରନ୍ଥରୁ ସଂଗ୍ରହ କରିଛନ୍ତି— ଏ ବିଷୟରେ ପଣ୍ଡିତମାନଙ୍କର ମତଭେଦ ଦେଖାଯାଏ । ଶିବ ପୁରାଣ ଓ ସ୍କନ୍ଦ ପୁରାଣରେ କାର୍ତ୍ତିକେୟଙ୍କର ଚରିତ ବର୍ଣ୍ଣିତ ହୋଇଅଛି । ଉଭୟର ବର୍ଣ୍ଣନା ସହିତ 'କୁମାରସମ୍ଭବ'ର ବର୍ଣ୍ଣନାର କେତେକ ସାମଞ୍ଜସ୍ୟ ଦେଖାଯାଏ । ନିମ୍ନରେ କେତେକ ଉଦାହରଣ ଦିଆଗଲା—

୧ । ଶିବପୁରାଣ—

**द्वयोरपि भवान् श्रेष्ठः सर्वगः सर्वशक्तिमान् ।**
**वज्रं च निष्फलं स्याद्वै, त्वं तु नैव कदाचन ॥**

(ଦୁହିଁଙ୍କ ମଧ୍ୟରେ ତୁମେ ଶ୍ରେଷ୍ଠ, ସର୍ବଗାମୀ ଓ ସର୍ବଶକ୍ତିମାନ୍ । ସମୟୁସମୟରେ ବଜ୍ର ନିଷ୍ଫଳ ହୋଇପାରେ, ମାତ୍ର ତୁମେ କଦାପି ନିଷ୍ଫଳ ନୁହଁ )

କୁମାରସମ୍ଭବ—

**वज्रं तपोवीर्यमहत्सु कुण्ठं त्वं सर्वतोगामी च साधनं च ।**

(ତପସ୍ୟାରେ ଅଧିକଶକ୍ତିଶାଳୀ ବ୍ୟକ୍ତିମାନଙ୍କ ଉପରେ ବଜ୍ରର ପ୍ରଭାବ କୁଣ୍ଠିତ ହୋଇଯାଏ, ମାତ୍ର ତୁମର ପ୍ରଭାବ କୌଣସି-ଠାରେ କୁଣ୍ଠିତ ହୁଏ ନାହିଁ, ତୁମେ ସର୍ବଗାମୀ ଓ କାର୍ଯ୍ୟସାଧକ)

୨ । ଶିବପୁରାଣ—

**अन्येषां गणना नास्ति पातयामि हरं यदि ।**

କୁମାରସମ୍ଭବ

**कुर्यां हरस्यापि पिनाकपाणेर्धैर्यच्युतिं के मम धन्विनोऽन्ये ।**

୩, ୧୦

(ପିନାକଧନୁର୍ଦ୍ଧାରୀ ମହାଦେବଙ୍କର ଧୈର୍ଯ୍ୟ ମଧ୍ୟ ଚ୍ୟୁତ କରି ପାରିବି । ଅନ୍ୟ ଧନୁର୍ଦ୍ଧାରୀମାନଙ୍କର ଗଣନା କଅଣ ?) ଏହି ଅସାଧାରଣ ଅର୍ଥ ସାମ୍ୟ ଥିବା ହେତୁ କାଳିଦାସ ଶୈବ ଓ ସ୍କନ୍ଦ ପୁରାଣରୁ କଥାବସ୍ତୁ ଗ୍ରହଣ କରି ଅଛନ୍ତି ବୋଲି କେତେକ ଲୋକ କହନ୍ତି । କିନ୍ତୁ ଆମ ମତରେ ତାହା ଯୁକ୍ତିସଙ୍ଗତ ନୁହେଁ । ଲୋକମାନଙ୍କର ଧାରଣା ବର୍ତ୍ତମାନ ମିଳୁଥିବା ଅଠରଟିଯାକ ପୁରାଣ ବ୍ୟାସଦେବ ଲେଖି ଅଛନ୍ତି । ଯଥାର୍ଥରେ ପୁରାଣମାନଙ୍କର ବହୁତ ଭାଗ ଅନେକ ବର୍ଷ ପରେ ଲେଖାଯାଇ ଅଛି । ଅତଏବ ଏ ଦୁଇଟି ପୁରାଣ କାଳିଦାସଙ୍କ ସମୟରେ ବିଦ୍ୟମାନ ଥିଲା— ଏହାର କୌଣସି ପ୍ରବଳ ପ୍ରମାଣ ମିଳେ ନାହିଁ । ଓଲଟା 'କୁମାରସମ୍ଭବ'ରେ ଯେଉଁ ସବୁ ଉତ୍କୃଷ୍ଟ ପ୍ରସଙ୍ଗମାନ ସନ୍ନିବେଶିତ ହୋଇଅଛି, ସେ

ସମସ୍ତ କାଳିଦାସଙ୍କର ନିଜସ୍ୱ—ଏହା ତାଙ୍କର କୁମାର ସମ୍ଭବ ଓ ଅନ୍ୟାନ୍ୟ ଗ୍ରନ୍ଥମାନଙ୍କର ପରିଶୀଳନରୁ ଜଣାଯାଏ । ବିବାହ ପରେ ଭଗବାନ୍ ମହାଦେବ ଅଙ୍ଗ ଦେଶରେ ତପସ୍ୟା କରି ରହି ଥିଲେ । କାମଦେବ ସେଠାରେ ପ୍ରବେଶ କରି ତପସ୍ୟାନିରତ ଶିବଙ୍କୁ ପ୍ରେମ ପାଶରେ ବନ୍ଧୀ କରିବାକୁ ଚେଷ୍ଟା କଲେ । ତାହା ଦେଖି ମହାଦେବ କ୍ରୁଦ୍ଧ ହୋଇ ତାଙ୍କୁ ଅନଙ୍ଗ କରିଦେଲେ— ଏହି ବିଷୟ ରାମାୟଣର ବାଲ କାଣ୍ଡରେ ୨୩ଶ ସର୍ଗରେ ଅଛି । ଏହି ବିଷୟ ଅବଶ୍ୟ କାଳିଦାସଙ୍କର ଗୋଚର ଥିଲା । * କଳା-ଦୃଷ୍ଟିରେ କବି ତାର ପରିବର୍ତ୍ତନ ଆବଶ୍ୟକ ମନେ କଲେ । ଏ ହେତୁ କାଳିଦାସ ପାର୍ବତୀଙ୍କର ବିବାହ ପୂର୍ବରୁ ହିମାଳୟରେ କାମଦେବଙ୍କର ଦାହ ବର୍ଣ୍ଣନା କରି ଅଛନ୍ତି । ବାହ୍ୟରୂପର ଅବଲମ୍ବନରେ ସଂଜାତ ପ୍ରେମ ଚିରସ୍ଥାୟୀ ନୁହେଁ କିନ୍ତୁ ଅନେକ ଘାତପ୍ରତିଘାତ ସତ୍ତ୍ୱେ ଅବିଚଳିତ ପ୍ରେମ କେବଳ ଚିରସ୍ଥାୟୀ— ଏହି ମତ କବି ଏହି ପ୍ରସଙ୍ଗରେ ଚର୍ଚ୍ଚିତ କରି ଅଛନ୍ତି । ଏହି ମତ 'ଶାକୁନ୍ତଳ'ରେ ପୂର୍ଣ୍ଣ ବିକାଶ ଲାଭ କରିଅଛି । ଏଥିରୁ ଏହା ପ୍ରମାଣିତ ହେଲା ଯେ 'କୁମାରସମ୍ଭବ'ର ପ୍ରଥମ ଆଠ ସର୍ଗରେ ଯେଉଁ ସବୁ ବର୍ଣ୍ଣନା ଅଛି, ସେ ସମସ୍ତ କାଳିଦାସଙ୍କର ନିଜସ୍ୱ । ଶିବପୁରାଣ ଓ ସ୍କନ୍ଦପୁରାଣରେ ତାର ଅନୁକରଣ କରା ଯାଇ ଅଛି । ପରବର୍ତ୍ତୀ ସର୍ଗମାନଙ୍କରେ କୌଣସି କବି ସ୍କନ୍ଦ-ପୁରାଣାନ୍ତର୍ଗତ ଘଟନା ଅବଲମ୍ବନ କରି 'କୁମାରସମ୍ଭବ'କୁ ପୂର୍ଣ୍ଣ

* ଏହି ପ୍ରକାର ଉଲ୍ଲେଖ 'ରଘୁବଂଶ'ର ୧୧ଶ ସର୍ଗ ୧୩ଶ ଶ୍ଳୋକରେ ଅଛି । କିନ୍ତୁ ସମ୍ଭବତଃ ଏହି ଶ୍ଳୋକ ପ୍ରକ୍ଷିପ୍ତ । କେତେକ ପ୍ରାଚୀନ ଟୀକାକାର ଏହାର ବ୍ୟାଖ୍ୟା କରି ନାହାନ୍ତି ।

କରି ଅଛନ୍ତି— ଏହା ଡ଼ା. ୱିଣ୍ଟର୍ନିଜ୍ଙ୍କର ମତ ଏବଂ ବିଶ୍ୱସନୀୟ । *

## ମେଘଦୂତ

ଆମେ ପୂର୍ବରୁ କହିଛୁଁ ଯେ କାଳିଦାସ କେତେକ ସମୟ ରାଜନୈତିକ କାର୍ଯ୍ୟ ବଶତଃ ବିଦର୍ଭରେ ରହିଥିଲେ । ସମ୍ଭବତଃ ସେ ସମୟରେ ଏହି ଖଣ୍ଡକାବ୍ୟ ରଚନା କରିଥିଲେ । ଏହି କାବ୍ୟର ପ୍ରତିପାଦ୍ୟ ବସ୍ତୁ ଏହା—

ଅଲକାଧିପତି କୁବେରଙ୍କର ଏକ ଜଣ ସେବକ ଯକ୍ଷ ପ୍ରମାଦବଶତଃ କୌଣସି ଅପରାଧ କଲେ । କୁବେର କ୍ରୁଦ୍ଧ ହୋଇ ଏକ ବର୍ଷ ପର୍ଯ୍ୟନ୍ତ ଦେଶରୁ ନିର୍ବାସନରୂପ ଦଣ୍ଡ ଦେଲେ । ଶାପଗ୍ରସ୍ତ ଯକ୍ଷ ଅଳକା ନଗରୀ ଛାଡ଼ି ଜନକତନୟାସ୍ନାନରେ ପବିତ୍ରଜଳ ରାମଗିରିନାମକ ପର୍ବତକୁ ଯାଇ ବାସ କରିବାକୁ ଲାଗିଲେ । ୮ମାସ ଅତୀତ ହେଲା ପରେ ଆଷାଢ଼ ମାସର ଶେଷଦିନ ଉପସ୍ଥିତ ହେଲା । ଆକାଶରେ ମେଘ ଦେଖାଦେଲେ । ଏହି ବର୍ଷା-ଋତୁର ଆରମ୍ଭରେ ମେଘ ଦର୍ଶନରେ ଯକ୍ଷର ପ୍ରିୟତମା-ପତ୍ନୀ-ବିୟୋଗ-ଦୁଃଖ ଉଦ୍ବେଳିତ ହେଲା । ନିଜ ପତ୍ନୀର ମଧ୍ୟ ସେହିପରି ଦୁଃଖ ହୋଇଥିବ ଭାବି ବିରହୀ ଯକ୍ଷ ମେଘକୁ ଦୂତ କରି ନିଜର କୁଶଳବାର୍ତ୍ତା ପ୍ରିୟତମା ପତ୍ନୀଙ୍କ ପାଖକୁ ପଠାଇବାକୁ ସ୍ଥିର କଲେ । ଧୂଆଁ, ନିଆଁ, ପାଣି, ପବନର ସମଷ୍ଟିସ୍ୱରୂପ ଅଚେତନ ମେଘ କିପରି ସନ୍ଦେଶ ନେଇ ପାରିବ ବୋଲି କାମାର୍ତ୍ତ ଯକ୍ଷ ଭାବି ପାରିଲେ

* Geschichte der Indischen Litteratur, Band ii, 58.

ନାହିଁ । ସେ ସେହି ପର୍ବତରେ ନବବିକଶିତ କୁଟଜପୁଷ୍ପରେ ମେଘର ପୂଜା କରି ସ୍ୱାଗତ ସମ୍ଭାଷଣ କଲେ ଏବଂ ମେଘକୁ ଅଳକା-ନଗରୀ ଯିବା ମାର୍ଗ ବତାଇଲେ । ମାଳକ୍ଷେତ୍ର, ଆମ୍ରକୂଟ ପର୍ବତ, ବିନ୍ଧ୍ୟ ପର୍ବତର ବିଶାଳ ପାଦଦେଶରେ ବିଶୀର୍ଣ୍ଣ ନର୍ମଦାର ବର୍ଣ୍ଣନା କରି ମେଘକୁ ଦଶାର୍ଣ୍ଣ ଦେଶର ରାଜଧାନୀ ବିଦିଶାର ମାର୍ଗ ବତାଇଲେ ।

**'नीचैराख्यं' गिरिमधिवसेस्तत्र विश्रामहेतो-**
**स्त्वत्सम्पर्कात्पुलकितमिव प्रौढपुष्पैः कदम्बैः ।**
**यः पण्यस्त्रीरतिपरिमलोद्गारिभिर्नागराणा-**
**मुद्दामानि प्रथयति शिलावेश्मभिर्यौवनानि ॥**

ମେଘ ୨୫

'ବିଦିଶାର ସମୀପରେ 'ନୀଚୈଃ' ପର୍ବତ । ତୁମେ ସେଠାରେ ରହି ବିଶ୍ରାମ କରିବ । ସେହି ପର୍ବତରେ ପ୍ରସ୍ଫୁଟିତ ବଡ଼ ବଡ଼ କଦମ୍ବ ଫୁଲ ଦେଖି ତୁମେ ମନେ କରିବ—ସତେ ଯେପରି ସେହି ପର୍ବତ ତୁମ ସମ୍ପର୍କ ଲାଭ କରି ପୁଲକିତ ହୋଇ ଅଛି । ସେହି ପର୍ବତରେ ଅନେକ ଶିଳାଗୃହ ଅଛି, ସେହି ଶିଳାଗୃହମାନଙ୍କରେ ବେଶ୍ୟାମାନେ ବିହାର କରନ୍ତି । ସେମାନଙ୍କ ଶରୀର ଅଙ୍ଗରାଗର ସୁଗନ୍ଧ ଗୃହଆଡ଼େ ଚହଟି ଥାଏ ଏବଂ ତଦ୍ୱାରା ବିଦିଶାବାସୀ ନାଗରିକମାନଙ୍କର ପ୍ରଖର ଯୌବନର ପରିଚୟ ମିଳେ ।

ଏହା ପରେ ଅଳକା ନଗରୀ ଯିବା ବାଟରେ ନ ପଡ଼ୁଥିଲେ ମଧ୍ୟ ଉଜ୍ଜୟିନୀକୁ ଯିବାକୁ ଅନୁରୋଧ କଲେ । କବି ଉଜ୍ଜୟିନୀକୁ ଅତି ମନୋହରଭାବେ ବିସ୍ତୃତ କରି ବର୍ଣ୍ଣନା କରି ଅଛନ୍ତି ।

ଉଦାହରଣସ୍ୱରୂପ ମହାକାଳ ମନ୍ଦିରରେ ସନ୍ଧ୍ୟାକାଳର ଅଳଙ୍କ-ସମୟରେ ବେଶ୍ୟାନୃତ୍ୟର ବର୍ଣ୍ଣନା ଦେଖନ୍ତୁ—

पादन्यासक्वणितरसनास्तत्र लीलावधूतै –
रत्नच्छायाखचितवलिभिश्चामरैः क्लान्तहस्ताः ।
वेश्यास्त्वत्तो नखपदसुखान् प्राप्य वर्षाग्रबिन्दू-
नामोक्ष्यन्ते त्वयि मधुकरश्रेणीदीर୍घान् कटाक्षान्

ମେଘ ୩୭

'ମହାକାଳ ମନ୍ଦିରରେ ବେଶ୍ୟାମାନେ ଚାମର ଚାଳନ କରି କରି ନୃତ୍ୟ କରୁଥିବେ । ପାଦ ସଞ୍ଚାଳନରେ ସେମାନଙ୍କର କାଞ୍ଚୀ ବାଜୁଥିବ, ରତ୍ନଖଚିତ ଦଣ୍ଡ ଧରି ଚାମର ସଞ୍ଚାଳନ କରିବା ହେତୁ ସେମାନଙ୍କର ହାତ ମଉଳିଯାଉଥିବ । ସେମାନେ ତୁମଠାରୁ ବର୍ଷାରମ୍ଭ ସମ୍ଭୂତ ଜଳବିନ୍ଦୁର ସଂସର୍ଗରେ ଶିଳାନଖମାନଙ୍କର ସୁଖ ଲାଭ କରି ତୁମ ଉପରେ ଭ୍ରମରମାନଙ୍କ ପରି ଦୀର୍ଘ କଟାକ୍ଷ ପାତ କରିବେ ।'

ଏହା ପରେ ମାର୍ଗରେ ଗମ୍ଭୀରାନଦୀ, ଦେବଗିରିପର୍ବତରୁ କାର୍ତ୍ତିକେୟ ମନ୍ଦିର, ଚର୍ମଣ୍ୱତୀନଦୀ, ଦଶପୁର (ଆଧୁନିକ ମନ୍ଦସୋର ବ୍ରହ୍ମାବର୍ତ୍ତଦେଶ, କୁରୁକ୍ଷେତ୍ର, ସରସ୍ୱତୀ, ଗଙ୍ଗୋପ୍ରଭୃତି ନଦୀ ଏବଂ ପରିଶେଷରେ ହିମାଳୟରେ ଅବସ୍ଥିତ ଅଳକାପୁରୀର ବର୍ଣ୍ଣନା ସଂକ୍ଷିପ୍ତ ଅଥଚ ଅତ୍ୟନ୍ତ ରମଣୀୟଭାବେ କଲ୍ପନାଶ୍ରୁତିରୀ ରଚି କରି ଅଛନ୍ତି । ରାମଗିରିଠାରୁ ଅଳକାନଗରୀ ପର୍ଯ୍ୟନ୍ତ ମାର୍ଗରେ ଅବସ୍ଥିତ ପର୍ବତ, ଦେଶ, ନଗର, ଗ୍ରାମ, ବନ, ଉପବନ, ନଦୀ-

ପ୍ରକୃତିର ବର୍ଣ୍ଣନା ଅତ୍ୟନ୍ତ ରମଣୀୟ ଭାବରେ କରାଯାଇଥିବାରୁ ଏହି ଭାଗଟି ଅତ୍ୟନ୍ତ ଚିତ୍ତାକର୍ଷକ ହୋଇ ଅଛି ।

ଉତ୍ତରାର୍ଦ୍ଧରେ କବି ଅଳକାନଗରୀ ତଥା ଯକ୍ଷ ଗୃହ ବର୍ଣ୍ଣନା କଲାବେଳେ ନିଜ ପ୍ରତିଭାବଳରେ ଏକ ନୂତନ ସୃଷ୍ଟି ରଚନା କରି କଳ୍ପନା ଶକ୍ତିକୁ ସ୍ୱଚ୍ଛନ୍ଦ ବିହାର କରିବା ଅବକାଶ ଦେଇ ଅଛନ୍ତି । ପ୍ରାରମ୍ଭରେ ଯକ୍ଷ ଅଳକା ନଗରୀ ବର୍ଣ୍ଣନ କରିବାକୁ ଯାଇ କହିଛନ୍ତି—ହେ ମେଘ ଅଳକାନଗରୀର ଭବନଗୁଡ଼ିକ ଅଭ୍ରଂଲିହ । ସେ ସମସ୍ତ ଉଚ୍ଚ ଧରଣର ଚିତ୍ରମାନଙ୍କରେ ବିଭୂଷିତ ଓ ରତ୍ନ-ଖଚିତ । ସବୁବେଳେ ସେ ଭବନମାନଙ୍କରେ ମୃଦଙ୍ଗ ବାଜୁଥାଏ । ସେଠାର ଅଧିବାସୀମାନେ ସବୁବେଳେ ତରୁଣ ଏବଂ ସବୁବେଳେ ଯୌବନର ସ୍ୱଚ୍ଛନ୍ଦ ଆନନ୍ଦ ଉପଭୋଗ କରନ୍ତି । ସେଠାର ବୃକ୍ଷ ଓ ଲତାମାନେ ସବୁବେଳେ ଫଳପୁଷ୍ପ ଭାବରେ ବିନମ୍ର, ମୟୂରମାନେ ଆନନ୍ଦରେ ନୃତ୍ୟ-ରତ ଏବଂ ରାତ୍ରିଗୁଡ଼ିକ ସବୁବେଳେ ଚନ୍ଦ୍ରକାନ୍ତଦ୍ୟୋତିତ । ସେଠାର ସ୍ଫଟିକମଣି ନିର୍ମିତ ସୌଧ ଉପରେ ବସି ତୁମର ଗମ୍ଭୀର ଧ୍ୱନି ପରି ମନୋହର ମୃଦଙ୍ଗ ଧ୍ୱନି ଶୁଣି ଶୁଣି ଯକ୍ଷମାନେ ନିଜ ନିଜ ପ୍ରିୟତମାମାନଙ୍କ ସହିତ ମଦିରା ପାନ କରନ୍ତି । ସେଠାରେ ଚିତ୍ରବିଚିତ୍ର ବହୁମୂଲ୍ୟ ବସ୍ତ୍ର, ଅଳଙ୍କାର ସଙ୍ଗେ ସଙ୍ଗେ ପୁଷ୍ପ, ପଲ୍ଲବ, ପାଦରଞ୍ଜନ ସଙ୍ଗେ ସଙ୍ଗେ ଲକ୍ଷାରସ ପ୍ରଭୃତି ସ୍ତ୍ରୀମାନଙ୍କର ପ୍ରସାଧନୋପ-ଯୋଗୀ ସମସ୍ତ ଶୃଙ୍ଗାରସାମଗ୍ରୀ କଳ୍ପବୃକ୍ଷମାନଙ୍କରୁ ମିଳେ । ଅଳକାରେ ଭଗବାନ୍ ମହାଦେବ ବାସ କରନ୍ତି—ଏହେତୁ କାମଦେବ ନିଜ ଧନୁ ଓ ବାଣର ଉପଯୋଗ କରନ୍ତି ନାହିଁ, କିନ୍ତୁ ଚତୁର ସୁନ୍ଦରୀମାନେ କାମଦେବଙ୍କର ସେହି କାର୍ଯ୍ୟକୁ ନିଜର

ଉଦାହରଣସ୍ୱରୂପ ମହାକାଳ ମନ୍ଦିରରେ ସନ୍ଧ୍ୟାକାଳର ଅଭିଷେକ ସମୟରେ ବେଶ୍ୟାନୃତ୍ୟର ବର୍ଣ୍ଣନା ଦେଖନ୍ତୁ—

**पादन्यासक्वणितरसनास्तत्र लीलावधूतै –**
**रत्नच्छायाखचितवलिभिश्चामरैः क्लान्तहस्ताः ।**
**वेश्यास्त्वत्तो नखपदसुखान् प्राप्य वर्षाग्रबिन्दू-**
**नामोक्ष्यन्ते त्वयि मधुकरश्रेणीदीर्घान् कटाक्षान्**

ମେଘ ୩୭

'ମହାକାଳ ମନ୍ଦିରରେ ବେଶ୍ୟାମାନେ ଚାମର ଚାଳନ କରି କରି ନୃତ୍ୟ କରୁଥିବେ । ପାଦ ସଂଚାଳନରେ ସେମାନଙ୍କର କାଞ୍ଚୀ ବାଜୁଥିବ, ରତ୍ନଖଚିତ ଦଣ୍ଡ ଧରି ଚାମର ସଂଚାଳନ କରିବା ହେତୁ ସେମାନଙ୍କର ହାତ ମଉଳିଯାଉଥିବ । ସେମାନେ ତୁମଠାରୁ ବର୍ଷାରମ୍ଭ ସମ୍ଭୂତ ଜଳବିନ୍ଦୁର ସଂସର୍ଗରେ ଖିନ୍ନ ନଖମାନଙ୍କର ସୁଖ ଲାଭ କରି ତୁମ ଉପରେ ଭ୍ରମରମାନଙ୍କ ପରି ଦୀର୍ଘ କଟାକ୍ଷ ପାତ କରିବେ ।'

ଏହା ପରେ ମାର୍ଗରେ ଗମ୍ଭୀରାନଦୀ, ଦେବଗିରିପର୍ବତସ୍ଥ କାର୍ତ୍ତିକେୟ ମନ୍ଦିର, ଚର୍ମଣ୍ୱତୀନଦୀ, ଦଶପୁର (ଆଧୁନିକ ମନ୍ଦସୋର ବ୍ରହ୍ମାବର୍ତ୍ତଦେଶ, କୁରୁକ୍ଷେତ୍ର, ସରସ୍ୱତୀ, ଗଙ୍ଗୋପ୍ରଭୃତି ନଦୀ ଏବଂ ପରିଶେଷରେ ହିମାଳୟରେ ଅବସ୍ଥିତ ଅଳକାପୁରୀର ବର୍ଣ୍ଣନା ସଂକ୍ଷିପ୍ତ ଅଥଚ ଅତ୍ୟନ୍ତ ରମଣୀୟଭାବେ କଲ୍ପନାସ୍ତୁତିରେ ବର୍ଣ୍ଣନା କରି ଅଛନ୍ତି । ରାମଗିରିଠାରୁ ଅଳକାନଗରୀ ପର୍ଯ୍ୟନ୍ତ ମାର୍ଗରେ ଅବସ୍ଥିତ ପର୍ବତ, ଦେଶ, ନଗର, ଗ୍ରାମ, ବନ, ଉପବନ, ନଦୀ-

ଅମୋଘ କଟାକ୍ଷମାନଙ୍କ ଦ୍ୱାରା ସାଧନ କରଥାନ୍ତି । ସେହି ନଗରୀରେ ଯକ୍ଷରାଜ କୁବେରଙ୍କ ପ୍ରାସାଦର ଉତ୍ତରରେ ମୋର ଘର । ତାହା ଇନ୍ଦ୍ରଧନୁ ପରି ରମଣୀୟ ତୋରଣରେ ସୁଶୋଭିତ । ଏହେତୁ ଅନ୍ୟର ସାହାଯ୍ୟ ନ ନେଇ ତୁମେ ଦୂରରୁ ଚିହ୍ନି ପାରିବ । ଏହି ଘରର ଉଦ୍ୟାନରେ ମୋର ପ୍ରିୟତମା ଲଗାଇଥିବା ହସ୍ତପ୍ରାପ୍ୟ ସ୍ତବକ ଭାରରେ ନଇଁପଡ଼ିଥିବା ଏକ ମନ୍ଦାର ବୃକ୍ଷ ଅଛି । ଏହି ଉଦ୍ୟାନରେ ଏକ ବାପୀ ଅଛି, ଏହାର ପାଉଛଗୁଡ଼ିକ ମରକତ-ପ୍ରସ୍ତରରେ ନିର୍ମିତ । ତହିଁରେ ସବୁବେଳେ ସୁନାର ପଦ୍ମମାନେ ଫୁଟିଥାନ୍ତି । ସେହି ବାପୀର ତଟରେ ସୁବର୍ଣ୍ଣକଦଳୀକୁଞ୍ଜବେଷ୍ଟିତ ନୀଳମଣି ପ୍ରସ୍ତର ନିର୍ମିତ, ଏକ କ୍ରୀଡ଼ାପର୍ବତ ଅଛି । ସେହି କ୍ରୀଡ଼ାପର୍ବତର ମାଧବୀମଣ୍ଡପ ସମୀପରେ ତୁମେ ଏକ ଅଶୋକବୃକ୍ଷ ଓ ଏକ ବକୁଳବୃକ୍ଷ ଦେଖିପାରିବ । ଦୁଇଟି ବୃକ୍ଷ ମଧ୍ୟରେ ରତ୍ନଖଚିତ ଏକ ସୁବର୍ଣ୍ଣ ସ୍ତମ୍ଭଉପରେ ଗୋଟିଏ ସ୍ଫଟିକଶିଳା ଅଛି । ତା ଉପରେ ପ୍ରତିଦିନ ସାୟଂକାଳରେ ମୟୂର ବସେ, ଏବଂ ମୋର ପ୍ରିୟତମା ତାକୁ ନିଜ ରତ୍ନଖଚିତ କଙ୍କଣ ନିନାଦ ସହକାରେ କରତାଳି ଦେଇ ନୃତ୍ୟ ଶିଖାଏ । ଏ ସମସ୍ତ ଚିହ୍ନ ଦେଖି ମୋର ଘର ଚିହ୍ନି ପାରିବ । ସେହି କ୍ରୀଡାପର୍ବତ ଉପରେ ବସି ଯଦି ତୁମେ ତୁମର ବିଦ୍ୟୁଦ୍‌ଦୃଷ୍ଟି ଘରଭିତରେ ପକାଇବ, ତେବେ ତୁମ ଆଖି ଆଗରେ ପଡ଼ିବ—

आलोके ते निपतति पुरा सा बलिव्याकुला वा
मत्सादृश्यं विरहतनु वा भावगम्यं लिखन्ती ।
पृच्छन्ती वा मधुरवचनां सारिकां पञ्जरस्थां
कच्चिद्भर्त्तुः स्मरसि रसिके त्वं हि तस्य प्रियेति ॥

'ତୁମେ ସେଠାରେ ମଦ୍ଧ୍ୟାହ୍ନବେଳେ ହୁଏତ ମୋର ପ୍ରିୟତମା ମୋର ମଙ୍ଗଳକାମନାରେ ଦେବାରାଧନା କରୁଥିବ, ଅଥବା ମୋର ଶରୀର ବିରହବଶତଃ ଦୁର୍ବଳ ହୋଇଥିବ ବୋଲି ଅନୁମାନ କରି ସେହି ଭାବ ଚିତ୍ରରେ ଅଙ୍କନ କରୁଥିବ, ଅଥବା ସମୀପସ୍ଥ ପଞ୍ଜରରେ ଥିବା ମଧୁରଭାଷିଣୀ ସାରିକାକୁ 'ତୁ କଣ ମୋର ପ୍ରଭୁଙ୍କୁ ମନେ ପକାଉଚୁ ? ସେ ତ ତୋତେ ବେଶି ଭଲ ପାଉଥିଲେ' ବୋଲି ପଚାରୁଥିବ । ଅଥବା ମଳିନବସନାବୃତ ନିଜ କୋଳରେ ବୀଣା ରଖି ମୋ ସମ୍ବନ୍ଧରେ ଗୀତ ରଚନା କରି ଗାଉଥିବ ଏବଂ ଶୋକବଶତଃ ଉଦ୍‌ଗତ ଅଶ୍ରୁଜଳରେ ଆର୍ଦ୍ରୀଭୂତ ବୀଣାକୁ ପୋଛି ନିଜେ ଅଭ୍ୟସ୍ତ କରୁଥିବା ମୂର୍ଚ୍ଛନାକୁ ବାରମ୍ବାର ଭୁଲିଯାଉଥିବ । ଦେହଳୀ-ଉପରେ ଫୁଲମାନ ରଖି ମୋର ବିରହଅବଧି ଦିନମାନଙ୍କୁ ଗଣୁଥିବ । ତାର ଶରୀର ଅତ୍ୟନ୍ତ କୃଶ ହୋଇଯାଇଥିବ, ଅଭ୍ୟଙ୍ଗ ସ୍ନାନ ଅଭାବରୁ କେଶପାଶ ରୁକ୍ଷ ହୋଇ କପୋଳ ଉପରେ ପଡ଼ି ଯାଉଥିବ । ବିଚିତ୍ର ବସ୍ତ୍ର ଓ ଅଳଙ୍କାର ଧାରଣ ଛାଡ଼ି ଦେଇ ଦୁଃଖୋତ୍ପନ୍ନରେ ଖଟ ଉପରେ ପଡ଼ିଯାଉଥିବ । ଏପରି ଅବସ୍ଥାରେ ମୋର ପ୍ରିୟତମାକୁ ଦେଖିଲେ ତୁମର ମଧ୍ୟ କରୁଣା ଜାତ ହେବ ଏବଂ ତୁମେ ମଧ୍ୟ ନୂତନଜଳକଣରୂପ ଅଶ୍ରୁ ତ୍ୟାଗ କରିବ । ହେ ସମୟରେ ଯଦି ମୋର ପ୍ରିୟତମା ଶୋଇଥିବ, ତେବେ ଏକ ପ୍ରହର ପର୍ଯ୍ୟନ୍ତ ଗର୍ଜନ ନକରି ଅପେକ୍ଷା କରିବ, କାରଣ ସେ ଅତି କଷ୍ଟରେ ଲବ୍ଧ ନିଦ୍ରାରେ ମୋର ଗାଢ଼ାଲିଙ୍ଗନ-ସୁଖ ଅନୁଭବ କରୁଥିବ—ତୁମେ କେବେହେଲେ ଗମ୍ଭୀର ଗର୍ଜନ କରି ତାକୁ ସେ ସୁଖରୁ ବଞ୍ଚିତ କରିବନାହିଁ । ଯେତେବେଳେ ସେ ତୁମର ଜଳବିନ୍ଦୁବାହୀ ଶୀତଳ ସମୀରଣର ସଂସ୍ପର୍ଶରେ

ଜାଗି ଉଠିବ, ସେତେବେଳେ ମୋର କୁଶଳସମ୍ବାଦ ଶୁଣାଇ ଜଣାଇବ —

**श्यामास्वङ्गं चकितहरिणीप्रेक्षणे दृष्टिपातं**
**वक्त्रच्छायां शशिनि शिखिनां बर्हभारेषु केशान्।**
**उत्पश्यामि प्रतनुषु नदीवीचिषु भ्रूविलासान्**
**हन्तैकस्थं क्वचिदपि न ते चण्डि सादृश्यमस्ति।**

ମେଘ, ୧୦୯

'ପ୍ରିୟେ, ମୁଁ ଯେଉଁବେଳେ ତୁମ ରୂପମାଧୁରୀ ସ୍ମରୁଅଛୁ ଏବଂ ଆତ୍ମ-ବିନୋଦନ ସକାଶେ ଭିନ୍ନ ଭିନ୍ନ ବସ୍ତୁ ସହିତ ତୁମ ଅଙ୍ଗମାନଙ୍କର ତୁଳନା କରିବାକୁ ବସେ। ପ୍ରିୟଙ୍ଗୁ ଲତାମାନଙ୍କରେ ତୁମ ଅଙ୍ଗର, ଚକିତହରିଣୀର ନେତ୍ରରେ ତୁମ ଦୃଷ୍ଟିପାତର, ଚନ୍ଦ୍ରରେ ତୁମ ମୁଖକାନ୍ତିର, ମୟୂରମାନଙ୍କର ପୁଚ୍ଛରେ ତୁମ କେଶପାଶର, ନଦୀ-ମାନଙ୍କର ପାତଳା ପାତଳା ଚଞ୍ଚଳ ଲହରୀମାନଙ୍କରେ ତୁମ ଭ୍ରୂବିଲାସର ତୁଳନା କରେ ମାତ୍ର ହେ ଚଣ୍ଡି, କୌଣସି ଗୋଟିଏ ବସ୍ତୁରେ ମୁଁ ତୁମର ଯେ କୌଣସି ଅଙ୍ଗର ସାଦୃଶ୍ୟ ଦେଖି ପାରେ ନାହିଁ।'

**त्वामालिख्य प्रणयकुपितां धातुरागैः शिलायाम्**
**आत्मानं ते चरणपतितं यावदिच्छामि कर्तुम्।**
**अस्रैस्तावन्मुहुरुपचितैर्दृष्टिरालुप्यते मे**
**क्रूरस्तस्मिन्नपि न सहते सङ्गमं नौ कृतान्तः॥**

ମେଘ, ୧୧୦

'ହେ ପ୍ରିୟେ ! ସମୟ ସମୟରେ ଭାବେ—ତୁମେ ପ୍ରଣୟ-କୋପ କରି ବସିଛ । ଏ ହେତୁ ତୁମ ପ୍ରତିକୃତି ପ୍ରସ୍ତରଶିଳାଉପରେ ଗେରୁରେ ଲେଖି, ନିଜ ମସ୍ତକ ତୁମ ଚରଣତଳରେ ପଡ଼ିଥିବା ପରି ଲେଖି ବସେ । କିନ୍ତୁ ହେବ କଅଣ ? ମୋର ଆଖି ବାରମ୍ବାର ଅଶ୍ରୁଜଳରେ କଳୁଷିତ ହୋଇଯାଏ । ଚିତ୍ରରେ ମଧ୍ୟ ଆମ ଦୁହିଙ୍କର ମିଳନ ନୃଶଂସ ବିଧି ସହିପାରେ ନାହିଁ ।'

ସ୍ୱପ୍ନାବସ୍ଥାରେ ମଧ୍ୟ ତୁମ ଦର୍ଶନ ହେଲାମାତ୍ରେ ତୁମର ଆଲିଙ୍ଗନ ସକାଶେ ମୁଁ ନିଜ ବାହୁ ଉଠାଇ ଥାଏ । ମୋର ଏହି କରୁଣ ଅବସ୍ଥା ଦେଖି ବନଦେବତାମାନଙ୍କର ମଧ୍ୟ ମୁକ୍ତାସଦୃଶ ଅଶ୍ରୁବିନ୍ଦୁମାନ ବୃକ୍ଷମାନଙ୍କର ପତ୍ର ଉପରେ ପଡ଼ିଥାଏ । ମୁଁ ବଡ଼ ଧୈର୍ଯ୍ୟ ଓ ବିବେକ ସହିତ ବିରହଦୁଃଖ ସହ୍ୟ କରୁଅଛି । ତୁମେ ମଧ୍ୟ ମୋ ପରି ଧୈର୍ଯ୍ୟ ଧରି ବିରହକଷ୍ଟ ସହ୍ୟ କରୁଥାଅ । କାରଣ

**'कस्यैकान्तं सुखमुपनतं दुःखमेकान्ततो वा**
**नीचैर्गच्छत्युपरि च दशा चक्रनेमि क्रमेण ।**

ମେଘ, ୧୧୪

'କିଏ ହେଲେ ଅବିଚ୍ଛିନ୍ନଭାବେ ସୁଖ ବା ଅବିଚ୍ଛିନ୍ନଭାବରେ ଦୁଃଖ ପାଇ ନ ଥାଏ । ଚକର ନେମି ପରି ଭାଗ୍ୟ କେତେବେଳେ ତଳେ କେତେବେଳେ ବା ଉପରେ ଘୂରିଥାଏ । ଭଗବାନ୍ ବିଷ୍ଣୁ ଶେଷ-ଶଯ୍ୟାରୁ ଉଠିଲାମାତ୍ରେ ମୋର ଶାପାନ୍ତ ହେବ, କେବଳ ଚାରିମାସ ଅଛି, ଆଖି ବୁଜି ଏହି ସମୟତକ କଟାଇ ଦିଅ । ବିରହପରେ ଆମେ ଦୁହେଁ ମିଶି ବିରହାବସ୍ଥାରେ ବହୁଗୁଣିତ ଅମର ଅଭିଳାଷମାନ ଶରତ୍ତୁର ବିମଳ ଚନ୍ଦ୍ରାଲୋକରେ ଚରିତାର୍ଥ

କରିବା । ହେ ମେଘ ମୋର ପ୍ରାର୍ଥନା ଶୁଣି ଅଥବା ମୋ ଉପରେ ଥିବା ତୁମର ଅନୁକମ୍ପାବଳରେ ମୋର କାମ ପୂର୍ଣ୍ଣ କରିବ । ପରେ ତୁମେ ବର୍ଷା କାଳରେ ସୁନ୍ଦରରୂପ ଧାରଣ କରି ନିଜ ବାଞ୍ଛିତ ସ୍ଥାନକୁ ଯିବ । ମୋ ପରି କେବେହେଲେ ତୁମର ବିଜୁଳି ସହିତ ବିରହ ନ ଘଟୁ ।'

୧୨୦ଟି ଶ୍ଳୋକରେ କବି ନିଜର ସମସ୍ତ ଶକ୍ତି ବିନିଯୋଗ କରି ଅଛନ୍ତି । ଏହି ୧୨୦ଟି ଶ୍ଳୋକରେ କବିଙ୍କର ସୌନ୍ଦର୍ଯ୍ୟ-ପିପାସୁ ଦୃଷ୍ଟି ଓ କଳାମର୍ମଜ୍ଞତା ସ୍ପଷ୍ଟରୂପରେ ପ୍ରତିଫଳିତ ହୋଇ ଅଛି । ନିଖୁଣ ଚିତ୍ରକାର ଯେପରି ତୁଳିକା ସାହାଯ୍ୟରେ ଗୋଟିଏ ଛଅଟି ରେଖାଦ୍ୱାରା ସୁନ୍ଦରରୁ ସୁନ୍ଦରତର ଚିତ୍ରମାନ ଅଙ୍କନ କରେ, କବି ସେହିପରି ଅତିଅଳ୍ପ ଶବ୍ଦମାନଙ୍କରେ ମୃଦୁଳ ଅଥଚ ଅତ୍ୟନ୍ତ ରମଣୀୟ ଉଦାର ଭାବମାନଙ୍କରେ ଚିତ୍ରମାନ ଅଙ୍କନ କରି ଅଛନ୍ତି । ଏହି ଖଣ୍ଡକାବ୍ୟରେ ଏପରି କୌଣସି ସ୍ଥଳ ନାହିଁ, ଯହିଁରେ କୁଶଳ ଚିତ୍ରକାର ଭାବପୂର୍ଣ୍ଣ ଚିତ୍ର ପ୍ରସ୍ତୁତ କରିପାରିବ ନାହିଁ । ଏହି କାବ୍ୟର ଶବ୍ଦ ରଚନାର ସଂଘଟନା ଜାଜ୍ଜ୍ୱଲ୍ୟମାନ ହୀରା ପରି ନିର୍ଦ୍ଦୋଷ ଓ ଉଜ୍ଜ୍ୱଳ । ଏହି କାବ୍ୟରେ ଅର୍ଥରୂପରତ୍ନର ଉପମା, ଉତ୍ପ୍ରେକ୍ଷା ଓ ଅର୍ଥାନ୍ତରନ୍ୟାସ ପ୍ରଭୃତି ସୁନ୍ଦର ଅଳଙ୍କାରମାନଙ୍କ ସହିତ ଯୋଗ କରିଥିବାରୁ କାବ୍ୟର ସୁଷମା ଅଧିକ ଦ୍ୱିଗୁଣିତ ହୋଇ ଅଛି । କାଳିଦାସ ଯଦି ଏକ 'ମେଘଦୂତ' ମାତ୍ର ରଚନା କରିଥାନ୍ତେ, ତେବେ ସୁଦ୍ଧା ସେ ସଂସାରରେ ମହାକବିମାନଙ୍କ ମଧ୍ୟରେ ଉଚ୍ଚ ସ୍ଥାନ ପାଇଥାନ୍ତେ । ଏହି କାବ୍ୟ ଅତ୍ୟନ୍ତ ସରସ ଓ ଅତ୍ୟୁତ୍କୃଷ୍ଟ । ନିମ୍ନଲିଖିତ କେତୋଟି ଉଦାହରଣରୁ ପାଠକ-

ମାନଙ୍କ କାବ୍ୟ ପ୍ରତିଭାର ପରିଚୟ ମିଳିବ । 'ଚମ୍ବଲ' ନଦୀର ପରିଚୟ ଦେଇ ଯକ୍ଷ ମେଘକୁ କହିଛନ୍ତି –

त्वय्यादातुं जलमवनते शार्ङ्गिणो वर्णचौरे
तस्याः सिन्धोः पृथुमपि तनुं दूरभावात् प्रवाहम् ।
प्रेक्षिष्यन्ते गगनगतयो नूनमावर्ज्य दृष्टी-
रेकं मुक्तागुणमिव भुवः स्थूलमध्येन्द्रनीलम् ॥

ମେଘ ୪୮

'ଏହି ଚର୍ମଣ୍ବତୀ ନଦୀର ପ୍ରବାହ ବଡ଼ ବିଶାଳ । କିନ୍ତୁ ଦୂରରେ ଥିବା ହେତୁ ସୂକ୍ଷ୍ମ ଦେଖାଯାଉଥିବ । ତାର ଧାରା ପୃଥିବୀକଣ୍ଠରେ ଲମ୍ବମାନ ମୁକ୍ତାମାଳା ପରି ଦେଖାଯାଉ ଥିବ । ଭଗବାନ୍ ବିଷ୍ଣୁଙ୍କର ବର୍ଣ୍ଣକୁ ଚୋରାଇ ଥିବା ଶ୍ୟାମଳବର୍ଣ୍ଣ ତୁମେ ଜଳ ନେବା ପାଇଁ ତଳକୁ ଓହ୍ଲାଇଲାବେଳେ ତୁମ୍ଭଙ୍କୁ ଗଗନଗାମୀ ଦେବତାମାନେ ମୁକ୍ତାମାଳା ମଧ୍ୟରୁ ଏକ ସ୍ଥୂଳ ଇନ୍ଦ୍ରନୀଳମଣି ପରି ଆଖି ଖୋଲି ଅବଶ୍ୟ ଦେଖିବେ ।'

ଏହି ଶ୍ଳୋକରେ ଚମ୍ବଲ ନଦୀର ଶୁଭ୍ର ଜଳପ୍ରବାହ-ଉପରେ ନୀଳମେଘର ଅବତରଣରେ ପ୍ରବାହର ଇନ୍ଦ୍ରନୀଳମଣି-ମଧ୍ୟଯୁକ୍ତ ମୁକ୍ତା ସହିତ ସୁନ୍ଦର ଉପମା କେପରି ହୃଦୟସ୍ପର୍ଶୀ ବିଚାର କରନ୍ତୁ । ହିମାଳୟ ଉପରେ ଅଳକାନଗରୀର ବର୍ଣ୍ଣନା ଦେଖନ୍ତୁ —

तस्योत्सङ्गे प्रणयिन इव स्रस्तगङ्गा दुकूलां
न त्वं दृष्ट्वा न पुनरलकां ज्ञास्यसे कामचारिन् ।
या वः काले वहति सलिलोद्गारमुच्चैर्विमाना
मुक्ताजालग्रथितमलकं कामिनीवाभ्रवृन्दम् ॥

'ହେ କାମରୂପୀ ମେଘ, ଏହି କୈଳାଶପର୍ବତର ଅଙ୍କରେ ଠିକ୍ ଗଙ୍ଗାଙ୍କର ତଟରେ ଅଳକାନଗରୀ ବିଦ୍ୟମାନ । ତାହା ମୋର ନିବାସ ସ୍ଥାନ । ତୁମେ ତାକୁ ଦେଖିଲାମାତ୍ରେ ଜାଣିପାରିବ । କୈଳାଶ ପର୍ବତର ପାଦଦେଶରେ ଗଙ୍ଗାଙ୍କର ତଟରେ ଅବସ୍ଥିତ ଏହି ନଗରୀ ନିଜପ୍ରିୟତମର ଉତ୍ସଙ୍ଗରେ ଆସୀନ ଓ ପବନାନ୍ଦୋଳିତବସନା ଏକ ସୁନ୍ଦରୀ ପରି ଦେଖାଯାଉଥିବ । ଏହି ନଗରୀରେ ଅତି ଉନ୍ନତ ହର୍ମ୍ୟମାନ ଅଛି । ବର୍ଷାକାଳରେ ତୁମେ ଗଲାବେଳେ ମେଘମାନେ ଏହି ଉନ୍ନତ ହର୍ମ୍ୟ ସମୀପରେ ରହି ଜଳବିନ୍ଦୁମାନ ବର୍ଷୁଥିବେ । ଅତଏବ ସେ ଅଳକାନଗରୀ ଅଳକାନ୍ତର ବଡ଼ ବଡ଼ ମୁକ୍ତାମାନ ଗୁନ୍ଥି ଶୋଭା ପାଉଥିବା ସୁନ୍ଦରୀ ସ୍ତ୍ରୀ ପରି ଦେଖାଯାଉ ଥିବ ।'

ଏହି ଶ୍ଳୋକରେ ଶ୍ଳେଷ ଓ ଉପମାଳଂକାରର ସୁନ୍ଦର ସମାବେଶ ଦେଖାଯାଏ । 'କୁମାର ସମ୍ଭବ' ପରି ଏହି କାବ୍ୟରେ ମଧ୍ୟ କବି ସ୍ଥାନେ ସ୍ଥାନେ ଅର୍ଥାନ୍ତରନ୍ୟାସ ଅଳଙ୍କାର ମନୋହର-ଭାବେ ସନ୍ନିବେଶିତ କରି ଅଛନ୍ତି । 'କାମାର୍ତ୍ତା ହି ପ୍ରକୃତିକୃପଣାଶ୍ଚେତନାଚେତନେଷୁ' (କାମାତୁର ଜନମାନେ ଚେତନ ଓ ଅଚେତନର ଭେଦ ବାରିପାରନ୍ତି ନାହିଁ ।) 'ରିକ୍ତଃ ସର୍ବୋ ଭବତି ହି ଲଘୁଃ ପୂର୍ଣ୍ଣତା ଗୌରବାୟ' (ନିର୍ଧନ ସବୁଠାରେ ଅନାଦୃତ ହୁଏ, କିନ୍ତୁ ଧନପୂର୍ଣ୍ଣ ହେଲେ ଗୌରବ ପାଏ ଅର୍ଥାତ୍ ଧନିକ ସର୍ବତ୍ର ଆଦୃତ ହୁଏ ।) 'ସ୍ତ୍ରୀଣାମାଦ୍ୟଂ ପ୍ରଣୟବଚନଂ ବିଭ୍ରମୋ ହି ପ୍ରିୟେଷୁ ।' (ସ୍ତ୍ରୀମାନଙ୍କର ନିଜ ପ୍ରିୟତମଙ୍କ ପ୍ରତି ହାବଭାବପ୍ରଦର୍ଶନ ପ୍ରଥମ ପ୍ରୀତିସମ୍ଭାଷଣ) 'ପ୍ରାୟଃ ସର୍ବୋ ଭବତି କରୁଣାବୃତ୍ତିରାର୍ଦ୍ରାନ୍ତରାତ୍ମା' (ଯାହାର ଅନ୍ତଃକରଣ କୋମଳ

ତାଙ୍କର ହୃଦୟ ଦୟାର୍ଦ୍ର ହୋଇଥାଏ ।) ପ୍ରଭୃତି ସୁନ୍ଦର ସୂକ୍ତିମାନଙ୍କଦ୍ୱାରା ମଝେ ମଝେ କାବ୍ୟର ଶୋଭା ଦ୍ୱିଗୁଣିତ ହୋଇଅଛି ।

ଏହି କାବ୍ୟରେ ଆମୂଳଚୂଳ ବିପ୍ରଲମ୍ଭ ଶୃଙ୍ଗାର ବର୍ଣ୍ଣନାର ସାମ୍ରାଜ୍ୟ ଦେଖାଯାଏ । ବିଶେଷତଃ ଉତ୍ତରାର୍ଦ୍ଧରେ ଯକ୍ଷ ନିଜ ଓ ନିଜପତ୍ନୀର ବିରହାବସ୍ଥା ଯେଉଁ ଶ୍ଳୋକମାନଙ୍କରେ କରିଛନ୍ତି, ସେ ସମସ୍ତ ଅତ୍ୟନ୍ତ କରୁଣୋତ୍ପାଦକ । ବିରହିଣୀ ଯକ୍ଷପତ୍ନୀଙ୍କର ବର୍ଣ୍ଣନାରେ କାଳିଦାସ ଏକ ଆଦର୍ଶ ଗୃହିଣୀର ଉତ୍ତମଚିତ୍ର ଅଙ୍କନ କରି ଅଛନ୍ତି । ସେ ଅନ୍ୟାନ୍ୟ ନାୟିକାଙ୍କ ପରି କେବଳ ସୁନ୍ଦରୀ ନଥିଲେ, କିନ୍ତୁ ବିବିଧକଳାକୁଶଳା, ସହୃଦୟା ଅକୃତ୍ରିମ-ପ୍ରେମିକା ଓ ଆଦର୍ଶ ପତିବ୍ରତା ଥିଲେ । ଏତାଦୃଶ ସ୍ତ୍ରୀର ବିରହାବସ୍ଥାର ଚିତ୍ର କବି ଅତ୍ୟନ୍ତ କୌଶଳରେ ଅଙ୍କିତ କରି ଅଛନ୍ତି ।

ଏହି କାବ୍ୟରେ ଆଦ୍ୟପ୍ରାନ୍ତ ସର୍ବତ୍ର ଏକ ମନ୍ଦାକ୍ରାନ୍ତା-ବୃତ୍ତ ବ୍ୟବହୃତ ହୋଇଅଛି । 'କୁମାରସମ୍ଭବ' ପରି ଅନୁଷ୍ଟୁଭ୍, ଉପେନ୍ଦ୍ରବଜ୍ରା, ବିୟୋଗିନୀ, ରଥୋଦ୍ଧତା ପ୍ରଭୃତି ସରଳ ଛନ୍ଦମାନଙ୍କର ସମାବେଶ 'ମେଘଦୂତ'ରେ ନାହିଁ । ଏ ସମସ୍ତ ଛନ୍ଦ ଅପେକ୍ଷା ମନ୍ଦାକ୍ରାନ୍ତାବୃତ୍ତର ରଚନା କଠିନ । ତଥାପି କବି ଏହି ପରି ବଡ଼ ବୃତ୍ତରେ ମଧ୍ୟ କଳ୍ପନାକୁ ମୂର୍ତ୍ତିମତୀ କରିପାରିଛନ୍ତି । ଏହି ଛନ୍ଦ ନାମ ଅନୁଯାୟୀ ମନ୍ଦଗତି ହେବା ହେତୁ ବିପ୍ରଲମ୍ଭ-ଶୃଙ୍ଗାରରେ ବିଶେଷ ଉପଯୋଗୀ । କାଳିଦାସଙ୍କ ପୂର୍ବରୁ ଅନ୍ୟ କୌଣସି କବି ଏହି ବୃତ୍ତରେ ରଚନା କରି ନାହାନ୍ତି । ହରିଷେଣ-ନାମକ କବିଙ୍କର ପ୍ରୟାଗସ୍ଥିତ ଶିଳାସ୍ତମ୍ଭ ପ୍ରଶସ୍ତିରେ ଏକସ୍ଥାନରେ

ମନ୍ଦାକ୍ରାନ୍ତାବୃତ୍ତ ବ୍ୟବହୃତ ହୋଇଅଛି । କିନ୍ତୁ ଏହି ବୃତ୍ତକୁ ଲୋକପ୍ରିୟ କରିବା ପ୍ରଚେଷ୍ଟା କେବଳ କାଳିଦାସଙ୍କର । କାଳିଦାସ ସର୍ବପ୍ରଥମରେ 'ମାଳବିକାଗ୍ନିମିତ୍ର'ରେ ଏହି ବୃତ୍ତ ବ୍ୟବହାର କରି ଅଛନ୍ତି କିନ୍ତୁ 'ମେଘଦୂତ' ପରି ଏତେ ସୁନ୍ଦରଭାବରେ କରିପାରି ନାହାନ୍ତି । 'ମେଘଦୂତ'ରେ ଆରମ୍ଭରୁ ଶେଷ ପର୍ଯ୍ୟନ୍ତ ଅତି ସରସ-ଭାବେ ଏହି ବୃତ୍ତର ଉପଯୋଗ କରିଅଛନ୍ତି ।

'ମେଘଦୂତ'ର ସମାଲୋଚନା ଶେଷ କରିବା ପୂର୍ବରୁ ଗୋଟିଏ ଦୁଇଟି ବିଷୟର ଚର୍ଚ୍ଚା କରିବା ନିତାନ୍ତ ଆବଶ୍ୟକ ମନେ ହୁଏ । ଯକ୍ଷ ଅଳକାପୁରୀରୁ ନିର୍ବାସିତ ହୋଇ ଯେଉଁ ରାମଗିରିରେ ବାସ କରିବାକୁ ଯାଇଥିଲେ, ସେ ରାମଗିରି କେଉଁଠି, ଏ ବିଷୟରେ ପଣ୍ଡିତମାନଙ୍କର ଭିନ୍ନ ଭିନ୍ନ ମତ ଦେଖାଯାଏ । କେତେକ ପଣ୍ଡିତଙ୍କ ମତ— ମଧ୍ୟପ୍ରଦେଶର ପୁରାତନ ସରଗୁଜା-ରାଜ୍ୟର ଅନ୍ତର୍ଗତ ରାମଗଡ଼ ପର୍ବତ କେବଳ ରାମଗିରି । ରାମ ଓ ଲକ୍ଷ୍ମଣ ଏହି ସ୍ଥାନରେ ବନବାସ ସମୟରେ ସ୍ନାନ କରିଥିଲେ— ଏହିପରି ପରମ୍ପରା ଗତ ପ୍ରବାଦ ଅଛି । 'ମେଘଦୂତ'ର ବର୍ଣ୍ଣନା ଅନୁଯାୟୀ ( ୧୨ ଶ୍ଳୋକ ) ଏଠାରେ ଏକ ପ୍ରସ୍ତର ଉପରେ ଶ୍ରୀରାମଚନ୍ଦ୍ରଙ୍କର ଚରଣଚିହ୍ନ ବର୍ତ୍ତମାନ ସୁଦ୍ଧା ନିର୍ମିତ ହୋଇ ରହିଛି । ଏଠାରେ ଅତି ପ୍ରାଚୀନ ମନ୍ଦିରମାନଙ୍କର ଭଗ୍ନାବଶେଷ ମଧ୍ୟ ଦେଖାଯାଏ । ଏହି ପର୍ବତରେ ସୀତାବେଙ୍ଗା ଓ ଜୋଗୀମାରା-ନାମକ ଗୁମ୍ଫାମାନଙ୍କରେ ଖ୍ରୀଷ୍ଟପୂର୍ବ ତୃତୀୟ ବର୍ଷ ପୂର୍ବରୁ ଖୋଦିତ ଶିଳାଲେଖମାନ ବିଦ୍ୟମାନ । ଏ ସମସ୍ତରୁ ଜଣାଯାଏ— ଏ ସ୍ଥାନ ଅତ୍ୟନ୍ତ ପ୍ରାଚୀନ । ତଥାପି ରାମଗଡ଼ କେବଳ ରାମଗିରି—ଏହି ମତ ସର୍ବଜନାଦୃତ ନୁହେଁ । କାରଣ ଏହି ପର୍ବତ ଅମରକଣ୍ଟକ

ପର୍ବତର 'ଈଶାନ୍ୟକୋଣରେ ଅବସ୍ଥିତ, ଦକ୍ଷିଣଦିଗରେ ନୁହେଁ ।
'ମେଘଦୂତ'ରେ ଯକ୍ଷ 'ରାମଗିରି'ରୁ ଉତ୍ତର ଦିଗକୁ ଯିବାପୂର୍ବରୁ
ମାଳକ୍ଷେତ୍ର ଓ ଅମ୍ରକୂଟ ପର୍ବତ ପଡ଼ିବ ବୋଲି ମେଘକୁ କହି
ଅଛନ୍ତି । କାଳିଦାସ ନିଜ କାବ୍ୟରେ ଏହିପରି ଗୁରୁତର
ଭୌଗୋଳିକ ପ୍ରମାଦ ରହିବାକୁ ଦେବେ—ଏହା ସମ୍ଭବ ନୁହେଁ ।
ଏହି ହେତୁ ମେଘଦୂତବର୍ଣ୍ଣିତ ରାମଗିରିର ସନ୍ଧାନ ଅନ୍ୟତ୍ର
କରିବାକୁ ହେବ । ଏହି ବିଷୟର ଦୃଷ୍ଟିରୁ ନାଗପୁର ସନ୍ନିହିତ
'ରାମଟେକ୍' ନାମକ ପର୍ବତ କେବଳ ରାମଗିରି ହୋଇପାରେ ।
ଏହି ସ୍ଥାନଟି ଅତି ପ୍ରାଚୀନ କାଳରୁ ପ୍ରସିଦ୍ଧ । ଏହିଠାରୁ ବାକାଟକ
ରାଜା ଦ୍ୱିତୀୟ ପ୍ରବରସେନଙ୍କ ସମୟର ଏକ ତାମ୍ରଶାସନ ମିଳିଅଛି
ପୁଣି ଏହି ରାଜ୍ୟାନ୍ତର୍ଗତ ବିଦର୍ଭଦେଶର ଋଦ୍ଧପୁରରୁ ପ୍ରାପ୍ତ
ତାମ୍ରଶାସନର 'ରାମଗିରି ସ୍ୱାମିନଃ ପାଦମୂଲାତ୍' ବୋଲି ଉଲ୍ଲିଖିତ
ଅଛି । ଏଥିରୁ ପ୍ରମାଣିତ ହୁଏ ଯେ ବର୍ତ୍ତମାନର ରାମଟେକପର୍ବତ
କେବଳ 'ମେଘଦୂତ' ବର୍ଣ୍ଣିତ ରାମଗିରି । ଏହି ପର୍ବତ ପାର୍ଶ୍ୱରେ
ଏକ ବିଶାଳ ତଳ ଭୂମି ରହିଛି । ଏହା ବର୍ତ୍ତମାନ ପ୍ରତ୍ନତତ୍ତ୍ୱବିଦ୍-
ମାନଙ୍କର ଗବେଷଣାର କ୍ଷେତ୍ର ହୋଇଅଛି । ଏଠାରେ ମିଳୁଥିବା
ପୁରୁଣା ଇଟାମାନଙ୍କର ଆକାରରୁ ବିଶେଷଜ୍ଞମାନେ ସ୍ଥିର କରି
ଅଛନ୍ତି—ସେ ସମସ୍ତ ଗୁପ୍ତଯୁଗର ଇଟା, ଏବଂ ସେ ସ୍ଥାନ ସେ
ସମୟରେ ଅବଶ୍ୟ ପ୍ରସିଦ୍ଧି ଲାଭ କରିଥିଲା । ଏହାର ପାଖରେ
କେବଳ ବାକାଟକ ରାଜାମାନଙ୍କର ରାଜଧାନୀ ନନ୍ଦିବର୍ଦ୍ଧନ ଥିଲା ।
ମାଳକ୍ଷେତ୍ର ଏହାର ଉତ୍ତରରେ, ସାତପୁରା ପର୍ବତର ଉପତ୍ୟକାରେ
ଥିଲା । କଲ୍ୟାଣର ଚାଲୁକ୍ୟମାନଙ୍କର ଏକ ଶିଳାଲେଖରେ ଉଲ୍ଲିଖିତ
ଅଛି ଯେ ଦ୍ୱିତୀୟ ଅଟୁଗୀରାଜା 'ମାଳ' ଦେଶ ବିଷୟ କଲା ପରେ

ଜବ୍ଦଲପୁର ସମୀପସ୍ଥ ତ୍ରିପୁରୀର ହୈହୟବଂଶୀୟ ରାଜାମାନଙ୍କୁ ପରାଜିତ କରିଥିଲେ ।

ଦ୍ୱିତୀୟ ଚନ୍ଦ୍ରଗୁପ୍ତଙ୍କର ଝିଅ ଏବଂ ଦ୍ୱିତୀୟପ୍ରବରସେନଙ୍କର ମାତା ପ୍ରଭାବତୀଗୁପ୍ତା ଭଗବାନ୍ ରାମଚନ୍ଦ୍ରଙ୍କର ପାଦଚିହ୍ନମାନ ପୂଜା କରିବାକୁ ରାମଟେକ ଯାଉଥିଲେ—ଏହି କଥାଟି ତାଙ୍କର ଋଦ୍ଧପୁରର ତାମ୍ରଶାସନରେ ଉଲ୍ଲିଖିତ ହୋଇଅଛି । ସେହିପରି ସମ୍ଭବତଃ କାଳିଦାସ ମଧ୍ୟ ସେଠାକୁ ଯାଇଥିଲେ ଏବଂ ସେଠାରେ 'ମେଘଦୂତ' କାବ୍ୟର ମୌଳିକ କଳ୍ପନା କରିଥିଲେ । ସମ୍ଭବତଃ ନିଜର ଏହି କଳ୍ପନାକୁ ବିସ୍ତୃତ କରିବା ସକାଶେ ସେ ବାଲ୍ମୀକି-ରାମାୟଣର ସାହାଯ୍ୟ ନେଇଛନ୍ତି । ବାଲ୍ମୀକିରାମାୟଣରେ ଗୃଧ୍ର ସମ୍ପାତୀ ହନୁମାନ୍ ପ୍ରଭୃତି ବାନରମାନଙ୍କୁ ଲଙ୍କାର ମାର୍ଗ ବତାଇ-ଥିଲେ । ହନୁମାନ୍ ସମୁଦ୍ର ପାର ହୋଇ ଲଙ୍କାକୁ ଯାଇଥିଲେ । ସେଠାରେ ଅଶୋକବାଟିକାରେ ସେ ଅତି ଦୀନହୀନଦଶାରେ ବର୍ତ୍ତମାନା ସୀତାଙ୍କୁ ଦେଖିଥିଲେ । ସେ ରାମଚନ୍ଦ୍ରଙ୍କର ମୁଦ୍ରିକାକୁ ଅଭିଜ୍ଞାନସ୍ୱରୂପ ଦେଇଥିଲେ । ରାମାୟଣରେ ରାମଚନ୍ଦ୍ରଙ୍କର ବିରହାବସ୍ଥାର ବର୍ଣ୍ଣନା ନିମ୍ନଲିଖିତ ଶ୍ଲୋକମାନଙ୍କରୁ ସ୍ପଷ୍ଟ ହୁଏ—

अनिद्रः सततं रामः सुप्तोऽपि च नरोत्तमः ।
सीतेति मधुरां वाणीं व्याहरन् प्रतिबुध्यते ।
दृष्ट्वा फलं वा पुष्पं वा यच्चान्यत् स्त्रीमनोहरम्
बहुशो हा प्रियेत्येवं श्वसंस्त्वामभिभषाते ॥

ସୁନ୍ଦରକାଣ୍ଡ ୩୬,୪୪-୫

ଏହି ଶ୍ଳୋକମାନଙ୍କର ଏବଂ 'ମେଘଦୂତ'ର କଳ୍ପନା-ସାମଞ୍ଜସ୍ୟ ପାଠକମାନେ ସହଜରେ ବୁଝିପାରୁଥିବେ । 'ମେଘଦୂତ'ରେ ଯକ୍ଷ ମେଘକୁ ଅଳକାର ମାର୍ଗ ବତାଇଛନ୍ତି ଏବଂ ଅଭିଜ୍ଞାନ ପଠାଇବା ସୁବିଧା ନ ଥିବାରୁ ମେଘ ଦ୍ୱାରାରେ ପ୍ରିୟତମାର ବିଶ୍ୱାସ ସକାଶେ ଏକ ଅତୀତ ଅନୁଭୂତ ବିଷୟକୁ ଅଭିଜ୍ଞାନ ସ୍ୱରୂପ ପଠାଇଛନ୍ତି । ଯକ୍ଷ ଏହା ସଙ୍ଗେ ସଙ୍ଗେ କହିଛନ୍ତି—'ମୁଁ ତୁମ ପତିଙ୍କର ମିତ୍ର ଓ ତାଙ୍କର ସନ୍ଦେଶ ନେଇ ଆସିଛି' ଏହି ପରି ତୁମେ କହିଲମାତ୍ରେ ହନୁମାନଙ୍କର ସନ୍ଦେଶ ଶୁଣି ସୀତା ଯେପରି ସାଦରେ ହନୁମାନଙ୍କୁ ସମ୍ମାନିତ କରିଥିଲେ, ସେହିପରି ମୋର ପ୍ରିୟତମା ତୁମ୍ଭଙ୍କୁ ସମ୍ମାନିତ କରିବ । (ଭର୍ତ୍ତୁର୍ମିତ୍ରଂ ପ୍ରିୟମ୍ ଇତ୍ୟାଦି ୧୦୫) ଏଥିରୁ ଜଣାଯାଏ—ଏ ବିଷୟ କବିଙ୍କ ଆଖି-ଆଗରେ ନାଚୁଥିଲା ଏବଂ କବି ତାର ସଦୁପଯୋଗ କରିଅଛନ୍ତି । ଉପରଲିଖିତ ବର୍ଣ୍ଣନାରୁ ରାମାୟଣ ଓ ମେଘଦୂତରେ ପ୍ରସଙ୍ଗ ଓ କଳ୍ପନାର ସାମଞ୍ଜସ୍ୟ ଥିଲେ ମଧ୍ୟ ଅନ୍ୟାନ୍ୟ ସ୍ଥଳରେ କବି ସ୍ୱତନ୍ତ୍ରତା ବଳରେ ସ୍ୱାତନ୍ତ୍ର୍ୟ ପ୍ରଦର୍ଶନ କରି ଏକ ନୂତନ ଉତ୍କୃଷ୍ଟ ସୃଷ୍ଟିର ନିର୍ମାଣ କରି ଅଛନ୍ତି । ଅଳକାକୁ ଯିବା ମାର୍ଗରେ ଦୃଷ୍ଟିଗୋଚର ନଗର, ଗ୍ରାମ, ପର୍ବତ, ନଦୀପ୍ରଭୃତିଙ୍କର ବର୍ଣ୍ଣନାରେ ତଥା ଅଳକା ନଗରୀରେ ଯକ୍ଷର ଆବାସ ଓ ତାଙ୍କ ପ୍ରିୟତମା ପତ୍ନୀଙ୍କର ବିରହାବସ୍ଥାର ବର୍ଣ୍ଣନାରେ କବି ସମ୍ପୂର୍ଣ୍ଣ ନୂତନତା ଦେଖାଇ ଅଛନ୍ତି । ସେ କାହାଠାରେ ଋଣୀ ନୁହନ୍ତି ବୋଲି ନିଃସନ୍ଦେହରେ କୁହାଯାଇ ପାରେ ।

### ସେତୁବନ୍ଧ

ବିଦର୍ଭ ଦେଶରେ ରହିଥିଲା ସମୟରେ କାଳିଦାସ 'ସେତୁବନ୍ଧ' ନାମକ କାବ୍ୟ ରଚନାରେ ମହାରାଜ ଦ୍ୱିତୀୟ ପ୍ରବର-

ସେନଙ୍କୁ ଶେଷେ ସାହାଯ୍ୟ କରିଥାଇ ପାରନ୍ତି । ଏହି କାବ୍ୟ 'ମହାରାଷ୍ଟ୍ରୀ' ନାମକ ପ୍ରାକୃତଭାଷାରେ ଲିଖିତ । ଏଥିରେ ୧୫ଟି ଅଧ୍ୟାୟ ବା ସର୍ଗ ଅଛି । ରାମଚନ୍ଦ୍ରଙ୍କର ସମୁଦ୍ରରେ ସେତୁବନ୍ଧନ, ବାନର ସେନା ସହିତ ଲଙ୍କା ଆକ୍ରମଣ, ରାକ୍ଷସମାନଙ୍କ ସହିତ ଭୟଙ୍କର ଯୁଦ୍ଧ ଓ ରାବଣ ବଧ ପ୍ରଭୃତି ବିଷୟ ଏହି କାବ୍ୟରେ ବର୍ଣ୍ଣିତ । ଏ ହେତୁ ଏହି କାବ୍ୟକୁ 'ଦହମୁହବହୋ' (ଦଶମୁଖ-ବଧ) ବୋଲି ମଧ୍ୟ କୁହାଯାଏ । ପ୍ରବରସେନ ମଧ୍ୟ କାଳିଦାସଙ୍କ ପରି ଶିବୋପାସକ ଥିଲେ । ଏହାର ପରିଚୟ ତାଙ୍କର ତାମ୍ରଶାସନ-ମାନଙ୍କରୁ ମିଳେ । କାଳିଦାସ ଶୈବ ହୋଇ ମଧ୍ୟ ଯେପରି ରଘୁବଂଶରେ ରାମଚନ୍ଦ୍ରଙ୍କର ଚରିତ ବର୍ଣ୍ଣନ କରି ଅଛନ୍ତି, ସେହି-ପରି ଶୈବ ପ୍ରବରସେନ ସେତୁବନ୍ଧରେ ରାମଚରିତ ବର୍ଣ୍ଣନ କରି ଅଛନ୍ତି । ସମ୍ଭବତଃ ସେ ବିଷ୍ଣୁଭକ୍ତ ମାଆଙ୍କର ଆଦେଶ ଅନୁଯାୟୀ ଏହି କାବ୍ୟ ରଚନା କରି ଅଛନ୍ତି । ରାମଚରିତ କାବ୍ୟର ପ୍ରତିପାଦ୍ୟ ବିଷୟ ହେବା ହେତୁ ପ୍ରଥମ ଚାରି ଶ୍ଳୋକରେ ବିଷ୍ଣୁଙ୍କର ଓ ତା ପର ଚାରି ଶ୍ଳୋକରେ କବିଙ୍କର ଇଷ୍ଟଦେବ ମହାଦେବଙ୍କର ସ୍ତୁତି କରାଯାଇ ଅଛି ।

ଏହି କାବ୍ୟରେ ସ୍ଥାନେ ସ୍ଥାନେ ସୁନ୍ଦର କଳ୍ପନା ମନୋ-ହର ଅଳଙ୍କାର ସନ୍ନିବେଶ ଓ ହୃଦୟଗ୍ରାହୀ ବର୍ଣ୍ଣନା ଦେଖାଯାଏ । ଏହି ହେତୁ ଅଗ୍ରୁଣୀ ଦଣ୍ଡୀ ନିଜ 'କାବ୍ୟାଦର୍ଶ' ନାମକ ଅଳଙ୍କାର-ଗ୍ରନ୍ଥରେ ଏହି କାବ୍ୟକୁ 'ସୂକ୍ତିରତ୍ନସାଗର' ବୋଲି ନିର୍ଦ୍ଦେଶ କରି ଅଛନ୍ତି । ବାଣକବି ମଧ୍ୟ ଏକ ସ୍ଥଳରେ 'ଏହି ସେତୁଦ୍ୱାରା ବାନର ସେନା ପରି କବିଙ୍କର କୀର୍ତ୍ତି ମଧ୍ୟ ସାଗର ପାର ହୋଇଥିଲା' ବୋଲି ଶ୍ଳେଷଗର୍ଭକ ସ୍ତୁତି କରି ଅଛନ୍ତି । ଏହି କାବ୍ୟରେ କେତେଗୁଡ଼ି

ସ୍ଥାନରେ କାଳିଦାସଙ୍କ କଳ୍ପନାର ଅଭାବ ମିଳେ । ଉଦାହରଣ-ସ୍ୱରୂପ ନିମ୍ନଲିଖିତ ଶ୍ଳୋକ ଦେଖନ୍ତୁ—

**पढमं विअ मारुइणा हरिसभरिज्जन्तलोअणेण मुहेण ।**
**जणअतणआपउत्ति पच्छा वाआइ णिरवसेसं सिट्ठा ॥**

'ହନୁମାନ୍ ପ୍ରଥମରେ ହର୍ଷୋତ୍‌ଫୁଲ୍ଲନୟନ ମୁଖ ସଙ୍କେତରେ ସୀତାଦେବୀଙ୍କର ସମାଚାର ରାମଚନ୍ଦ୍ରଙ୍କୁ ଜଣାଇଲେ । ପରେ ମୁଖନିର୍ଗତ ଶବ୍ଦରେ ସୀତାଙ୍କ ସନ୍ଦେଶ ପ୍ରକାଶ କଲେ' ଏହି କଳ୍ପନା କାଳିଦାସଙ୍କର ରଘୁବଂଶରେ ( ୧୪ଶ ସର୍ଗ ୬୯ ) ଦେଖାଯାଏ । କିନ୍ତୁ ଏହିପରି ସ୍ଥଳମାନଙ୍କର ସଂଖ୍ୟା ଅତ୍ୟନ୍ତ କମ । 'ସେତୁବନ୍ଧ' ରଚନା କଲାବେଳେ ପ୍ରବରସେନଙ୍କୁ ବହୁତ ଅପୂର୍ବଧାର ସମ୍ମୁଖୀନ ହେବାକୁ ପଡ଼ିଥିଲା । ଯେଉଁ ଯେଉଁ ସ୍ଥଳରେ ତ୍ରୁଟି ରହିଯାଉଥିଲା, ସେ ସମସ୍ତ ଦୂର କରି ରଚନାର ଗତି ପ୍ରସାର କରିବା ତାଙ୍କ ପକ୍ଷରେ କଠିନ ବୋଧ ହେଉଥିଲା— ଏ ବିଷୟ ପ୍ରବରସେନ ନିଜେ ସ୍ୱୀକାର କରି ଅଛନ୍ତି—

**'अभिनवराआरद्धा चुक्कक्खलिएसु विहडिअ परिट्ठविआ ।**
**मेत्तिव्व पमुहरसिआ णिव्वोढुं होइ दुक्करं कव्वकहा ॥**

'ଯେପରି ନୂତନ ପ୍ରେମର ଆବେଗରେ ମିତ୍ରତା ଜାତ ହୁଏ, କିନ୍ତୁ କୌଣସି ଅପରାଧ ବା ମନାନ୍ତର ହେତୁ ସମୟାନ୍ତରେ ତାହା ତୁଟିଯାଏ ମାତ୍ର ଯଦି ମିତ୍ର ରସିକ ହୋଇଥାଏ, ତେବେ ତୁଟିଯିବା ମିତ୍ରତା ପୁଣି ଫେରିଆସେ । କିନ୍ତୁ ଶେଷ ପର୍ଯ୍ୟନ୍ତ ତାକୁ ଅକ୍ଷୁର୍ଣ୍ଣ ରଖିବା କଠିନ, ସେହିପରି ନବୀନ କବିଙ୍କଠାରୁ ଆରବ୍ଧ ତଥା

ସର୍ବତୋଭାବରେ ବିଶୁଦ୍ଧ, ଦୋଷ ରହିତ ତଥା ପାଠକମାନଙ୍କର ହୃଦୟଗ୍ରାହୀ ନୁହେଁ । ଏହି କାବ୍ୟ-କଥା ନିର୍ବାହ କରିବା ମୋ ପକ୍ଷରେ କଠିନ ହୋଇ ଅଛି । ସମ୍ଭବତଃ ଏହି ଅସୁବିଧା ହେଲାପରେ ପ୍ରବରସେନ କାଳିଦାସଙ୍କର ସାହାଯ୍ୟ ପାଇଥିଲେ । ଏହି କାବ୍ୟ ପୂର୍ଣ୍ଣ ଭାବରେ କାଳିଦାସଙ୍କଦ୍ୱାରା ରଚିତ ହୋଇ ନ ଥିବାରୁ ଆମେ ଏହାର ବିଶେଷ ଆଲୋଚନା ନ କରି ବର୍ତ୍ତମାନ 'ରଘୁବଂଶ'ର ସମାଲୋଚନା କରୁଅଛୁଁ ।

## ରଘୁବଂଶ

ରଘୁବଂଶ କାଳିଦାସଙ୍କର କାବ୍ୟମାନଙ୍କ ମଧ୍ୟରେ ସର୍ବୋତ୍କୃଷ୍ଟ ବୋଲି ଧରାଯାଏ । ବୋଧ ହୁଏ, ଏହାର ରଚନା ସବୁ କାବ୍ୟମାନ ରଚିତ ହେଲା ପରେ ହୋଇ ଅଛି । କାରଣ ଏହି କାବ୍ୟରେ କାଳିଦାସଙ୍କର ପରିପକ୍ୱ ପ୍ରଜ୍ଞା ଓ ପ୍ରତିଭାର ପରିଚୟ ମିଳେ । ବର୍ତ୍ତମାନ ମୁଦ୍ରିତ ପୁସ୍ତକରେ ୧୯ସର୍ଗ ଦେଖାଯାଏ । ଏ ସମସ୍ତ ସର୍ଗରେ ୨୯ ଜଣ ରାଜାଙ୍କର ବର୍ଣ୍ଣନା କରାଯାଇଅଛି । ଏହି ରାଜାମାନଙ୍କ ମଧ୍ୟରେ ମହାରାଜ ରଘୁ ବଡ଼ ପ୍ରତାପଶାଳୀ ଓ ଦାନଶୀଳ ଥିଲେ । ତାଙ୍କର ବଂଶଧର ରାଜାମାନଙ୍କର ବର୍ଣ୍ଣନା ଏହି କାବ୍ୟରେ କରାଯାଇ ଅଛି । ଏ ହେତୁ କବି ଏହି କାବ୍ୟକୁ 'ରଘୁବଂଶ' ବୋଲି ନାମ ଦେଇ ଅଛନ୍ତି ।

ଏହାର ମଙ୍ଗଳାଚରଣ ଅତି ଉଚ୍ଚକୋଟିର । ଶବ୍ଦ ଓ ଅର୍ଥର ସମ୍ୟକ୍ ଜ୍ଞାନସକାଶେ, ସେ ଦୁହିଙ୍କ ପରି ନିତ୍ୟ ପରସ୍ପର-ସମ୍ବନ୍ଧ ପାର୍ବତୀ-ପରମେଶ୍ୱରଙ୍କର ବନ୍ଦନା କରି କବି ବିଶେଷ-ନମ୍ରତା ସହକାରେ ନିଜ ବିଷୟର ମହତ୍ତ୍ୱ ଓ ସେ ଦୃଷ୍ଟିରେ ନିଜର

ମନ୍ଦମତିତ୍ୱ ପ୍ରକାଶ କରି ଅଛନ୍ତି । କବି ନିଜେ ପ୍ରକାଶ କରିଅଛନ୍ତି— ଯେପରି କୌଣସି ଉଚ୍ଚପୁରୁଷର ପ୍ରାପ୍ୟ ବଡ଼ ଗଛର ଫଳ ତୋଳିବାକୁ ହାତ ଟେକି ବାମନ ଉପହାସାସ୍ପଦ ହୋଇ ଥାଏ, ସେହିପରି ମୋ ଭଳିଆ ମନ୍ଦମତି ଲୋକ କାବ୍ୟ ରଚନା କରିବା ଉପହାସର କଥା । ମୁଁ ନିଜେ ମନ୍ଦମତି,ତଥାପି କବିମାନଙ୍କର ଯଶ ଗୃହ୍ନୁ ଅଛି । ଯେଉଁ ମଣିରେ ପ୍ରଥମେ ଛିଦ୍ର କରାଯାଇଥାଏ, ତହିଁରେ ସୂତା ପ୍ରବେଶ କରିବା କଠିନ ନୁହେଁ, ସେହିପରି ପୂର୍ବ କବି (ବାଲ୍ମୀକି)ଙ୍କ ଦ୍ୱାରା ବର୍ଣ୍ଣିତ ଏହି ବଂଶରେ ମୋର ପ୍ରବେଶ କଠିନ ହେବ ନାହିଁ । ଏହା ପରେ ରଘୁବଂଶୀୟ ରାଜାମାନଙ୍କର ଗୌରବ ସଂକ୍ଷେପରେ ବର୍ଣ୍ଣନା କରି, କବି ସହୃଦୟ ସମାଲୋଚକମାନଙ୍କୁ କଷଟି ପଥରରେ ସୁନାକୁ ପରୀକ୍ଷା କଲାପରି ନିଜ କାବ୍ୟ ପରୀକ୍ଷା କରିବାକୁ ଅନୁରୋଧ କରି ଅଛନ୍ତି । ପ୍ରଥମ ସର୍ଗରେ ମନୁବଂଶୋଦ୍ଭବ ଦିଲୀପ ରାଜାଙ୍କର ଚରିତ୍ର ବର୍ଣ୍ଣନ କରି ଅଛନ୍ତି । ରାଜା ଦିଲୀପ ମହାପ୍ରତାପୀ, ଧର୍ମାତ୍ମା ଓ ସମସ୍ତ ଶ୍ଳାଘନୀୟ ଗୁଣସମ୍ପନ୍ନ ଥିଲେ । ତାଙ୍କର ରାଜ୍ୟ ଆସମୁଦ୍ର ପୃଥିବୀ ପର୍ଯ୍ୟନ୍ତ ବିସ୍ତୃତ ଥିଲା । କିନ୍ତୁ ପୁତ୍ରଅଭାବରୁ ତାଙ୍କର ଅସୀମ ଦୁଃଖ ହେଉଥିଲା । ସେହେତୁ ସେ ରାଜ୍ୟଭାର ସୁଯୋଗ୍ୟ ମନ୍ତ୍ରୀମାନଙ୍କ ହସ୍ତରେ ଅର୍ପଣ କରି ରୂପଶୀଳବତୀ, ଉଦାରଚରିତା, ରାଜମହିଷୀ, ସୁଦକ୍ଷିଣାଙ୍କ ସହିତ କୁଳଗୁରୁ ବଶିଷ୍ଠଙ୍କ ଆଶ୍ରମରେ ଉପସ୍ଥିତ ହେଲେ ଏବଂ ନିଜର ସନ୍ତାନ ଅଭାବ ଜନିତ ଦୁଃଖ ଗୁରୁଙ୍କୁ ଜଣାଇଲେ । ଗୁରୁ ଧ୍ୟାନସ୍ଥ ହୋଇ ସନ୍ତାନ ନ ହେବାର କାରଣ ଜଣାଇଲେ— 'ରାଜନ୍ ! ଏକ ସମୟରେ ତୁମେ ସ୍ୱର୍ଗରେ ଇନ୍ଦ୍ରଙ୍କୁ ସାକ୍ଷାତ୍ କରି ଭୂଲୋକକୁ ଫେରି ଆସୁଥିଲ । ସେ ସମୟରେ କାମଧେନୁ କଳ୍ପବୃକ୍ଷ ତଳରେ ଛିଡା ହୋଇଥିଲେ । ତୁମେ ତାଙ୍କୁ ପ୍ରଦକ୍ଷିଣ ନକରି

ଗୃହକୁ ଆସିଲ । କାମଧେନୁଙ୍କର ଅପମାନ ହେଲା । ସେ କୁପିତ ହୋଇ ତୁମ୍ଭଙ୍କୁ ଶାପ ଦେଲେ ଯେ ତୁମେ ତାଙ୍କର ଝିଅ ନନ୍ଦିନୀଙ୍କର ସେବା ନ କର ପୁତ୍ରଲାଭ କରି ପାରିବ ନାହିଁ । ସେହି କାମଧେନୁଙ୍କର ପୁତ୍ରିକା ନନ୍ଦିନୀ ବର୍ତ୍ତମାନ ମୋର ଆଶ୍ରମରେ ଅଛନ୍ତି । ଅନନ୍ୟଚିତ୍ତ ହୋଇ ଭକ୍ତିଭାବରେ ତୁମେ ତାଙ୍କର ସେବା କର । ସେ ପ୍ରସନ୍ନ ହୋଇ ତୁମର ମନୋରଥ ପୂର୍ଣ୍ଣ କରିବେ ।' କୁଳଗୁରୁ ବଶିଷ୍ଠଙ୍କର ଆଦେଶ ଅନୁଯାୟୀ ଦିଲୀପ କାମଧେନୁଙ୍କର କନ୍ୟକା ନନ୍ଦିନୀଙ୍କର ସେବା କରିବାକୁ ନିଶ୍ଚୟ କଲେ । (୧ମ ସର୍ଗ) । ତା ପର ଦିନଠାରୁ ରାଜା ନିଜ ଅନୁଚରମାନଙ୍କୁ ବିଦାୟ ଦେଇ, ନିଜେ ମନ ଦେଇ ନନ୍ଦିନୀଙ୍କର ସେବାରେ ଲାଗିଲେ । ଏହିପରି ତିନି ସପ୍ତାହ ଗୃହିଗଲା । ଦିନେ ନନ୍ଦିନୀ ଭାବିଲେ - ରାଜାଙ୍କର ସତ୍ୟର ପରୀକ୍ଷା କରିବେ । ସେ ଚରି ଚରି ହିମାଳୟର ଏକ ଗୁମ୍ଫାରେ ପ୍ରବେଶ କଲେ । ରାଜା ହିମାଳୟର ପ୍ରାକୃତିକ ଶୋଭା ଦେଖି ଦେଖି ଅନ୍ୟମନସ୍କ ହୋଇଗଲେ । ଏ ସମୟରେ ଏକ ସିଂହ ଆସି ନନ୍ଦିନୀଙ୍କ ପିଠିରେ ଆକ୍ରମଣ କଲା । ନନ୍ଦିନୀ ରକ୍ଷା ସକାଶେ ଚିତ୍କାର କଲେ । ଦିଲୀପ ଚିତ୍କାର ଶୁଣି ନନ୍ଦିନୀଙ୍କ ରକ୍ଷା ସକାଶେ ଅଣ୍ଟା ଭିଡ଼ିଲେ । ସିଂହକୁ ମାରିବା ସକାଶେ ବାଣ ବାହାର କରିବାକୁ ତୂଣୀରରେ ହାତ ପକାଇଲେ, ମାତ୍ର ହାତ ନିଶ୍ଚଳ ହୋଇଗଲା । ଏହା ଦେଖି ସିଂହ ମନୁଷ୍ୟ ଭାଷାରେ ରାଜାଙ୍କୁ କହିଲା—'ରାଜନ୍, ମୋର ନାମ କୁମ୍ଭୋଦର, ମୁଁ ନିକୁମ୍ଭଙ୍କର ମିତ୍ର ଏବଂ ଶିବଙ୍କର ସେବକ । ଆପଣ ଆଗରେ ଯେଉଁ ଦେବଦାରୁ ଗଛ ଦେଖୁଛନ୍ତି, ତାକୁ ପାର୍ବତୀ ନିଜ ହାତରେ ପାଣି ଛିଞ୍ଚି ବଢ଼ାଇଛନ୍ତି । ଦିନେ ଗୋଟିଏ ବଣୁଆ ହାତୀ କୁଣ୍ଡିଆ ଦୂର କରିବା ଉଦ୍ଦେଶ୍ୟରେ ନିଜଗଣ୍ଡସ୍ଥଳ ଘଷି ଏହି ଗଛର ଛାଲି କାଟି

ହେଲା । ଏହା ଦେଖି ପାର୍ବତୀଙ୍କ ମନରେ ବିଶେଷ ଦୁଃଖ ହେଲା । ଏ ହେତୁ ମହାଦେବ ମୋତେ ସିଂହ ରୂପରେ ପରିଣତ କରି ଆଜ୍ଞା ଦେଲେ 'ତୁମେ ଏହି ଗୁହାକୁ ଆସୁଥିବା ଜନ୍ତୁମାନଙ୍କୁ ମାରି, ଜୀବିକା ନିର୍ବାହ କର ଓ ଦେବଦାରୁ ବୃକ୍ଷ ରକ୍ଷାକର' । ମୁଁ କାଲି ଉପବାସ କରିଥିଲି, ଆଜି ଏହି ଗାଈଟି ମୋତେ ପାରଣାସ୍ୱରୂପ ମିଳିଅଛି । ଏଥିରେ ତୁମର କୌଣସି କ୍ଷତି ଘଟିବ ନାହିଁ, ତୁମେ ଫେରି ଯାଅ' । ରାଜା ଉତ୍ତର ଦେଲେ— 'ଭଗବାନ୍ ଶିବ ସ୍ଥାବର ଓ ଜଙ୍ଗମ ସଂସାରର ଉତ୍ପାଦକ, ପୋଷକ ଓ ସଂହାରକ, ତାଙ୍କର ଆଜ୍ଞା ପାଳନକରିବା ମୋର କର୍ତ୍ତବ୍ୟ, କିନ୍ତୁ ଦେଖୁ ଦେଖୁ ଗୁରୁଙ୍କର ଗୋଧନ ମଧ୍ୟ ନଷ୍ଟ କରିଦେବା ମୋର ଉଚିତ ନୁହେଁ । ଏହେତୁ ମୁଁ ତୁମ୍ଭଙ୍କୁ ମୋର ଶରୀର ଅର୍ପଣ କରୁଅଛି, ତୁମେ ତାହା ଗ୍ରହଣ କରି ଗାଈଟିକୁ ଛାଡ଼ିଦିଅ' । 'ଗୋଟାଏ ଗାଈ ସକାଶେ ଅଖଣ୍ଡ ସାମ୍ରାଜ୍ୟ, ତାରୁଣ୍ୟପୂର୍ଣ୍ଣ ସୁନ୍ଦର ଶରୀର ବଳି ଦେବା ମୂର୍ଖତାର ପରିଚାୟକ' ଇତ୍ୟାଦି କହି ସିଂହ ରାଜାଙ୍କୁ ନିଜ ନିଷ୍ପତ୍ତିରୁ ବିରତ ହେବାକୁ ଚେଷ୍ଟା କଲା, ମାତ୍ର ରାଜା ସେ ସମସ୍ତ ନ ଶୁଣି ଅଟଳ ରହିଲେ । ସିଂହ ବାଧ୍ୟ ହୋଇ ରାଜାଙ୍କର କଥାରେ ସମ୍ମତ ହେଲା । ରାଜାଙ୍କର ହାତ ଖୋଲିଗଲା, ସେ ସିଂହ ଆଗରେ ଆତ୍ମ-ସମର୍ପଣ କଲେ ଏବଂ 'ସିଂହ ଆକ୍ରମଣ କରିବ' ଏହି ବିଷୟ ଭାବୁଥିଲେ । ସେ ସମୟରେ ଅକାଳରେ ପୁଷ୍ପବୃଷ୍ଟି ହେବାକୁ ଲାଗିଲା । ନନ୍ଦିନୀ ରାଜାଙ୍କୁ ପରୀକ୍ଷା କରିବାକୁ ଏହି ସିଂହକୁ ମାୟାବଳରେ ଜାତ କରିଥିଲେ । ସେ ରାଜାଙ୍କର ପ୍ରଗାଢ଼ ଗୁରୁଭକ୍ତି ଦେଖି ସନ୍ତୁଷ୍ଟ ହେଲେ ଏବଂ ପୁତ୍ରପ୍ରାପ୍ତି ଆଶୀର୍ବାଦ କରି ରାଜାଙ୍କୁ ନିଜ ଦୁଗ୍ଧ ପାନ କରିବାକୁ କହିଲେ । ରାଜା ଆଶ୍ରମକୁ ଫେରି ସମସ୍ତ ଘଟଣା

ଗୁରୁ ବଶିଷ୍ଠ ଓ ରାଣୀ ସୁଦକ୍ଷିଣାଙ୍କୁ ଜଣାଇଲେ । ଗୁରୁଙ୍କର ଆଦେଶରେ ହୋମ ଓ ବାଛୁରୀ ପିଇଲା ପରେ ଅବଶିଷ୍ଟ ଦୁଗ୍ଧ ରାଜା ଓ ରାଣୀ ପାନ କଲେ । ତା ପରଦିନ ବ୍ରତ ଉଦ୍ୟାପନ କରି ରାଜା ଓ ରାଣୀ ନଗରକୁ ଫେରି ଆସିଲେ । ( ୨ୟ ସର୍ଗ ) ରାଣୀ ଶୀଘ୍ର ଗର୍ଭବତୀ ହେଲେ ଏବଂ ଯଥାସମୟରେ ପାଞ୍ଚଟି ଗ୍ରହ ଉଚ୍ଚରେ ଥିବାବେଳେ ଏକ ପୁତ୍ର ଜାତ କଲେ । ରାଜା ଏହି ପୁତ୍ରକୁ 'ରଘୁ' ବୋଲି ନାମ ଦେଲେ । ରାଜା ନିଜ ପୁତ୍ରକୁ ସକଳ ଶସ୍ତ୍ର ଓ ଶାସ୍ତ୍ର ବିଦ୍ୟାରେ ପାରଙ୍ଗମ ଦେଖି ଯୌବରାଜ୍ୟରେ ଅଭିଷିକ୍ତ କଲେ ଏବଂ ଅଶ୍ୱମେଧ ଯାଗ ଆରମ୍ଭ କଲେ । ଏହା ପରେ ୯୯ଟି ଅଶ୍ୱମେଧ ଯାଗ ନିର୍ବିଘ୍ନରେ ପରିସମାପ୍ତ କଲେ । ଶତତମ ଯାଗ କଲାବେଳେ ଇନ୍ଦ୍ର ଅଲକ୍ଷିତରୂପେ ଆସି ଅଶ୍ୱ ହରଣ କରି ନେଲେ । ନନ୍ଦିନୀଙ୍କ ଅନୁଗ୍ରହରୁ ରଘୁ ଇନ୍ଦ୍ରଙ୍କର କପଟ ଜାଣି ପାରିଲେ ଏବଂ ଇନ୍ଦ୍ରଙ୍କୁ ଯୁଦ୍ଧ ସକାଶେ ଆହ୍ୱାନ କଲେ । ଉଭୟଙ୍କ ମଧ୍ୟରେ ଭୟଙ୍କର ଯୁଦ୍ଧ ହେଲା । ଇନ୍ଦ୍ର ରଘୁଙ୍କର ବୀରତାରେ ସନ୍ତୁଷ୍ଟ ହୋଇ ଅଶ୍ୱ ଛଡ଼ା ଅନ୍ୟ ବର ମାଗିବାକୁ କହିଲେ । ରଘୁ 'ପିତା ଅଶ୍ୱ ବିନା ୧୦୦ତମ ଯାଗ ନିୟମପୂର୍ବକ ସମାପ୍ତ ନ କଲେ ମଧ୍ୟ ସେହି ଯଜ୍ଞର ଫଳ ଭାଗୀ ହୁଅନ୍ତୁ' ବୋଲି ନିଜ ଇଚ୍ଛା ପ୍ରକାଶ କଲେ । ଇନ୍ଦ୍ର 'ତଥାସ୍ତୁ' କହି ଅନ୍ତର୍ହିତ ହେଲେ । ରଘୁ ପିତାଙ୍କ ସମୀପକୁ ଫେରିଆସିଲେ । ରାଜା ଦିଲୀପ ଯଜ୍ଞ ସମାପ୍ତ କରି, ରଘୁଙ୍କୁ ରାଜଗାଦିରେ ବସାଇ ସୁଦକ୍ଷିଣାଙ୍କ ସହିତ ତପୋବନକୁ ଗଲେ । (୩ୟ ସର୍ଗ) ରଘୁ ଏପରି ସୁଶାସନ କଲେ ଯେ ପ୍ରଜାମାନେ ଅଳ୍ପ ସମୟରେ ଦିଲୀପଙ୍କୁ ପାସୋରି ଗଲେ । ପ୍ରଜାରଞ୍ଜନ କରୁଥିବାରୁ ରଘୁଙ୍କର 'ରାଜା'

ଦେ ସାର୍ଥକ ହୋଇ ଥିଲା । ଶରତ୍ଋତୁ ଉପସ୍ଥିତ ହେଲା ପରେ ସେ ଛଅ ପ୍ରକାର ସୈନ୍ୟ ସାଥିରେ ନେଇ ଦିଗ୍‌ବିଜୟରେ ପ୍ରସ୍ଥାନ କଲେ । ପ୍ରଥମେ ସେ ପୂର୍ବଦିଗରେ ସୁହ୍ମ, ବଙ୍ଗପ୍ରଭୃତି ଦେଶ ଜୟକରି ଗଙ୍ଗା ପ୍ରବାହରେ ନିଜର ଜୟସ୍ତମ୍ଭ ସ୍ଥାପନ କଲେ । ପରେ ଦକ୍ଷିଣ ଦିଗ ଅଭିମୁଖେ ଯାତ୍ରା କଲେ । କଳିଙ୍ଗ-ଦେଶର ରାଜାଙ୍କୁ ପରାଜିତ କରି, ତାଙ୍କଠାରୁ କର ନେଇ ଛାଡ଼ି ଦେଲେ କିନ୍ତୁ ତାଙ୍କର ରାଜ୍ୟ ଆତ୍ମସାତ୍ କଲେ ନାହିଁ । ପରେ ପୂର୍ବତଟରେ ଯାଇ କାବେରୀ ପାରି ହୋଇ ପାଣ୍ଡ୍ୟ ରାଜାଙ୍କୁ ପରାଜିତ କରି ତାଙ୍କଠାରୁ ତାମ୍ରପର୍ଣ୍ଣୀ ନଦୀର ମୁହାଣରେ ମିଳୁଥିବା ମୁକ୍ତାମାନ କରସ୍ୱରୂପ ଗ୍ରହଣ କଲେ । ଦକ୍ଷିଣ ଦିଗର ମଳୟ ଓ ଦର୍ଦ୍ଦୁର ପର୍ବତ ଆକ୍ରମଣ କଲେ । ସହ୍ୟ ପର୍ବତ ଅତିକ୍ରମଣ କରି କେରଳ ଓ ଅପରାନ୍ତ (କୋଙ୍କଣ) ଦେଶର ରାଜାମାନଙ୍କୁ ପରାସ୍ତ କଲେ । ପରେ ପାରସିକ ଦେଶ ଜୟ କରିବା ଉଦ୍ଦେଶ୍ୟରେ ସ୍ଥଳମାର୍ଗରେ ପ୍ରସ୍ଥାନ କଲେ । ସେଠାରେ ଉଭୟଙ୍କର ଯୁଦ୍ଧରେ ବାଣମାନଙ୍କଦ୍ୱାରା ଯବନମାନଙ୍କର ଶ୍ମଶ୍ରୁଳ ମୁଣ୍ଡମାନ ଖଣ୍ଡ ଖଣ୍ଡ କରି ପୃଥିବୀକୁ ଆଚ୍ଛନ୍ନ କଲେ । ଉତ୍ତର ଦିଗରେ ଦିଗ୍‌ବିଜୟରେ ହୂଣ, କାମ୍ବୋଜପ୍ରଭୃତି ରାଜାମାନଙ୍କୁ ପରାସ୍ତ କରି, ସେମାନଙ୍କ ଠାରୁ କର ଗ୍ରହଣ କରି ହିମାଳୟ ଅଭିମୁଖେ ଯାତ୍ରା କଲେ । ସେଠାରେ ଉତ୍ସବ, ସଙ୍କେତପ୍ରଭୃତି ଗଣରାଜ୍ୟ-ମାନଙ୍କରେ ଯୁଦ୍ଧ ହେଲା । ସେଠାର ରାଜାମାନେ ଯୁଦ୍ଧରେ ପରାଜିତ ହୋଇ ରଘୁଙ୍କର ପ୍ରଭୁତ୍ୱ ସ୍ୱୀକାର କଲେ ଏବଂ ଭେଟି ଦେଇ ରଘୁଙ୍କୁ ପରିତୃପ୍ତ କଲେ । ପରେ କାମରୂପ (ଆସାମ)ର ରାଜା ରତ୍ନରୂପ ଅର୍ଘ୍ୟ ସମର୍ପଣ କରି ତାଙ୍କର ପୂଜା କଲେ । ଏହି ପରି ଭାରତବର୍ଷର ଚାରିଦିଗର ରାଜାମାନଙ୍କୁ ଜୟ କରି, ସଙ୍ଗୃହୀତ

ସମସ୍ତ ସମ୍ପତ୍ତି 'ବିଶ୍ୱଜିତ୍' ନାମକ ଯାଗରେ ଦାନ କଲେ । (୪ର୍ଥ ସର୍ଗ)

ଯଜ୍ଞ ସମାପ୍ତ ହେଲା । ଯଜ୍ଞରେ ସର୍ବସ୍ୱ ଦେଇଦେବାରୁ ରାଜାଙ୍କର ଭଣ୍ଡାର ଶୂନ୍ୟ ହେଲା । ଏହି ସମୟରେ ବରତନ୍ତୁଙ୍କର ଶିଷ୍ୟ କୌତ୍ସ ବ୍ରହ୍ମଚାରୀ ଗୁରୁଦକ୍ଷିଣା ସ୍ୱରୂପ ଚଉଦକୋଟି ସ୍ୱର୍ଣ୍ଣମୁଦ୍ରା ମାଗିବା ସକାଶେ ରଘୁଙ୍କ ପାଖରେ ଉପସ୍ଥିତ ହେଲେ । ଏହିପରି କୃତବିଦ୍ୟ ବ୍ରାହ୍ମଣଙ୍କୁ ରିକ୍ତ ହସ୍ତରେ ଫେରାଇ ଦେଲେ ଅପକୀର୍ତ୍ତି ହେବ । ଅଥଚ ଅନ୍ୟ ସ୍ଥାନରୁ ଧନ ପାଇବାର ଆଶା ନ ଥିଲା । ଭାରତର ସମସ୍ତ ରାଜା ଆଗରୁ କର ଦେଇସାରିଥିଲେ । ଏ ହେତୁ ରଘୁ ଧନପତି କୁବେରଙ୍କୁ ଆକ୍ରମଣ କରିବେ ବୋଲି ସ୍ଥିର କଲେ । କୁବେର ଏହା ଜାଣିପାରି ରଘୁ ପ୍ରସ୍ଥାନ କରିବା ପୂର୍ବରୁ ତାଙ୍କୁ ପ୍ରସନ୍ନ କରିବା ଉଦ୍ଦେଶ୍ୟରେ ସ୍ୱର୍ଣ୍ଣମୁଦ୍ରା ବୃଷ୍ଟି କଲେ । ରାଜା ସେ ସମସ୍ତ ସ୍ୱର୍ଣ୍ଣମୁଦ୍ରା କୌତ୍ସଙ୍କୁ ପ୍ରଦାନ କଲେ । ମାତ୍ର ଏହି ନିସ୍ପୃହ ବ୍ରାହ୍ମଣ ଯୁବକ ୧୪ କୋଟି ସ୍ୱର୍ଣ୍ଣମୁଦ୍ରାରୁ ଏକ କଉଡ଼ି ମଧ୍ୟ ଅଧିକ ଗ୍ରହଣ କଲେ ନାହିଁ । କୌତ୍ସଙ୍କର ଆଶୀର୍ବାଦରେ ରଘୁ ପୁତ୍ର ସନ୍ତାନ ଲାଭ କଲେ । ରଘୁଙ୍କର ପୁତ୍ର ଅଜ ମଧ୍ୟ ପିତାଙ୍କ ସଦୃଶ ସକଳ ସଦ୍‌ଗୁଣରେ ଅଳଙ୍କୃତ ଓ ମହାପ୍ରତାପୀ ହୋଇ ଉଠିଲେ । (୫ମ ସର୍ଗ) ଅଜ ଯୌବନରେ ପଦାର୍ପଣ କଲେ । ଏ ସମୟରେ ବିଦର୍ଭର ରାଜା ନିଜ ଭଉଣୀ ଇନ୍ଦୁମତୀଙ୍କର ସ୍ୱୟମ୍ବର କଲେ । ଅଜ ମଧ୍ୟ ନିମନ୍ତ୍ରଣ ପାଇ ସ୍ୱୟମ୍ବରରେ ଯୋଗ ଦେବାକୁ ବାହାରିଲେ । ମାର୍ଗରେ ନର୍ମଦା ନଦୀ ତଟରେ ଏକ ଉନ୍ମତ୍ତ ହସ୍ତୀର ସମ୍ମୁଖୀନ ହେଲେ । ସେ ପୂର୍ବ ଜନ୍ମରେ ପ୍ରିୟମ୍ବଦ ନାମକ ଗନ୍ଧର୍ବ ଥିଲେ । କୌଣସି ଅପରାଧବଶତଃ ମତଙ୍ଗ ଋଷିଙ୍କର ଶାପରେ

ହସ୍ତିଜନ୍ମ ପାଇଥିଲେ । ଅଜଙ୍କର ଶରାଘାତରେ ହସ୍ତିଜନ୍ମରୁ ମୁକ୍ତି ଲାଭ କଲେ । ସେ ଗନ୍ଧର୍ବ ପ୍ରସନ୍ନ ହୋଇ ପ୍ରତ୍ୟୁପକାରସ୍ୱରୂପ ସମ୍ମୋହନ ନାମକ ନିଜର ଏକ ଅସ୍ତ୍ର ଉପହାର ଦେଲେ । ବିଦର୍ଭ-ଦେଶର ରାଜଧାନୀ କୁଣ୍ଡିନନଗରରେ ଅଜଙ୍କୁ ଅଭ୍ୟୁତ୍ଥାନ ସହିତ ସ୍ୱାଗତ କରାଗଲା । ସେ ଶିବିରରେ ଅବସ୍ଥାନ କଲେ । ଇନ୍ଦୁମତୀ-ଲାଭ ଆଶାରେ ରାତି ତାଙ୍କୁ ହଠାତ୍ ନିଦ ହେଲା ନାହିଁ, ଅତ ବିଳମ୍ବରେ ନିଦ ହେଲା । ପ୍ରାତଃକାଳରେ ବୈତାଳିକମାନେ ଅଜଙ୍କୁ ଜାଗରିତ କରିବାକୁ ଯାଇ ଅତି ସୁନ୍ଦରଭାବେ ପ୍ରଭାତ ବର୍ଣ୍ଣନା କଲେ । ଏହି ପ୍ରଭାତବର୍ଣ୍ଣନାଶ୍ଳୋକଗୁଡ଼ିକ ସ୍ୱୟଂ ବାଗ୍‌ଦେବୀ ସରସ୍ୱତୀ ରଚନା କରିଛନ୍ତି ବୋଲି ପଣ୍ଡିତ-ମାନେ କହନ୍ତି । ପ୍ରଭାତକାଳର ବର୍ଣ୍ଣନା ଅତ୍ୟନ୍ତ ହୃଦୟସ୍ପର୍ଶୀ ଓ ଉତ୍କୃଷ୍ଟ । ଉଦାହରଣ ସ୍ୱରୂପ ନିମ୍ନରେ ଦୁଇଟି ଶ୍ଳୋକ ଉଦ୍ଧୃତ କରାଗଲା —

**ताम्रोदरेषु पतितं तरुपल्लवेषु**
**निर्धौतहारगुलिकाविशदं हिमाम्भः ।**
**आभाति लब्धपरभागतयाधरोष्ठे**
**लीलास्मितं सदशनार्चिरिव त्वदीयम् ॥**

ରଘୁ. ୫,୭୦

'ଆପଣଙ୍କର ଅରୁଣିମମୟ ଅଧର ସହିତ ଦନ୍ତମାନଙ୍କ ପଂକ୍ତିର ସମ୍ମିଶ୍ରଣରେ ଅତିକମନୀୟ ଆପଣଙ୍କର ମନ୍ଦ ମଧୁରସ୍ମିତ ସଦୃଶ ବୃକ୍ଷର ଆରକ୍ତ କୋମଳ ପଲ୍ଲବମାନଙ୍କ ଉପରେ ପତିତ, ହାରର ବିଶୁଦ୍ଧ ବର୍ତ୍ତୁଳ ମୁକ୍ତାଜାଳ ସଦୃଶ ହିମକଣାମାନ ବର୍ତ୍ତିମାନ ଅତ୍ୟନ୍ତ ଶୋଭା ପାଉଅଛି ।'

भवति विरलभक्तिर्म्लानपुष्पोपहारः
स्वकिरणपरिवेषोद्भेदशून्याः प्रदीपाः ।
अयमपि च गिरं नस्त्वत्प्रबोधप्रयुक्ता-
मनुवदति शुकस्ते मञ्जुवाक् पञ्जरस्थः ॥

ରଘୁ ୫,୭୪

'ଫୁଲହାର ଫୁଲଗୁଡ଼ିକ ମଉଳି ପଡ଼ିବାରୁ ବିଯୁକ୍ତ ଦେଖା ଯାଉଅଛି । ଆପଣଙ୍କର ଶୟନାଗାରର ଦୀପଗୁଡ଼ିକ କିରଣ ମଣ୍ଡଳ-ରହିତ ହୋଇ ନିସ୍ତେଜ ଦେଖାଯାଉଛନ୍ତି । ମଧୁରଭାଷୀ ଏହି ପଞ୍ଜରାରେ ଥିବା ଶୁଆ ମଧ୍ୟ ଆପଣଙ୍କର ଜାଗରଣ ସକାଶେ ଉଚ୍ଚାରିତ ଆମମାନଙ୍କର ବାକ୍ୟକୁ ମନୋହରଭାବେ ଅବିକଳ ଉଚ୍ଚାରଣ କରୁଅଛି ।'

ଏହା ପରେ ଅଜ ଶଯ୍ୟାତ୍ୟାଗ କଲେ । ନିତ୍ୟକର୍ମ ଶେଷ କରି ସ୍ୱୟଂବର ସଭାରେ ଉପସ୍ଥିତ ହେଲେ । ବନ୍ଦୀମାନେ ରାଜାମାନଙ୍କର ଗୁଣଗାନ କରିବାରେ ଲାଗିଲେ । ଶଙ୍ଖଧ୍ୱନି ହେଲା, ମୟୂରମାନେ ଉତ୍ସାହରେ ନାଚିବାକୁ ଲାଗିଲେ । ରାଜକୁମାରୀ ଇନ୍ଦୁମତୀ ସଖୀମାନଙ୍କ ସହିତ ପାଲିଙ୍କିରେ ବସି ସ୍ୱୟମ୍ବର ସଭାରେ ଉପସ୍ଥିତ ହେଲେ । ଅନୁପମସୁନ୍ଦରୀ ଇନ୍ଦୁମତୀଙ୍କୁ ଦେଖିବାମାତ୍ରେ ରାଜାମାନେ ନାନା ପ୍ରକାର ଶୃଙ୍ଗାର ଚେଷ୍ଟା ପ୍ରକାଶ କଲେ । କବି ଏହି ଶୃଙ୍ଗାରଚେଷ୍ଟାବର୍ଣ୍ଣନା ଅତି ସରସଭାବେ କରିଅଛନ୍ତି । ସଖୀ ସୁନନ୍ଦା ଇନ୍ଦୁମତୀଙ୍କୁ ପ୍ରତ୍ୟେକ ରାଜାଙ୍କ ପାଖକୁ ନେଇଯାଇ ପ୍ରତ୍ୟେକ ରାଜାଙ୍କର ଗୁଣ ବର୍ଣ୍ଣନା କଲେ । ଏ ପ୍ରସଙ୍ଗରେ ବିଭିନ୍ନ ଦେଶର ରାଜାମାନଙ୍କର ବ୍ୟକ୍ତିଗତ ଉତ୍ତମଗୁଣ, ସମ୍ପତ୍ତି, ବଳପରାକ୍ରମ

ତଥା ପୂର୍ବପୁରୁଷମାନଙ୍କର କୀର୍ତ୍ତି, ସେହି ରାଜ୍ୟର ପ୍ରାକୃତିକ ସୌନ୍ଦର୍ଯ୍ୟପ୍ରମୁଖ ସ୍ଥଳପ୍ରକୃତିର ବର୍ଣ୍ଣନା ଅତି ରମଣୀୟଭାବେ କରାଯାଇଅଛି ଏବଂ ସେ ସମସ୍ତ ଭୌଗୋଳିକ ଦୃଷ୍ଟିରେ ନିର୍ଦୋଷ ଦେଖାଯାଏ । ପ୍ରତ୍ୟେକ ସହୃଦୟ ଏହି ବର୍ଣ୍ଣନା ପଢ଼ିବା ଉଚିତ । ଉଦାହରଣ ସ୍ୱରୂପ କେତେକ ଶ୍ଳୋକ ଦେଖନ୍ତୁ—

**अनेन पर्यास यताश्रुबिन्दून् मुक्ताफलस्थूलतमान् स्तनेषु ।**
**प्रत्यर्पिताः शत्रुविलासिनीनामुन्मुच्य सूत्रेण विनैव हाराः ।**

ରଘୁ ୬, ୨୮

'ଏହି ରାଜା ନିଜ ଶତ୍ରୁମାନଙ୍କୁ ସଂହାର କରି ସେମାନଙ୍କର ସ୍ତ୍ରୀମାନଙ୍କୁ ବିଶେଷ ଭାବେ କନ୍ଦାଉଛନ୍ତି । ଫଳରେ ସେମାନଙ୍କର ବକ୍ଷସ୍ଥଳରେ ବଡ଼ ବଡ଼ ମୁକ୍ତାଫଳ ପରି ଅଶ୍ରୁକଣମାନ ପଡ଼ୁଅଛି । ସ୍ତ୍ରୀମାନେ ବିଧବା ହେବା ହେତୁ ମୁକ୍ତାହାର ପରିହାର କରିଛନ୍ତି । ଏହି ରାଜା ଅବିଚ୍ଛିନ୍ନ ପତିତ ଅଶ୍ରୁକଣପ୍ରବାହଚ୍ଛଳରେ ବିନା ସୂତାରେ ଗ୍ରଥିତ ମୁକ୍ତାମାଳା ଅର୍ପଣ କଲାପରି ପ୍ରତୀତ ହେଉଅଛି ।'

ଇନ୍ଦୁମତୀ ପାଣ୍ଡ୍ୟରାଜାଙ୍କ ସମୀପରେ ଉପସ୍ଥିତ ହେଲାପରେ ସୁନନ୍ଦା କହୁଛନ୍ତି—

**पाण्ड्योऽयमंसार्पितलम्बहारः क्लृप्ताङ्गरागो हरिचन्दनेन ।**
**आभाति बालातपरक्तसानुः सनिर्झरोद्‌गार इवाद्रिराजः ॥**

ରଘୁ ୬,୬୦

ଏହି ଶ୍ଳୋକରେ ଦ୍ରାବିଡ଼, ସ୍ଥୂଳଶରୀର, କୃଷ୍ଣବର୍ଣ୍ଣ, ଚନ୍ଦନଚର୍ଚ୍ଚିତକଳେବର, କଣ୍ଠରେ ମୁକ୍ତାମାଳା ବିଭୂଷିତ, ପାଣ୍ଡ୍ୟ-

ରାଜାଙ୍କୁ ବାଲସୂର୍ଯ୍ୟକିରଣରେ ରଞ୍ଜିତ, ନିର୍ଝରବିଶିଷ୍ଟ, ବିଶାଳ ପର୍ବତ ସହିତ ତୁଳନା କରି ଅଛନ୍ତି । ଅଙ୍ଗ, ବଙ୍ଗ, କଳିଙ୍ଗ, ମଗଧ, ଅବନ୍ତୀ, ଅନୂପ, ଶୂରସେନ ଇତ୍ୟାଦି ଦେଶମାନଙ୍କର ରାଜାମାନଙ୍କୁ ସୁନନ୍ଦା ଅତି ବିଚକ୍ଷଣତା ସହକାରେ ସୁନ୍ଦରଭାବେ ବର୍ଣ୍ଣନା କରି ଅଛନ୍ତି । ତଥାପି ଇନ୍ଦୁମତୀ ଏମାନଙ୍କ ମଧ୍ୟରୁ କାହାକୁ ହେଲେ ମନେ ମନେ ପ୍ରୀତ କରିପାରିଲେ ନାହିଁ ।

ପରକ୍ଷେତ୍ରରେ ସୁନନ୍ଦା ଇନ୍ଦୁମତୀଙ୍କ ସହିତ ଅଜଙ୍କ ସମୀପରେ ଉପସ୍ଥିତ ହେଲେ । ଇନ୍ଦୁମତୀ ସର୍ବାଙ୍ଗ ସୁନ୍ଦର ନବ-ତରୁଣିମାଲଙ୍କୃତ ଅଜଙ୍କୁ ଦେଖିବାମାତ୍ରେ ମୋହିତ ହୋଇଗଲେ । ସୁଚତୁର ସୁନନ୍ଦା ଏହା ଠଉରାଇ ଅତି ବିସ୍ତୃତ ଭାବରେ ରାଜକୁମାରଙ୍କର ବର୍ଣ୍ଣନା କଲେ । 'କୁଳ, କାନ୍ତି, ଯୌବନ, ବିନୟ ପ୍ରଭୃତି ଗୁଣଗଣରେ ଏହି ରାଜକୁମାର ତୁମର ସର୍ବଥା ଯୋଗ୍ୟ, ଏହାଙ୍କ ଗଳାରେ ପୁଷ୍ପମାଳା ଅର୍ପଣ କରି 'ମଣିକାଞ୍ଚନ' ସଂଯୋଗ କରାଅ' ବୋଲି ପରାମର୍ଶ ଦେଲେ ଏବଂ ଯେତେବେଳେ ଦେଖିଲେ ଯେ ଇନ୍ଦୁମତୀ ଅଜଙ୍କ ପ୍ରତି ଦୃଢ଼ ଅନୁରକ୍ତା, ସେତେବେଳେ ସେ ମଧୁର ପରିହାସ କରି ଅନ୍ୟ ରାଜାଙ୍କ ସମୀପକୁ ଯିବାକୁ ଆହ୍ୱାନ କଲେ ଏବଂ ଇନ୍ଦୁମତୀ କୁଟିଳ ଦୃଷ୍ଟି ପ୍ରକାଶ କରି ସୁନନ୍ଦାଙ୍କୁ ତିରସ୍କାର କଲେ । ପୁରବାସୀମାନେ ଅଜ ଓ ଇନ୍ଦୁମତୀଙ୍କର ଅନୁରୂପ ସମ୍ବନ୍ଧ ଦେଖି ଅମିତ ଆନନ୍ଦ ଲାଭ କଲେ । ଅଜ ଓ ଇନ୍ଦୁମତୀଙ୍କୁ ସଙ୍ଗରେ ଧରି ବିଦର୍ଭର ରାଜା ରାଜଧାନୀରେ ପ୍ରବେଶ କଲେ । କାଳିଦାସ ଏ ସମୟରେ ପୁରବାସିନୀ ଲଲନାମାନଙ୍କର ବିଭ୍ରମାବସ୍ଥାକୁ ଅତି ସୁନ୍ଦର ଭାବେ ଚିତ୍ରିତ କରି ଅଛନ୍ତି । ଏହା ପରେ ବିବାହଆୟୋଜନ, ଇନ୍ଦୁମତୀଙ୍କ ସହିତ ଅଜଙ୍କର

ପ୍ରତ୍ୟାବର୍ତ୍ତନମାର୍ଗରେ ଅପହୃତ ପ୍ରତିଦ୍ୱନ୍ଦ୍ୱୀ ରାଜାମାନଙ୍କଦ୍ୱାରା ଅଜଙ୍କ ଆକ୍ରମଣ ଏବଂ ଗନ୍ଧର୍ବଦତ୍ତ ସମ୍ମୋହନାସ୍ତ୍ରରେ ସେମାନଙ୍କର ପରାଭବ ଏବଂ ଇନ୍ଦୁମତୀଙ୍କ ସହିତ ଅଜଙ୍କର ଅଯୋଧ୍ୟାରେ ପ୍ରବେଶ କବି ସୁନ୍ଦରଭାବେ ବର୍ଣ୍ଣନା କରି ଅଛନ୍ତି । ( ୭ମ ସର୍ଗ ) ରଘୁ ସୁଯୋଗ୍ୟ ପୁତ୍ର ଅଜଙ୍କ ହସ୍ତରେ ସିଂହାସନ ଅର୍ପଣ କରି ତପସ୍ୟା କରିବାକୁ ଅରଣ୍ୟକୁ ଯିବାକୁ ସ୍ଥିର କଲେ କିନ୍ତୁ ଅଜ ନିଜ ପିତାଙ୍କର ଦୁଃଖ ଅସହ୍ୟ ମନେ କଲେ । ତାଙ୍କର ନିର୍ବନ୍ଧରେ ରଘୁ ନଗର ସମୀପରେ ରହିଲେ । ପୁତ୍ର ପାଖରେ କେତେକ ବର୍ଷ ରହି ଯୋଗାଭ୍ୟାସ ବଳରେ ରଘୁ ସାଯୁଜ୍ୟମୁକ୍ତି ଲାଭ କଲେ । କେତେ ସମୟ ପରେ ଅଜଙ୍କର ଏକ ପୁତ୍ର ଜାତ ହେଲା । ତାଙ୍କୁ ଦଶରଥ ବୋଲି ନାମ ଦେଲେ । ଏକ ସମୟରେ ଅଜ ନିଜ ପ୍ରେୟସୀ ଇନ୍ଦୁମତୀଙ୍କ ସହିତ ଉପବନରେ ବିହାର କରୁଥିଲେ । ସେ ସମୟରେ ନାରଦ ବୀଣା ବଜାଇ ବଜାଇ ଗୋକର୍ଣ୍ଣେଶ୍ୱର ମହାଦେବଙ୍କୁ ଦେଖିବାକୁ ଆକାଶମାର୍ଗରେ ଯାଉଥିଲେ । ଆକସ୍ମିକ ଭାବେ ବୀଣାରୁ ଏକ ଦିବ୍ୟ ପୁଷ୍ପମାଳା ପବନପ୍ରଭାବରେ ଖସି ଇନ୍ଦୁମତୀଙ୍କର ହୃଦୟରେ ପଡ଼ିଲା । ସେ ମାଳାର ଅଘାତରେ ଇନ୍ଦୁମତୀଙ୍କର ମୃତ୍ୟୁ ହେଲା । ତାହା ଦେଖି ଅଜଙ୍କର ଅସହ୍ୟ ଦୁଃଖ ହେଲା । ସେ ଇନ୍ଦୁମତୀଙ୍କର ଶୀଳ ଓ ଗୁଣମାନ ସ୍ମରଣ କରି ବିଳାପ କରିବାକୁ ଲାଗିଲେ ।

'स्रगियं यदि जीवितापहा हृदये किं निहिता न हन्ति माम् ।
विषमप्यमृतं क्वचिद्भवेदमृतं वा विषमीश्वरेच्छया ॥
ରଘୁ ୮,୪୬

'ଯଦି ଏହି ମାଳାର ପ୍ରାଣ ହରଣ କରିବା ଶକ୍ତି ଥାଆନ୍ତା ତେବେ ସେ ମୋର ପ୍ରାଣ କାହିଁକି ନେଉ ନାହିଁ? ମୁଁ ତ ତାକୁ ଛାତିଉପରେ ରଖିଛି । ମୋଟ କଥା—ଈଶ୍ୱରଙ୍କର ଇଚ୍ଛାରେ ବିଷ ମଧ୍ୟ ଅମୃତ ହୁଏ, ଅମୃତ ମଧ୍ୟ ବିଷ ହୋଇଥାଏ ।'

**गृहिणी सचिवः सखी मिथः प्रियशिष्या ललिते कलाविधौ।**
**करुणाविमुखेन मृत्युना हरता त्वां वद किं न मे हृतम् ॥**

ରଘୁ ୧,୬୭

ତୁମେ ମୋର ଘରର ସର୍ବସ୍ୱ, ମନ୍ତ୍ରୀ, ସଖୀ ଓ ସଙ୍ଗୀତ-ଆଦି ଲଳିତକଳାରେ ମୋର ପ୍ରିୟଶିଷ୍ୟା ଥିଲ । ନିର୍ଦ୍ଦୟ ଯମ ତୁମ୍ଭଙ୍କୁ ମୋଠାରୁ ବିଚ୍ଛିନ୍ନ କରି ନେଇ ମୋର ସର୍ବସ୍ୱ ନେଇଅଛି, ଆଉ କଅଣ ରଖିଛି ? କହ ।

କୁଳଗୁରୁ ବଶିଷ୍ଠ ରାଜାଙ୍କର ଶୋକ କୌଣସି ପ୍ରକାରେ ଶାନ୍ତ ନ ହେବା ଦେଖି ନିଜ ଶିଷ୍ୟ ଦ୍ୱାରାରେ କହି ପଠାଇଲେ ଯେ ଜନ୍ମ ହେଲା ପରେ ଦିନେ ନା ଦିନେ ଅବଶ୍ୟ ମୃତ୍ୟୁ ହେବ, ତୁମେ ଶୋକରେ ଶରୀର ତ୍ୟାଗ କଲେ ମଧ୍ୟ ଆଉ ଇନ୍ଦୁମତୀଙ୍କୁ ପାଇ ପାରିବ ନାହିଁ । ଏହି ଉପଦେଶ ରାଜାଙ୍କର ଚିତ୍ତକୁ ସାନ୍ତ୍ୱନା ଦେଇପାରିଲା ନାହିଁ । ରାଜକୁମାର ଦଶରଥ ବାଳକ ଥିବା ହେତୁ ଯେ କୌଣସି ପ୍ରକାରେ ଆଠବର୍ଷ କଟାଇଲେ ଏବଂ ଯେତେବେଳେ ଦେଖିଲେ ଦଶରଥ ରାଜ୍ୟଭାର ଗ୍ରହଣ କରିବାକୁ ସମର୍ଥ, ସେତେ-ବେଳେ ସେ ରାଜ୍ୟଭାର ତାଙ୍କ ହସ୍ତରେ ଅର୍ପଣ କରି ଗଙ୍ଗା ଓ ସରଯୂର ପବିତ୍ର ସଙ୍ଗମସ୍ଥାନରେ ପ୍ରାୟୋପବେଶନ କରି ଶରୀର ତ୍ୟାଗ କଲେ । (୮ମ ସର୍ଗ) ଦଶରଥ ସିଂହାସନ ଆରୋହଣ କରି

ନ୍ୟାୟ ଅନୁସାରେ ପ୍ରଜାପାଳନ କଲେ । ତାଙ୍କ ରାଜ୍ୟଶାସନ-କାଳରେ ବ୍ୟାଧି ନାମମାତ୍ରାବଶିଷ୍ଟ ଥିଲା, ଶତ୍ରୁମାନଙ୍କର ସତ୍ତା ନ ଥିଲା । ତାଙ୍କର ଦ୍ୟୂତ, ସୁରା ଓ ପରସ୍ତ୍ରୀ ପ୍ରଭୃତି କୌଣସି ବ୍ୟସନ ନଥିଲା । ସଦାଗୁଣୀ ରାଜାଙ୍କର ରାଜ୍ୟରେ ପ୍ରଜାମାନେ ଅତ୍ୟନ୍ତ ସୁଖରେ ଥିଲେ । ତାଙ୍କର କୌଶଲ୍ୟା, କୈକେୟୀ ଓ ସୁମିତ୍ରା-ନାମରେ ତିନିଜଣ ରାଣୀ ଥିଲେ । କିନ୍ତୁ ରାଜାଙ୍କର କୌଣସି ସନ୍ତାନ ହୋଇ ନଥିଲା । ବସନ୍ତଋତୁରେ ଦିନେ ରାଜା ମନ୍ତ୍ରୀମାନଙ୍କ ଗହଣରେ ମୃଗୟା କରିବାକୁ ଯାଇଥିଲେ । କବି ଦଶରଥଙ୍କର ମୃଗୟା ବିହାର ସୁନ୍ଦରରୂପେ ବର୍ଣ୍ଣନା କରି ଅଛନ୍ତି । ଏହି ମୃଗୟା-ପରିଣାମ ବିଷାଦମୟ ହୋଇଥିଲା । ଦିନେ ରାଜା ମୃଗୟା କରି କରି ରାନ୍ତ ହୋଇଗଲା, ସେ ବଣରେ ରହିବାକୁ ବାଧ୍ୟ ହେଲେ । ବିଧିର ବିଧାନ ବିଚିତ୍ର । ଏ ସମୟରେ ଅନ୍ଧ ଓ ବୃଦ୍ଧ ପିତାମାତାଙ୍କର ଏକମାତ୍ର ତରୁଣ ପୁତ୍ର ତୃଷାର୍ତ୍ତ ପିତାମାତାଙ୍କ ପାଇଁ ଜଳ ନେବା ସକାଶେ କଳସୀ ଧରି ତମସାନଦୀର ପ୍ରବାହରେ ପାଣି ପୂରାଉଥିଲେ । ନିକଟରେ ଦଶରଥ ଅବସ୍ଥାନ କରୁଥିଲେ । ତପସ୍ୱିକୁମାର ପାଣିରେ କଳସୀ ବୁଡ଼ାଇଲା ସମୟରେ ଯେଉଁ ଶବ୍ଦ ହେଲା, ରଜା ଦଶରଥ ତାହାକୁ ହାତୀର ଶବ୍ଦ ମନେକରି ଭ୍ରାନ୍ତିବଶତଃ ଶବ୍ଦଭେଦୀ ଶର ସନ୍ଧାନ କଲେ । ଶର ଋଷିପୁତ୍ରଙ୍କର ମର୍ମସ୍ଥଳ ଭେଦକରି ଅନ୍ୟ ପାଖରେ ବାହାରିଲା । ଋଷିକୁମାର ସେହିକ୍ଷଣି ପ୍ରାଣତ୍ୟାଗ କଲେ । ପାଣି ପିଇବା ଆଶାରେ ଅପେକ୍ଷା କରୁଥିବା ତୃଷାର୍ତ୍ତ ପିତାମାତା ଜାଣି ପାରି ଶୋକାକୁଳ ହୋଇ ରଜା ଦଶରଥଙ୍କୁ 'ତୁମେ ମଧ୍ୟ ଆମ ପରି ବୃଦ୍ଧାବସ୍ଥାରେ ପୁତ୍ରଶୋକରେ ମରିବ' (ଦିଷ୍ଟାନ୍ତମାପ୍ସ୍ୟସି ଭବାନପି ପୁତ୍ରଶୋକାଦନ୍ତ୍ୟେ ବୟସ୍ୟ-ହମିବେତି) ବୋଲି ଶାପ ଦେଇ ଶରୀର ତ୍ୟାଗ କଲେ ।

ଏହାର ପରବର୍ତ୍ତୀ ଛଅଟି ସର୍ଗରେ କାଳିଦାସ ରାମଚନ୍ଦ୍ରଙ୍କର ଚରିତ ବର୍ଣ୍ଣନ କରି ଅଛନ୍ତି । ସେ କଥା ସର୍ବଜନବିଦିତ । ତାହା ଅତି ବିସ୍ତାର କରି କହିବା ଦରକାର ନାହିଁ । ଦଶରଥ ଅନେକ ବର୍ଷ ପର୍ଯ୍ୟନ୍ତ ରାଜତ୍ୱ କଲେ । କିନ୍ତୁ ପୁତ୍ର ନ ହେବାରୁ ଋଷ୍ୟଶୃଙ୍ଗ-ପ୍ରଭୃତି ଋଷିମାନଙ୍କଦ୍ୱାରା ପୁତ୍ରକାମେଷ୍ଟି ଯାଗ ଆରମ୍ଭ କଲେ । ଏ ସମୟରେ ଦେବତାମାନେ ଲଙ୍କାଧିପତି ରାବଣର ଉପଦ୍ରବରେ ଉତ୍ପୀଡ଼ିତ ହୋଇ ଭଗବାନ୍ ବିଷ୍ଣୁଙ୍କର ଶରଣାଗତ ହେଲେ । ବିଷ୍ଣୁ ଦେବତାମାନଙ୍କୁ ଅଭୟ ପ୍ରଦାନ କରି ଶୀଘ୍ର ରାବଣର ବଧ-ସକାଶେ ପୃଥିବୀରେ ଅବତୀର୍ଣ୍ଣ ହେବେ ବୋଲି ଆଶ୍ୱାସନା ଦେଲେ । ଏହା ପରେ ଯଜ୍ଞ ପାୟସ ଭକ୍ଷଣ କରିବା ଫଳରେ କୌଶଲ୍ୟାଙ୍କର ଗର୍ଭରୁ ରାମଚନ୍ଦ୍ର, କୈକେୟୀଙ୍କ ଗର୍ଭରୁ ଭରତ ସୁମିତ୍ରାଙ୍କର ଗର୍ଭରୁ ଲକ୍ଷ୍ମଣ ଓ ଶତ୍ରୁଘ୍ନ ଜାତ ହେଲେ । ବିଶ୍ୱାମିତ୍ର ଋଷି କୁମାରାବସ୍ଥାରେ ରାମ ଓ ଲକ୍ଷ୍ମଣଙ୍କୁ ଯଜ୍ଞ ରକ୍ଷା-କରିବା ସକାଶେ ଆଶ୍ରମକୁ ନେଇଗଲେ । ରାମ ମାର୍ଗରେ ତାଡ଼କା-ନାମକ ରାକ୍ଷସୀକୁ ବଧ କଲେ । ଯଜ୍ଞ ସମାପ୍ତ ହେଲା ପରେ ବିଶ୍ୱାମିତ୍ର ରାମ ଓ ଲକ୍ଷ୍ମଣଙ୍କୁ ଧରି ମିଥିଳାରେ ଉପସ୍ଥିତ ହେଲେ । ସେଠାରେ ରାମ ଭଗବାନ୍ ଶିବଙ୍କର ଧନୁ ଭଗ୍ନ କଲେ । ପର-ଶେଷରେ ରାମ, ଲକ୍ଷ୍ମଣ, ଭରତ ଓ ଶତ୍ରୁଘ୍ନଙ୍କର ରୂପଶୀଳବତୀ ରାଜକନ୍ୟାମାନଙ୍କ ସହିତ ବିବାହ ହେଲା । ଅଯୋଧ୍ୟାକୁ ଫେରିବା-ବାଟରେ ରାମଚନ୍ଦ୍ର ପରଶୁରାମଙ୍କୁ ପରାସ୍ତ କଲେ । (୧୧ଶ ସର୍ଗ) କୈକେୟୀ ବର ମାଗିବା ଫଳରେ ରାମ, ଲକ୍ଷ୍ମଣ ଓ ସୀତା ବଣକୁ ଗଲେ । ପଞ୍ଚବଟୀରେ ଥିଲାବେଳେ ରାମ ଖରପ୍ରଭୃତି ଦୈତ୍ୟ-ମାନଙ୍କୁ ବଧ କଲେ । ତା ପରେ ରାବଣ ସୀତାଙ୍କୁ ହରଣ କରି

ନେଇଗଲେ । ପରେ ରାମଚନ୍ଦ୍ର କିଷ୍କିନ୍ଧାର ରାଜା ସୁଗ୍ରୀବଙ୍କ ସହିତ ମିତ୍ରତା ସ୍ଥାପନ କରି, ତାଙ୍କ ସାହାଯ୍ୟରେ ସମୁଦ୍ରରେ ସେତୁ ବାନ୍ଧି ବାନର ସେନା ସହିତ ଲଙ୍କା ଆକ୍ରମଣ କଲେ ଓ ରାବଣକୁ ବଧ କଲେ । ସୀତାଙ୍କର ଅଗ୍ନିଶୁଦ୍ଧି ପରେ ବିଭୀଷଣ, ସୁଗ୍ରୀବ, ଲକ୍ଷ୍ମଣ ଓ ସୀତା ସମେତ ପୁଷ୍ପକ ବିମାନ ଆରୋହଣ କରି ଆକାଶ ମାର୍ଗରେ ଅଯୋଧ୍ୟାକୁ ପ୍ରତ୍ୟାବର୍ତ୍ତନ କଲେ (୧୨ଶ ସର୍ଗ) ଏ ପ୍ରସଙ୍ଗରେ ରାମ ବନବାସ ସମୟରେ ଯେଉଁ ଯେଉଁ ସ୍ଥାନରେ ଅବସ୍ଥାନ କରିଥିଲେ, ସେହି ସେହି ସ୍ଥାନମାନଙ୍କର ବର୍ଣ୍ଣନା କବି ତ୍ରୟୋଦଶ ସର୍ଗରେ କରି ଅଛନ୍ତି । ଚତୁର୍ଦ୍ଦଶ ସର୍ଗରେ ରାମଙ୍କର ଅଯୋଧ୍ୟା ପ୍ରବେଶ, ସାଧ୍ୱୀ ସୀତାଙ୍କର ଚରିତ୍ରରେ ଜନାପବାଦ, ରାମଙ୍କ ଆଦେଶରେ ଲକ୍ଷ୍ମଣ କର୍ତ୍ତୃକ ଗର୍ଭବତୀ ସୀତାଙ୍କର ବାଲ୍ମୀକି ଆଶ୍ରମ ମାଖରେ ବିସର୍ଜନ ପ୍ରଭୃତି ବର୍ଣ୍ଣିତ ହୋଇଅଛି । ସେ ସମୟରେ ସୀତା ଲକ୍ଷ୍ମଣଙ୍କ ଦ୍ୱାରା ରାମଚନ୍ଦ୍ରଙ୍କ ପାଖକୁ ଏକ ସନ୍ଦେଶ ପଠାଇ ଥିଲେ । ଏହି ସନ୍ଦେଶରେ କାଳିଦାସ ସୀତାଙ୍କର କୋମଳ ସ୍ୱଭାବ, କରୁଣାବସ୍ଥା ଓ ପାତିବ୍ରତ୍ୟ ଅତିମନୋହର ଭାବରେ ବର୍ଣ୍ଣନା କରି ଅଛନ୍ତି । ନିମ୍ନଲିଖିତ ଶ୍ଳୋକରେ ସୀତା କହୁଛନ୍ତି—

**साहं तपः सूर्यनिविष्टदृष्टिरूर्द्ध्वं प्रसूतेश्चरितुं यतिष्ये ।**
**भूयो यथा मे जनमान्तरेऽपि त्वमेव भर्त्ता न च विप्रयोगः ॥**

ରଘୁ ୧୪, ୬୬

'ମୁଁ ପ୍ରସବ ପରେ ସୂର୍ଯ୍ୟଙ୍କ ପ୍ରତି ଦୃଷ୍ଟି ନିବଦ୍ଧ କରି ତପସ୍ୟା କରିବାକୁ ଚେଷ୍ଟା କରିବି—ଯାହା ଫଳରେ ଅନ୍ୟ ଜନ୍ମରେ

ଯୁଦ୍ଧା ତୁମେ କେବଳ ମୋର ପତି ହେବ ଏବଂ ବିରହ ଘଟିବ ନାହିଁ ।'

ଏହି ପ୍ରସଙ୍ଗରେ କବିଙ୍କର କଣ୍ଠବିଳାସିନୀ ଭାରତୀ ସୀତାଦେବୀଙ୍କର ମହାନୁଭବତାର ଓ ସ୍ୱାର୍ଥତ୍ୟାଗର ଯେଉଁ ବର୍ଣ୍ଣନା କରି ଅଛନ୍ତି, ତାହା ଅତ୍ୟନ୍ତ କରୁଣ, ଉତ୍ତେଜକ, ମାର୍ମିକ ଓ ପବିତ୍ର । ଗର୍ଭିଣୀ ଅବସ୍ଥାରେ ବିନା କାରଣରେ ପରିତ୍ୟାଗ କରିଥିବା ସ୍ୱାମୀଙ୍କ ପ୍ରତି ଏହିପରି ଉକ୍ତି କେବଳ ଆର୍ଯ୍ୟନାରୀର ମୁଖରୁ ବାହାରି ପାରେ । ପଞ୍ଚଦଶ ସର୍ଗରେ ଶମ୍ବୁକବଧ, କୁଶ ଲବଙ୍କର ରାଜସଭାରେ ରାମଚରିତ ଗାୟନ, ସୀତାଙ୍କର ଭୂଗର୍ଭରେ ପ୍ରବେଶ ତଥା ରାମ ପ୍ରଭୃତିଙ୍କର ସ୍ୱଧାମପ୍ରସ୍ଥାନ ପ୍ରଭୃତି ବିଷୟ ଅତି ରମଣୀୟ ଭାବରେ ବର୍ଣ୍ଣିତ ହୋଇଅଛି ।

ପରମଧାମକୁ ଯିବା ପୂର୍ବରୁ ରାମଚନ୍ଦ୍ର ନିଜ ପୁତ୍ର ଓ ଭାତୃପୁତ୍ରମାନଙ୍କୁ ରାଜ୍ୟ ବାଣ୍ଟିବା ବ୍ୟବସ୍ଥା କରିଥିଲେ । ଏହି ବ୍ୟବସ୍ଥା ଅନୁଯାୟୀ କୁଶଙ୍କୁ ଦକ୍ଷିଣର ଆଧିପତ୍ୟ ମିଳିଥିଲା । କୁଶାବତୀ ତାଙ୍କର ରାଜଧାନୀ ଥିଲା । ରାମଙ୍କ ପରେ ଅଯୋଧ୍ୟାର ଅବସ୍ଥା ଅତ୍ୟନ୍ତ ଶୋଚନୀୟ ହେଲା । ଦିନେ କୁଶ ନିଜଶୟନାଗାରରେ ଶୋଇଥିଲେ, ତାଙ୍କୁ ଏକ ତେଜୋମୟୀ ମୂର୍ତ୍ତି ଦେଖାଦେଲେ । ସେ ଅଯୋଧ୍ୟାର ଅଧିଦେବତା । ସେ ରାମଚନ୍ଦ୍ରଙ୍କ ସମୟରେ ନିଜର ସମୃଦ୍ଧି ଓ ତାଙ୍କ ପରେ ନିଜର ଦୁର୍ଦ୍ଦଶା ଅତି ହୃଦୟସ୍ପର୍ଶୀ ଭାଷାରେ ବର୍ଣ୍ଣନା କରି, କୁଶଙ୍କୁ ଅଯୋଧ୍ୟା ଯାଇ ରହିବାକୁ ଅନୁରୋଧ କଲେ । କୁଶ କୁଶାବତୀ ତ୍ୟାଗ କରି ରାଜ-ପରିବାର ସହିତ ଅଯୋଧ୍ୟାକୁ ଫେରି ଆସିଲେ । ଏକ ଦିନ ସର୍ଯୂ-

ନଦୀରେ ଜଳବିହାର କଲାସମୟରେ କୁଶଙ୍କ ହସ୍ତରୁ ଦିବ୍ୟକଙ୍କଣ ଯାହାକୁ ଅଗସ୍ତ୍ୟ ମୁନି ରାମଙ୍କୁ ଓ ରାମ କୁଶଙ୍କୁ ଦେଇଥିଲେ, ଖସି, ସରଯୂରେ ପଡ଼ିଗଲା । କେତେ ଚେଷ୍ଟା କଲେ ମଧ୍ୟ ଆଉ ମିଳିଲା ନାହିଁ । କୁଶଙ୍କର ସନ୍ଦେହ ହେଲା ଯେ ତାଙ୍କର କଙ୍କଣ କୁମୁଦ-ନାମକ ସର୍ପ ଚୋରାଇ କରି ନେଇ ଯାଇଛି । ସେ ଗରୁଡ଼ାସ୍ତ୍ର ପ୍ରୟୋଗ କଲେ । କୁମୁଦ ଭୀତତ୍ରସ୍ତ ହୋଇ କଙ୍କଣ କୁଶଙ୍କୁ ଫେରାଇ ଦେଲେ ଏବଂ ତାହା ସହିତ କନ୍ୟା କୁମୁଦ୍ୱତୀଙ୍କୁ କୁଶଙ୍କୁ ଅର୍ପଣ କଲେ । କୁଶଙ୍କର ପୁତ୍ରଙ୍କର ନାମ ଅତିଥି । କୁଶଙ୍କ ପରେ ଅତିଥି ସିଂହାସନ ଆରୋହଣ କଲେ । ସେ ଧନ ଓ ରାଜ ବିଭାଗ କରି ଅତି ସୁନ୍ଦର ଭାବେ ନିଜ କର୍ତ୍ତବ୍ୟ ପାଳନ କଲେ । ରୂପ, ଯୌବନ, ସମ୍ପତ୍ତି ଓ ଅଧିକାର ଥିଲେ ମଧ୍ୟ ରାଜା ଅତିଥିଙ୍କର ତିଳେ ମାତ୍ର ଗର୍ବ ନ ଥିଲା । ସେ ରାଜନୀତି ଅନୁସାରେ ସମସ୍ତ ବ୍ୟବହାର କରୁଥିଲେ । ( ୧୭ଶ ସର୍ଗ )

ଅଷ୍ଟାଦଶ ସର୍ଗରେ ୨୧ ଜଣ ରାଜାଙ୍କର ବର୍ଣ୍ଣନା ଅଛି । ଏମାନଙ୍କ ମଧ୍ୟରେ ୨୦ ରାଜାଙ୍କର ବର୍ଣ୍ଣନା କବି ଗୋଟିଏ ବା ଦୁଇଟି ଶ୍ଳୋକରେ ସମାପ୍ତ କରି ଅଛନ୍ତି । ଅନ୍ତିମ ରାଜା ସୁଦର୍ଶନ ବାଲ୍ୟାବସ୍ଥାରେ କେବଳ ସିଂହାସନ ଆରୋହଣ କଲେ । ସେ ମନ୍ତ୍ରୀମାନଙ୍କର ସାହାଯ୍ୟରେ ରାଜ୍ୟଶାସନର ଉତ୍ତମ ବ୍ୟବସ୍ଥା କରିଥିଲେ । ଏହା ଏହି ସର୍ଗର ଶେଷ ଭାଗରେ ବର୍ଣ୍ଣିତ ହୋଇ-ଅଛି । ଅନ୍ତିମ ଊନବିଂଶ ସର୍ଗରେ ସୁଦର୍ଶନଙ୍କର ପୁତ୍ର ଅଗ୍ନି-ବର୍ଣ୍ଣଙ୍କର ଚରିତ୍ର ବର୍ଣ୍ଣିତ ହୋଇ ଅଛି । ତାଙ୍କର ପିତା ସୁଦର୍ଶନ ସମସ୍ତ ଶତ୍ରୁ ନିର୍ମୂଳ କରିଦେଇଥିଲେ ଏବଂ ରାଜ୍ୟଶାସନର ସୁବ୍ୟବସ୍ଥାରେ ଅଗ୍ନିବର୍ଣ୍ଣଙ୍କୁ ଆଉ କିଛି କରିବାକୁ ନ ଥିଲା ।

ପ୍ରଥମ କେତେଦିନ ରାଜ୍ୟଶାସନରେ ମନ ଦେଇଥିଲେ । କିନ୍ତୁ ବିଳାସୀ ହେବା ହେତୁ ରାଜ୍ୟଭାର ମନ୍ତ୍ରୀମାନଙ୍କ ହସ୍ତରେ ସମର୍ପଣ କରି ନିଜେ ପୂର୍ଣ୍ଣମାତ୍ରାରେ ବିଷୟୋପଭୋଗରେ ନିମଗ୍ନ ରହିଲେ । ସେ ଦିନରାତି ସବୁବେଳେ ଅନ୍ତଃପୁରରେ ବିହାର କରିବାକୁ ଲାଗିଲେ । ସେ କ୍ଷଣେ ହେଲେ ପ୍ରଜାଙ୍କ ବିଷୟ ଭାବୁ ନ ଥିଲେ । ଏକ ଦିନ ମନ୍ତ୍ରୀମାନଙ୍କର ବିଶେଷ ଅନୁରୋଧରେ ଲମ୍ପଟ ରାଜା ଅନ୍ତଃପୁର ବାତାୟନ ମାର୍ଗରେ କେବଳ ନିଜର ଗୋଟିଏ ପାଦ ପଦାକୁ ବାହାର କରି ପ୍ରଜାମାନଙ୍କୁ ଦେଖାଇଲେ । ଏହି ବିଷୟାସକ୍ତ ଓ ବ୍ୟସନୀ ରାଜାଙ୍କର ବର୍ଣ୍ଣନା ପଢ଼ିଲେ ମନରେ ଘୃଣା ଜାତ ହୁଏ । କିନ୍ତୁ କବିଙ୍କର ବର୍ଣ୍ଣନାଚାତୁରୀରେ ବିସ୍ମିତ ନ ହୋଇ ରହି ହୁଏ ନାହିଁ । ଅଗ୍ନିବର୍ଣ୍ଣ ନିଜେ ଅତି ଉଚ୍ଚ ସ୍ତରର ଲଳିତ-କଳାକୋବିଦ ଥିଲେ । ସେ ନର୍ତ୍ତକୀମାନେ ନୃତ୍ୟ କଲାବେଳେ ନିଜେ ମୃଦଙ୍ଗ ବଜାଉଥିଲେ ଏବଂ ସେମାନଙ୍କୁ ନୃତ୍ୟର ଦୋଷ ଦେଖାଇ ଲଜ୍ଜିତ କରୁଥିଲେ । ଅନ୍ତଃପୁରବାସୀ ଲଳନାଗଣ ତାଙ୍କ ବାସନା ଚରିତାର୍ଥ କରିବା ସକାଶେ ଯଥେଷ୍ଟ ନଥିଲେ । ଅତଏବ ପୁରବାସୀ ଦାସୀ ଓ ବେଶ୍ୟାମାନେ ମଧ୍ୟ ତାଙ୍କ ଦୃଷ୍ଟିରୁ ବଞ୍ଚିତ ହେଉ ନ ଥିଲେ । ଅତ୍ୟନ୍ତ ସ୍ତ୍ରୀସହବାସ ଓ ସୁରାପାନ ଫଳରେ ତାଙ୍କର ଶରୀର ଦୁର୍ବଳ ଓ ବ୍ୟାଧିଗ୍ରସ୍ତ ହୋଇଗଲା । ବୈଦ୍ୟମାନେ ଉପଦେଶ ଦେଲେ ମଧ୍ୟ ସେ ଦୁର୍ବ୍ୟସନରୁ ନିବୃତ୍ତ ହୋଇ ପାରିଲେ ନାହିଁ । କାରଣ 'ସ୍ୱାଦୁଭିସ୍ତୁ ବିଷୟୈର୍ହୃତସ୍ତତୋ ଦୁଃଖମିନ୍ଦ୍ରିୟ-ଗଣୋ ନିବର୍ତ୍ତିତେ' (ଯଦି ଥରେ ଇନ୍ଦ୍ରିୟମାନଙ୍କ ସ୍ୱାଦୁବିଷୟୋପ-ଭୋଗର ବାସନା ଲାଗିଯାଏ, ତେବେ ତହିଁରୁ ନିବୃତ୍ତି ପାଇବା କଠିନ ହୋଇ ଉଠେ) ପ୍ରଜାମାନେ ଦୀର୍ଘ ସମୟ ଧରି ରାଜାଙ୍କର ଦର୍ଶନ ନ ପାଇ ତାଙ୍କ ବିଷୟରେ ନାନା ପ୍ରକାର ଚିନ୍ତା କଲେ ।

ଅଗ୍ନିବର୍ଣ୍ଣ କ୍ଷୟ ରୋଗର କବଳରେ ପଡ଼ିଲେ ମଧ୍ୟ ମନ୍ତ୍ରୀମାନେ ଏହା ଗୋପନରେ ରଖିଲେ । ତାଙ୍କର ମୃତ୍ୟୁପରେ ତାଙ୍କର ଗର୍ଭବତୀ ରାଣୀ ସିଂହାସନ ଆରୋହଣ କଲେ । ରାଣୀ ରାଜ୍ୟର ଶାସନ ସରଳ ଭାବରେ ଚଳାଇଲେ । (୧୯ଶ ସର୍ଗ) ।

'ରଘୁବଂଶ'ର ସମାପ୍ତି ୧୯ ସର୍ଗରେ ଅକସ୍ମାତ୍ଭାବେ ହୋଇଅଛି । କେତେବର୍ଷ ତଳେ ଜଣେ ପଣ୍ଡିତ ଧାର ନଗରୀରେ 'ରଘୁବଂଶ'ର ୨୬ଟି ସର୍ଗ ଥିବାର ସୂଚନା ଦେଇଥିଲେ । ସ୍ୱର୍ଗବାସୀ ରାୟବାହାଦୂର ପଣ୍ଡିତ ଶଙ୍କର ପାଣ୍ଡୁରଙ୍ଗ ମଧ୍ୟ ଶୁଣିଥିଲେ ଯେ ଉଜ୍ଜୟିନୀରେ 'ରଘୁବଂଶ'ର ୨୦ ଠାରୁ ୨୫ ସର୍ଗମାନ ବର୍ତ୍ତମାନ । ଏ ପର୍ଯ୍ୟନ୍ତ ସେସମସ୍ତ ସର୍ଗମାନଙ୍କର ପତ୍ତାଚଯ୍ୟ ନ ମିଳିବାରୁ ରଘୁବଂଶରେ ୨୬ଟି ସର୍ଗ ଥିଲା ବୋଲି ବିଶ୍ୱାସ ହେଉ ନାହିଁ । କବି ୧୯ ସର୍ଗରୁ ଅଧିକ ରଚନା କରି ନାହାନ୍ତି— ଏହାର କାରଣ ତାଙ୍କର ଅସୁସ୍ଥତା ବା ମୃତ୍ୟୁ ହୋଇପାରେ । ଯାହା କାରଣ ଥାଉ ବା ନ ଥାଉ କବି 'କୁମାରସମ୍ଭବ' ପରି ରଘୁବଂଶକୁ ମଧ୍ୟ ଅସମ୍ପୂର୍ଣ୍ଣ ଅବସ୍ଥାରେ କେବଳ ଛାଡ଼ିଦେଇଛନ୍ତି । 'ବିଷ୍ଣୁପୁରାଣ'ରେ ରାଜା ଅଗ୍ନିବର୍ଣ୍ଣଙ୍କ ପରେ ଆଉ ଆଠଜଣ ରାଜାଙ୍କର ବର୍ଣ୍ଣନା ଅଛି ।

'ରଘୁବଂଶ' କାଳିଦାସଙ୍କର ଅତ୍ୟନ୍ତ ପ୍ରସିଦ୍ଧ ମହାକାବ୍ୟ । ଏହାର ଭାଷା ଏତେ ସରଳ ଯେ ସାଧାରଣ ସଂସ୍କୃତ ଜାଣିଥିବା ଆବାଳବୃଦ୍ଧ ସମସ୍ତେ ଏହାର ରସାସ୍ୱାଦ କରି ପାରିବେ । ଏ ପର୍ଯ୍ୟନ୍ତ ଏହି ଏକ କାବ୍ୟର ପ୍ରାୟ ୩୩ଟି ଟୀକା ମିଳିଅଛି । ଏଥିରୁ ଏହି କାବ୍ୟ କେତେଦୂର ଲୋକପ୍ରିୟ ଅନୁମାନ କରାଯାଇ ପାରେ ।

ଏହି କାବ୍ୟ ସଂସ୍କୃତ ସାହିତ୍ୟର ଅନୁପମରତ୍ନ କହିଲେ ଅତ୍ୟୁକ୍ତି ହେବ ନାହିଁ । କାଳିଦାସ ଅନେକ କାବ୍ୟ ଓ ନାଟକ ରଚନା କରିଥିଲେ ମଧ୍ୟ ସଂସ୍କୃତ ସାହିତ୍ୟର ଅନେକ ଗ୍ରନ୍ଥକାର ଓ ସୁଭାଷିତକାର ଏହାଙ୍କୁ 'ରଘୁକାର' ନାମରେ ଉଲ୍ଲେଖ କରିଛନ୍ତି । ସେଥିରୁ 'ରଘୁବଂଶ'ର ସର୍ବଜନପ୍ରିୟତା ଓ ଉତ୍କୃଷ୍ଟତାର ପରିଚୟ ମିଳେ ।

'କୁମାରସମ୍ଭବ' ଓ 'ମେଘଦୂତ' ଏହି ଦୁଇଟି ପ୍ରଥମରଚିତ କାବ୍ୟ ଅଧିକ ପ୍ରସିଦ୍ଧ ଓ ସୁଗଠିତ । 'କୁମାରସମ୍ଭବ'ରେ କେବଳ ଭଗବାନ୍ ମହାଦେବଙ୍କର ଚରିତ୍ରର ଏକ ବିଶିଷ୍ଟ ଘଟନା ବର୍ଣ୍ଣିତ ହୋଇଅଛି । ସେହିପରି 'ମେଘଦୂତ'ରେ କେବଳ ଏକ ବିରହୀ ନାୟକ ଓ ନାୟିକାର ବର୍ଣ୍ଣନା ଦେଖାଯାଏ । ଏହି ଦୁଇଟି କାବ୍ୟ ସୁଗଠିତ ବୋଧହୁଏ । 'ରଘୁବଂଶ'ର ରଚନା ଅନ୍ୟ ପ୍ରକାର । ଏଥିରେ ୨୯ଟି ରାଜାଙ୍କର ବର୍ଣ୍ଣନା ଅଛି । ଏହି ରାଜବଂଶାବଳୀର ବର୍ଣ୍ଣିତ ରାଜଗଣ ସାଧାରଣତଃ ସମସ୍ତେ ଶୂର, ନ୍ୟାୟବାନ୍, ତପସ୍ୱୀ, ବିଦ୍ୱାନ୍ ଓ ଦାନଶୀଳ ଥିଲେ । ତଥାପି ସେମାନଙ୍କର ଚରିତ୍ରରେ ଯେଉଁ ସବୁ ଭିନ୍ନ ଭିନ୍ନ ପ୍ରସଙ୍ଗର ବର୍ଣ୍ଣନା ଅଛି, ସେ ସମସ୍ତର ଏକସୂତ୍ରତା ଓ ପ୍ରମାଣବଦ୍ଧତା ରହିପାରି ନାହିଁ । ତଥାପି କେତେକ ଅନ୍ୟ ଦୃଷ୍ଟି କୋଣରୁ 'ରଘୁବଂଶ' କାଳିଦାସଙ୍କର ଅନ୍ୟାନ୍ୟ କାବ୍ୟମାନଙ୍କ ଅପେକ୍ଷା ଅଧିକ ସରସ ମହାକାବ୍ୟ 'କୁମାରସମ୍ଭବ' ଓ 'ମେଘଦୂତ'ର ନାୟକ ଦେବଜାତୀୟ । ସେମାନଙ୍କର ବିଚାର ଓ ଆଚାରରେ ପାଠକର ଆତ୍ମୀୟତାଭାବର ଉଦୟ ହୋଇ ପାରୁ ନାହିଁ । ଯଦ୍ୟପି 'ରଘୁବଂଶ'ର କେତେକ ସ୍ଥାନରେ ଅଲୌକିକ ଭାବ ଦେଖାଯାଏ, ତଥାପି ଏହି କାବ୍ୟର

ପାତ୍ରଗଣ ଏହି ଭୂମିର ଅଧିବାସୀ । ଏମାନଙ୍କର ଚରିତ୍ର ଉଦାର ହେଲେ ମଧ୍ୟ ଅଦ୍ଭୁତ ଓ ଅଲୌକିକ ନୁହେଁ । ଏହି ହେତୁ ଏମାନଙ୍କ ପ୍ରତି ପାଠକମାନଙ୍କର କୁତୂହଳ, ଆଦର ଓ ସହାନୁଭୂତି ଜାତ ହୋଇଥାଏ । ଏହି କାବ୍ୟର ରଚନାରେ ମଧ୍ୟ କବିଙ୍କର କଳ୍ପନାବିଳାସ ଦୃଷ୍ଟିଗୋଚର ହୁଏ । ଦିଲୀପଙ୍କଠାରୁ ଦଶରଥ-ପର୍ଯ୍ୟନ୍ତ 'ରଘୁବଂଶ' ବର୍ଣ୍ଣିତ ରାଜାମାନଙ୍କ ମଧ୍ୟରେ ପ୍ରତ୍ୟେକ ରାଜା ଏକ ଏକ ବିଶିଷ୍ଟ ଗୁଣରେ ଅଦ୍ୱିତୀୟ ଥିଲେ । ରାଜା ଦିଲୀପ ଭକ୍ତିମାନ୍, ରଘୁ ଦାନବୀର ଓ ସର୍ବସ୍ୱତ୍ୟାଗୀ, ଅଜ ଉଚ୍ଚକୋଟିର ପ୍ରେମିକ ଏବଂ ଦଶରଥ ରାଜଗୁଣସମ୍ପନ୍ନ ଥିଲେ । କିନ୍ତୁ ରାମଚନ୍ଦ୍ରଙ୍କର ସ୍ୱଭାବରେ ସେ ସମସ୍ତ ଗୁଣର ମଧୁର ସମାବେଶ ଥିଲା । ରାମଙ୍କ ଚରିତ୍ରରେ ସୀତାଙ୍କ ପ୍ରତି ଯେଉଁ ଅନ୍ୟାୟ କରାଗଲା ସେ କାରଣରୁ ବା ଅନ୍ୟ କୌଣସି କାରଣରୁ ରାମଙ୍କ ପରେ 'ରଘୁବଂଶ'ର ଐଶ୍ୱର୍ଯ୍ୟ ହତପ୍ରଭ ହୋଇ ଉଠିଲା । ରାଜ୍ୟବ୍ୟବସ୍ଥା ଶିଥିଳ ହେବାକୁ ଲାଗିଲା । ପ୍ରଥମ ଏକ ଦୁଇ ପୁରୁଷପର୍ଯ୍ୟନ୍ତ କୁଶ ଓ ଅତିଥି ଏହି ଦୁଇ ରାଜାଙ୍କ ସମୟରେ ପୂର୍ବ ସଞ୍ଚିତ ଗୁଣର ପ୍ରଭାବରେ ଅଥବା ରାଜାମାନଙ୍କର ବ୍ୟକ୍ତିଗତ ଉତ୍କୃଷ୍ଟ ଗୁଣ ବଳରେ ବିଶେଷଭାବରେ ଅବନତ ହୋଇ ପାରି ନ ଥିଲା, ତଥାପି ପ୍ରତିଦିନ ଅବନତ ଘଟୁଥିଲା । ଅତିଥିଙ୍କ ପରେ ୨୧ ଜଣ ରାଜା ହୋଇଥିଲେ । ଏମାନଙ୍କ ମଧ୍ୟରୁ ବର୍ଣ୍ଣନଯୋଗ୍ୟ ଗୋଟିଏ ପ୍ରସଙ୍ଗ ମଧ୍ୟ କବିଙ୍କର ଦୃଷ୍ଟିଗୋଚର ହୋଇ ନାହିଁ । ତାପରେ ସିଂହାସନାରୂଢ଼ ଅଗ୍ନିବର୍ଣ୍ଣ ଦିନରାତି ବିଷୟୋପଭୋଗରେ ନିମଗ୍ନ ହୋଇ ନିଜ ପୂର୍ବପୁରୁଷମାନଙ୍କର ଧବଳକୀର୍ତ୍ତି କଳଙ୍କିତ କଲେ । ଏକ ଦିଗରେ ପ୍ରଜାମାନଙ୍କର ସଂରକ୍ଷଣ, ପୋଷଣ ଓ ଶିକ୍ଷଣରେ ସଦା ପିତୃସମାନ ସତର୍କତା ସହିତ ଦତ୍ତଚିତ୍ତ ଦିଲୀପ, ଅନ୍ୟଦିଗରେ

ଧନଗ୍ରତ ଅନ୍ତଃପୁରରେ ପଡ଼ିରହି ବିଳାସିତା ଓ 'ଲମ୍ପଟତାରେ ଆକଣ୍ଠମଗ୍ନ, ମନ୍ତ୍ରୀମାନଙ୍କର ବିଶେଷ ଅନୁରୋଧରେ ଏକ ଦିନ ବାତାୟନମାର୍ଗରେ ଏକ ପାଦ ଦେଖାଇ ରାଜଦର୍ଶନୋତ୍ସୁକ ପ୍ରଜାଙ୍କୁ 'ଏହାକୁ କେବଳ ଦେଖି ସନ୍ତୋଷ ଲାଭ କର' ବୋଲି କହିଥିବା ଅଗ୍ନିବର୍ଣ୍ଣ—ଏହି ଦୁଇଙ୍କ ଚରିତ୍ରରେ ଆକାଶ ପାତାଳ ଭେଦ ପାଠକମାନେ ସହଜରେ ହୃଦୟଙ୍ଗମ କରି ପାରିବେ । କବି ଉଭୟଙ୍କର ଚରିତ୍ର ସମାନ କୌଶଳରେ ଚିତ୍ରିତ କରି ଅଛନ୍ତି । ତଥାପି କବି ସମାଜସମ୍ମୁଖରେ କେଉଁ ଆଦର୍ଶ ଉପସ୍ଥିତ କରିବାକୁ ଚାହୁଁଥିଲେ ତାହା ବୁଝିବା କଠିନ ନୁହେଁ ।

ଏହି କାବ୍ୟର ପ୍ରଥମ ସର୍ଗର ଆରମ୍ଭରେ ପୂର୍ବସୂରିକୃତ ଗ୍ରନ୍ଥ ଅନୁସରଣ କରି ମୁଁ 'ରଘୁବଂଶ' ରଚନା କରିଅଛି ବୋଲି କବି ପ୍ରକାଶ କରି ଅଛନ୍ତି । କାଳିଦାସ ନବମ ସର୍ଗଠାରୁ ପଞ୍ଚଦଶ ସର୍ଗ ପର୍ଯ୍ୟନ୍ତ ବିଷୟରେ ବାଲ୍ମୀକି ରାମାୟଣର ଆଶ୍ରୟ ନେଇଛନ୍ତି କିନ୍ତୁ ଅନ୍ୟ ସମସ୍ତ ବିଷୟରେ କେଉଁ କେଉଁ ଗ୍ରନ୍ଥର ଆଶ୍ରୟ ନେଇ ଅଛନ୍ତି— ବର୍ତ୍ତମାନ ସୁଦ୍ଧା ଠିକ୍‌ରୂପରେ ଜଣାଯାଇ ନାହିଁ । ପୁରାଣମାନଙ୍କରେ ମଧ୍ୟ ଏହି ରାଜାମାନଙ୍କର ନାମାବଳୀ ଦିଆଯାଇ ଅଛି । କିନ୍ତୁ ଏହି ନାମାବଳୀର ଓ 'ରଘୁବଂଶ' ପ୍ରଦତ୍ତ ନାମାବଳୀର କ୍ରମରେ ବହୁତ ଅନ୍ତର ଦେଖାଯାଏ । ଉଦାହରଣ ସ୍ୱରୂପ— ଦିଲୀପ ଓ ରଘୁଙ୍କ ମଧ୍ୟରେ ରାମାୟଣରେ ଦୁଇ, ବାୟୁପୁରାଣରେ ଊଣେଇଶ, ବିଷ୍ଣୁପୁରାଣରେ ଅଠର ରାଜାମାନଙ୍କର ନାମ ଦିଆଯାଇ ଅଛି । ତାହା ଛଡା ଏହି ଗ୍ରନ୍ଥମାନଙ୍କର ନାମନିର୍ଦ୍ଦେଶ ଛଡା

ରାଜାମାନଙ୍କର ଚରିତରେ କୌଣସି ବିଶେଷତ୍ୱ ଦିଆଯାଇ ନାହିଁ ।*
ଏଥିରୁ ବୋଧ ହୁଏ ନାହିଁ ଯେ କାଳିଦାସ ନିଜ ପୂର୍ବବର୍ତ୍ତୀ ଏହି ଗ୍ରନ୍ଥକାରମାନେ କେବଳ ନାମ ନିର୍ଦ୍ଦେଶ କରିଥିବାରୁ ଏତେ ଆଦର ଓ ସମ୍ମାନ ସହ ସେମାନଙ୍କର ଉଲ୍ଲେଖ କରି ଅଛନ୍ତି । କାଳିଦାସଙ୍କ ଦୃଷ୍ଟିରେ ଅନ୍ୟ ଗ୍ରନ୍ଥକାରମାନଙ୍କର ଗ୍ରନ୍ଥମାନ ଥିଲି ବୋଲି ମାନିବାକୁ ହୁଏ । ଭାସଙ୍କର ପ୍ରତିମା ନାଟକରେ ଦିଲୀପଙ୍କ ଠାରୁ ଦଶରଥ ପର୍ଯ୍ୟନ୍ତ କ୍ରମ 'ରଘୁବଂଶ'ର କ୍ରମ ସହିତ ସମାନ । ଏଥିରୁ ଉଭୟ କବି ଏକ ସମାନ ଗ୍ରନ୍ଥର ଉପଯୋଗ କରିଛନ୍ତି ବୋଲି ସ୍ପଷ୍ଟ ପ୍ରତୀତ ହୁଏ । 'ରଘୁବଂଶ'ର ୧୮ଶ ସର୍ଗରେ ୨୧ ଜଣ ରାଜାଙ୍କର କେବଳ ନାମାବଳୀ ଦିଆଯାଇଅଛି । ସେଥିରୁ ଜଣାଯାଏ ଯେ କାଳିଦାସଙ୍କ ପୂର୍ବବର୍ତ୍ତୀ ଗ୍ରନ୍ଥମାନଙ୍କରେ ସେହି ରାଜାମାନଙ୍କର କୌଣସି ବିଶିଷ୍ଟ ପରିଚୟ ଦିଆଯାଇ ନଥିଲା । ଦିଲୀପ, ରଘୁ ଓ ଅଜଙ୍କ ବିଷୟରେ ମଧ୍ୟ ବହୁ ପରିମାଣରେ ସେହି ପରିସ୍ଥିତି ଥିବା ସମ୍ଭବ । ଏହିପରି ଅବସ୍ଥାରେ ଅପୂର୍ଣ୍ଣ ସାମଗ୍ରୀ ଉପଯୋଗ କରି 'ରଘୁବଂଶ'ରେ ଉଦାତ୍ତ ଚରିତମାନଙ୍କର ତୁଙ୍ଗ ପ୍ରାସାଦ ନିର୍ମାଣ କରିଥିବା କବିଙ୍କର ପ୍ରତିଭାକୁ ଯେତେଦୂର ପ୍ରଶଂସା କରିବା କଥା, ତାହା ହୋଇ ନାହିଁ ।

* ପଦ୍ମପୁରାଣରେ ଦିଲୀପଙ୍କଠାରୁ ଦଶରଥ ପର୍ଯ୍ୟନ୍ତ ରାଜାମାନଙ୍କର ବର୍ଣ୍ଣନା 'ରଘୁବଂଶ' ବର୍ଣ୍ଣନା ସହିତ କେତେକାଂଶରେ ଖାପ ଖାଉ ଅଛି । ଏହେତୁ ଡ଼ା. ବିଣ୍ଟର୍ନିସ ଓ ତାଙ୍କ ଅନୁଗାମୀ ପଣ୍ଡିତମାନେ ଅନୁମାନ କରନ୍ତି ଯେ କାଳିଦାସ 'ରଘୁବଂଶ' ରଚନାରେ ପଦ୍ମପୁରାଣକୁ ଆଧାର କରିଛନ୍ତି । କିନ୍ତୁ ତାହା ଯୁକ୍ତିସଙ୍ଗତ ବୋଧ ହୁଏ ନାହିଁ । ବିପରୀତରେ ପଦ୍ମପୁରାଣ 'ରଘୁବଂଶ'ର ସାହାଯ୍ୟ ନେଇଛି — ଏହା ଆମେ ଅଗରୁ ଦେଖାଇଛୁଁ ।

୧୧ଶ ଶତାବ୍ଦୀୟ ସୋଢ଼୍ଢ଼ଲ କବି ନିଜ 'ଉଦୟସୁନ୍ଦରୀ' ନାମକ ଗ୍ରନ୍ଥରେ ବିଭିନ୍ନ କବିମାନଙ୍କର କିଛି ନା କିଛି ବିଶେଷତ୍ୱ ଉଲ୍ଲେଖ କରିବାକୁ ଯାଇ କାଳିଦାସଙ୍କୁ 'ରସେଶ୍ୱର' ଉପାଧି ଦେଇ ଅଛନ୍ତି । କାଳିଦାସଙ୍କର ସରସବର୍ଣ୍ଣନା ନିପୁଣତାସହକାରେ ବିଗ୍ଭର କଲେ ଏହି ଉପାଧି ସାର୍ଥକ ବୋଧହୁଏ । କାଳିଦାସକୃତ ଅନ୍ୟ ଗ୍ରନ୍ଥମାନଙ୍କରେ ଗୋଟିଏ ବା ଦୁଇଟି ରସର ପରିପାକ ଦେଖାଯାଏ କିନ୍ତୁ 'ରଘୁବଂଶ'ରେ ପ୍ରାୟ ସମସ୍ତ ପ୍ରଧାନ ରସମାନଙ୍କର ପରିପୋଷଣ ଦୃଷ୍ଟିଗୋଚର ହୁଏ । ରାଜା ଅଗ୍ନିବର୍ଣ୍ଣଙ୍କର ବିଳାସ-ବର୍ଣ୍ଣନାରେ ଶୃଙ୍ଗାର, ରଘୁ, ଅଜ ଓ ରାମଙ୍କର ଯୁଦ୍ଧ ପ୍ରସଙ୍ଗରେ ବୀର, ଅଜ ବିଳାପରେ କରୁଣ, ବଶିଷ୍ଠ ଓ ବାଲ୍ମୀକିଙ୍କର ଆଶ୍ରମ ତଥା ସର୍ବସ୍ୱତ୍ୟାଗୀ ରଘୁଙ୍କର ବର୍ଣ୍ଣନାରେ ଶାନ୍ତରସର ପରିପୋଷ-ଦେଖାଯାଏ । ଏହା ଛଡ଼ା ତାଡ଼କାବଧପ୍ରସଙ୍ଗରେ ବୀଭତ୍ସ ରସର ଅବତରଣ ଦେଖାଯାଏ । କବିଙ୍କର ଭାଷା ସର୍ବତ୍ର ମଧୁର ଓ ପ୍ରାସାଦିକ । ସ୍ଥାନେ ସ୍ଥାନେ ଉପମା, ଉତ୍ପ୍ରେକ୍ଷା, ଅର୍ଥାନ୍ତରନ୍ୟାସ-ପ୍ରଭୃତି ଅର୍ଥାଲଙ୍କାରମାନ ରତ୍ନ ସ୍ୱରୂପ ସନ୍ନିବେଶିତ ହୋଇଅଛି । କାଳିଦାସ ଶବ୍ଦାଲଙ୍କାର ଉପରେ ପ୍ରାୟ ବେଶି ଦୃଷ୍ଟି କୌଣସି-ଠାରେ ଦେଇ ନାହାନ୍ତି । ତଥାପି ନବମସର୍ଗରେ, ଗ୍ରୀଷ୍ମଋତୁ, ଏବଂ ଦଶରଥଙ୍କର ମୃଗୟା ବର୍ଣ୍ଣନା ସମୟରେ 'ଯମବତାମବତାଂ ଚ ଧୁରି ସ୍ଥିତଃ' 'ରଣରେଣବୋ ରୁରୁଧିରେ ରୁଧିରେଣ ସୁରଦ୍ୱିଷାମ୍' ଇତ୍ୟାଦି ସ୍ଥାନମାନଙ୍କରେ ଯମକ ଓ ଅନୁପ୍ରାସ ପ୍ରଭୃତିର ଉପଯୋଗ କରିବା ଲାଳସା କବି ଚରିତାର୍ଥ କରି ଅଛନ୍ତି । କବି ଅଲଙ୍କାର-ସମାବେଶ ଓ ବର୍ଣ୍ଣନା ଯେପରି ଅତିରିକ୍ତ ମାତ୍ରାରେ ନ ହେବ ସେଥି ପ୍ରତି ବିଶେଷ ଧ୍ୟାନ ଦେଇ ଅଛନ୍ତି । ସର୍ବତ୍ର ବାଚ୍ୟାର୍ଥ ଅପେକ୍ଷା ବ୍ୟଙ୍ଗ୍ୟାର୍ଥ ପ୍ରତି ବେଶି ଦୃଷ୍ଟି ଦେଇ ଅଛନ୍ତି ଏବଂ ବୃତ୍ତି-

ମାନଙ୍କର ଯଥାଯଥ ଉପଯୋଗ କର ଅଛନ୍ତି । ରଚନା ସୁବୋଧ ଓ ତଥା, ଅତ୍ତରମଣୀୟ, ଭାବରଡଙ୍ଗ ମଧୁର ଏବଂ ସୃଷ୍ଟିବର୍ଣ୍ଣନା ମନୋହର ହେବା ହେତୁ 'ରଘୁବଂଶ' ସଂସ୍କୃତ ସାହିତ୍ୟର ଦେଦୀପ୍ୟମାନ ନକ୍ଷତ୍ର ଓ ଅଦ୍ୱିତୀୟ ସର୍ବାଙ୍ଗ ସୁନ୍ଦର କାବ୍ୟ ବୋଲି ସ୍ୱୀକାର କରାଯାଏ ।



# ୭-କାଳିଦାସଙ୍କର ନାଟକ

वासन्तं कुसुमं फलं च युगपद्ग्रीष्मस्य सर्वं च यत्
यच्चान्यन्मनसो रसायनमतः सन्तर्पणं मोहनम् ।
एकीभूतमभूतपूर्वमथवा स्वर्लोकभूलोकयो-
रैश्वर्यं यदि लब्धुमिच्छसि सखे ! शाकुन्तलं सेव्यताम् ॥

ଜର୍ମାନ୍ କବି ଗେଟେ ।

'ବସନ୍ତ ଋତୁର ସମସ୍ତ ପୁଷ୍ପ ଓ ଫଳ, ଗ୍ରୀଷ୍ମ ଋତୁର ସକଳ ପ୍ରକାର ଫଳପୁଷ୍ପ ଏବଂ ଅନ୍ୟ ଯାହା କିଛି ମନକୁ ରସାୟନ ପରି ସନ୍ତୁଷ୍ଟ ଓ ମୋହିତ କରେ, ସେ ସମସ୍ତ, ସ୍ୱର୍ଗ ଲୋକ ଓ ଭୂଲୋକର ଅଭୂତପୂର୍ବ ଏକତ୍ରିତ ଐଶ୍ୱର୍ଯ୍ୟ, ଏ ସମସ୍ତ ହେ ବନ୍ଧୁ, ଯଦି ତୁମେ ପାଇବାକୁ ଚାହଁ, ତେବେ ଥରେ ମାତ୍ର 'ଶାକୁନ୍ତଳ'ର ଚର୍ଚ୍ଚା କର ।'

ମାଳବିକାଗ୍ନିମିତ୍ର ନାମକ ନାଟକର ପ୍ରସ୍ତାବନାରେ ସୂତ୍ରଧାର କହୁଅଛି ଯେ ଏହି ବସନ୍ତୋତ୍ସବରେ କାଳିଦାସ-ମହାକବିକୃତ 'ମାଳବିକାଗ୍ନିମିତ୍ର' ନାମକ ନାଟକର ଅଭିନୟ-ସକାଶେ ବିଦ୍ୱତ୍‌ପରିଷତ୍ ମୋତେ ଆଦେଶ ଦେଇ ଅଛନ୍ତି । ଏହା ଶୁଣି ପାରିପାର୍ଶ୍ୱିକ ପଚାରୁଛି ଲବ୍ଧପ୍ରତିଷ୍ଠ ଭାସ, ସୌମିଲ୍ଲ, କବିପୁତ୍ର ପ୍ରଭୃତି କବିମାନଙ୍କ ରଚିତ ନାଟକମାନ ଛାଡ଼ି ଏହି ନୂତନ କବି କାଳିଦାସଙ୍କ ରଚିତ ନାଟକରେ ବିଜ୍ଞ ପଣ୍ଡିତମାନଙ୍କର ଏତେ ଆଦର କାହିଁକି ? ଏହାର ଉତ୍ତରରେ ସୂତ୍ରଧାର କହୁଛନ୍ତି—

पुराणमित्येव न साधु सर्वं न चापि काव्यं नवमित्यवद्यम् ।
सन्तः परीक्ष्यान्यतरद् भजन्ते मूढः परप्रत्ययनेयबुद्धिः ॥
ମାଳ ୧,୨

'ସମସ୍ତ ପ୍ରାଚୀନ କାବ୍ୟ ନିର୍ଦୋଷ ଏବଂ ସମସ୍ତ ନବୀନ କାବ୍ୟ ସଦୋଷ—ଏପରି କୌଣସି ନିୟମ ନାହିଁ । ବିବେକୀ ଲୋକ ପରୀକ୍ଷା କରି ପ୍ରାଚୀନ ଓ ନବୀନ ମଧ୍ୟରୁ ଉତ୍ତମ କାବ୍ୟ ପସନ୍ଦ କରନ୍ତି । ମୂର୍ଖ ମନୁଷ୍ୟ ଅନ୍ୟର ମତରେ ନିଜ ମତକୁ ପରିଚାଳିତ କରନ୍ତି ।'

ସୂତ୍ରଧାର ଓ ପାରିପାର୍ଶ୍ୱିକଙ୍କର ଉପରୋକ୍ତ କଥୋପକଥନରୁ କବି ପୂର୍ବବର୍ତ୍ତୀ ଭାସ ପ୍ରଭୃତି କବିମାନଙ୍କ ନାଟକମାନଙ୍କ ଅପେକ୍ଷା ନିଜ ନାଟକମାନଙ୍କର ଗୁଣଗରିଷ୍ଠତା ବ୍ୟକ୍ତ କରି ଅଛନ୍ତି । ଏହି ଉକ୍ତିରେ କେତେଦୂର ସତ୍ୟତା ଅଛି—ଦେଖିବା ସକାଶେ କାଳିଦାସଙ୍କର ପୂର୍ବବର୍ତ୍ତୀ କବିମାନଙ୍କର ନାଟ୍ୟସାହିତ୍ୟର ସଂକ୍ଷେପରେ ସମୀକ୍ଷା କରିବା ଆବଶ୍ୟକ ।

ଜଣାପଡ଼େ—ଅନ୍ୟାନ୍ୟ ଶାସ୍ତ୍ର ଓ କଳାମାନଙ୍କର ଉତ୍ପତ୍ତି ଓ ଅଭିବୃଦ୍ଧି ପୂର୍ବକାଳରେ ଯାଜ୍ଞିକ କ୍ରିୟାକଳାପ ସମ୍ବନ୍ଧରୁ ଭାରତବର୍ଷରେ ଘଟିଥିଲା । ସେହିପରି ନାଟ୍ୟକଳାର ଉତ୍ପତ୍ତି ଓ ଅଭିବୃଦ୍ଧି ମଧ୍ୟ ଘଟିଥିଲା । ଅଶ୍ୱମେଧ ପ୍ରଭୃତି ଯଜ୍ଞମାନଙ୍କରେ ଅବକାଶସମୟରେ ତଥା ତଦନ୍ତର୍ଗତ କର୍ମାନୁଷ୍ଠାନମାନଙ୍କର ମଧ୍ୟକାଳୀନ ଅବକାଶ ସମୟରେ ଶୁନଃଶେଫ ଚରିତ ପ୍ରଭୃତି ପ୍ରାଚୀନ ଆଖ୍ୟାନମାନ ପଢ଼ାଯାଉଥିଲା ବୋଲି ବୈଦିକ ସାହିତ୍ୟରେ ଉଲ୍ଲିଖିତ ଅଛି । ଏହିପରି ଅବକାଶ ସମୟରେ ବୈଦିକ ଦେବତାମାନଙ୍କର ଚରିତ୍-

ବିଷୟକ ନାଟକମାନ ମଧ୍ୟ ସମ୍ଭବତଃ ଅଭିନୀତ ହେଉଥିଲା । ଅବଶ୍ୟ ଏହି ନାଟକଗୁଡ଼ିକ ବର୍ତ୍ତମାନ ମିଳୁଥିବା ନାଟକମାନଙ୍କ ପରି ସର୍ବାଙ୍ଗପରିପୂର୍ଣ୍ଣ ନ ହୋଇ ପାରେ, ତଥାପି ସେହି ଗୁଡ଼ିକରେ ସଂସ୍କୃତ ନାଟ୍ୟକଳାର ବୀଜ ଯେ ନିହିତ—ଏଥିରେ ସନ୍ଦେହ ନାହିଁ । ଋଗ୍‌ବେଦ ପ୍ରଭୃତିର ଅଧ୍ୟୟନ ଶୂଦ୍ରାଦିମାନଙ୍କ ପ୍ରତି ନିଷିଦ୍ଧ ହୋଇଥିବାରୁ ସମସ୍ତ ବର୍ଣ୍ଣ ଯାହା ଏକରୂପରେ ଅଧ୍ୟୟନ କରିପାରିବେ, ସେପରି ବେଦ ପ୍ରକାଶ କରନ୍ତୁ ବୋଲି ଦେବତାମାନଙ୍କର ପ୍ରାର୍ଥନା ଶୁଣି, ବ୍ରହ୍ମଦେବ ନାଟ୍ୟବେଦ ନାମକ ପଞ୍ଚମ ବେଦ ପ୍ରକାଶ କଲେ ବୋଲି ଏକ ପ୍ରାଚୀନ ଆଖ୍ୟାୟିକା ଭରତମୁନିଙ୍କର ନାଟ୍ୟଶାସ୍ତ୍ରରେ ଦିଆଯାଇ ଅଛି । ଏଥିରୁ ଜଣାଯାଉ ଅଛି । ନାଟକମାନଙ୍କ ଦ୍ୱାରା ବେଦବାହ୍ୟ ବର୍ଣ୍ଣମାନଙ୍କୁ ଧର୍ମଶିକ୍ଷା ଦେବା ମଧ୍ୟ ତାଙ୍କାଳିକ ନାଟ୍ୟକଳାର ଏକ ଲକ୍ଷ୍ୟ ଥିଲା । ତୈତ୍ତିରୀୟ ବ୍ରାହ୍ମଣରେ ପୁରୁଷମେଧଯାଗ ପ୍ରସଙ୍ଗରେ ବଳିଯୋଗ୍ୟ ପୁରୁଷମାନଙ୍କର ସୂଚୀରେ ନଟକୁ ମଧ୍ୟ ଅନ୍ତର୍ଭୁକ୍ତ କରାଯାଇଛି । ଏଥିରୁ ବୈଦିକ ଓ ବ୍ରାହ୍ମଣ ସମୟରେ ନଟ ଓ ନାଟ୍ୟକଳାର ଅସ୍ତିତ୍ୱ ସିଦ୍ଧ ହେଉ ଅଛି । ପ୍ରସିଦ୍ଧ ସଂସ୍କୃତବ୍ୟାକରଣକର୍ତ୍ତା ପାଣିନିଙ୍କ ସମୟ ବହୁମତରେ ଖ୍ରୀଷ୍ଟପୂର୍ବ ୬୦୦ ବର୍ଷର ଆଖପାଖ ବୋଲି ସ୍ଥିର କରାଯାଇ ଅଛି । ତାଙ୍କର 'ଅଷ୍ଟାଧ୍ୟାୟୀ'ରେ 'ପାରାଶର୍ଯ୍ୟଶିଳାଳିଭ୍ୟାଂ ଭିକ୍ଷୁନଟସୂତ୍ରୟୋଃ' (୪,୩,୧୧୦) ଓ 'କର୍ମନ୍ଦକୃଶାଶ୍ୱାଦିନିଃ' (୪,୩, ୧୧୧) ଏହି ଦୁଇଟି ସୂତ୍ରରେ ଶିଳାଳି ଓ କୃଶାଶ୍ୱ—ଏହି ଦୁଇଟି ଆଚାର୍ଯ୍ୟକୃତ ନଟସୂତ୍ରର ଉଲ୍ଲେଖ ଅଛି । ଖ୍ରୀଷ୍ଟପୂର୍ବ ପ୍ରାୟ ୧୫୦ ବର୍ଷ ପୂର୍ବେ ଉତ୍ପନ୍ନ ପତଞ୍ଜଳିଙ୍କର ମହାଭାଷ୍ୟରେ ନାଟକମାନ ରଙ୍ଗ ଭୂମିରେ ଅଭିନୀତ ହେଉଥିବାର ପ୍ରମାଣ ମିଳୁଅଛି । ଏହି ଗ୍ରନ୍ଥରେ 'କଂସବଧ' ଓ

'ବଳବନ୍ଧ' ନାମକ ନାଟକ ଅଭିନୀତ ହେଉଥିଲା ବୋଲି ବର୍ଣ୍ଣନା ଅଛି ।

ଭରତଙ୍କ ନାଟ୍ୟ ଶାସ୍ତ୍ରରେ 'ଅମୃତ ମନ୍ଥନ' ଓ 'ତ୍ରିପୁରଦାହ' 'ପ୍ରଲମ୍ବବଧ' ଓ 'ଗୃଣ୍ଣୁର ମର୍ଦ୍ଦନ' ନାମକ ନାଟକମାନଙ୍କର ଉଲ୍ଲେଖ ଅଛି । କିନ୍ତୁ ଏ ସମସ୍ତ ପ୍ରାଚୀନ ନାଟକ କେବଳ ନାମମାତ୍ରାବଶିଷ୍ଟ ଦେଖାଯାଏ । କାବ୍ୟ ପରି ନାଟକମାଧ୍ୟମରେ ମଧ୍ୟ ଅତ୍ୟନ୍ତ ପ୍ରାଚୀନ ଗ୍ରନ୍ଥ ବୌଦ୍ଧ ଲେଖକମାନଙ୍କଦ୍ୱାରା ପ୍ରଥମେ ଲିଖିତ ହୋଇଥିଲା । ବୌଦ୍ଧଧର୍ମ ପ୍ରଥମେ ନାଟ୍ୟକଳାକୁ ବହିଷ୍କାର କରିଥିଲା । କିନ୍ତୁ ଏହି କଳା ସମାଜର ମନ ଆକର୍ଷଣ କରି ଅଛି, ଧର୍ମ ପ୍ରଚାର ସକାଶେ ଏହାର ମଧ୍ୟ ସଦୁପଯୋଗ କରାଯାଇ ପାରେ ବୋଲି ଯେତେବେଳେ ଜଣାଗଲା, ସେତେବେଳେ ବୌଦ୍ଧ ଲେଖକଗଣ ନାଟ୍ୟକଳାର ଆଦର କରିବାକୁ ଲାଗିଲେ ଏବଂ ନିଜେ ଲେଖିବାକୁ ଆରମ୍ଭ କଲେ । ଏହି ପ୍ରକାର ତିନୋଟି ନାଟକର ହସ୍ତଲିଖିତ ତାଳପତ୍ର ପୁସ୍ତକମାନଙ୍କର କେତେକ ତ୍ରୁଟିତ ଅଂଶ ୧୯୧୦ ସାଲରେ ମଧ୍ୟଏସିଆରେ ମିଳିଅଛି । ଏ ମଧ୍ୟରୁ ଗୋଟିକର ନାମ 'ଶାରିପୁତ୍ରପ୍ରକରଣ' ଅଥବା 'ଶାର-ଦ୍ୱତୀପୁତ୍ର ପ୍ରକରଣ' । ଏହି ନାଟକ ଅଶ୍ୱଘୋଷ ରଚିତ ବୋଲି ପୁସ୍ତକର ଶେଷ ପତ୍ରରେ ସ୍ପଷ୍ଟଭାବରେ ଲେଖା ଅଛି । ଏହି ନାଟକରେ ଶାରିପୁତ୍ର ଓ ମୌଦ୍‌ଗଲାୟନ ବୁଦ୍ଧଙ୍କର ଉପଦେଶ ଗ୍ରହଣ କରି ବୌଦ୍ଧଧର୍ମ ଅବଲମ୍ବନ କରିବା ବିଷୟ ବର୍ଣ୍ଣିତ ହୋଇ ଅଛି । ଅନ୍ୟ ଦୁଇଟି ମଧ୍ୟରୁ ଗୋଟିଏ 'ପ୍ରବୋଧଚନ୍ଦ୍ରୋଦୟ' ଶ୍ରେଣୀର ନାଟକ । ଏଥିରେ ବୁଦ୍ଧି, ଧୃତି, କୀର୍ତ୍ତି ଓ ବୁଦ୍ଧ ନାଟକର ପାତ୍ର । ତୃତୀୟ ନାଟକ 'ମୃଚ୍ଛକଟିକ' ଶ୍ରେଣୀର । ଏଥିରେ ମଗଧବତୀ

ନାମକ ବେଶ୍ୟା କୌମୁଦଗନ୍ଧ ନାମକ ବିଦୂଷକ, ନାୟକ, ଦୁଷ୍ଟ ଇତ୍ୟାଦି ପାତ୍ର ଦେଖାଯାଏ । ଉପଲବ୍ଧ ତାଳପତ୍ରଖଣ୍ଡ ଅତ୍ୟନ୍ତ ସ୍ୱଳ୍ପ ହୋଇ ଥିବାରୁ ଏହି ନାଟକମାନଙ୍କର ବିଷୟବସ୍ତୁ, ପାତ୍ରମାନଙ୍କର ଚରିତ୍ରଚିତ୍ରଣପ୍ରଭୃତି ବିଷୟରେ ଅଶ୍ୱଘୋଷ କେତେଦୂର ସିଦ୍ଧହସ୍ତ ଥିଲେ, ତାର ପରିଚୟ ମିଳୁନାହିଁ ।

କାଳିଦାସଙ୍କର ପୂର୍ବକାଳୀନ ନାଟକକାରମାନଙ୍କ ମଧ୍ୟରେ ଅଶ୍ୱଘୋଷ ପରି ଭାସଙ୍କର ନାମ ମଧ୍ୟ ପ୍ରଧାନ ରୂପେ ଉଲ୍ଲେଖ ଯୋଗ୍ୟ । ୧୯୧୦ ସାଲରେ ମହାମହୋପାଧ୍ୟାୟ ପଣ୍ଡିତ ଗଣପତିଶାସ୍ତ୍ରୀଙ୍କଦ୍ୱାରା ମାଲବାରରୁ ଉପଲବ୍ଧ ୧୩ଟି ନାଟକର ପ୍ରକାଶ ପୂର୍ବରୁ କାଳିଦାସ, ବାଣ, ବାକ୍‌ପତିରାଜ, ରାଜଶେଖର, ଅଭିନବଗୁପ୍ତ ପ୍ରଭୃତିଙ୍କର ଗ୍ରନ୍ଥମାନଙ୍କରେ ଉଲ୍ଲେଖରୁ କେବଳ ଭାସଙ୍କର ନାମ ଜଣାଯାଉଥିଲା । ଏହି ୧୩ଟି ନାଟକ ମଧ୍ୟରୁ ପ୍ରତିମା ଓ ଅଭିଷେକ-ନାଟକରେ ରାମଚରିତ ବର୍ଣ୍ଣିତ ହୋଇଅଛି ଏବଂ ଏ ଦୁଇଟିର କଥାଭାଗ ରାମାୟଣରୁ ନିଆଯାଇ ଅଛି । ପ୍ରତିମା ନାଟକରେ ଛଅଟି ଅଙ୍କ ଅଛି । ଏଥିରେ ରାମଙ୍କର ଯୌବରାଜ୍ୟାଭିଷେକ ଠାରୁ ଆରମ୍ଭ କରି ବନବାସ ପୂର୍ଣ୍ଣ ହେଲାପରେ ରାବଣବଧ ପରେ ସୀତା, ଲକ୍ଷ୍ମଣ-ପ୍ରଭୃତିଙ୍କ ସହିତ ଅଯୋଧ୍ୟା ପ୍ରତ୍ୟାବର୍ତ୍ତନ ପର୍ଯ୍ୟନ୍ତ କଥାଭାଗ ବର୍ଣ୍ଣିତ । 'ମଧ୍ୟମବ୍ୟାୟୋଗ', 'ପଞ୍ଚରାତ୍ର', 'ଦୂତ ବାକ୍ୟ', 'ଦୂତଘଟୋତ୍କଚ' 'କର୍ଣ୍ଣଭାର' ଓ 'ଊରୁଭଙ୍ଗ', ଏହି ଛଅଟି ନାଟକର କଥାଭାଗ ମହାଭାରତରୁ ଗ୍ରହଣ କରା ଯାଇଅଛି । ଏଥିରୁ 'ପଞ୍ଚରାତ୍ର'ରେ ତିନୋଟି ଅଙ୍କ ଅଛି । ଦୁର୍ଯ୍ୟୋଧନ ଦ୍ରୋଣାଚାର୍ଯ୍ୟଙ୍କୁ ଏକ ଯଜ୍ଞ-ପ୍ରସଙ୍ଗରେ ପାଣ୍ଡବମାନଙ୍କର ଖବର ପାଞ୍ଚଦିନ ମଧ୍ୟରେ ଆଣି ପାରିଲେ ମୁଁ ସେମାନଙ୍କୁ ଅଧେ ରାଜ୍ୟ ଦେଇଦେବି ବୋଲି ବଚନ ଦେଇ ।

ଥିଲେ । ଉତ୍ତରଗୋଗ୍ରହଣରେ ପାଣ୍ଡବମାନଙ୍କର ପରିଚୟ ମିଳିଲା ପରେ ଦୁର୍ଯ୍ୟୋଧନ ନିଜ ବଚନ ଅନୁଯାୟୀ ଅଧେ ରାଜ୍ୟ ପାଣ୍ଡବମାନଙ୍କୁ ଦେଇଦେଲେ ଏହି ବିଷୟ 'ପଞ୍ଚରାତ୍ର'ରେ ପ୍ରତିପାଦିତ । 'ମଧ୍ୟମବ୍ୟାୟୋଗ'ରେ ଭୀମ ଏକ ବ୍ରାହ୍ମଣକୁମାରକୁ ଘଟୋତ୍କଚଙ୍କର କବଳରୁ ବଞ୍ଚାଇଛନ୍ତି । 'ଦୂତବାକ୍ୟ'ରେ ଶ୍ରୀକୃଷ୍ଣଙ୍କର ସନ୍ଦେଶ, 'ଦୂତ ଘଟୋତ୍କଚ'ରେ ଅଭିମନ୍ୟୁ ବଧପରେ ଶ୍ରୀକୃଷ୍ଣଙ୍କ ଆଦେଶରେ କୌରବଙ୍କ ପ୍ରତି ପଠାଇବା ସନ୍ଦେଶ, 'କର୍ଣ୍ଣଭାର'ରେ ବ୍ରାହ୍ମଣବେଶଧାରୀ ଇନ୍ଦ୍ରଙ୍କୁ କର୍ଣ୍ଣଙ୍କର କବଚ ଓ କୁଣ୍ଡଳର ପ୍ରଦାନ, 'ଊରୁଭଙ୍ଗ'ରେ ଭୀମ ଦୁର୍ଯ୍ୟୋଧନଙ୍କର ଯୁଦ୍ଧ ଓ ଦୁର୍ଯ୍ୟୋଧନଙ୍କର ଊରୁଭଙ୍ଗ ବିଷୟ ବର୍ଣ୍ଣିତ । 'ବାଲଚରିତ'ରେ ପାଞ୍ଚୋଟି ଅଙ୍କ ଅଛି । ଏଥିରେ ଶ୍ରୀକୃଷ୍ଣଙ୍କର ଜନ୍ମଠାରୁ କଂସବଧ ପର୍ଯ୍ୟନ୍ତ ଚରିତ ବର୍ଣ୍ଣିତ । ଏହି ବିଷୟ ହରିବଂଶରୁ ଗୃହୀତ ହୋଇଅଛି । 'ପ୍ରତିଜ୍ଞାଯୌଗନ୍ଧରାୟଣ' ଓ 'ସ୍ୱପ୍ନବାସବଦତ୍ତ'ରେ ଯଥାକ୍ରମେ ଛଅ ଓ ଚାରି ଅଙ୍କ ଅଛି । ଏ ଦୁଇଟି ନାଟକରେ ଉଦୟନଙ୍କର ଚରିତ ବର୍ଣ୍ଣିତ । ବିଷୟ ପୈଶାଚୀଭାଷା ଲିଖିତ 'ବୃହତ୍କଥା'ର ଆଧାରରେ ଲିଖିତ ହେଲା ପରି ପ୍ରତୀତ ହୁଏ । ଅବଶିଷ୍ଟ 'ଅବିମାରକ' ଓ 'ଚାରୁଦତ୍ତ' ନାଟକରେ ଯଥାକ୍ରମରେ ଚାରି ଓ ପାଞ୍ଚ ଅଙ୍କ ଅଛି । ଉଭୟର କଥା ଭାସକବିଙ୍କ କପୋଳକଳ୍ପିତ ଅଥବା ପ୍ରାଚୀନ ବୃହତ୍କଥାରୁ ସଂଗୃହୀତ ।

ଏହି ତେରଟି ନାଟକ ମଧ୍ୟରୁ କେବଳ 'ସ୍ୱପ୍ନବାସବଦତ୍ତ' ନାଟକର ନାମ ହସ୍ତଲିଖିତ ପାଣ୍ଡୁଲିପିରେ ମିଳୁଅଛି । କଲ୍ହଣଙ୍କର 'ସୂକ୍ତିମୁକ୍ତାବଳୀ'ରୁ ଉଦ୍ଧୃତ ରାଜଶେଖରଙ୍କର ଶ୍ଲୋକରୁ ଜଣା ଯାଏ—ଭାସ 'ସ୍ୱପ୍ନବାସବଦତ୍ତ' ନାମକ ନାଟକ ଲେଖିଥିଲେ । ଏହି

ହେତୁ ଏହି ନବୋପଲବ୍ଧ ସ୍ୱପ୍ନବାସବଦତ୍ତ ଓ ତତ୍ପ୍ରଭୃତି ଅନ୍ୟ ବାରଟି ନାଟକ ମଧ୍ୟ ଭାସଙ୍କ ଦ୍ୱାରା ଲିଖିତ ହୋଇଥିବ ବୋଲି ପଣ୍ଡିତ ଗଣପତି ଶାସ୍ତ୍ରୀ ସ୍ଥିର କରିଛନ୍ତି ଏବଂ ତାଙ୍କର ସିଦ୍ଧାନ୍ତକୁ ବହୁ ଭାରତୀୟ ଓ ୟୁରୋପୀୟ ପଣ୍ଡିତମାନେ ମାନି ନେଇଛନ୍ତି ।

ଅଶ୍ୱଘୋଷ, ଭାସ ଓ କାଳିଦାସଙ୍କର ନାଟକମାନଙ୍କରେ ବ୍ୟବହୃତ ପ୍ରାକୃତ ଭାଷାର ସ୍ୱରୂପ ପର୍ଯ୍ୟାଲୋଚନାକରି ପଣ୍ଡିତମାନେ ସ୍ଥିର କରିଛନ୍ତି ଯେ ଭାସ ଅଶ୍ୱଘୋଷଙ୍କ ପରେ ଓ କାଳିଦାସଙ୍କର ପୂର୍ବରେ ଥିଲେ । ଏହା ଛଡ଼ା ଭାସଙ୍କର 'ପ୍ରତିଜ୍ଞାଯୌଗନ୍ଧରାୟଣ'ର ଗୋଟିଏ ଶ୍ଳୋକ ବୁଦ୍ଧଚରିତର ଏକ (୧୩, ୬୦) ଶ୍ଳୋକ ସହିତ ଖାପ ଖାଉଅଛି । କାଳିଦାସଙ୍କ ସମୟରେ ଭାସ ପ୍ରାଚୀନ ନାଟକକାର ରୂପେ ପରିଗଣିତ ହେଉଥିଲେ—ଏହା ମାଳବିକାଗ୍ନିମିତ୍ରର ପ୍ରସ୍ତାବନାରୁ ଜଣାଯାଏ । ଏ ହେତୁ ଭାସଙ୍କ ସମୟ ଖ୍ରୀଷ୍ଟୀୟ ତୃତୀୟ ଶତାବ୍ଦୀ ବୋଲି ଧରାଯାଏ ।

ଭାସଙ୍କ ନାଟକମାନଙ୍କରେ ବିଶେଷ ରଚନାକୌଶଳ ଦେଖାଯାଏ ନାହିଁ । ଅଭିଷେକ, ବାଳଚରିତ, ଦୂତବାକ୍ୟ ଇତ୍ୟାଦି ନାଟକମାନଙ୍କରେ ରାମାୟଣ ଓ ମହାଭାରତ ପ୍ରସଙ୍ଗ ବହୁପରିମାଣରେ ଅବିକଳ ନିଆଯାଇଅଛି । ପ୍ରତିଜ୍ଞା, ପ୍ରତିମା, ପଞ୍ଚରାତ୍ର, ସ୍ୱପ୍ନବାସବଦତ୍ତ-ପ୍ରଭୃତି ନାଟକମାନଙ୍କରେ କଥାବସ୍ତୁର ସୁବିଧା ଓ ଚମତ୍କାରିତା ସମ୍ପାଦନ-ସକାଶେ ମୂଳକଥାଠାରୁ ବିଶେଷ ଭେଦ ପ୍ରଦର୍ଶିତ ହେବା ଦେଖାଯାଏ । ଯଥାପି ଜଟିଳ ସମସ୍ୟାମାନଙ୍କର ଶେଷଅଙ୍କରେ ବିଶ୍ଳେଷଣ କରିବା ପ୍ରବୃତ୍ତି ଭାସଙ୍କର ଥିଲା ପରି ବୋଧ ହୁଏ ନାହିଁ । ଏହାଙ୍କର ପାତ୍ରମାନଙ୍କର କଥୋପକଥନ ସିଧା ସଳଖ ସରଳ

ହେବା ହେତୁ ତହିଁରେ ପ୍ରକୃତର ପ୍ରତିବିମ୍ବ ସୁସ୍ପଷ୍ଟଭାବେ ପ୍ରତିବିମ୍ବିତ ହେବା ଦେଖାଯାଏ । ଏ ସମସ୍ତ ନାଟକର ଭାଷା ସରଳ, ପ୍ରସାଦ-ଗୁଣବହୁଳ ଓ ଅର୍ଥଗର୍ଭ୍ଭିର । ଏହି ଭାଷାରେ ଉପମା, ଉତ୍ପ୍ରେକ୍ଷା ଅର୍ଥାନ୍ତରନ୍ୟାସ, ଯଥାସଂଖ୍ୟପ୍ରଭୃତି ଅଳଙ୍କାରମାନଙ୍କର ସରଳ ସନ୍ନିବେଶ ଦେଖାଯାଏ । ଏଥିରେ କୌଣସିଠାରେ ସୂକ୍ଷ୍ମ କ୍ଲିଷ୍ଟତା, କୃତ୍ରିମତା ଓ ଦୁରୂହତା ଦୃଷ୍ଟିଗୋଚର ହୁଏ ନାହିଁ । ଭାସ ମହାଭାରତ, ରାମାୟଣ ଓ ବୃହତ୍‌କଥାରେ ବିଶେଷ ଅଭ୍ୟସ୍ତ ଥିଲେ । ଏହି ଗ୍ରନ୍ଥମାନଙ୍କର ଅନେକ କଳ୍ପନା ଓ ଶବ୍ଦପ୍ରୟୋଗ ଏହାଙ୍କ ନାଟକରେ ଦେଖିବାକୁ ମିଳେ । ଏ ସମସ୍ତ ଗ୍ରନ୍ଥ ବାରମ୍ବାର ଆବୃତ୍ତି କରିବାରୁ ଏହାଙ୍କର ନାଟକମାନଙ୍କର ପଦ୍ୟମାନଙ୍କରେ କେତେକ ସ୍ଥଳରେ ଗଦ୍ୟରେ ମଧ୍ୟ 'ସୁଗ୍ରାମ୍ୟବନ୍ତ୍ୟାଧିପତେଃ ସୁତାୟାଃ' (ସ୍ୱପ୍ନ) ଓ 'ଆପୃଚ୍ଛାଂ କସ୍ୟ ନିବେଦ୍ୟ' (ପଞ୍ଚରାତ୍ର) ଏହି ପରି ସନ୍ଧି, 'ସ୍ତ୍ରୀଗତାଂ ପୃଚ୍ଛସେ କଥାମ୍' (ବାଳଚରିତ) 'ଆପୃଚ୍ଛ ପୁତ୍ରକୃତକାନ୍' (ପ୍ରତିମା) ଏହି ପରି କ୍ରିୟା-ପ୍ରୟୋଗ, 'ରୁଦନ୍ତୀ' (ଦୂତବାକ୍ୟ) 'ଗୃହ୍ୟ' (ଦୂତଘଟୋତ୍କଚ) 'ସମାଶ୍ୱାସିତୁମ୍' (ଅଭିଷେକ) ଏହି ପରି କୃଦନ୍ତରୂପର ଅଶୁଦ୍ଧ ପ୍ରୟୋଗ ଦେଖାଯାଏ । ଏହି ପ୍ରକାର ଉପର ନିର୍ଦ୍ଦିଷ୍ଟ କାରଣ-ମାନଙ୍କରୁ ଏହାଙ୍କର କଥାବସ୍ତୁ କ୍ରିୟାତ୍ମକ (Full of action) ଦେଖାଯାଏ । ଭାସଙ୍କର କଳ୍ପନାଶକ୍ତି ପ୍ରବଳ ଥିଲା ମାତ୍ର ବିବେକ-ଶକ୍ତି ନିମ୍ନସ୍ତରର ଥିଲା । ନ ହୋଇଥିଲେ 'ପଞ୍ଚରାତ୍ର'ର ପ୍ରଥମ ଅଙ୍କର ବିଷ୍କମ୍ଭକରେ ଅଗ୍ନିଙ୍କର ବିସ୍ତୃତ ବର୍ଣ୍ଣନା କଥାବସ୍ତୁ ସହିତ ସମ୍ବନ୍ଧ ନ ଥିବାରୁ ସଂକ୍ଷେପରେ କରାଯାଇ ଥାନ୍ତା । ଏହି ପରି 'ଦ୍ୱାବେବ ଦୋର୍ଭ୍ୟାଂ ସମରେ ପ୍ରମାଥୀ ହଲାୟୁଧଶ୍ଚୈବ ବୃକୋଦରଶ୍ଚ' (ପଞ୍ଚରାତ୍ର) [ହଲାୟୁଧ (ବଳରାମ) ଓ ବୃକୋଦର,

ଦୁହେଁ ଶସ୍ତ୍ର ନ ନେଇ ଯୁଦ୍ଧକୁ ଯାଆନ୍ତି] ଏହି ପଦ୍ୟରେ ଅର୍ଥପ୍ରତି ଦୃଷ୍ଟିପାତ କଲେ ହଳାୟୁଧ ଶବ୍ଦ ପ୍ରୟୋଗର ଅନୌଚିତ୍ୟ ପ୍ରତିଭାତ ହୋଇଥାନ୍ତା । ଏହିପରି ଅନେକ ଦୃଷ୍ଟାନ୍ତ ଏହାଙ୍କର ନାଟକମାନଙ୍କରେ ଦେଖାଇ ଦିଆଯାଇ ପାରେ । ଶବ୍ଦଯୋଜନା ପ୍ରତି ମଧ୍ୟ ସେ ବିଶେଷ ଦୃଷ୍ଟି ଦେଇ ନାହାନ୍ତି । ଏହି ହେତୁ ଏହାଙ୍କ ନାଟକମାନଙ୍କରେ ନାଦମାଧୁର୍ଯ୍ୟ କମ ଦେଖାଯାଏ । ତଥାପି ନାଟ୍ୟକୃତିର ବିବିଧତା, ବିଶାଳତା ଓ ସହଜରମ୍ୟତା ବିଚାର କଲେ କାଳିଦାସଙ୍କର ପୂର୍ବକାଳରେ ଯଦି ତାଙ୍କର ନାମ ସର୍ବତ୍ର ପ୍ରସିଦ୍ଧ ହୋଇଥିଲା,ତେବେ ଏଥିରେ ଆଶ୍ଚର୍ଯ୍ୟ ହେବାର କିଛି ନାହିଁ ।

ଅଶ୍ୱଘୋଷଙ୍କର କାବ୍ୟ ପରି ଭାସଙ୍କର ନାଟକମାନଙ୍କୁ ମଧ୍ୟ କାଳିଦାସ ଗଭୀରଭାବେ ପରିଶୀଳନ କରିଥିଲେ ପରି ପ୍ରତୀତ ହୁଏ । ଏହି ହେତୁ ଏହାଙ୍କର କେତେକ ରମଣୀୟ କଳ୍ପନା କାଳିଦାସଙ୍କର ପ୍ରତିଭା ଓ ନାଦମଧୁର ଶବ୍ଦଯୋଜନାରେ ଅତି ରମଣୀୟ ଆକାର ଧାରଣ କରିଅଛି । କଳ୍ପନାସାଦୃଶ୍ୟର ଏହିପରି ୨୧ଟି ଉଦାହରଣ ସ୍ୱର୍ଗୀୟ ଶି. ମ. ପରାଞ୍ଜପେ 'ସାହିତ୍ୟ ସଂଗ୍ରହ'ର ପ୍ରଥମ ଭାଗର ଏକ ପ୍ରବନ୍ଧରେ ସନ୍ନିବେଶିତ କରିଅଛନ୍ତି । ତାହା ଛଡ଼ା ଆମେ ମଧ୍ୟ ଏହି ସ୍ଥଳରେ ଦୁଇ ତିନୋଟି ଉଦାହରଣ ଦେଉଛୁଁ —

୧ । ଭାସ—**अथवा सर्वमलङ्कारो भवति सुरूपाणाम्**

(ପ୍ରତିମା)

(ସୁନ୍ଦର ରୂପବାନ୍ ବ୍ୟକ୍ତି ପକ୍ଷରେ ଯାହା କିଛି ଶୋଭା ଦେଇଥାଏ)

କାଳିଦାସ — **किमिव हि मधुराणां मण्डनं नाकृतीनाम्** ।

(ଶାକୁ ୧)

[ମଧୁର (ସୁନ୍ଦର) ଅକୃତି ବିଶିଷ୍ଟ ଲୋକ ପକ୍ଷରେ କେଉଁ ବସ୍ତୁ ଶୋଭାଧାୟକ ନୁହେଁ ?]

୨ । ଭାସ — **वाचानुवृत्तिः खलु अतिथिसत्कारः ।**

(ପ୍ରତିମା ୫)

(ମଧୁର ବଚନ କହିବା ମାନେ ଅତିଥି ସତ୍କାର ହୋଇଥାଏ)

କାଳିଦାସ — **भवतीनां सूनृतयैव गिरा कृतमातिथ्यम् ।**

[ଆପଣମାନଙ୍କର ମଧୁର ବଚନରେ ଆମର ଆତିଥ୍ୟ (ଅତିଥି ସତ୍କାର) ହୋଇ ଯାଇଛି]

୩ । ଭାସ — **अल्पं तुल्यशीलानि द्वन्द्वानि सृज्यन्ते ।**

(ପ୍ରତିମା ୧)

ସମାନପ୍ରକୃତି ଯୁଗଳମାନଙ୍କର ସୃଷ୍ଟି ଅତି କମ୍ ଦେଖାଯାଏ ।

କାଳିଦାସ — **समानयंस्तुल्यगुणं वधूवरं**
**चिरस्य वाच्यं न गतः प्रजापतिः ॥**

(ଶାକୁ ୫)

[ଏହି ବଧୂ ଓ ବର ପରସ୍ପର ଅନୁରୂପଗୁଣବିଶିଷ୍ଟ ହେବା ହେତୁ ପ୍ରଜାପତିଙ୍କୁ ଚିରକାଳ ପର୍ଯ୍ୟନ୍ତ କେହି ହେଲେ ଦୋଷ ଦେଇ ପାରିବ ନାହିଁ]

ଉପରୋକ୍ତ ଏହି ଘନିଷ୍ଠ ସାଦୃଶ୍ୟପୂର୍ଣ୍ଣ ବାକ୍ୟମାନ ମନୋଯୋଗପୂର୍ବକ ବିଚାର କଲେ କାଳିଦାସଙ୍କର ଶବ୍ଦଯୋଜନରେ ସିଦ୍ଧହସ୍ତତା ପ୍ରକଟିତ ହୁଏ । ଏହାଙ୍କର ପ୍ରଥମ ନାଟକ 'ମାଳବିକାଗ୍ନିମିତ୍ର'ର କେତେକ ପ୍ରସଙ୍ଗ ସ୍ୱପ୍ନବାସବଦତ୍ତାରୁ ସଂଗୃହୀତ ହେଲା ପରି ଜଣାଯାଏ । ତଥାପି କଳାଭଙ୍ଗୀ ଓ ସୌନ୍ଦର୍ଯ୍ୟାନ୍ୱେଷକ ହେବା ହେତୁ

କାଳିଦାସଙ୍କର ଗ୍ରନ୍ଥମାନ ଭାସଙ୍କର ଗ୍ରନ୍ଥମାନଙ୍କ ଠାରୁ ଅଧିକ ନିର୍ଦ୍ଦୋଷ ଓ ରମଣୀୟ ଦେଖାଯାଏ । ନିଜ ନାଟକମାନଙ୍କରେ ଅନାବଶ୍ୟକ ପ୍ରସଙ୍ଗ, ପଦ୍ୟ ଅଥବା ଗଦ୍ୟରେ ନ ଲେଖିବା-ବିଷୟରେ ସେ ଅତ୍ୟନ୍ତ ସାବଧାନ ଥିଲେ । ଏହିପରି ଦେବତା-ମାନଙ୍କର ଅସ୍ତ୍ରଧମାନେ ମନୁଷ୍ୟ ରୂପରେ ଅବତୀର୍ଣ୍ଣ ହେବା ଭଳି ଅଦ୍ଭୁତ ପ୍ରସଙ୍ଗ, ରଙ୍ଗଭୂମିରେ ପ୍ରତ୍ୟକ୍ଷ ଯୁଦ୍ଧର ଦୃଶ୍ୟ, ଯେପରି ଗୋଟିଏ ପଦ୍ୟର ଭିନ୍ନଭିନ୍ନ ପାଦ ବିଭିନ୍ନ ବକ୍ତାମାନଙ୍କ ଦ୍ୱାରା କୁହାଇବାଭଳି କୃତ୍ରିମ ଦେଖାଯାଉଥିବା ବିଷୟ ଓ ପାଣିନିବିରୁଦ୍ଧ ବ୍ୟାକରଣପ୍ରୟୋଗମାନ କାଳିଦାସ ଉଦ୍ଦେଶପୂର୍ବକ ପରିହାର କରି ଅଛନ୍ତି । ଏହିପରି କାଳିଦାସ ଭାସଙ୍କର ଗ୍ରନ୍ଥମାନଙ୍କରୁ ରମଣୀୟ କେତେକ କଳ୍ପନା ଓ ପ୍ରସଙ୍ଗ ନେଇ, ସେ ସମସ୍ତ ନିର୍ଦ୍ଦୋଷ କରି ନିଜ ନାଟକ ରଚନା କରି ଅଛନ୍ତି । ଏ ହେତୁ ତାଙ୍କର ନାଟକମାନ ଭାସଙ୍କ ନାଟକ ଅପେକ୍ଷା ରସିକମାନଙ୍କର ଅଧିକ ପ୍ରିୟ ହୋଇପାରି ଅଛି ବୋଲି ବୋଧହୁଏ ।

କାଳିଦାସ 'ମାଳବିକାଗ୍ନିମିତ୍ର' ନାଟକର ପ୍ରସ୍ତାବନାରେ ସୌମିଲ୍ଲ ଓ କବିପୁତ୍ର—ଏହି ଦୁଇଟି ପ୍ରସିଦ୍ଧ ପ୍ରାଚୀନ ନାଟ୍ୟକାର-ଙ୍କର ଉଲ୍ଲେଖ କରିଅଛନ୍ତି । କିନ୍ତୁ ଏହି ଦୁହିଙ୍କ ବିଷୟରେ ନିଶ୍ଚିତ ରୂପରେ କିଛି ହେଲେ ଏ ପର୍ଯ୍ୟନ୍ତ ଜଣାଯାଇ ନାହିଁ । ରାଜଶେଖରଙ୍କର ଏକ ଶ୍ଳୋକରେ ରାମିଲ ଓ ସୌମିଲ ମିଶି ଶୂଦ୍ରକକଥା ଲେଖିଛନ୍ତି—ଏହିପରି ବର୍ଣ୍ଣନା କରାଯାଇ ଅଛି । କିନ୍ତୁ ଏହି ସୋମିଲ ଓ କାଳିଦାସଙ୍କର ଦ୍ୱାରା ଉଲ୍ଲିଖିତ ସୋମିଲ୍ଲ ଏକ ବ୍ୟକ୍ତି ବୋଲି ନିଶ୍ଚିତରୂପେ କୁହାଯାଇ ନପାରେ । ଶୂଦ୍ରକ-କଥା କି ପ୍ରକାର କାବ୍ୟ—ଏହା ମଧ୍ୟ ଆମେ ଜାଣିପାରୁନାହୁଁ ।

'ମୃଚ୍ଛକଟିକ' ନାଟକକୁ ଏହି ଦୁଇଜଣ କବି ମିଶି ଲେଖି ଶୂଦ୍ରକଙ୍କ ନାମରେ ପ୍ରଚାର କରିଛନ୍ତି ବୋଲି କେତେକ ମତ ପ୍ରକାଶ କରନ୍ତି । ମାତ୍ର ତାହା ସମ୍ଭବପର ନୁହେଁ । କାରଣ ପ୍ରଥମେ ଏହି ନାଟକ ଶୂଦ୍ରକ ବିଷୟକ ନୁହେଁ । ଦ୍ୱିତୀୟତଃ ମୃଚ୍ଛକଟିକ ଭାସଙ୍କର ପରବର୍ତ୍ତୀ, ସଂସ୍କୃତ ବର୍ଦ୍ଧିତ ସଂସ୍କରଣ ପରି ପ୍ରତୀତ ହୁଏ—ଏହା ବହୁବାଦ ସମ୍ମତ । ଭାସଙ୍କର ନାଟକ ଲୁପ୍ତପ୍ରାୟ ହେଲାପରେ କୌଣସି ଲୋକ ଏହି କାର୍ଯ୍ୟ କରିଥିବେ । ଏହି ପ୍ରକାର ନାଟକ ଲେଖକଙ୍କୁ କାଳିଦାସ ପ୍ରଶଂସା କରି ଅଛନ୍ତି—ଏହା ବିଶ୍ୱାସ-ଯୋଗ୍ୟ ନୁହେଁ । ଅବଶିଷ୍ଟ ତୃତୀୟ କବିପୁତ୍ର ନାମକ ନାଟକ-କାରଙ୍କ ବିଷୟରେ ଏ ପର୍ଯ୍ୟନ୍ତ କୌଣସି ପରିଚୟ ମିଳିନାହିଁ ।

## ମାଳବିକାଗ୍ନିମିତ୍ର

ଦ୍ୱିତୀୟ ଚନ୍ଦ୍ରଗୁପ୍ତ ବିଦର୍ଭାଧିପତି ବାକାଟକଙ୍କର ସାହାଯ୍ୟରେ ମାଳବ ଓ କାଠିଆବାଡ ରାଜ୍ୟର ଅଧୀଶ୍ୱର କ୍ଷତ୍ରପ-ମାନଙ୍କୁ ଉଚ୍ଛେଦ କରି ଉଜ୍ଜୟିନୀକୁ ନିଜ ରାଜଧାନୀ କଲେ ଏବଂ ବାକାଟକମାନଙ୍କ ସହିତ ସ୍ନେହ ସମ୍ବନ୍ଧ ଦୃଢ଼ କରିବା ସକାଶେ ରାଜପୁତ୍ର ଦ୍ୱିତୀୟ ରୁଦ୍ରସେନଙ୍କୁ ନିଜ କନ୍ୟା ପ୍ରଭାବତୀ ଗୁପ୍ତାଙ୍କୁ ପ୍ରଦାନ କରିଥିଲେ । ସମ୍ଭବତଃ ଏହି ବିବାହ ଉଜ୍ଜୟିନୀରେ ଖୁବ୍ ଆଡ଼ମ୍ବର ସହକାରେ ସମ୍ପନ୍ନ ହୋଇ ଥିଲା । ସାଧାରଣତଃ ଏହିପରି ଅବକାଶରେ ପୂର୍ବେ ନାଟକମାନ ଅଭିନୀତ ହେଉଥିଲା । ରାଜ-ଶେଖରଙ୍କର 'ବିଦ୍ଧଶାଳଭଞ୍ଜିକା' ବିଲ୍ହଣଙ୍କର 'କର୍ଣ୍ଣସୁନ୍ଦରୀ' ଇତ୍ୟାଦି ସଂସ୍କୃତ ନାଟିକାମାନ ଏହିପରି ପ୍ରସଙ୍ଗମାନଙ୍କରେ ରଙ୍ଗଭୂମିରେ ଅବତୀର୍ଣ୍ଣ ହୋଇଥିଲା । ବୋଧହୁଏ ପ୍ରଭାବତୀଙ୍କର

ବିବାହ ସମୟରେ ଚନ୍ଦ୍ରଗୁପ୍ତ ଏକ ଉଚ୍ଚ ଦରର ନାଟକ ଅଭିନୀତ କରିବାକୁ ବିଦ୍ୱତ୍ ପରିଷଦକୁ ଅନୁରୋଧ କରିଥିଲେ । ସେ ସମୟରେ ଭାସଙ୍କର ନାଟକମାନ ପଣ୍ଡିତମାନଙ୍କର ସମ୍ମୁଖରେ ଥିଲା । ବିଶେଷତଃ ତାଙ୍କର 'ସ୍ୱପ୍ନବାସବଦତ୍ତା' ସଂବିଧାନବୈଚିତ୍ର୍ୟ ଏବଂ ପାତ୍ରମାନଙ୍କର ଯଥାଯଥ ଚରିତ୍ରବିଶ୍ଳେଷଣପ୍ରଭୃତି ଗୁଣହେତୁ ପ୍ରସିଦ୍ଧ ଥିଲା । ନିଜର ସ୍ୱାମୀ, ଦାକ୍ଷିଣ୍ୟଯୁକ୍ତ ଉଦୟନଙ୍କର ରାଜ୍ୟ ବୃଦ୍ଧି ଉଦ୍ଦେଶ୍ୟରେ ରାଜନୀତିଜ୍ଞ ମନ୍ତ୍ରୀମାନଙ୍କର ସହଯୋଗରେ ନିଜର ମିଥ୍ୟା ମୃତ୍ୟୁସଂବାଦ ପ୍ରଚାର କରି ସ୍ୱେଚ୍ଛାରେ ଅଜ୍ଞାତ ବାସରେ ରହି ପ୍ରତ୍ୟକ୍ଷଭାବରେ ନିଜ ସପତ୍ନୀଙ୍କ ପ୍ରତି ଅସୂୟା ପ୍ରକାଶ ନ କରି କୌଶଳରେ ଅଲକ୍ଷିତ କରୁଥିବା ନାୟିକା ବାସବଦତ୍ତାଙ୍କ ପ୍ରତି ଉଜ୍ଜୟିନୀବାସୀ ଲୋକମାନଙ୍କର କୌତୁକ ଓ ଅଭିମାନ ରହିବା କଥା । ତାଙ୍କର କଥା ସମସ୍ତଙ୍କର ଜିଭ ଅଗରେ ଥିଲା । ଉଦୟନ ଯେଉଁ ସ୍ଥାନରୁ ବାସବଦତ୍ତାଙ୍କୁ ହରଣକରି ନେଇଥିଲେ, ସେ ସ୍ଥାନକୁ ସେମାନେ ଖୁବ୍ ଆଗ୍ରହସହକାରେ ଦେଖାଉଥିଲେ ବୋଲି କାଳିଦାସଙ୍କର 'ମେଘଦୂତ'ରୁ ଜଣାଯାଏ । ପ୍ରାଚୀନ କବି ଭାସଙ୍କର ସ୍ୱପ୍ନବାସବଦତ୍ତା ଓ ଉଦୀୟମାନ ତରୁଣ କବି କାଳିଦାସଙ୍କର ମାଳବିକାଗ୍ନିମିତ୍ର ଏହି ଦୁଇଟି ମଧ୍ୟରୁ କାହାକୁ ପସନ୍ଦ କରିବେ ଏହି ପ୍ରଶ୍ନ ବିଦ୍ୱାନ୍ମାନଙ୍କ ଅଗରେ ଥିଲା । କାଳିଦାସଙ୍କର 'ମାଳବିକାଗ୍ନିମିତ୍ର'ର ସଂବିଧାନ ସେ ସମୟର ଲୋକମାନଙ୍କ ରୁଚିର ଅନୁକୂଳ ଓ ପ୍ରିୟ ଥିଲା । ଚନ୍ଦ୍ରଗୁପ୍ତ ଯେପରି ପରକୀୟ କ୍ଷତ୍ରପମାନଙ୍କୁ ପରାଜିତ କରି ଉତ୍ତର ହିନ୍ଦୁସ୍ଥାନରେ ହିନ୍ଦୁମାନଙ୍କର ଏକଚ୍ଛତ୍ର ସାମ୍ରାଜ୍ୟ ସ୍ଥାପନକରିଥିଲେ ଓ ହିନ୍ଦୁଧର୍ମର ପୁନରୁଦ୍ଧାର କରିଥିଲେ ସେହିପରି ପୁଷ୍ୟମିତ୍ର

ଶୁଙ୍ଗ ବୌଦ୍ଧରାଜାଙ୍କୁ ପରାସ୍ତ କରି ହିନ୍ଦୁ ଧର୍ମର ପୁନରୁଦ୍ଧାର କରିଥିଲେ ଏବଂ ଅଳ୍ପବୟସ୍କ ତାଙ୍କର ପୌତ୍ର ବସୁମିତ୍ର ମଧ୍ୟ ଅଶ୍ୱମେଧ ଯାଗର ଅଶ୍ୱରକ୍ଷଣ ପ୍ରସଙ୍ଗରେ ପ୍ରବଳ ଗ୍ରୀକ ସେନାଙ୍କୁ ପରାସ୍ତ କରିଥିଲେ । କାଳିଦାସଙ୍କ ସମୟରେ ଯେପରି ମାଳବ ଓ ବିଦର୍ଭ-ରାଜପରିବାରମାନଙ୍କ ମଧ୍ୟରେ ବିବାହ ସମ୍ବନ୍ଧ ସ୍ଥାପିତ ହୋଇଥିଲା, ସେହିପରି ଶୁଙ୍ଗଙ୍କ ସମୟରେ ଅଗ୍ନିମିତ୍ର ଓ ବିଦର୍ଭରାଜକନ୍ୟା ମାଳବିକାଙ୍କ ସହିତ ବିବାହ ଘଟିଥିଲା । ସଂବିଧାନ ବୈଚିତ୍ର୍ୟ ଓ ପାତ୍ରମାନଙ୍କର ଚରିତ୍ରଚିତ୍ରଣରେ କାଳିଦାସଙ୍କର ନବୀନ ନାଟକ 'ସ୍ୱପ୍ନବାସବଦତ୍ତ' ଠାରୁ ନିମ୍ନସ୍ତରର ନ ଥିଲା । ପ୍ରତ୍ୟୁତ କାବ୍ୟ-ଗୁଣ, କଳ୍ପନା ଓ ବର୍ଣ୍ଣନା ପ୍ରଭୃତିରେ ଅଧିକ ଉନ୍ନତ ଥିଲା । ଏ ହେତୁ ଅନ୍ୟ ନାଟକମାନଙ୍କ ଅପେକ୍ଷା ଏହା ପଣ୍ଡିତମାନଙ୍କର ସମ୍ମାନିତ ହୋଇଥିଲା—ଏଥିରେ ବିସ୍ମିତ ହେବାର କାରଣ ନାହିଁ । କିନ୍ତୁ କେତେକ ଲୋକଙ୍କର ଏହି ନବୀନତା ପସନ୍ଦ ହୋଇ ନଥିଲା । ଏହି ହେତୁ କାଳିଦାସ ନିଜ ନାଟକର ପ୍ରସ୍ତାବନାରେ 'ମୋର ନାଟକ ପ୍ରାଚୀନ ନାଟକକାରମାନଙ୍କର ନାଟକମାନଙ୍କଠାରୁ ଯଦି ଶ୍ରେଷ୍ଠ ହେବ, ତେବେ ଗ୍ରହଣ କର, ଖାଲି ନୂଆଁ ବୋଲି ଅନାଦର କରନାହିଁ' ବୋଲି ପ୍ରେକ୍ଷକମାନଙ୍କୁ କହି ଅଛନ୍ତି ।

'ମାଳବିକାଗ୍ନିମିତ୍ର' କାଳିଦାସଙ୍କ ରଚନା କି ତାଙ୍କ ପରବର୍ତ୍ତୀ ଅନ୍ୟ କବିଙ୍କର ରଚନା—ଏ ବିଷୟରେ ପ୍ରଥମେ କେତେକ ପଣ୍ଡିତଙ୍କର ସନ୍ଦେହ ଥିଲା । କିନ୍ତୁ ଅନେକ ପ୍ରମାଣରେ ଏହି ସଂଶୟର ଖଣ୍ଡନ ହୋଇସାରିଛି । କାଳିଦାସଙ୍କର ଅନ୍ୟାନ୍ୟ ନାଟକ ପରି ଏହି ନାଟକର ନାନ୍ଦୀରେ ମଧ୍ୟ ଶିବଙ୍କର ସ୍ତୁତି କରାଯାଇଅଛି । ଏହାର ପ୍ରସ୍ତାବନା ମଧ୍ୟ ଅନ୍ୟାନ୍ୟ ନାଟକର ପ୍ରସ୍ତାବନା ପରି

ଶ୍ଳୋକ । ଏହି ନାଟକରେ କବି ସ୍ପଷ୍ଟଭାବରେ ନିଜ ନାମ ଉଲ୍ଲେଖ କରିଅଛନ୍ତି । କାଳିଦାସଙ୍କର ପ୍ରକୃତିତତ୍ତ୍ୱ ପରିଶୀଳନ ଓ କଳ୍ପନା-ବୈଚିତ୍ର୍ୟ ଏହି ନାଟକରେ ଉତ୍କୃଷ୍ଟଭାବରେ ଦେଖାଯାଏ । କେତେକ ସ୍ଥଳରେ ଅନ୍ୟାନ୍ୟ ଗ୍ରନ୍ଥର କଳ୍ପନାମାନ ମଧ୍ୟ ଅବିକଳ ଉଦ୍ଧୃତ ହେବା ଦେଖାଯାଏ । ଏ ସମସ୍ତ ପ୍ରମାଣରୁ ଏହି ଗ୍ରନ୍ଥ କାଳିଦାସକୃତ — ଏଥିରେ ସନ୍ଦେହ ନାହିଁ ।

'ମାଳବିକାଗ୍ନିମିତ୍ର'ରେ ପାଞ୍ଚୋଟି ଅଙ୍କ ଅଛି । ଏହାର ସଂବିଧାନ ଅତ୍ୟନ୍ତ ଜଟିଳ । ପ୍ରଥମାଙ୍କର ପ୍ରସ୍ତାବନା ପରେ ଗୋଟିଏ ବିଷ୍କମ୍ଭକ ଦେଖାଯାଏ । କୌମୁଦିକା ଓ ବକୁଳାବଳିକା-ନାମିକା ଦୁଇଟି ଦାସୀ ଓ ଗଣଦାସ ନାମକ ନାଟ୍ୟାଚାର୍ଯ୍ୟଙ୍କର କଥୋପକଥନରେ 'ଧାରିଣୀ' ରାଣୀଙ୍କ ସକାଶେ ନିର୍ମିତ ସର୍ପ-ମୁଦ୍ରାଙ୍କିତ ଏକ ମୁଦ୍ରିକାର ଉଲ୍ଲେଖ କରି କବି ଦର୍ଶକମାନଙ୍କୁ ନାୟିକା ବିଷୟରେ ନିମ୍ନମତେ ସାମାନ୍ୟ ପରିଚୟ ଦେଇଅଛନ୍ତି । ଧାରିଣୀଙ୍କର ଯାନକାଗାୟୁ ଭାଇ ବୀରସେନ ନର୍ମଦାତଟସୀମାବର୍ତ୍ତୀ ଦୁର୍ଗର ଅଧିପତିରୂପେ ନିଯୁକ୍ତ ହୋଇଥିଲେ । ମାଳବିକା ଶିଳ୍ପକଳାରେ ଅତ୍ୟନ୍ତ ନିପୁଣା ଥିଲେ । ସେ ଧାରିଣୀଙ୍କର ଉପଯୁକ୍ତ ସେବା କରିପାରିବେ ବୋଲି ବୀରସେନ ମାଳବିକାଙ୍କୁ ଦାସୀ ରୂପେ ଧାରିଣୀଙ୍କ ପାଖକୁ ପଠାଇଥିଲେ । ରାଣୀ ଗଣଦାସଙ୍କୁ ତାଙ୍କର ସଙ୍ଗୀତ ଶିକ୍ଷା ସକାଶେ ନିଯୁକ୍ତ କରିଥିଲେ । ଗଣଦାସ ତାଙ୍କର ବୁଦ୍ଧିମତ୍ତା ଦେଖି ସେ ଉଚ୍ଚ କୁଳରେ ଜନ୍ମଗ୍ରହଣ କରିଥିବେ ବୋଲି ଭାବିଥିଲେ । ଦିନେ ରାଣୀ ନିଜ ପରିବାରବର୍ଗ ସହିତ ଚିତ୍ରପଟ ଦେଖୁଥିଲେ, ରାଜା ଅଗ୍ନିମିତ୍ର ହଠାତ୍ ସେଠାରେ ଉପସ୍ଥିତ ହେଲେ ଏବଂ ମାଳବିକାଙ୍କର ରୂପରେ ମୁଗ୍ଧ ହୋଇ

ରାଣୀଙ୍କୁ ତାଙ୍କର ପରିଚୟ ପଚାରିଲେ । ରାଣୀଙ୍କର ମନରେ ସନ୍ଦେହ ହେଲା । ସେ ମାଳବିକାଙ୍କୁ ଅତ୍ୟନ୍ତ ସାବଧାନତା ସହକାରେ ରାଜାଙ୍କର ଦୃଷ୍ଟି ଅନ୍ତରାଳରେ ରଖିବାକୁ ଲାଗିଲେ । ଏ ସମସ୍ତ ବିଷୟ ଅତି ସଂକ୍ଷେପରେ ପ୍ରକାଶ କରି କବି ଦର୍ଶକମାନଙ୍କର କୁତୂହଳ ଜାଗରିତ କରି ଅଛନ୍ତି । ଏହା ପରେ ପ୍ରଧାନ ଅଙ୍କର ଆରମ୍ଭ ହୋଇଅଛି । ପ୍ରଥମରେ ରାଜା ଓ ମନ୍ତ୍ରୀ ପ୍ରବେଶ କରନ୍ତି । ସେ ଦୁହିଙ୍କର ସମ୍ଭାଷଣରୁ ଦର୍ଶକମାନଙ୍କୁ ଜଣାଯାଏ ଯେ ଅଗ୍ନିମିତ୍ରଙ୍କର ପିତା ପୁଷ୍ୟମିତ୍ର ମଗଧ ଆକ୍ରମଣ କରି ମୌର୍ଯ୍ୟରାଜାଙ୍କୁ ପଦଚ୍ୟୁତ କଲେ ଏବଂ ତାଙ୍କର ମନ୍ତ୍ରୀଙ୍କୁ କାରାଗାରରେ ବନ୍ଦୀକରି ସିଂହାସନ ଗ୍ରହଣ କଲେ । ଏ ସମୟରେ ବିଦର୍ଭର ରାଜସିଂହାସନ ନେଇ ଦୁଇ ଭ୍ରାତୃଷ୍ପୁତ୍ରଙ୍କ ମଧ୍ୟରେ କଳହ ଲାଗି ହେଲା । ସେ ଦୁହିଙ୍କ ମଧ୍ୟରୁ ଅନ୍ୟତର ଭାଇ ମାଧବସେନ ନିଜ ଭଉଣୀ ମାଳବିକାଙ୍କୁ ଅଗ୍ନିମିତ୍ରଙ୍କୁ ଦେବେ ଏବଂ ତାଙ୍କର ସାହାଯ୍ୟ ପ୍ରାର୍ଥନା କରିବେ ବୋଲି ବିଦର୍ଭ ଯାଉଥିଲେ । ଏହି ଅବସରରେ ତାଙ୍କର ପିତୃବ୍ୟପୁତ୍ର ଭାଇ ଯଜ୍ଞସେନ ସିଂହାସନ ଅଧିକାର କଲେ ଏବଂ ନିଜ ସୀମାନ୍ତ ଅଧିକାରୀମାନଙ୍କ ଦ୍ୱାରା ବନ୍ଦୀ କଲେ । ଅଗ୍ନିମିତ୍ର ମାଧବସେନ ଓ ତାଙ୍କର ଭଉଣୀଙ୍କୁ ମୁକ୍ତ କରିଦେବା ସକାଶେ ପତ୍ର ଲେଖିଲେ । ଯଜ୍ଞସେନ ଉତ୍ତର ଦେଲେ 'ଆପଣ ମୋର ଶ୍ୟାଳକ ଓ ମୌର୍ଯ୍ୟରାଜାଙ୍କର ମନ୍ତ୍ରୀଙ୍କୁ ବନ୍ଦୀ କରି ରଖିଅଛନ୍ତି । ଆପଣ ସେମାନଙ୍କୁ ଛାଡ଼ିଦେଲେ ମୁଁ ମଧ୍ୟ ମାଧବସେନଙ୍କୁ ଛାଡ଼ିଦେବି । ମାଧବସେନଙ୍କର ଆକ୍ରମଣ ଗଣ୍ଡଗୋଳରେ ତାଙ୍କର ଭଉଣୀ କୁଆଡ଼େ ଗଲେ ଜଣାଯାଉ ନାହିଁ, ତାଙ୍କର ମଧ୍ୟ ଅନୁସନ୍ଧାନ କରିବାକୁ ଚେଷ୍ଟା କରିବି' । ବିଦର୍ଭର ରାଜା ଅଗ୍ନିମିତ୍ରଙ୍କୁ ଦେଖାଇବ

କରୁଥିଲେ । ବର୍ତ୍ତମାନ ତାଙ୍କୁ ସୁଯୋଗ ମିଳିଥିଲା । ସେ ବିଦର୍ଭ ଆକ୍ର-ମଣ କରିବାକୁ ସେନାପତିଙ୍କୁ ଆଦେଶ ଦେଲେ । ରାଜକାର୍ଯ୍ୟ ନିର୍ବାହ କରିବାକୁ ମନ୍ତ୍ରୀ ଗଲେ ଏବଂ ବିଦୂଷକ ପ୍ରବେଶ କଲେ । ସେମାନଙ୍କର କଥୋପକଥନରୁ ମାଳବିକାଙ୍କ ଦର୍ଶନଲାଭର ଉପାୟ ମିଳିଲା ପରି ଦର୍ଶକମାନଙ୍କୁ ପ୍ରତୀତ ହୁଏ । ଏ ସମୟରେ ଗଣଦାସ ଓ ହରଦତ୍ତ ନାମକ ଦୁଇଜଣ ନାଟ୍ୟାଚାର୍ଯ୍ୟଙ୍କ ମଧ୍ୟରେ ବିଦୂଷକଙ୍କର କଳହପ୍ରିୟତାଫଳରେ କଳହ ହୁଏ ଏବଂ ସେ ଦୁହେଁ କଳହର ନିଷ୍ପତ୍ତି କରିବା ସକାଶେ ରାଜାଙ୍କ ପାଖରେ ଉପସ୍ଥିତ ହୁଅନ୍ତି । ଗଣଦାସ ଧାରିଣୀଙ୍କର ଆଶ୍ରିତ । କୌଣସି ନିଷ୍ପତ୍ତି କରିଦେଲେ କାଳେ ରାଣୀଙ୍କର କ୍ରୋଧ ହେବ ଏହା ଭାବି ରାଜା ରାଣୀଙ୍କର ସମ୍ମୁଖରେ ପଣ୍ଡିତକୌଶିକୀ ନାମକ ପରିବ୍ରାଜିକାଙ୍କୁ ମଧ୍ୟସ୍ଥରୂପେ ନିଯୁକ୍ତ କରନ୍ତି । ଉଭୟ ଅଚାର୍ଯ୍ୟ ଉକ୍ତ ପ୍ରସ୍ତାବରେ ସମ୍ମତ ହୁଅନ୍ତି । କଞ୍ଚୁକୀ ରାଣୀଙ୍କୁ ଡାକି ଆଣନ୍ତି । ରାଣୀ ଉଭୟଙ୍କର କଳହକୁ ପସନ୍ଦ କରନ୍ତି ନାହିଁ । ପରିବ୍ରାଜିକା କହନ୍ତି 'ଯେ ସ୍ୱତଃ ନିପୁଣ ଏବଂ ଅନ୍ୟକୁ ଶିକ୍ଷା ଦେବାରେ ମଧ୍ୟ ନିପୁଣ, ସେ ଶ୍ରେଷ୍ଠ ଶିକ୍ଷକ । ଏ ହେତୁ ତୁମେ-ମାନେ ନିଜ ନିଜ ଶିଷ୍ୟାମାନଙ୍କୁ ପରୀକ୍ଷାରେ ଉପସ୍ଥିତ କର ଏବଂ ଅଙ୍ଗ ସୌଷ୍ଠବର ଅଭିବ୍ୟକ୍ତି ସକାଶେ ସେମାନେ କୌଣସି ବାହ୍ୟ ବେଶଭୂଷାରେ ସଜ୍ଜିତ ନ ହୋଇ ପ୍ରବେଶ କରନ୍ତୁ ।' ଏହା ଶୁଣିଲା ପରେ ରାଣୀଙ୍କର ସନ୍ଦେହ ଅଧିକ ଦୃଢ଼ ହୁଏ । ମାଳବିକାଙ୍କୁ ଭଲ ଭାବରେ ଦେଖିବା ସକାଶେ ରାଜାଙ୍କର କୌଶଳ ଏ ଭିତରେ ଅନ୍ତର୍ନିହିତ ବୋଲି ସେ ଭାବନ୍ତି ଏବଂ ସେ ବ୍ୟଙ୍ଗ କରି ରାଜାଙ୍କୁ କହନ୍ତି, ଏହିପରି କୌଶଳ ସେ ରାଜକାର୍ଯ୍ୟରେ ଦେଖାନ୍ତେ

ବୋଲିଲେ କେତେ ଲାଭ ହେଉ ଥାନ୍ତା । ତଥାପି ଗଣଦାସଙ୍କର ଅଗ୍ରହରେ ସମ୍ମତି ପ୍ରଦାନ କରନ୍ତି । ନେପଥ୍ୟରେ ମୃଦୁଙ୍ଗଧ୍ୱନି ଶୁଣାଯାଏ । ସମସ୍ତେ ନୃତ୍ୟର ଆୟୋଜନ ହେଲା ଭାବି ନେପଥ୍ୟାଭିମୁଖରେ ପ୍ରସ୍ଥାନ କରନ୍ତି (୧ମ ଅଙ୍କ) ଏହାପର ପ୍ରଥମାଙ୍କ ଅବବଦ୍ଧ ହୋଇଅଛି । କବି ସେହି ସମୟର ରାଜକୀୟ ପରିସ୍ଥିତିର ସଂକ୍ଷିପ୍ତ ପରିଚୟ ଦେଇ ଦର୍ଶକମାନଙ୍କ ମଧ୍ୟରେ ନାୟିକା ବିଷୟରେ କୁତୂହଳ ଜାଗରିତ କରି ଅଛନ୍ତି । ଏହି ପ୍ରଧାନାଙ୍କରେ ଗଣଦାସ ଓ ହରଦତ୍ତଙ୍କ ମଧ୍ୟରେ କଳହ, ମାଳବିକାଙ୍କୁ ରାଜାଙ୍କ ଦୃଷ୍ଟିର ବାହାରେ ରଖିବାକୁ ରାଣୀଙ୍କ ବ୍ୟାକୁଳତା, ତାଙ୍କୁ ଦେଖିବା ସକାଶେ ରାଜାଙ୍କର ଉତ୍କଣ୍ଠା, ଧୂର୍ତ୍ତ ପରିବ୍ରାଜିକାଙ୍କର ନିରପେକ୍ଷପାତିତା ଦେଖାଇବା ଆଡ଼ମ୍ବର 'ବିଦୂଷକଙ୍କର 'ଗଣଦାସଙ୍କୁ ଉତ୍ତେଜିତ କରିବା ଓ ଉପହାସ କରିବାପ୍ରଭୃତି ଅତି ଉତ୍ତମଭାବରେ ଅଙ୍କିତ କରାଯାଇ ଅଛି । ଏହି ଅଙ୍କରେ ସଂକ୍ଷେପରେ କଥାବସ୍ତୁ ମନୋରଞ୍ଜକ କରିବାରେ କାଳିଦାସଙ୍କର ସିଦ୍ଧହସ୍ତତା ସୁସ୍ପଷ୍ଟରୂପରେ ପ୍ରତିଭାତ ହୁଏ । ଏହି ଅଙ୍କରେ ସମସ୍ତ ପାତ୍ରଙ୍କର ଭାଷଣ ଚମତ୍କାରପ୍ରଦ । ଅନାବଶ୍ୟକ ଅଂଶ ଅଣୁମାତ୍ର ପରିଲକ୍ଷିତ ହୁଏ ନାହିଁ । ଦ୍ୱିତୀୟ ଅଙ୍କର ଦୃଶ୍ୟ ରାଜବାଟୀର ସଙ୍ଗୀତଶାଳା । ରାଜା, ବିଦୂଷକ, ଧାରଣୀ ଓ ପରିବ୍ରାଜିକାଙ୍କର ସମ୍ମୁଖରେ 'ଛଳିକ' ନାମକ ନାଟ୍ୟ ପ୍ରୟୋଗ । ପରିବ୍ରାଜିକା ଗଣଦାସ ହରଦତ୍ତ ଅପେକ୍ଷା ବୟସରେ ଅଧିକ ହେବାହେତୁ ପ୍ରଥମେ ତାଙ୍କ ଶିଷ୍ୟାଙ୍କର ଶିକ୍ଷାପ୍ରାବୀଣ୍ୟ ଦେଖାଇବାକୁ ଆଦେଶ ଦିଅନ୍ତି । ଫଳରେ ମାଳବିକା ପ୍ରବେଶ କରନ୍ତି । ବିଦୂଷକ ଓ ରାଜା ମାଳବିକାଙ୍କର ଚିତ୍ରଗତ ରୂପ ଅପେକ୍ଷା ପ୍ରତ୍ୟକ୍ଷ ରୂପକୁ ଅଧିକ

ସୁନ୍ଦର ମନେ କରନ୍ତି । ରାଜା ତାଙ୍କର ସୌନ୍ଦର୍ଯ୍ୟ ନିମ୍ନମତେ ବର୍ଣ୍ଣନା କରନ୍ତି—

**दीर्घाक्षं शरदिंदुकान्ति वदनं बाहू नतावंसयोः**
**संक्षिप्तं निबिड़ोन्नतस्तनमुरः पार्श्वे प्रमृष्टे इव ।**
**मध्यः पाणिमितो नितम्बि जघनं पादावरालांगुली**
**छन्दो नर्त्तयितुर्यथैव मनसः श्लिष्टं तथास्या वपुः ॥**

ମାଳ ୨,୩

'ଏହାଙ୍କର ନୟନ ବିଶାଳ, ମୁଖର କାନ୍ତି ଶାରଦୀୟ ଚନ୍ଦ୍ର ସଦୃଶ, ଭୁଜ ଦୁଇଟି ଖାନ୍ଦରୁ ନଇଁ ପଡ଼ିଛି, ବକ୍ଷଃସ୍ଥଳ ଅଣ୍ଟିଥିଲା ଓ ଉନ୍ନତ ସ୍ତନଦ୍ୱାରା ମନୋହର ଦେଖାଯାଉ ଅଛି, ପାର୍ଶ୍ୱ ଦୁଇଟି ସୁମାର୍ଜିତ, ମଧ୍ୟଭାଗ ହାତରେ ମଧ୍ୟ ମାପି ହେବ, ଜଘନ ବିପୁଳ ନିତମ୍ବରେ ଶୋଭମାନ, ପାଦର ଅଙ୍ଗୁଳିଗୁଡ଼ିକ ଈଷତ୍ ବକ୍ର, ନାଟ୍ୟାଚାର୍ଯ୍ୟଙ୍କ ଅଭିରୁଚି ଅନୁସାରେ ଏହାଙ୍କର ଶରୀର ସୁଗଠିତ ହୋଇପାରି ପ୍ରତୀତ ହେଉଅଛି ।' ଏହା ପରେ ମାଳବିକା ଅଭିନୟ-ସହକାରେ ଗାନ ଗାଆନ୍ତି । ଗାନ ସମାପ୍ତ କରି ମାଳବିକା ଯିବାକୁ ଉଦ୍ୟତ—ଏ ସମୟରେ ରାଜା ଭଲ କରି ଦେଖନ୍ତୁ—ଏହି ଅଭିପ୍ରାୟରେ ବିଦୂଷକ କହନ୍ତି 'ଠିକ୍ ଏ ରହ, ମୁଁ ଯେଉଁ କ୍ରମଭଙ୍ଗ ଲକ୍ଷ୍ୟ କରିଅଛି, ପଚାରି ନିଏ ।' ମାଳବିକା ସେଠାରେ ଅଧିକ ସମୟ ରହିବା ଧାରିଣୀଙ୍କ ପକ୍ଷରେ ଅସହ୍ୟ ବୋଧ ହୁଏ ମାତ୍ର ଗଣଦାସଙ୍କର ଅନୁରୋଧରେ ସେ କିଛି ନ କହି ତୁନି ହୋଇ ରହନ୍ତି । 'ତୁମେ କି ଦୋଷ ଲକ୍ଷ୍ୟ କରିଛ, ପ୍ରକାଶ କର' ବୋଲି ଗଣଦାସଙ୍କର ଅନୁରୋଧରେ 'ପଣ୍ଡିତଙ୍କୁ ପ୍ରଥମେ ପଚାର,

ପରେ ମୁଁ କହିବି' ବୋଲି ବିଦୂଷକ କହନ୍ତି । ରାଜା ଓ ପରିବ୍ରାଜିକା ତାଙ୍କର ଅଭିନୟର ପ୍ରଶଂସା କରନ୍ତି ମାତ୍ର ବିଦୂଷକ 'ନାଟ୍ୟାରମ୍ଭରେ ବ୍ରାହ୍ମଣପୂଜା କରିବା କଥା, ତାହା ତୁମେ ଭୁଲିଯାଇଛ' ବୋଲି ପ୍ରକାଶ କରନ୍ତି । ବିଦୂଷକ ନୃତ୍ୟର କୌଣସି ଦୋଷ ଦେଖାଇବେ ବୋଲି ଅନୁମାନ ଥିଲା, ମାତ୍ର ବିଦୂଷକଙ୍କର ଏହି ଅନପେକ୍ଷିତ ଉକ୍ତିର ଶୁଣି କରି ସମସ୍ତେ ହସି ଉଠନ୍ତି, ମାଳବିକା ମଧ୍ୟ ମନ୍ଦ ସ୍ମିତ ପ୍ରକାଶ କରନ୍ତି । ତାହା ଦେଖି ରାଜା ନିଜ ନେତ୍ର ସଫଳ ହେଲା ବୋଲି ଭାବନ୍ତି ଏବଂ କହନ୍ତି—

**स्मयमानमायताक्ष्याः किंचिदभिव्यक्तदशनशोभि मुखम् ।**
**असमग्रलक्ष्यकेसरमुच्छ्वसदिव पङ्कजं दृष्टम् ॥**

ମାଳ ୨,୧୦

'ବିଶାଳନୟନା ଏହାଙ୍କର ଅଳ୍ପମାତ୍ର ପ୍ରକାଶିତ ଦନ୍ତାବଳୀର ପ୍ରକାଶରେ ମନ୍ଦସ୍ମିତଶୋଭୀ ମୁଖ ଦେଖିଲେ ମନେ ହୁଏ ଯେପରି ସମସ୍ତ କେଶର ପ୍ରକାଶ ନ କରି ପଦ୍ମଟି ଫୁଟିବାକୁ ଉନ୍ମୁକ୍ତ ହୋଇ ରହନ୍ତୁ' । ଏଥିରେ କାଳିଦାସ ମନ୍ଦସ୍ମିତ ହସିରେ ଦାନ୍ତ ସାମାନ୍ୟ ଦେଖାଯାଏ, ତାହା ଦ୍ୱାରା ଶୋଭିତ ମାଳବିକାଙ୍କର ମୁଖର ବିକାଶୋନ୍ମୁଖ ପଦ୍ମ ସହିତ ସୁନ୍ଦର ଉପମା ଦେଇଅଛନ୍ତି । ବିଦୂଷକଙ୍କର ଟୀକା ଶୁଣି ଗଣଦାସ କହନ୍ତି 'ରଙ୍ଗଭୂମିରେ ନେପଥ୍ୟସହିତ ସଙ୍ଗୀତର ପ୍ରୟୋଗ ହୋଇଥିଲେ ଆପଣଙ୍କ ସଦୃଶ ମହାବ୍ରାହ୍ମଣଙ୍କୁ ଆମ୍ଭେମାନେ କପରି ଭୁଲି ଯାଆନ୍ତୁ ?' ତା ପରେ ମାଳବିକା ଫେରିଯାଆନ୍ତି । ବର୍ତ୍ତମାନ ହରଦତ୍ତଙ୍କର ଶିଷ୍ୟା ଓ ରାଜାଙ୍କର ତରୁଣ ସ୍ତ୍ରୀ ଇରାବତୀଙ୍କର ପାଳି । ମାତ୍ର ସେଥି ପ୍ରତି

ରାଜାଙ୍କର ଉଲେ ହେଲେ ଉତ୍ସୁକତା ନାହିଁ । ଏ ସମୟରେ ବୈତାଳିକ ନେପଥ୍ୟରେ ମଧ୍ୟାହ୍ନକାଳର ସୁନ୍ଦର ବର୍ଣ୍ଣନା କରନ୍ତି । ବିଦୂଷକ ତାହା ଶୁଣି କହନ୍ତି—'ବର୍ତ୍ତମାନ ଭୋଜନସମୟ ଉପସ୍ଥିତ ହେଲା, ଭୋଜନବେଳା ଅତିକ୍ରମ କଲେ ଦୋଷ ହୁଏ ବୋଲି ବୈଦ୍ୟମାନେ କହନ୍ତି' । ସମସ୍ତେ ହରଦତ୍ତଙ୍କ ଶିଷ୍ୟାଙ୍କର ପ୍ରୟୋଗ ପର ଦିନକୁ ରଖି ମଧ୍ୟାହ୍ନକୃତ୍ୟ କରିବାକୁ ଯାଆନ୍ତି । (୨ୟ ଅଙ୍କ) ଏହି ଅଙ୍କରେ ମାଳବିକାଙ୍କର ନାଟ୍ୟ, ରଙ୍ଗଭୂମିରେ ଅଧିକ ସମୟ ମାଳବିକାକୁ ରଖିବାକୁ ବିଦୂଷକଙ୍କର କୌଶଳ, ତଦ୍ୱାରା ରାଣୀଙ୍କର ଅନୁତାପ ଇତ୍ୟାଦି ବିଷୟ ଉତ୍ତମରୂପେ ରଚିତ ହୋଇଅଛି । ଇରାବତୀଙ୍କର ନାଟ୍ୟ ପ୍ରଦର୍ଶନ ସମ୍ବିଧାନର ଅନୁକୂଳ ନୁହେଁ ଭାବି କବି କୌଶଳରେ ପରିହାର କରି ଅଛନ୍ତି । ଏହାଦ୍ୱାରା କବିଙ୍କର ଗଭୀର ସଂଯମର ପରିଚୟ ମିଳେ । ମାଳ-ବିକାଙ୍କର ସୌନ୍ଦର୍ଯ୍ୟ, ନାଟ୍ୟ ଓ ଅବସ୍ଥାନଗୀତର ବର୍ଣ୍ଣନାରେ କାଳିଦାସଙ୍କର ସୂକ୍ଷ୍ମ ନିରୀକ୍ଷଣଗୀତ ଏବଂ ବୈତାଳିକ ପଦ୍ୟରେ ତାଙ୍କର ସୃଷ୍ଟି ବର୍ଣ୍ଣନାର କୌଶଳ ସ୍ପଷ୍ଟ ଦେଖାଯାଏ । ବିଦୂଷକଙ୍କର ବିନୋଦ ଖାଲି ହାସ୍ୟୋତ୍ପାଦକ ନୁହେଁ କିନ୍ତୁ କଥାବସ୍ତୁର ପରିପୋଷକ । ଦ୍ୱିତୀୟାଙ୍କର ଘଟନାର ଦୁଇ ତିନି ଦିନ ପରେ ତୃତୀୟାଙ୍କର ଆରମ୍ଭରେ ଗୋଟିଏ ଶ୍ଳୋକ ପ୍ରବେଶକର ଅବତରଣ ଦେଖାଯାଏ । ପଣ୍ଡିତକୌଶିକୀଙ୍କର ପରିଚାରିକା କୌଣସି କାରଣବଶତଃ 'ପ୍ରମଦବନ' ନାମକ ଉଦ୍ୟାନକୁ ଯାଆନ୍ତି । ତାଙ୍କ ସହିତ ଉଦ୍ୟାନପାଳିକାର ମିଳନ ହୁଏ । ସେମାନଙ୍କ କଥୋପ-କଥନରୁ ଆମ୍ଭମାନଙ୍କୁ କେତୋଟି ବିଷୟର ସୂଚନା ମିଳେ । (୧) ଇରାବତୀଙ୍କର ନାଟ୍ୟ ପ୍ରୟୋଗ ଦେଖି ପରିବ୍ରାଜିକା ନିର୍ଣ୍ଣୟ କଲେ ଯେ ଉଭୟ ଆଚାର୍ଯ୍ୟ ସ୍ୱକୀୟ ବିଦ୍ୟାରେ ପାରଙ୍ଗମ । ମାତ୍ର

ଗଣଦାସଙ୍କ ଉପଯୁକ୍ତ ଶିଷ୍ୟା ମିଳିଥିବାରୁ ସେ ବିଜୟୀ ହେଲେ ।
(୨) ରାଜା ଯେଉଁଦିନ ମାଳବିକାଙ୍କୁ ଦେଖିଲେ, ସେହି ଦିନଠାରୁ ତାଙ୍କ ପ୍ରତି ଅସକ୍ତ । ମାଳବିକାଙ୍କର ମଧ୍ୟ ଏହିପରି ଦଶା ଘଟିଛି ଯେ ଶୁଖି ଯାଇଥିବା ମାଳତୀମାଳା ପରି ମ୍ଳାନ ହୋଇଯାଇଛନ୍ତି ।
(୩) ଉଦ୍ୟାନରେ ବସନ୍ତ ଋତୁର ପ୍ରାଦୁର୍ଭାବ ହେଲେ ମଧ୍ୟ ସୁବର୍ଣ୍ଣ ଅଶୋକ ଗଛରେ ଫୁଲ ହୋଇ ନାହିଁ—ଏହି ବିଷୟ ଧାରିଣୀଙ୍କୁ ଜଣାଇବା ସକାଶେ ଉଦ୍ୟାନପାଳିକା ଅନ୍ତଃପୁରଂ ଅଭିମୁଖରେ ଯାଉଥିଲା । ତାପରେ ରାଜା ଓ ବିଦୂଷକଙ୍କର ସମ୍ଭାଷଣରୁ ଜଣାଯାଏ ଯେ ଇରାବତୀ ନିଜ ସଖୀ ନିପୁଣିକା ଦ୍ୱାରା ରାଜାଙ୍କୁ ଅନୁରୋଧ କରିଥିଲେ ଯେ ବସନ୍ତ ଋତୁର ଆରମ୍ଭ ହୋଇଅଛି, ସେ ରାଜାଙ୍କ ସହିତ ଦୋଳା ବିହାର କରିବାକୁ ଚାହାନ୍ତି । ରାଜା ମଧ୍ୟ ତାଙ୍କୁ ପ୍ରଥମେ ସମ୍ମତ ହୋଇ ଅଛନ୍ତି । ମାତ୍ର କାଳେ ତାଙ୍କର ମନ ମାଳବିକା ପ୍ରତି ଅସକ୍ତ ବୋଲି ରାଣୀ ଜାଣିଯିବେ ଭାବି ରାଜା ସେ ସ୍ଥାନକୁ ଯିବାକୁ ଚାହୁଁ ନ ଥିଲେ । ବିଦୂଷକଙ୍କର ଅନୁରୋଧରେ ସେ ପ୍ରମଦବନଅଭିମୁଖରେ ଯାତ୍ରା କରନ୍ତି । ଉଦ୍ୟାନରେ ଉପସ୍ଥିତ ହୋଇ ରାଜା ବସନ୍ତ ଋତୁର ଶୋଭା ବର୍ଣ୍ଣନ କରନ୍ତି । ଏହି ବର୍ଣ୍ଣନା ଅତୀବ ଉତ୍କୃଷ୍ଟ । ଏ ସମୟରେ ମାଳବିକା ମଧ୍ୟ ସେଠାକୁ ଆସନ୍ତି । ତାଙ୍କର ସ୍ୱଗତ ଭାଷଣରୁ ଜଣାଯାଏ ଯେ ବିଦୂଷକଙ୍କର ଧୂର୍ତ୍ତତା ହେତୁ ଧାରିଣୀ ଦୋଳାରୁ ଖସିପଡ଼ିଲେ ଏବଂ ତାଙ୍କର ପାଦରେ ଆଘାତ ହେଲା । ଏହେତୁ ସୁବର୍ଣ୍ଣ-ଅଶୋକରେ ଫୁଲ ହେବା ସକାଶେ ଆବଶ୍ୟକ ପାଦ ପ୍ରହାର କରିବାକୁ ମାଳବିକାଙ୍କୁ ପଠାଇଛନ୍ତି ଏବଂ ପାଞ୍ଚ ଦିନ-ମଧ୍ୟରେ ଫୁଲ ହେଲେ ତାଙ୍କର ଇଚ୍ଛା ପୂର୍ଣ୍ଣ କରିବେ ବୋଲି

ବାଗ୍‌ବାନ କରି ଅଛନ୍ତି । ମାଳବିକା ଏକ ଶିଳାଉପରେ ବସନ୍ତି । ତାଙ୍କୁ ଦୂରରୁ ଦେଖି ରାଜା ଓ ବିଦୂଷକ ଅଦୃଶ୍ୟଭାବେ ତାଙ୍କ-ପାଖରେ ଉପସ୍ଥିତ ହୁଅନ୍ତି । ଏ ସମୟରେ ପାଦରେ ଅଳତା ଲଗାଇ ନୂପୁର ପିନ୍ଧାଇବା ସକାଶେ ତାଙ୍କର ସଖୀ ବକୁଳାବଳିକା ସେଠାରେ ଉପସ୍ଥିତ ହୁଏ । ରାଜା ଉଦ୍ୟାନକୁ ଯାଇଛନ୍ତି ବୋଲି ଶୁଣି ଇରାବତୀ ଓ ତାଙ୍କର ଦାସୀ ନିପୁଣିକା ମଧ୍ୟ ସେଠାରେ ଉପସ୍ଥିତ ହୁଅନ୍ତି ଏବଂ ମାଳବିକା ଓ ବକୁଳାବଳିକାର କଥୋପକଥନ ଅଲକ୍ଷିତଭାବେ ଶୁଣନ୍ତି । ବିଦୂଷକ ମାଳବିକାଙ୍କର ରାଜାଙ୍କ ପ୍ରତି ଅନୁରାଗ ଜନ୍ମାଇବା ସକାଶେ ବକୁଳାବଳିକାକୁ କହିଥାନ୍ତି । ସେ ହେତୁ ସେ ଅଳତା ଲଗାଇଲା ବେଳେ ଏବଂ ନୂପୁର ପିନ୍ଧାଇଲାବେଳେ ଅତି ଚତୁରତା ସହିତ ନିଜ କାର୍ଯ୍ୟ ସାଧନ କରେ । ମାଳବିକା ଧାରିଣୀଙ୍କୁ ଭୟ କରନ୍ତି । ସେତେବେଳେ ସେ କହେ 'ଭ୍ରମର ଆକ୍ରମଣ ଭୟ ଅଛି ବୋଲି କି କିଏ ବସନ୍ତସର୍ବସ୍ୱ ସହକାରମଞ୍ଜରୀକୁ କାନରେ ଅଳଙ୍କାର ରୂପରେ ନ ଲଗାଏ ?' ପାଦ ଅଳଙ୍କୃତ କରି ସାରି ସେ ବ୍ୟଙ୍ଗ କରି କହିଲା —

ବକୁଳାବଳିକା — **एष उपारूढराग उपभोगक्षमः पुरतस्ते वर्त्तते ।**

ମାଳବିକା — **(सहर्षम्) किं भर्त्ता ?**

ବକୁଳାବଳିକା — **(सस्मितम्) न तावद् भर्त्ता एषोऽशोकशाखा-वलम्बी पल्लवगुच्छः । अवतंसयैनम् ।**

ଏହି ସମ୍ଭାଷଣରେ ରାଜା ଓ ଅଶୋକପଲ୍ଲବ — ଏହି ଦୁହିଙ୍କ ଉଦ୍ଦେଶରେ ପ୍ରଯୁକ୍ତ ରାଗ ଓ ଉପଭୋଗ — ଏହି ଦୁଇଟି

ଶ୍ଳେଷଯୁକ୍ତ ଶବ୍ଦ ପ୍ରୟୋଗ କରି ବକୁଳାବଳିକା ବଡ଼ ଚତୁରତାସହ- କାରେ ମାଳବିକାଙ୍କର ମୁଖରେ ପ୍ରେମର ଅଭିବ୍ୟକ୍ତି କରାଉଛନ୍ତି । ରାଜା ଅଲକ୍ଷିତଭାବେ ରହି ଏ ସମସ୍ତ ଶୁଣୁଥାନ୍ତି ଏବଂ ଆନନ୍ଦ ଅନୁଭବ କରୁଥାନ୍ତି । ରାଜାଙ୍କୁ ପ୍ରକାଶ କରିବା ସକାଶେ ବିଦୂଷକ ସୁଯୋଗ ଖୋଜୁଥିଲେ । ସେ ଆଗେ ବାହାରି କହିଲେ—'କି ହୋ, ଆମ ରାଜାଙ୍କର ପ୍ରିୟ ବନ୍ଧୁସ୍ୱ ଅଶୋକଙ୍କୁ ଲତ ମାରିବା କଅଣ ଉଚିତ ହେଉଅଛି?' ତାପରେ 'ରାଣୀଙ୍କ ଆଜ୍ଞାରେ ସେପରି ସେ କରୁଅଛନ୍ତି, ଆପଣ ତାଙ୍କୁ କ୍ଷମା କରନ୍ତୁ' କହି ବକୁଳାବଳିକା ମାଳବିକାଙ୍କୁ ନେଇ ରାଜାଙ୍କୁ ନମସ୍କାର କରାଉଛନ୍ତି । ରାଜା 'ମୁଁ ବହୁତ ଦିନରୁ ଆନନ୍ଦରୂପ ପୁଷ୍ପ ପାଇ ନାହିଁ, ତୁମେ ନିଜ ସ୍ପର୍ଶାମୃତରେ ମୋର ସେହି ଇଚ୍ଛା ପୂର୍ତ୍ତି କର' ବୋଲି କହିବାମାତ୍ରେ ଇରାବତୀ ଉପସ୍ଥିତ ହୋଇ ରସଭଙ୍ଗ କରି ଦିଅନ୍ତି । 'ତୁମେ ଅସିବାପର୍ଯ୍ୟନ୍ତ ମୁଁ ଏମାନଙ୍କ ସହିତ ଆଳାପ କରି ମନ ଭୁଲାଉଥିଲି' ବୋଲି କହି ରାଜା ନିଜ ଅନୁରାଗ ଲୁଚାଇବାକୁ ଚେଷ୍ଟା କରନ୍ତି । କିନ୍ତୁ ସେଥିରେ କଅଣ ଇରାବତୀଙ୍କ ମନ ମାନିବ ? ସେ ଅଣ୍ଟାରୁ ରସନା ବାହାର କରି ରାଜାଙ୍କୁ ମାରିବାକୁ ଯାଆନ୍ତି ଏବଂ ରାଜା ତାଙ୍କର ପାଦତଳେ ପଡ଼ନ୍ତି । ତଥାପି ଇରାବତୀ ରାଜାଙ୍କୁ ଉପେକ୍ଷା କରି ନିଜ ଦାସୀଙ୍କ ସହିତ ଫେରି ଯାଆନ୍ତି । ( ତୃତୀୟ ଅଙ୍କ ) ଚତୁର୍ଥାଙ୍କରେ ରାଜା ଓ ବିଦୂଷକଙ୍କ କଥୋପକଥନରୁ ଜଣାଯାଏ ଯେ ଇରାବତୀଙ୍କର ଅଭିଯୋଗରେ ଧାରଣୀ ମାଳବିକା ଓ ବକୁଳାବଳିକାଙ୍କୁ ଏକ ଗର୍ଭଗୃହରେ ବନ୍ଦୀକରି ରଖିଛନ୍ତି ଏବଂ ତାଙ୍କର ସର୍ପମୁଦ୍ରାଙ୍କିତ ମୁଦ୍ରିକା ନ ଦେଖାଇଲେ ସେମାନଙ୍କୁ ଛାଡ଼ିବାକୁ ହେବ ନାହିଁ ବୋଲି ଦ୍ୱାରପାଳକୁ ନିର୍ଦ୍ଦେଶ ଦେଇଛନ୍ତି ।

ରାଜାଙ୍କ ଅନୁରୋଧରେ ବିଦୂଷକ ମାଳବିକାଙ୍କର ମୁକ୍ତିଉପାୟ ଭାବି ଭାବି ରାଜାଙ୍କୁ ଧାରଣୀଦେବୀଙ୍କ ସ୍ୱାସ୍ଥ୍ୟବିଷୟ ବୁଝିବା ସକାଶେ ପଠାଇଲେ ଏବଂ ନିଜେ ଶୂନ୍ୟ ହସ୍ତରେ ରାଣୀଙ୍କ ପାଖକୁ ଗଲେ ନାହିଁ ଭାବି ଫୁଲ ଆଣିବାକୁ ଉଦ୍ୟାନକୁ ଗଲେ ବୋଲି ପଛରେ ରହିଲେ । ସେ ପ୍ରତିହାରୀଙ୍କୁ ମଧ୍ୟ ନିଜର ଏହି କୌଶଳରେ ଅଭିପ୍ରେତ କରି ଥିଲେ । ଧାରଣୀ ଓ ପରିବ୍ରାଜିକା ବାତଗୃହରେ ଆଳାପ କରୁଥିଲେ, ରାଜା ସେଠାରେ ଉପସ୍ଥିତ ହେଲେ । ସେମାନେ ଅଳ୍ପ ସମୟ ସମ୍ଭାଷଣ କରିଛନ୍ତି । ଏ ସମୟରେ ବିଦୂଷକ ଯଜ୍ଞୋପବୀତରେ ନିଜର ବୁଢ଼ା ଅଙ୍ଗୁଳି ଦୃଢ଼ କରି ବାନ୍ଧି ଉଦ୍‌ବିଗ୍ନଭାବେ ପ୍ରବେଶ କରି କହିଲେ—'ରାଣୀଙ୍କର ଦର୍ଶନ ସକାଶେ ଫୁଲ ତୋଳିବା ଆଣିବାକୁ ପ୍ରମଦବନକୁ ଯାଇଥିଲି । ଅଶୋକଫୁଲ ତୋଳିବା ସକାଶେ ମୁଁ ତାର ଶାଖା ଉପରେ ଦକ୍ଷିଣ ହାତ ପକାଇଛି କି ନାହିଁ, ହଠାତ୍ ଏକ ସାପ କୋରଡ଼ରୁ ବାହାରି ଏହି ଦେଖ କପର୍ଦ୍ଦି କାମୁଡ଼ି ଦେଲା' ଏହା ଶୁଣି ରାଣୀଙ୍କର ବିଶେଷ ଦୁଃଖ ହେଲା । ସେ ଧ୍ରୁବସିଦ୍ଧିନାମକ ବୈଦ୍ୟଙ୍କ ସମୀପକୁ ପଠାଇଦେଲେ । ପ୍ରତିହାରୀ ସେହି ବୈଦ୍ୟଙ୍କ ପାଖରୁ ଖବର ଆଣିଲା ଯେ 'କୌଣସି ସର୍ପମୁଦ୍ରା ଯଦି ମିଳେ ତେବେ ତାହା ଦ୍ୱାରା ମନ୍ତ୍ର କଲେ ବିଷ ଦୂର ହୋଇ ପାରେ । ସେପରି ମୁଦ୍ରିକା ଥିଲେ ପଠାନ୍ତୁ ।' ରାଣୀ ନିଜର ସର୍ପମୁଦ୍ରାଙ୍କିତ ମୁଦି ଟି ଏହି କାର୍ଯ୍ୟ ସକାଶେ ଦେଲେ ଏବଂ କାର୍ଯ୍ୟ ଶେଷ ହେଲେ ଫେରାଇ ଦେବାକୁ ନିର୍ଦ୍ଦେଶ ଦେଲେ । ଏହା ପରେ ରାଜାଙ୍କର ଗ୍ରହ ବାଧା ଦୂର କରିବା ସକାଶେ ସମସ୍ତ ବନ୍ଦୀମାନଙ୍କୁ ମୁକ୍ତ କରିବାକୁ ଜ୍ୟୋତିଷୀମାନେ ଘୋଷଣା କଲେ । ତଥାପି ନରପତିଙ୍କର ମନରେ

କଷ୍ଟ ହେବ ଭାବି ଧାରିଣୀ ମାଳବିକା ଓ ବକୁଳାବଳିକାଙ୍କୁ ମୁକ୍ତ କରିବାକୁ ସାହସ କରିପାରିଲେ ନାହିଁ । 'ଏହି ସେହି ମୁଦ୍ର ଦେଖ' କହି ସର୍ପମୁଦ୍ରାଙ୍କିତ ମୁଦ୍ରିକା ଦେଖାଇ ବିଦୂଷକ ମାଳବିକାଙ୍କୁ ମୁକ୍ତ କରି ପ୍ରମଦବନକୁ ପଠାଇଲେ । ରାଜା ମଧ୍ୟ ଅନ୍ୟାନ୍ୟ ରାଜକାର୍ଯ୍ୟ ଦେଖିବେ କହି ରାଣୀଙ୍କ ଠାରୁ ବିଦାୟ ନେଇ ଗୁପ୍ତ ମାର୍ଗରେ ସେଠାରେ ଉପସ୍ଥିତ ହେଲେ । ବିଦୂଷକ ଆସି ମଧ୍ୟ ହାଜର ହେଲେ । ରାଜାଙ୍କ ସହିତ ମାଳବିକାଙ୍କୁ ମିଳାଇଦେଇ ବିଦୂଷକ ଓ ବକୁଳାବଳିକା ସେଠାରୁ ଚାଲି ଆସିଲେ । ବିଦୂଷକ ଏକ ଶିଳାତଳଉପରେ ବସିଲେ । ତାଙ୍କୁ ନିଦ ଆସିଗଲା । ଇରାବତୀଙ୍କର ଦାସୀ ଏହା ଦେଖି ଇରାବତୀଙ୍କୁ ଜଣାଇଲେ । ଇରାବତୀ ବିଦୂଷକଙ୍କର ସ୍ୱାସ୍ଥ୍ୟ କିପରି ଅଛି ବୁଝିବା ନିମନ୍ତେ ଦାସୀ ସହିତ ସେଠାରେ ଉପସ୍ଥିତ ହେଲେ । ଏ ସମୟରେ ବିଦୂଷକ 'ମାଳବିକେ ତୁମେ ଇରାବତୀଙ୍କୁ ମଧ୍ୟ ଟପିଯାଅ' ବୋଲି ସ୍ୱପ୍ନରେ କହୁଥିଲେ । ଏହା ଶୁଣି ଇରାବତୀଙ୍କର କ୍ରୋଧ ହେଲା । ଇରାବତୀଙ୍କର ଦାସୀ ବିଦୂଷକଙ୍କୁ ଡରାଇବାକୁ ସାପ ପରି ବଙ୍କା ଏକ କାଠ ବିଦୂଷକ ଉପରକୁ ଫିଙ୍ଗିଦେଲେ । ବିଦୂଷକ ହଠାତ୍ ଜୋର ରଡ଼ି ଛାଡ଼ିଲେ । ଏହି ରଡ଼ି ଶୁଣି ରାଜା, ମାଳବିକା ଓ ବକୁଳାବଳିକା ସେ ସ୍ଥାନକୁ ଆସିଲେ । ଏମାନଙ୍କୁ ଦେଖି ଇରାବତୀଙ୍କର କ୍ରୋଧର ସୀମା ରହିଲା ନାହିଁ । ସେ ଏ ସମସ୍ତ ଜଣାଇଦେବା ସକାଶେ ନିଜ ଦାସୀକୁ ଧାରିଣୀଙ୍କ ପାଖକୁ ପଠାଇଲେ ।

ରାଜା ଏ ବିପଦରୁ ନିଜକୁ କିପରି ମୁକ୍ତ କରିବେ ବୋଲି ଚିନ୍ତାଗ୍ରସ୍ତ ହେଲେ । ଏ ସମୟରେ ଧାରିଣୀଙ୍କର ଜ୍ୟେଷ୍ଠ ଝିଅ ବସୁମତୀ ପିଙ୍ଗଳବାନରକୁ ଦେଖି ମୂର୍ଚ୍ଛିତ ହୋଇ ଯାଇଛନ୍ତି

ବୋଲି ଖବର ରାଜାଙ୍କ ପାଖରେ ପହଞ୍ଚିଲା । ଏହା ଶୁଣି ଇରାବତୀ ରାଜକୁମାରୀଙ୍କୁ ଆଶ୍ୱାସନା ଦେବା ସକାଶେ ରାଜାଙ୍କୁ ସେଠାରୁ ପଠାଇଦେଲେ । ଏହା ଦେଖି ବିଦୂଷକ ମନେ ମନେ କହିଲେ 'ଧନ୍ୟ ରେ ପିଙ୍ଗଳବାନର ଧନ୍ୟ, ତୁ ଠିକ୍ ସମୟରେ ନିଜ ସ୍ୱାମୀଙ୍କର ରକ୍ଷା କରିବାକୁ ଆସିଅଛୁ ।' ଏ ସମୟରେ ନେପଥ୍ୟରୁ 'ଆଶ୍ଚର୍ଯ୍ୟ ! ଆଶ୍ଚର୍ଯ୍ୟ ! ପାଞ୍ଚଦିନ ନ ପୂରୁଣୁ ସୁବର୍ଣ୍ଣ ଅଶୋକରେ କଳିକା ଆସିଗଲା ଏ ସମ୍ବାଦ ରାଣୀଙ୍କୁ ଜଣାଇବାକୁ ହେବ ।' ଏହିପରି ଉଦ୍ୟାନ-ପାଳିକାର ଶବ୍ଦ ଶୁଣାଗଲା । ତାହେଲେ ରାଣୀ ନିଜ ବାକ୍ୟ ରକ୍ଷା କରି ତୁମର ମନୋରଥ ପୂର୍ଣ୍ଣ କରିବେ ବୋଲି ବକୁଳାବଳିକା ମାଳବିକାଙ୍କୁ ଆଶ୍ୱାସନା ଦେଲା । ସେମାନେ ମଧ୍ୟ ଉଦ୍ୟାନ-ପାଳିକା ସହିତ ରାଣୀଙ୍କ ପାଖକୁ ଗଲେ । ତୃତୀୟ ଓ ଚତୁର୍ଥ ଅଙ୍କରେ ଅନେକ ପ୍ରସଙ୍ଗ ରଖିଥିବାରୁ ନାଟକ କଥାର ଗତି କ୍ଷିପ୍ର ହେବାର ଦେଖାଯାଏ । ଏଥିରେ ଇରାବତୀ ଅତର୍କିତ-ଭାବରେ ଆସି ରାଜା ଓ ମାଳବିକାଙ୍କୁ ଏକାନ୍ତରେ ଦେଖିଲେ । ଏହାର ପୁନରୁକ୍ତି ହୋଇଅଛି । ମାଳବିକାଙ୍କର ମୁକ୍ତି ସକାଶେ ବିଦୂଷକଙ୍କର ପ୍ରଯତ୍ନ ଅତ୍ୟନ୍ତ ପ୍ରଶଂସନୀୟ । ସର୍ପମୁଦ୍ରାଙ୍କିତ ମୁଦ୍ରିକାର ଆଗରେ ଉପଯୋଗ ହେବ ଭାବି କବି ତାକୁ ପ୍ରଥମାଙ୍କରେ ଉଲ୍ଲେଖ କରି ଅଛନ୍ତି । ତହିଁରୁ ତାଙ୍କର ରଚନା-କୌଶଳର ପରିଚୟ ମିଳେ । ବିଦୂଷକ ଶିଳାତଳ ଉପରେ ବସିବା-ମାତ୍ରେ ନିଦ୍ରାମଗ୍ନ ହେବା ଏବଂ ସ୍ୱପ୍ନରେ ବକିବକି ହେବା ଅସ୍ୱାଭାବିକ ବୋଧ ହୁଏ । କିନ୍ତୁ 'ସ୍ୱପ୍ନବାସବଦତ୍ତ'ରେ ଭାସ ମଧ୍ୟ ଏହି ପରି ଏକ ପ୍ରସଙ୍ଗର ଅବତାରଣା କରି ଅଛନ୍ତି । ଏ ହେତୁ ଏ ବିଷୟରେ ଖାଲି କାଳିଦାସ ଦୋଷୀ ନୁହନ୍ତି । ବିଦୂଷକଙ୍କର

ବାକ୍ୟ ସବୁବେଳେ ବକ୍ରୋକ୍ତିପୂର୍ଣ୍ଣ । ଜଳ ଅଗରେ ମାଳବିକାଙ୍କର ପ୍ରୁତ ଶୁଣି ଇରାବତୀଙ୍କର ଅଦ୍ଭୁତ ପରିବର୍ତ୍ତନ ଏକ ଦର୍ଶନୀୟ ବସ୍ତୁ । (୪ର୍ଥ ଅଙ୍କ )

ପଞ୍ଚମାଙ୍କର ଆରମ୍ଭରେ କ୍ଷୁଦ୍ର ପ୍ରବେଶକରେ ଉଦ୍ୟାନ-ପାଳିକା ଓ ଧାରିଣୀଙ୍କର ସେବକ ସାରସକର କଥୋପକଥନରୁ ଜଣାଯାଏ— ଧାରିଣୀଙ୍କର ପୁତ୍ର ବସୁମିତ୍ର ଅଶ୍ୱମେଧଯାଗର ଅଶ୍ୱରକ୍ଷା ସକାଶେ ନିଯୁକ୍ତ ହୋଇଥିଲେ । ତାଙ୍କର ଦୀର୍ଘଜୀବନ କାମନା କରି ରାଣୀ ଧାରିଣୀ ପ୍ରତିଦିନ ବ୍ରାହ୍ମଣମାନଙ୍କୁ ସ୍ୱର୍ଣ୍ଣଦାନ କରନ୍ତି । ରାଣୀଙ୍କର ଭାଇ ବୀରସେନ ବିଦର୍ଭରାଜାଙ୍କୁ ପରାଜିତ କରି ମାଧବସେନଙ୍କୁ ମୁକ୍ତ କରିଛନ୍ତି ଏବଂ ସେ ବହୁମୂଲ୍ୟ ରତ୍ନ ଓ ଶିଳ୍ପକୁଶଳା ଏକ ଦାସୀକୁ ଭେଟିସ୍ୱରୂପ ପଠାଇଛନ୍ତି । ଏହା ପରେ ଧାରଣୀ ପୁଷ୍ପିତ ସ୍ୱର୍ଣ୍ଣାଶୋକକୁ ଦେଖିବା-ସକାଶେ ଅଳଙ୍କୃତା ମାଳବିକା ଓ ପରିବ୍ରାଜିକାଙ୍କ ସହିତ ପ୍ରମଦ-ବନକୁ ଗଲେ ଏବଂ ରାଜାଙ୍କୁ ସେଠାକୁ ଡାକି ପଠାଇଲେ । ସେ ସମସ୍ତେ ପ୍ରମଦବନରେ ଏକତ୍ରିତ ହେଲାପରେ କଞ୍ଚୁକୀ ମାଧବସେନ ପଠାଇଥିବା ଦୁଇଜଣ ସଙ୍ଗୀତନିପୁଣା ଦାସୀଙ୍କୁ ଉପସ୍ଥାପିତ କଲେ । ସେମାନେ ଆସିବା ମାତ୍ରେ ମାଳବିକାଙ୍କୁ ପ୍ରଭୁଙ୍କର ଭଗିନୀ ବୋଲି ପରିଚୟ ପ୍ରଦାନ କଲେ । ମାଧବସେନଙ୍କୁ ବନ୍ଦୀ କରି ନେଲାବେଳେ ସୁମତିନାମକ ତାଙ୍କର ମନ୍ତ୍ରୀ ତାଙ୍କୁ ଗୁପ୍ତମାର୍ଗରେ ସେଠାରୁ ନେଇଯାଇଥିଲେ ବୋଲି ପ୍ରକାଶି କଲେ । ପରିବ୍ରାଜିକା ତା ପରବର୍ତ୍ତୀ ଘଟଣା ପ୍ରକାଶ କଲେ—ଆର୍ଯ୍ୟ ସୁମତି ମୋର ବଡ଼ଭାଇ । ସେ ମାଳବିକାଙ୍କୁ ନେଇ ଏକ ବ୍ୟବସାୟୀଙ୍କ

ଦଳରେ ମିଶି ଅରଣ୍ୟ ମାର୍ଗରେ ଯିବାବେଳେ ଚୋରମାନଙ୍କଦ୍ୱାରା ଆକ୍ରାନ୍ତ ହେଲେ । ସେମାନଙ୍କ ସହିତ ଯୁଦ୍ଧ କରି ମୋର ଭାଇ ମୃତ୍ୟୁମୁଖରେ ପତିତ ହେଲେ । ତାହା ଦେଖି ମୋର ମୂର୍ଚ୍ଛା ହୋଇଗଲା । ଯେତେବେଳେ ମୁଁ ଚେତନା ପାଇଲି, ଦେଖିଲି— ମାଳବିକା ସେଠାରେ ନାହାନ୍ତି । ପରେ ଭାଇଙ୍କର ଶବସତ୍କାର କରି ଏହି ଦେଶକୁ ଆସି ଗେରୁଆ ବସନ ଧାରଣ କଲି । ବୀରସେନ ମାଳବିକାଙ୍କୁ ମୁକ୍ତ କରି ଦାସୀରୂପରେ ଧାରିଣୀ ଦେବୀଙ୍କ ସମୀପକୁ ପଠାଇଦେଲେ । ଏହାଙ୍କ ପିତାଙ୍କ ଜୀବଦ୍ଦଶାରେ ଏକ ଭବିଷ୍ୟଦ୍‌ବକ୍ତା କହିଥିଲେ ଯେ ସେ ଏକବର୍ଷ ପର୍ଯ୍ୟନ୍ତ ଦାସୀ ହୋଇ ରହିବେ ତାଙ୍କର କଥା ଠିକ୍ ଘଟିଲା ବୋଲି ମୁଁ ଏପର୍ଯ୍ୟନ୍ତ ଏ ବିଷୟ କାହାକୁ କହି ନଥିଲି । ମାଳବିକା ଦାସୀ ନୁହେଁ, ରାଜ-କନ୍ୟା ବୋଲି ଜାଣିପାରି ତାଙ୍କ ସହିତ ଦାସୀପରି ବ୍ୟବହାର କରିଥିବାରୁ ରାଣୀଙ୍କର ପଶ୍ଚାତ୍ତାପ ହେଲା ଏବଂ ସେ ରାଜାଙ୍କ ସହିତ ତାଙ୍କର ବିବାହ କରାଇବେ ବୋଲି ସ୍ଥିର କଲେ । ଅମାତ୍ୟ-ବର୍ଗଙ୍କର ପରାମର୍ଶ ଅନୁଯାୟୀ ରାଜା ବିଦର୍ଭ ଦେଶକୁ ଯଜ୍ଞସେନ ଓ ମାଧବସେନଙ୍କୁ ଦୁଇଭାଗ କରି ବାଣ୍ଟିଦେଲେ ଏବଂ ବର୍ଦ୍ଧା ନାମକ ନଦୀକୁ ଉଭୟ ରାଜ୍ୟର ସୀମାସ୍ୱରୂପ ନିର୍ଦ୍ଦେଶ କରିଦେଲେ । ଏ ସମୟରେ ସେନାପତି ପୁଷ୍ୟମିତ୍ର ପାଟଳୀପୁତ୍ରରୁ କହି ପଠାଇଲେ ଯଜ୍ଞାଶ୍ୱକୁ ସିନ୍ଧୁନଦୀର ଦକ୍ଷିଣତୀରବାସୀ ଯବନମାନେ ବାନ୍ଧି ରଖିଥିଲେ । କିନ୍ତୁ କୁମାର ବସୁମିତ୍ର ସେମାନଙ୍କୁ ପରାସ୍ତ କରି ଯଜ୍ଞାଶ୍ୱକୁ ମୁକ୍ତ କରି ଆଣି ଅଛନ୍ତି । ତୁମେ କ୍ରୋଧ ପରିହାରକରି ସମସ୍ତ ରାଣୀମାନଙ୍କୁ ସଙ୍ଗରେ ନେଇ ଆସି ଯଜ୍ଞୋତ୍ସବରେ ଯୋଗ ଦେବାକୁ ଏଠାକୁ ଆସିବ । ଧାରିଣୀ ନିଜ ପୁତ୍ରର ପରାକ୍ରମ ଶୁଣି

ବିଶେଷ ଆନନ୍ଦିତ ହେଲେ ଏବଂ ସେ ଇରାବତୀଙ୍କର ଅନୁମତି ନେଇ ମାଳବିକାଙ୍କୁ ରାଜାଙ୍କ ହସ୍ତରେ ଅର୍ପଣ କଲେ । ରାଜା ମାଳବିକାଙ୍କୁ ଗ୍ରହଣ କରିବାକୁ ଲଜ୍ଜିତ ହେଲେ । ସେତେବେଳେ ରାଣୀ ଟିକିଏ ହସିଦେଇ କହିଲେ 'ତେବେ କଅଣ ମୋତେ ଅବଜ୍ଞା କରୁଅଛ ?' ଏହା ଶୁଣି ବିଦୂଷକ କହିଲେ । 'ରାଣୀ, ଏହା ଜଣାଶୁଣା କଥା, ବିବାହସମୟରେ ପ୍ରତ୍ୟେକ ବର ଲଜ୍ଜିତ ହୋଇଥାନ୍ତି' । ତା ପରେ ପରିବ୍ରାଜିକା ମାଧବସେନଙ୍କ ପାଖକୁ ଯିବାକୁ ଅନୁମତି ଚାହିଁଲେ ମାତ୍ର ରାଜା ଓ ରାଣୀ ତାଙ୍କ ପାଖେ ରହିବାକୁ ଅନୁରୋଧ କଲେ । ପରେ ଭରତବାକ୍ୟ ସହ ନାଟକ ସମାପ୍ତ ହୋଇଅଛି । (୫ମ ଅଙ୍କ) ଏହି ଅଙ୍କରେ ଗୋଟାକ ପରେ ଗୋଟାଏ ଏହିପରି ଘଟନା ଘଟିଛି ଯାହା' ଫଳରେ ମାଳବିକାଙ୍କୁ ରାଜାଙ୍କ ସହ ବିବାହ କରାଇବା ଛଡ଼ା ଧାରିଣୀ ଅନ୍ୟ ଉପାୟ ଦେଖିପାରୁ ନାହାନ୍ତି । ପୂର୍ବ ପ୍ରତିଶ୍ରୁତି-ଅନୁଯାୟୀ ପାଞ୍ଚଦିନ ମଧ୍ୟରେ ନିଜ ପ୍ରିୟ ସୁବର୍ଣ୍ଣ ଅଶୋକରେ କଳିକୋଦ୍‌ଗମ ହେବା ହେତୁ ମାଳବିକାଙ୍କର ମନୋରଥ ପୂର୍ଣ୍ଣ କରିବା, ତା ପରେ ମାଳବିକା ହୀନଜାତୀୟା ନୁହନ୍ତି, ରାଜକନ୍ୟା ତାଙ୍କ ପ୍ରତି ଅନ୍ୟାୟ ମନେ କରି ଖରାପ ବ୍ୟବହାର କରିଅଛନ୍ତି ଏବଂ ତାଙ୍କୁ ଗର୍ଭଗୃହରେ ବନ୍ଦୀ କରି ରଖି ଅନ୍ୟାୟ କରି ଅଛନ୍ତି ବୋଲି ଧାରିଣୀଙ୍କ ମନରେ ପଶ୍ଚାତ୍ତାପ ହୋଇଛି । ଏପରି ସମୟରେ ଅଳ୍ପ ବୟସ୍କ ନିଜ ପୁତ୍ରର ଅସାଧାରଣ ପରାକ୍ରମ ଶୁଣି ଆନନ୍ଦରେ ବିଭୋର ହୋଇ ସ୍ତ୍ରୀଜନସୁଲଭ ମାତ୍ସର୍ଯ୍ୟ ପାଶୋରି ଯାଇ ମାଳବିକାଙ୍କୁ ରାଜାଙ୍କ ହସ୍ତରେ ଅର୍ପଣ କରିବାକୁ ପ୍ରସ୍ତୁତ ହୋଇଛନ୍ତି ।

'ମାଳବିକାଗ୍ନିମିତ୍ର'ର ଉପାଖ୍ୟାନ ଜଟିଳ ହେଲେ ମଧ୍ୟ ତହିଁରେ ବୈଚିତ୍ର୍ୟପୂର୍ଣ୍ଣ ପ୍ରସଙ୍ଗର ଅଭାବ ନାହିଁ । ବିଦୂଷକଙ୍କର ମାଳବିକାଙ୍କୁ ରାଜାଙ୍କ ସମ୍ମୁଖକୁ ଆଣିବା ଏବଂ ପରିଶେଷରେ ବନ୍ଦୀଶାଳାରୁ ତାଙ୍କୁ ମୁକ୍ତ କରିବା ସକାଶେ ଚେଷ୍ଟା କରିବା ଉଲ୍ଲେଖଯୋଗ୍ୟ । ଏହି ନାଟକରେ ତାଙ୍କର ରସିକତା କେବଳ ଖିଅପିଆରେ ଅବଦ୍ଧ ନ ରହି ଉପାଖ୍ୟାନ ସହିତ ସମ୍ବନ୍ଧ ଓ ମନୋହର ହୋଇଅଛି । କାଳିଦାସ ନାଟକର ବିଷୟବସ୍ତୁ କେଉଁଠାରୁ ଆହରଣ କରି ଅଛନ୍ତି—ଏହା ଠିକ୍ କରି କହି ହେଉନାହିଁ । ତେବେ ପୁଷ୍ୟମିତ୍ରଙ୍କର ଅଶ୍ୱମେଧଯାଗ, ବସୁମିତ୍ରଙ୍କ କର୍ତ୍ତୃକ ଯବନମାନଙ୍କର ପରାଜୟ, ବିଦର୍ଭ ଅଧିପତିଙ୍କ ପରାଭବ, ତାଙ୍କ ରାଜ୍ୟର ଦୁଇଭାଗରେ ବିଭାଗ, ଏବଂ ତାଙ୍କ ପରିବାରର ରାଜକନ୍ୟାଙ୍କର ଅଗ୍ନିମିତ୍ରଙ୍କ ସହିତ ବିବାହ—ଏ ସମସ୍ତ ଘଟନା ଐତିହାସିକ ଦେଖାଯାଏ । ପୁଷ୍ୟମିତ୍ରଙ୍କର ସେନାପତିପଦବୀ ଓ ଅଶ୍ୱମେଧ ଯାଗାନୁଷ୍ଠାନ—ଏହି ଦୁଇଟି ବିଷୟ ଐତିହାସିକ—ଏ ବିଷୟରେ କାହାରି ହେଲେ ସନ୍ଦେହ ହେବ ନାହିଁ । କାରଣ ଏହି ଦୁଇଟି ବିଷୟ ଅଯୋଧ୍ୟାର ଶୁଙ୍ଗକାଳୀନ ଶିଳାଲେଖରେ ସ୍ପଷ୍ଟଭାବେ ଉଲ୍ଲିଖିତ ହୋଇଅଛି । ସମ୍ଭବତଃ କାଳିଦାସ ତାଙ୍କ ସମୟରେ ଅଗ୍ନିମିତ୍ରଙ୍କର ବିଳାସପ୍ରିୟତା ପରମ୍ପରାଗତ କିମ୍ବଦନ୍ତୀରୁ ଲୋକମାନଙ୍କର ମୁହଁରୁ ଶୁଣିଥିଲେ । ଏହି ନାଟକର ଉପାଖ୍ୟାନ ରଚନାରେ ହୁଏତ ଗୁଣାଢ଼୍ୟଙ୍କର ବୃହତ୍କଥାରୁ ସାହାଯ୍ୟ ପାଇଥିଲେ । ଏହି 'ବୃହତ୍କଥା' ପୈଶାଚୀ ଭାଷାରେ ଲେଖା ହୋଇଥିଲା ! ଆଜି କାଲି ତାହା ମିଳୁ ନାହିଁ । କିନ୍ତୁ ତାର ସାରାଂଶରୂପ ଦୁଇଟି ଗ୍ରନ୍ଥ—ସୋମଦେବଙ୍କର 'କଥାସରିତ୍ସାଗର'

୬· କ୍ଷେମେନ୍ଦ୍ରଙ୍କର 'ବୃହତ୍‌କଥାମଞ୍ଜରୀ' ବର୍ତ୍ତମାନ ମିଳୁଅଛି । ତହିଁରେ ନିମ୍ନଲିଖିତ କଥା ଦେଖାଯାଏ –

ଉଜ୍ଜୟିନୀର ରାଜା ମହାସେନ ବାସବଦତ୍ତା ନାମକ ନିଜ କନ୍ୟାର ବିବାହ ବତ୍ସଦେଶର ରାଜା ଉଦୟନଙ୍କ ସହିତ କରିଥିଲେ । ବାସବଦତ୍ତାଙ୍କର ଭାଇ ପାଳକ ଏକ ରାଜ୍ୟ ନଷ୍ଟ କରି ସେଠାର ରାଜକନ୍ୟା ବନ୍ଧୁମତୀଙ୍କୁ ନିଜ ଭଉଣୀଙ୍କ ପାଖକୁ ଉପହାରସ୍ୱରୂପ ପଠାଇ ଥିଲେ । ସେ ରାଜକନ୍ୟା ବିଶେଷ ରୂପବତୀ ଥିଲେ । ବାସବଦତ୍ତା ତାଙ୍କୁ ମଞ୍ଜୁଳିକା ନାମ ଦେଇ ଅତିଗୋପନରେ ରଖିଥିଲେ । ଦିନେ ରାଜା ଉଦ୍ୟାନର ଲତାଗୃହରେ ନିଜ ପ୍ରିୟମିତ୍ର ବସନ୍ତକ ସହିତ ବିହାର କରୁ କରୁ ତାଙ୍କୁ ଦେଖିଲେ ଏବଂ ଗାନ୍ଧର୍ବବିବାହରେ ସ୍ୱୀକାର କଲେ । ବାସବଦତ୍ତା ଅଲକ୍ଷିତ ଭାବରେ ଏହା ଦେଖି କ୍ରୁଦ୍ଧ ହେଲେ ଏବଂ ବସନ୍ତକଙ୍କୁ ବାନ୍ଧି କରି ନେଇ ଗଲେ । ପରେ ରାଜା ବାସବଦତ୍ତାଙ୍କର ମାଙ୍କ ଘରର ସାଂକୃତ୍ୟାୟନୀ ନାମକ ପରିବ୍ରାଜିକାଙ୍କର ଶରଣାଗତ ହେଲେ ଏବଂ ତାଙ୍କ ସାହାଯ୍ୟରେ ବସନ୍ତକଙ୍କୁ ମୁକ୍ତ କଲେ । ପରେ ପରିବ୍ରାଜିକା ରାଣୀଙ୍କର ଅନୁମତି ନେଇ ବନ୍ଧୁମତୀଙ୍କୁ ରାଜାଙ୍କ ହସ୍ତରେ ଅର୍ପଣ କଲେ । 'ମାଳବିକାଗ୍ନିମିତ୍ର'ର ସଂବିଧାନକ ଓ ଉପରଲିଖିତ କଥାନକ-ମଧ୍ୟରେ ଯେଉଁ ସାମଞ୍ଜସ୍ୟ ରହିଛି ତାହା ପାଠକମାନେ ହୃଦୟଙ୍ଗମ କରିପାରୁ ଥିବେ । ଦୁଇଟିଯାକ କଥାରେ ନାୟିକା ପ୍ରଥମେ ଗୁପ୍ତରୂପରେ ରହିବା, ବିଦୂଷକଙ୍କ ସାହାଯ୍ୟରେ ଉଦ୍ୟାନ-ଲତାଗୃହରେ ମିଳିତ ହେବା, ତାପରେ ବନ୍ଦିବାସ ଓ ଶେଷରେ

ପରିବ୍ରାଜିକାଙ୍କ ସାହାଯ୍ୟରେ ନାୟିକାଙ୍କର ନାୟକ ସହିତ ବିବାହ ଏ ସମସ୍ତ ବିଷୟ ସମାନ । ଦୁଇଟି କଥା ମଧ୍ୟରେ ପ୍ରଭେଦ ମଧ୍ୟ ରହି ଅଛି, ତଥାପି କାଳିଦାସ କେଉଁଠାରୁ କଥାବସ୍ତୁ ଆହରଣ କରି ଆବଶ୍ୟକ ଭେଦ ଯୋଗ କରି ଅଛନ୍ତି ଏହା ଭାବିବା ବେଳେ ବୋଧ ହୁଏ—କବି 'ମାଳବିକାଗ୍ନିମିତ୍ର'ର ସଂବିଧାନ 'ବୃହତ୍-କଥା'ରୁ ଆହରଣ କରିଥିବା ଅସମ୍ଭବ ନୁହେଁ । ପାଞ୍ଚତନ୍ତ୍ରରେ ଅଶୋକର ବିକାଶ—ଏହି କଳ୍ପନା ଭାସଙ୍କର 'ପଞ୍ଚରାତ୍ର'ରୁ ଆହରଣ କରିଥାଇ ପାରନ୍ତି । ପ୍ରଥମ ଓ ଦ୍ୱିତୀୟ ଅଙ୍କରେ ନାଟ୍ୟା-ଚାର୍ଯ୍ୟମାନଙ୍କର କଳହ, ମାଳବିକାଙ୍କର ନାଟ୍ୟପ୍ରୟୋଗ, ମାଳବିକାଙ୍କୁ ମୁକ୍ତ କରିବା ସକାଶେ ବିଦୂଷକଙ୍କର କୌଶଳପ୍ରଭୃତି ବିଷୟ କବିଙ୍କର କଳ୍ପନାଶକ୍ତିପ୍ରସୂତ ବୋଲି ଜଣାଯାଏ ।

ଏହି ନାଟକର କଥାବସ୍ତୁ ଆଠ ଦଶ ଦିନରେ ଶେଷ ହୋଇଯାଇ ଅଛି । କାଳିଦାସଙ୍କର ଅନ୍ୟାନ୍ୟ ନାଟକମାନଙ୍କର ସଂବିଧାନ ପରି ଏହି ନାଟକରେ ସ୍ୱାଭାବିକ ବିକାଶର ଅବକାଶ ନାହିଁ । ଏହି ନାଟକରେ ସମସ୍ତ ପାତ୍ର ଆରମ୍ଭରୁ ଶେଷ ପର୍ଯ୍ୟନ୍ତ ଏକ ପ୍ରକାରରୂପରେ ରହିଛନ୍ତି ଏବଂ ଏହି ବିଷୟରେ ଏହି ନାଟକ କବିଙ୍କର ପ୍ରଥମ କୃତ ହେବା ହେତୁ ପାତ୍ରମାନଙ୍କର ମାନସିକ ବିକୃତିମାନ ଦେଖାଇବାକୁ କବି ଚେଷ୍ଟା କରିପାରି ନାହାନ୍ତି । ଏହି ନାଟକରେ ଅଗ୍ନିମିତ୍ର ଓ ବିଦୂଷକ ଏହି ଦୁଇଟି ପୁରୁଷପାତ୍ର ଏବଂ ମାଳବିକା, ଧାରିଣୀ ଇରାବତୀ ଓ ପରିବ୍ରାଜିକା ଏହି ସ୍ତ୍ରୀପାତ୍ରମାନେ ପ୍ରଧାନ । ହରଦତ୍ତ ଗଣଦାସ, ବକୁଳାବଳିକା ନିପୁଣିକାପ୍ରଭୃତି ଗୌଣପାତ୍ର । କାଳିଦାସଙ୍କର ସମସ୍ତ ନାଟକ-ମାନଙ୍କ ମଧ୍ୟରେ ଅଗ୍ନିମିତ୍ର ନିମ୍ନସ୍ତରର ନାୟକ । ସଂସ୍କୃତ-

ଅଳଙ୍କାରକାରମାନଙ୍କ ନିର୍ଦ୍ଦେଶମତେ ସେ ଧୀରଲଳିତ ନାୟକ 'ରଘୁବଂଶ'ର ଅଗ୍ନିବର୍ଣ୍ଣଙ୍କ ପରି ଅବଶ୍ୟ ଏ ଏକବାରେ ଅକର୍ମଣ୍ୟ ରାଜକାର୍ଯ୍ୟବିମୁଖ ନୁହନ୍ତି—ଏହା ଅବଶ୍ୟ ସତ୍ୟ । ତଥାପି ଏହାଙ୍କର ଶୌର୍ଯ୍ୟ, ଧୈର୍ଯ୍ୟପ୍ରଭୃତି ଉଦାର ଗୁଣଗୁଡ଼ିକ ଏକବାରେ ବିରଳ । ଏହି ନାଟକରେ ଏହାଙ୍କର ଉଦ୍ଦେଶ୍ୟ ଯେ କୌଣସିମତେ ମାଳବିକାଙ୍କୁ ଅଧିକୃତ କରିବା । ତାଙ୍କ ଉକ୍ତିରେ ଅତ୍ୟନ୍ତ ମାଧୁର୍ଯ୍ୟ ପୂର୍ଣ୍ଣମାତ୍ରାରେ ବିଦ୍ୟମାନ । ସ୍ତ୍ରୀଦାକ୍ଷିଣ୍ୟ ପ୍ରତିପ୍ରେମିକ ଉପରେ ପରିପୂର୍ଣ୍ଣ । ଏକାନ୍ତରେ ମାଳବିକାଙ୍କ ସହିତ ଧରା ପଡ଼ିଲା ବେଳେ ଇରାବତୀଙ୍କ ସଦୃଶ ଚଣ୍ଡୀଙ୍କୁ ପ୍ରସନ୍ନ କରିବାକୁ ଯାଇ ସେ ତାଙ୍କର ପାଦରେ ମଧ ପଡ଼ିବାକୁ କୁଣ୍ଠିତ ନୁହନ୍ତି । ନିଜର ପ୍ରେମ ବାସନା ପୂର୍ଣ୍ଣ କରିବା ସକାଶେ ସେ ସର୍ବଦା ବିଦୂଷକଙ୍କର ଆଶ୍ରୟ ନିଅନ୍ତି । ମାଳବିକା କପରି ଦୃଷ୍ଟିଗୋଚର ହେବେ ଏହି କୌଶଳ ବିଦୂଷକ କେବଳ ବତାଇଲେ । ପରେ ଏକାନ୍ତରେ ଧରା ପଡ଼ିଲାବେଳେ ମଧ ବିଦୂଷକ ସେଠାରୁ ସେ କପରି ମୁକ୍ତ ହେବେ—ତାର ଉପାୟ ରାଜାଙ୍କୁ କହିଥିଲେ । ବିଦୂଷକ କେବଳ ମାଳବିକାଙ୍କୁ ଗର୍ଭଗୃହରେ ରୁଦ୍ଧ ଥିଲାବେଳେ ତାଙ୍କୁ ସେଠାରୁ ଉଦ୍ଧାର କରି ରାଜାଙ୍କର ସହିତ ପ୍ରମଦ ବନରେ ଭେଟ କରାଇଲେ । ପ୍ରତ୍ୟେକ କାର୍ଯ୍ୟରେ ସାହାଯ୍ୟକାରୀ 'କାମତନ୍ତ୍ରସଚିବ' ଏହି ବିଦୂଷକ ରାଜାଙ୍କ ପାଖରେ ନ ଥିଲେ ରାଜାଙ୍କର ଅବସ୍ଥା ବଡ଼ ଶୋଚନୀୟ ହୋଇ ଥାଆନ୍ତା—ଏଥିରେ କୌଣସି ସନ୍ଦେହ ନାହିଁ । ଡ଼ା. କେତକର କହନ୍ତି—ଅଗ୍ନିମିତ୍ର ତାତ୍କାଳିକ ରାଜନୀତି ଓ କାଳିଦାସଙ୍କର ଦୃଷ୍ଟିରେ ଏକ ଆଦର୍ଶ ରାଜା ଥିଲେ । କିନ୍ତୁ ତାଙ୍କର ମତ ପ୍ରାମାଣିକ ବୋଧ ହୁଏ ନାହିଁ । ସେ କର୍ମପ୍ରବଣ ପୁତ୍ରର ଜନକ, ଅନ୍ତଃପୁରବାସିନୀ ଅନେକ ସ୍ତ୍ରୀଙ୍କର ସ୍ୱାମୀ ହେଲେ ମଧ୍ୟ ତରୁଣୀ ଦାସୀ ପ୍ରତି

ଅନୁରକ୍ତ ହୋଇ ଗୋପନରେ ଅନୁରାଗ କରନ୍ତି ଏବଂ ଧରାପଡ଼ିଲେ ନିଜ ସ୍ତ୍ରୀର ପାଦତଳେ ପଡ଼ି ଯାଆନ୍ତି କିନ୍ତୁ ନିଜ ଆସକ୍ତି ଛାଡ଼ି ପାରୁ ନାହାନ୍ତି । ତାଙ୍କର ପିତା ପୁଷ୍ୟମିତ୍ର ଅଶ୍ୱମେଧ ଯଜ୍ଞ ଆରମ୍ଭ କଲେ ଏବଂ ଦିଗ୍‌ବିଜୟ ସକାଶେ ଅଶ୍ୱ ଛାଡ଼ିଲେ । ଏହି ପରି ଅବସ୍ଥାରେ ସେ ସ୍ୱୟଂ ନ ଯାଇ ଅଶ୍ୱରକ୍ଷାର ଭାର ନିଜ ଅଳ୍ପବୟସ୍କ ପୁତ୍ର ଉପରେ ବିନ୍ୟସ୍ତ କରନ୍ତି । ନିଜେ ବିଦର୍ଭ ଦେଶ ଆକ୍ରମଣ କରି ନାହାନ୍ତି, ପ୍ରତ୍ୟୁତ ସେ ସମୟରେ ମଧ୍ୟ ଅନ୍ତଃପୁରରେ ପ୍ରେମ-ଲୀଳାରେ ମତ୍ତ ରହନ୍ତି—ଏହି ପରି ବିଳାସୀ, କର୍ତ୍ତବ୍ୟଶୂନ୍ୟ ରାଜାଙ୍କୁ ନିଜର ଅନ୍ୟାନ୍ୟ ଗ୍ରନ୍ଥର ଦିଲୀପ, ରଘୁ, ରାମ ପ୍ରଭୃତି ଚରିତ୍ରମାନଙ୍କର ଉଦାର ଚରିତ୍ର ରସମୟ ବାକ୍ୟରେ ବର୍ଣ୍ଣନ କରିଥିବା କାଳିଦାସ ଆଦର୍ଶରାଜା ବୋଲି ମାନିବେ—ଏହା ଅସମ୍ଭବ । ଏହି ନାଟକରେ କବି ନିଜ ସମୟର ସାଧାରଣ ରାଜା-ମାନଙ୍କର ଅନ୍ତଃପୁର କାର୍ଯ୍ୟାବଳୀ ବର୍ଣ୍ଣନା କରିଥିଲା ପରି ପ୍ରତୀତ ହୁଏ ।

କାଳିଦାସଙ୍କର ସମସ୍ତ ନାୟକମାନଙ୍କ ମଧ୍ୟରେ ଅଗ୍ନିମିତ୍ର ନିମ୍ନସ୍ତରର ଓ ସମସ୍ତ ବିଦୂଷକମାନଙ୍କ ମଧ୍ୟରେ ମାଳବିକାଗ୍ନିମିତ୍ରର ବିଦୂଷକ ଗୌତମ ଅତ୍ୟନ୍ତ ସାବଧାନ । ଅନ୍ୟାନ୍ୟ ବିଦୂଷକ-ମାନଙ୍କ ପରି ଏ ମଧ୍ୟ ଅବଶ୍ୟ ପାନଭୋଜନପ୍ରିୟ ଓ ନିନ୍ଦାଳୁ ତଥାପି ଏ ସେମାନଙ୍କ ପରି ପ୍ରମତ୍ତ ଓ ମନ୍ଦବୁଦ୍ଧି ନୁହନ୍ତି କିନ୍ତୁ ଯୁକ୍ତିନିରୂପଣରେ ଅତ୍ୟନ୍ତ ଧୁରନ୍ଧର, ଉତ୍ତରଦାନ ଓ ପରିହାସ କରିବାରେ ଚତୁର । ରାଜାଙ୍କ ସହିତ ଏହାଙ୍କର ସଦ୍‌ଭାବ । ରାଜା କିପରି ମାଳବିକାଙ୍କୁ ପାଇବେ—ଏ ବିଷୟରେ ସେ ନାନା ପ୍ରକାର କୌଶଳ ଖୋଜିଛନ୍ତି । ଦୁଇ ନାଟ୍ୟାଚାର୍ଯ୍ୟଙ୍କ ମଧ୍ୟରେ କଳହର

ସୂତ୍ରପାତ କରନ୍ତି । ମାଳବିକାଙ୍କୁ ପ୍ରମଦବନକୁ ପଠାଇବା ବିଷୟରେ ଷଡ଼ଯନ୍ତ୍ର କରି ରାଣୀଙ୍କର ପାଦରେ ଆଘାତ ଜାତ କରି ଅଛନ୍ତି । ପରିଶେଷରେ ରାଣୀଙ୍କଠାରୁ ସର୍ପମୁଦ୍ରା ନେବାସକାଶେ ବିଷ ବାଧାର ମଧ୍ୟ ଅଭିନୟ କରି ଅଛନ୍ତି । କୌଶଳର ଜାଲ ବୁଣିବାରେ ସେ ଯେପରି ସାବଧାନ, ଅଭିନୟ କଳାରେ ମଧ୍ୟ ତଦ୍ରୂପ ଧୁରନ୍ଧର । ଇରାବତୀ ଏହାଙ୍କର ଦକ୍ଷତା ଦେଖି ଏହାଙ୍କୁ 'କାମତନ୍ତ୍ରସଚିବ' ବୋଲି ଉପାଧି ଦେଇ ଅଛନ୍ତି । ଏହି ସମୟରେ ସେ କହିଛନ୍ତି— 'କାମଶାସ୍ତ୍ରର ଏକ ଅକ୍ଷର ମଧ୍ୟ ମୋତେ ଜଣାଥିଲେ ଗାୟତ୍ରୀଙ୍କର ରାଣ ।' ଏହିପରି ବୁଦ୍ଧିମାନ୍ ବ୍ୟକ୍ତିଙ୍କୁ କାଳିଦାସ ପରମ୍ପରା ଅନୁସରଣ କରି ପେଟବିକଳିଆ ନିଦ୍ରାଳୁ ବ୍ରାହ୍ମଣ କରି ଚିତ୍ରିତ କରି ଅଛନ୍ତି । ସମ୍ଭବତଃ ଏହି ଅସାଙ୍ଗତ୍ୟ ସେ ଶୀଘ୍ର ହୃଦୟଙ୍ଗମ କରିପାରିଥିଲେ । ଏହିପରି ଚତୁର ବିଦୂଷକ ଚିତ୍ରଣ କଲେ ତାଙ୍କ ସମ୍ମୁଖରେ ନାୟକ ଏକବାର ଅକର୍ମା ଦେଖାଯିବେ । ଏହି ଭୟରେ କାଳିଦାସ ନିଜର ଅନ୍ୟ ଦୁଇଟି ନାଟକରେ ବିଦୂଷକମାନଙ୍କୁ ପ୍ରାଚୀନ ପରମ୍ପରା ଅନୁସରଣ କରି ଚିତ୍ରିତ କରି ଅଛନ୍ତି ।

ମାଳବିକା ବିଦର୍ଭରାଜକନ୍ୟା କିନ୍ତୁ ଦୈବ ଦୁର୍ବିପାକରୁ ତାଙ୍କୁ ଦାସୀରୂପେ ରହିବାକୁ ପଡ଼ିଛି । ସେ ଅତ୍ୟନ୍ତ ରୂପବତୀ ଓ ନାଟ୍ୟକଳାରେ ନିପୁଣା ଦେଖାଯାନ୍ତି । ଅଗ୍ନିମିତ୍ରଙ୍କ ସହିତ ତାଙ୍କର ବିବାହ ହେବ ବୋଲି ସେ ଜାଣିଥିଲେ । ତଥାପି ଦୈବବଶତଃ ଦାସତ୍ୱ ସ୍ୱୀକାର କଲା ପରେ ସେ ଉଚ୍ଚ ପଦ ତାଙ୍କ ପକ୍ଷେ ଦୁର୍ଲଭ ବୋଲି ମଧ୍ୟ ଜାଣିଥିଲେ । ରାଜା ତାଙ୍କ ପ୍ରତି ଅନୁରକ୍ତ ଏବଂ ଉତ୍କଣ୍ଠିତ ବୋଲି ଜାଣିବା ପରେ ସେ ଆଗ ପଛ

କିନ୍ତୁ ବିଶ୍ବର ନିକଟ ନିଅଛିଅକର ହଠାତ୍ ସମ୍ମତା ହୋଇ ଯାଇଛନ୍ତି । ଏ ହେତୁ ସେ କାଳିଦାସଙ୍କର ଅନ୍ୟାନ୍ୟ ନାୟିକା ପାର୍ବତୀ ଓ ଶକୁନ୍ତଳାଙ୍କ ପରି ଧୀରପ୍ରକୃତି ଦେଖାଯାନ୍ତି ନାହିଁ । ଅଜ୍ଞାତବାସର କଷ୍ଟ ଭୋଗ କଲାବେଳେ ସେ କେବେହେଲେ ତାଙ୍କର ପୂର୍ବ ବୈଭବ ସ୍ମରଣ କଲାପରି ତାଙ୍କ ଉକ୍ତିରୁ ଜଣାଯାଏ ନାହିଁ । ଏକପସରେ ଏହା ମଧ୍ୟ ଠିକ୍ ଏ ଅସ୍ୱାଭାବିକ । କାଳିଦାସ ଧାରିଣୀ ଓ ଇରାବତୀଙ୍କ ଚରିତଗତ ବୈଶିଷ୍ଟ୍ୟ ଭଲ ଭାବରେ ଅଙ୍କନ କରିପାରିଛନ୍ତି । ଧାରିଣୀ ମଧ୍ୟମ ଅବସ୍ଥାର ପାଟରାଣୀ । ଅନ୍ତଃପୁରର ସମସ୍ତ ପରିଜନ ତାଙ୍କ ଆଜ୍ଞା ପାଳନ କରନ୍ତି । ନିଜ ପତି ଭ୍ରମରବୃତ୍ତି ଅବଲମ୍ବନ କରି ପ୍ରତିଦିନ ନୂଆ ନୂଆ ସ୍ତ୍ରୀପ୍ରତି ଆସକ୍ତ ହେବା ତାଙ୍କ ପକ୍ଷରେ ଏକବାରେ ଅସହ୍ୟ ନୁହେଁ । ସେ ମାଳବିକା ପରି ଏକ ସାଧାରଣ ଦାସୀ ପ୍ରତି ରାଜାଙ୍କର ମନ ଆକୃଷ୍ଟ ହେବା ଜାଣି ପାରି ସାବଧାନ ହୋଇ ମାଳବିକା କିପରି ରାଜାଙ୍କ ଦୃଷ୍ଟିରେ ନ ପଡ଼ିବେ ତାର ଚେଷ୍ଟା କରିଛନ୍ତି । କିନ୍ତୁ ଯେତେବେଳେ ସେ ହୃଦୟଙ୍ଗମ କରୁଛନ୍ତି ସେ ମାଳବିକାଙ୍କୁ ନ ପାଇଲେ ରାଜାଙ୍କର ସୁଖ ନାହିଁ, ସେତେବେଳେ ତାଙ୍କୁ ରାଜାଙ୍କୁ ଅର୍ପଣ କରି ଉଦାରତା ଦେଖାଇ ଅଛନ୍ତି । ସେ ନିଜ ପୁଅର ଦୀର୍ଘ ଜୀବନ ଓ ବିଜୟ ଲାଭ ଉଦ୍ଦେଶରେ ପ୍ରତିଦିନ ଦାନ କରନ୍ତି । ତାଙ୍କୁ ଉପହାର ଦେବା ଉଦ୍ଦେଶ୍ୟରେ ବନ୍ଧୁକ ଫୁଲ ତୋଳିବାକୁ ଯାଇ ସର୍ପଦ୍ୱାରା ଦଷ୍ଟ ହେବା ଶୁଣି ବିଶେଷ ଦୁଃଖ କରନ୍ତି । ଏହି ପ୍ରସଙ୍ଗରେ କବି ତାଙ୍କ କୋମଳହୃଦୟତାର ପରିଚୟ ଦେଇଛନ୍ତି । ଇରାବତୀ ଠିକ୍ ଏହାଙ୍କର ବିପରୀତ । ଇରାବତୀ ତରୁଣୀ ଓ ନୃତ୍ୟଗୀତ ଇତ୍ୟାଦି କଳାରେ ନିପୁଣା । କାଳେ ତାଙ୍କ ପ୍ରତି ରାଜା ବିରକ୍ତ ହେବେ ଭାବି ସେ ନିଜେ କିଛି

ନ କର ବଢ଼ୁସର୍ଣୀଙ୍କୁ କହି ମାଳବିକାଙ୍କୁ ବନ୍ଦଶାଳାରେ ନିକ୍ଷିପ୍ତ କରିଛନ୍ତି । ତାହା ଛଡ଼ା ସେ ଅତିରିକ୍ତ ଈର୍ଷ୍ୟାଳୁ ଓ ମାନିନୀ ପ୍ରତୀତ ହୁଅନ୍ତି । ଏହି ଦୁଇ ରାଣୀଙ୍କ ମଧ୍ୟରେ ଅବସ୍ଥା ଓ ଚରିତ୍ରଗତ ଭେଦ ଦେଖାଇବା ଉଦ୍ଦେଶ୍ୟରେ କାଳିଦାସ ମଦ୍ୟମତ୍ତା ଇରାବତୀଙ୍କୁ ରଙ୍ଗଭୂମିରେ ଉପସ୍ଥାପିତ କରି ଅଛନ୍ତି । ଯେଉଁମାନଙ୍କର ତାରୁଣ୍ୟ ଅପଗତ, ସେହିପରି ସ୍ତ୍ରୀମାନେ ମଦ୍ୟପାନ କରିବା କୌଣସିଠାରେ ଉଲ୍ଲିଖିତ ହୋଇନାହିଁ । ଏଠାରେ ଏହା କହିବାର ଉଦ୍ଦେଶ୍ୟ— ଡ଼ା. କେତକର କାଳିଦାସଙ୍କର ନିଜ ସମୟର ରାଣୀମାନଙ୍କ ବିଷୟରେ ଯେଉଁ ଟିପ୍ପଣୀ ଦେଇଛନ୍ତି—ତାହା ଗ୍ରହଣୀୟ ନୁହେଁ ।

ପଣ୍ଡିତକୌଶିକୀ ସଚିବ ମାଧବସେନଙ୍କର ଭଗିନୀ କିନ୍ତୁ ଅକାଳରେ ତାଙ୍କର ବୈଧବ୍ୟ ଯୋଗ ଘଟିଲା । ପରେ ତାଙ୍କ ଭାଇଙ୍କର ମୃତ୍ୟୁ ପରେ ତାଙ୍କର ଏକ ମାତ୍ର ଅବଲମ୍ବନ ମଧ୍ୟ ଛିନ୍ନ ହେଲା । ସେତେବେଳେ ସେ ବିପର୍ଣ୍ଣ ହୋଇ ସଂନ୍ୟାସ ଗ୍ରହଣ କରନ୍ତି । ସେ ସମୟର ପରିସ୍ଥିତି ଅନୁଯାୟୀ ରାଜକୁଳରେ ପ୍ରବେଶ କରିବା ତାଙ୍କ ପକ୍ଷରେ ଅସୁବିଧାଜନକ ହୋଇ ନଥିଲା । ସେ ରାଜଅନ୍ତଃପୁରରେ ମାଳବିକାଙ୍କୁ ଦେଖିବାମାତ୍ରେ ପୂର୍ବଯୋଜନା ଅନୁସାରେ ଏବଂ ଏକ ସିଦ୍ଧ ଭବିଷ୍ୟଦ୍‌ବକ୍ତାଙ୍କର ବାଣୀ ଅନୁଯାୟୀ, ଅବଶ୍ୟ ରାଜାଙ୍କ ସହିତ ତାଙ୍କର ବିବାହ ହେବ ବୋଲି ସ୍ଥିର କଲେ ଏବଂ ବିଦୂଷକଙ୍କୁ ସାହାଯ୍ୟ କଲେ । କିନ୍ତୁ ଆଶ୍ଚର୍ଯ୍ୟର କଥା—ମାଳବିକା ନାଟକର କୌଣସି ସ୍ଥଳରେ ତାଙ୍କୁ ଚିହ୍ନିପାରି ନାହାନ୍ତି । କାଳିଦାସ ଗୌଣପାତ୍ରମାନଙ୍କୁ ଅତି ସଂକ୍ଷେପରେ ଚିତ୍ରଣ କରନ୍ତି । ହରଦତ୍ତ ଓ ଗଣଦାସ, ଏହି ଦୁଇ ନାଟ୍ୟାଚାର୍ଯ୍ୟଙ୍କର ନିଜ କଳାରେ ଅଭିମାନ ଓ ପରସ୍ପରସ୍ପର୍ଦ୍ଧା, ସର୍ଣ୍ଣୀପ୍ରିତ ବକୁଳାବଳିକାର

ଅକପଟ ପ୍ରେମ ଓ ସେଥି ସକାଶେ କଷ୍ଟାନୁଭବ, ଅଲକ୍ଷିତଭାବେ ମାଳବିକା ପ୍ରଭୃତିଙ୍କର କଥୋପକଥନରୁ ନିପୁଣିକାର ତାତ୍ପର୍ଯ୍ୟାର୍ଥ-ଗ୍ରହଣ—ଏ ସମସ୍ତ ବିଷୟ କାଳିଦାସ ଅତି ସୁନ୍ଦରଭାବରେ ସ୍ପଷ୍ଟ କରି ଅଛନ୍ତି । 'ମାଳବିକାଗ୍ନିମିତ୍ର'ର ଭାଷା ପ୍ରସାଦପୂର୍ଣ୍ଣ ଓ ମନୋହର । କୌଣସିଠାରେ କ୍ଲିଷ୍ଟତା କି କୃତ୍ରିମତା ନାହିଁ । କବି ଏହି ନାଟକରେ ଅତିରିକ୍ତ ଅଳଙ୍କାର ପ୍ରୟୋଗ ପ୍ରତି ଖୁବ୍ ସାବଧାନ ଦେଖାଯାନ୍ତି । କବିଙ୍କର ଏହା ପ୍ରଥମ ନାଟକ । ଏହେତୁ ତରୁଣ କବି ପ୍ରିୟ 'ମାମୁଗ୍ର ମଦପ୍ଲୃତ ମାର୍ଜନା ମନାଂସି' ପ୍ରଭୃତି ଅନୁପ୍ରାସ ଶବ୍ଦାଳଙ୍କାରମାନ ପ୍ରୟୋଗ କରି ଅଛନ୍ତି । ଦୁଇ ତିନି ସ୍ଥଳରେ ଅତି କୌଶଳ ସହକାରେ ଶ୍ଳେଷାଳଙ୍କାର ମଧ୍ୟ ପ୍ରୟୋଗ କରି ଅଛନ୍ତି । ତଥାପି ଅନ୍ୟାନ୍ୟ ଗ୍ରନ୍ଥ ତୁଳନାରେ ଏହି ନାଟକରେ ଉପମା ପ୍ରଭୃତି ଅର୍ଥାଳଙ୍କାରର ବହୁଳ ପ୍ରଚାର ଦେଖାଯାଏ । ଏହି ନାଟକ ପ୍ରକାଶରେ ଅବଶ୍ୟ କାଳିଦାସଙ୍କର ନାମ ସମ୍ଭବତଃ ସର୍ବତ୍ର ପ୍ରସିଦ୍ଧ ହୋଇଥିଲା ଏବଂ ଚନ୍ଦ୍ରଗୁପ୍ତ ବିକ୍ରମାଦିତ୍ୟଙ୍କର ସ୍ଥାୟୀ ଆଶ୍ରୟ ମିଳିଥିଲା । ପୂର୍ବରେ କୁହାଯାଇଅଛି—ଚନ୍ଦ୍ରଗୁପ୍ତଙ୍କର କୁମାରଗୁପ୍ତ ନାମକ ପୁତ୍ର ଜନ୍ମ ହେବାବେଳେ କାଳିଦାସ 'କୁମାର-ସମ୍ଭବ' ରଚନା କରିଥିଲେ । ତା ପରେ ରାଜକୁମାରଙ୍କର ଯୌବ-ରାଜ୍ୟାଭିଷେକ ହୋଇଥିଲା । ସମ୍ଭବତଃ ସେସମୟରେ ଦ୍ୱିତୀୟ ନାଟକ 'ବିକ୍ରମୋର୍ବଶୀୟ' ଅଭିନୀତ ହୋଇଥିଲା । କାରଣ ଏହି ନାଟକର ଶେଷ ଭାଗରେ ପୁରୂରବାଙ୍କର ଆୟୁ ନାମକ ପୁତ୍ରର ଯୌବରାଜ୍ୟାଭିଷେକ ବର୍ଣ୍ଣିତ ହୋଇଅଛି । ବର୍ତ୍ତମାନ ଆମେ ସେହି ନାଟକର ଚର୍ଚ୍ଚା କରିବୁଁ ।

## ବିକ୍ରମୋର୍ବଶୀୟମ୍

ଏହି ନାଟକରେ ପାଞ୍ଚୋଟି ଅଙ୍କ ଅଛି । କାଳିଦାସ ଅନ୍ୟାନ୍ୟ ନାଟକ ପରି ଏହି ନାଟକରେ ମଧ୍ୟ ନାନ୍ଦୀପଦ୍ୟରେ ମହାଦେବଙ୍କର ସ୍ତୁତି କରିଅଛନ୍ତି । ତାପରେ ସୂତ୍ରଧାର ପ୍ରବେଶ କରି ଦର୍ଶକମାନଙ୍କୁ କହୁଅଛନ୍ତି—'ଆମମାନଙ୍କର ପ୍ରାର୍ଥନା ବା ନାଟକର ଉଦାତ୍ତ ନାୟକଙ୍କର ଗୌରବ ରକ୍ଷା କରି ଆପଣମାନେ କାଳିଦାସଙ୍କର ଏହି କୃତିକୁ ମନ ଦେଇ ଶୁଣନ୍ତୁ । ସମ୍ଭବତଃ ଏହି ସମୟରେ କବିଙ୍କର ପ୍ରସିଦ୍ଧି ହୋଇ ଯାଇଥିଲା । ଏ ହେତୁ କବିଙ୍କୁ ନାଟକର ଗୁଣବର୍ଣ୍ଣନା କରିବାକୁ କିଛି କହିବା ଦରକାର ହେଲା ନାହିଁ ବୋଲି ଜଣାଯାଏ । ତା ପରେ ଆଗାମୀ ପାତ୍ର ପ୍ରବେଶର ସୂଚନା ଦେଇ ସୂତ୍ରଧାର ପ୍ରସ୍ଥାନ କରନ୍ତି ଓ ମୁଖ୍ୟ ଅଙ୍କର ଆରମ୍ଭ ହୁଏ । ପ୍ରଥମେ ରମ୍ଭା ମେନକା ପ୍ରଭୃତି ଅପ୍ସରାମାନେ ପ୍ରବେଶ କରନ୍ତି । ଏବଂ ସାହାଯ୍ୟ କରିବାକୁ ଆର୍ତ୍ତନାଦ କରନ୍ତି । ସେ ସମୟରେ ରାଜା ପୁରୁରବା ସୂର୍ଯ୍ୟୋପସ୍ଥାନ କରି ଫେରୁଥିଲେ । ସେମାନଙ୍କ ପଚାରି ବୁଝିପାରିଲେ ଯେ କୁବେରଭବନରୁ ଫେରିବା ସମୟରେ କେଶିନାମକ ଦାନବ ଅପୂର୍ବ ସୁନ୍ଦରୀ ଉର୍ବଶୀ ଓ ତାଙ୍କର ସଖୀ ଚିତ୍ରଲେଖାଙ୍କୁ ଅପହରଣ କରି ନେଇଅଛି । ରାଜା ତାହା ଶୁଣି, ସେମାନଙ୍କୁ ହେମକୂଟ ଶିଖରରେ ଅପେକ୍ଷା କରିବାକୁ କହି ଦୁହିଁଙ୍କର ଉଦ୍ଧାର କରିବାକୁ ଗଲେ ଏବଂ ଅତି ଅଳ୍ପସମୟରେ ଚିତ୍ରଲେଖାସାହାଯ୍ୟରେ ମୂର୍ଚ୍ଛିତା ଉର୍ବଶୀଙ୍କୁ ଧରି ଫେରି ଆସିଲେ । ତା ପରେ ଉର୍ବଶୀଙ୍କର ଚେତନା ହେଲା । ତାଙ୍କର ଅପୂର୍ବ ସୌନ୍ଦର୍ଯ୍ୟ ଦେଖି ରାଜା ମୋହିତ ହୋଇଗଲେ ଏବଂ କହିଲେ—

अस्याः सर्गविधौ प्रजापतिरभूच्चन्द्रो नु कान्तिप्रदः
शृङ्गारैकरसः स्वयं नु मदनो मासो नु पुष्पाकरः ।
वेदाभ्यासजडः कथं नु विषयव्यावृत्तकौतूहलो
निर्मातुं प्रभवेन् मनोहरमिदं रूपं पुराणो मुनिः ।

ବିକ୍ର ୧—୯

'ସମ୍ଭବତଃ ରମଣୀୟକାନ୍ତି ଚନ୍ଦ୍ର, ଶୃଙ୍ଗାରରସମୟ କନ୍ଦର୍ପ ଅଥବା ସମସ୍ତପୁଷ୍ପର ଆକର ବସନ୍ତ ଏହି ସୁନ୍ଦରୀଙ୍କୁ ନିର୍ମାଣ କରିଅଛନ୍ତି । କାରଣ ବେଦ ଘୋଷି ଘୋଷି ଜଡ଼, ଜଗଦ୍ଭୋଗ୍ୟ-ବିଷୟପରାଙ୍ମୁଖ, ବୁଢ଼ା, ମୁନି, ବ୍ରହ୍ମା ଏହି ପରି ମନୋହରରୂପ ନିର୍ମାଣ କରିବାକୁ କଦାପି ସମର୍ଥ ହୋଇ ପାରିବେ ନାହିଁ ।' ରାଜାଙ୍କର ଶୌର୍ଯ୍ୟ ଦେଖି, ମଧୁର ଭାଷଣ ଶୁଣି, ଉର୍ବଶୀ ରାଜାଙ୍କପ୍ରତି ଆସକ୍ତ ହେଲେ । ତା ପରେ ସମସ୍ତେ ଏକତ୍ରିତ ହୋଇ ଆଳାପ କରିବାକୁ ଲାଗିଲେ । ଏ ସମୟରେ ଗନ୍ଧର୍ବ ଚିତ୍ରରଥ ସେଠାରେ ଉପସ୍ଥିତ ହୋଇ ଜଣାଇଲେ—'ମହାରାଜ ଇନ୍ଦ୍ର ମହର୍ଷି ନାରଦଙ୍କଠାରୁ ଉର୍ବଶୀହରଣବୃତ୍ତାନ୍ତ ଶ୍ରବଣ କରି, ତାଙ୍କ ଉଦ୍ଧାର କରିବା ସକାଶେ ଗନ୍ଧର୍ବସେନାକୁ ଆଦେଶ ଦେଇଥିଲେ । ମାର୍ଗରେ ଚାରଣମାନଙ୍କର ସଙ୍ଗୀତରୁ ଆପଣଙ୍କର ବିଜୟବାର୍ତ୍ତା ଶୁଣିପାରି ମୁଁ ଏଠାରେ ଉପସ୍ଥିତ ହୋଇଅଛି । ଆପଣ ଉର୍ବଶୀ ସହିତ ଇନ୍ଦ୍ରଙ୍କ ସମୀପକୁ ଆସନ୍ତୁ । ଆପଣ ଇନ୍ଦ୍ରଙ୍କର ବିଶେଷ ଉପକାର କରିଅଛନ୍ତି ।' 'ଇନ୍ଦ୍ରଙ୍କର ପ୍ରଭାବରେ କେବଳ ତାଙ୍କର ଲୋକେ ମୋପରି ବିଜୟୀ ହୋଇପାରନ୍ତି' ରାଜାଙ୍କର ଏହି ଉତ୍ତର ଶୁଣି ଚିତ୍ରରଥ ଉତ୍ତର ଦେଉଛନ୍ତି—'ଅନୁତ୍ସେକଃ ଖଳୁ ବିକ୍ରମାଲଙ୍କାରଃ' (ଗର୍ବର ଅଭାବ ହେଉଛି ବିକ୍ରମର ଅଳଙ୍କାର) ଏହି

ଉକ୍ତିରେ କାଳିଦାସ ନିଜ ଆଶ୍ରୟଦାତା ଚନ୍ଦ୍ରଗୁପ୍ତ ବିକ୍ରମାଦିତ୍ୟଙ୍କର ଗବଂରହିତଭାବ ଶ୍ଳେଷଦ୍ୱାରା ସୂଚିତ କରି ଅଛନ୍ତି । ପ୍ରେକ୍ଷକରୂପେ ରଙ୍ଗମଞ୍ଚାସୀନ ବିକ୍ରମାଦିତ୍ୟଙ୍କୁ ଏହି ସ୍ତୁତି ଅବଶ୍ୟ ଆନନ୍ଦ ଦେଉଥିବ । ପରେ ଅପ୍ସରାମାନେ ଓ ଗନ୍ଧର୍ବରାଜ ଆକାଶମାର୍ଗରେ ପ୍ରସ୍ଥାନ କଲେ । ମାତ୍ର ଉର୍ବଶୀ ନିଜ ମୁକ୍ତାମାଳା ଲତାରେ ଲାଗିଗଲା ବୋଲି ଛଳ କରି ମୁକ୍ତାମାଳାକୁ ଛଡ଼ାଇବା ଅଭିନୟ କରି ରାଜାଙ୍କୁ ପୁଣି ଥରେ ସକଟାକ୍ଷେ ଦେଖି ପ୍ରସ୍ଥାନ କଲେ । ରାଜା ମଧ୍ୟ ନିଜ ନଅରକୁ ଫେରି ଆସିଲେ । (୧ମ ଅଙ୍କ) ଏହାପରେ ପନ୍ଦର ଦିନ ପରବର୍ତ୍ତୀ ଘଟଣା ଦ୍ୱିତୀୟ ଅଙ୍କରେ ଦେଖାଯାଏ । ଦ୍ୱିତୀୟ ଅଙ୍କର ଆରମ୍ଭରେ ଗୋଟିଏ କ୍ଷୁଦ୍ର ପ୍ରବେଶକ ଦେଖାଯାଏ । ତହିଁରୁ ଜଣାଯାଏ ଯେ ରାଜା ଉର୍ବଶୀଙ୍କ ପ୍ରତି ନିଜ ଅନୁରାଗ ବିଦୂଷକଙ୍କୁ କହିଛନ୍ତି ଏବଂ ତାହା ଗୁପ୍ତ ରଖିବାକୁ ନିର୍ଦ୍ଦେଶ ଦେଇଛନ୍ତି ମାତ୍ର ରାଣୀ ଔଶୀନରୀ ରାଜାଙ୍କର ହାବଭାବରୁ ଇତର ସ୍ତ୍ରୀପ୍ରତି ଅନୁରାଗ ଠଉରାଇ ନିଜଦାସୀ ନିପୁଣିକାକୁ ରାଜାଙ୍କ ପାଖକୁ ପଠାଇଲେ । ସେ ବଡ଼ ଚତୁରତା ସହକାରେ ଏହି ରହସ୍ୟ ବିଦୂଷକଙ୍କଠାରୁ ଭେଦ କରି ନେଲା । ରାଜା ରାଜକାର୍ଯ୍ୟ ଶେଷ କରି ବିଦୂଷକଙ୍କ ସହିତ ପ୍ରବେଶ କଲେ ଏବଂ ମନର ବିନୋଦନ ସକାଶେ କୁଆଡ଼େ ଯିବା ବୋଲି ବିଦୂଷକଙ୍କୁ ପ୍ରଶ୍ନ କଲେ । ବିଦୂଷକ ପାକଶାଳାକୁ ଯାଇ ସେଠାରେ ପାଞ୍ଚ ପ୍ରକାର ପକ୍ୱାନ୍ନ ଦେଖି ଇନ୍ଦ୍ରିୟ ତୃପ୍ତ କରିବାକୁ ପରାମର୍ଶ ଦେଲେ । ଏହି ପରାମର୍ଶ ରାଜାଙ୍କର ମନକୁ ପାଇଲା ନାହିଁ । ସେ ପ୍ରମଦବନରେ ପ୍ରବେଶ କଲେ ଏବଂ ସେଠାରେ ବସନ୍ତ ପ୍ରାଦୁର୍ଭାବରେ ବିକଶିତ ଆମ୍ରମଞ୍ଜରୀ ଦେଖି ବିଶେଷ ଉତ୍କଣ୍ଠିତ

ହେଲେ । ରାଜାଙ୍କର ଅନୁରୋଧରେ ଶୀଘ୍ର ଉର୍ବଶୀଙ୍କର ଅଶୁ-ସମାଗମର ଉପାୟ ଉଦ୍ଭାବନ କରିବାକୁ ବିଦୂଷକ ବସି କରି ଧ୍ୟାନ-ମଗ୍ନ ହେଲେ । ରାଜା ଭାବୀ ସମାଗମର ସୂଚକ ଶୁଭ ଲକ୍ଷଣ ଦେଖିଲେ ଏବଂ ସମାଗମ ପ୍ରତୀକ୍ଷାରେ ରହିଥିଲେ । ଏହି ସମୟରେ ଉର୍ବଶୀ ଚିତ୍ରଲେଖା ସହିତ ବିମାନରେ ଆସି ସେଠାରେ ଉପସ୍ଥିତ ହେଲେ ଏବଂ ରାଜାଙ୍କୁ ଚିନ୍ତାମଗ୍ନ ଦେଖି ତାଙ୍କର କଥାବାର୍ତ୍ତା ଶୁଣିବାକୁ ତିରସ୍କରଣୀ ବିଦ୍ୟାରେ ଅଦୃଶ୍ୟ ହୋଇ ପାଖରେ ଛିଡ଼ା ହେଲେ । ବିଦୂଷକ କହିଲେ—'ଉପାୟ ମିଳିଛି, ଆପଣ ଶୋଇବାକୁ ଚେଷ୍ଟା କରନ୍ତୁ—ତାହା ହେଲେ ସ୍ୱପ୍ନରେ ଉର୍ବଶୀଙ୍କୁ ଦେଖି ପାରିବେ ବା ତାଙ୍କର ଚିତ୍ର ଅଙ୍କନ କରି ଓ ତାହା ଦେଖି ଦେଖି ମନ ବିନୋଦନ କରନ୍ତୁ ।' ରାଜା ଉତ୍ତର କଲେ ଦୁଇଟିଯାକ ଉପାୟ ଅସମ୍ଭବ । କାରଣ, ମୋର ହୃଦୟ ମଦନ ଶରାଘାତରେ ଜର୍ଜରିତ, ପ୍ରିୟା-ସମାଗମ-କାରିଣୀ ନିଦ୍ରା କୁଆଡ଼ୁ ହେବ ? ଚିତ୍ରଲେଖିବା ମଧ୍ୟ ଅସମ୍ଭବ କାରଣ ଚିତ୍ର ଲେଖିବା ପୂର୍ବରୁ ନେତ୍ର ଅଶ୍ରୁଜଳରେ ପୂର୍ଣ୍ଣ ହୋଇଯିବ । ମୋର ମନେ ହୁଏ, ମୋର ଏହି ଦାରୁଣ ହୃଦୟ ବେଦନା ଉର୍ବଶୀ ଜାଣି ପାରି ନାହାନ୍ତି । ଏହା ଶୁଣି ଉର୍ବଶୀ ନିଜର ହୃଦୟ-ଯନ୍ତ୍ରଣା ଦୁଇଟି ଶ୍ଳୋକରେ ବର୍ଣ୍ଣନ କରି ଭୂର୍ଜ ପତ୍ରରେ ଲେଖି ସେହି ଭୂର୍ଜ ପତ୍ର ରାଜାଙ୍କ ଆଗକୁ ଫିଙ୍ଗିଦେଲେ । ରାଜା ଭୂର୍ଜ-ପତ୍ରସ୍ଥ ବିଷୟ ପଢ଼ି ସାକ୍ଷାତ୍ ଉର୍ବଶୀଙ୍କୁ ପାଇଲା ପରି ଆନନ୍ଦ ଲାଭ କଲେ । ତାଙ୍କର ଅଙ୍ଗୁଳିମାନଙ୍କରେ ସ୍ୱେଦୋଦ୍ଗମ ହେଲା । କାଳେ ଝାଳରେ ଅକ୍ଷରଗୁଡ଼ିକ ଖରାପ ହୋଇଯିବ—ଏହି ଭୟରେ ବିଦୂଷକଙ୍କୁ ଭୂର୍ଜପତ୍ରଟି ରଖିବାକୁ ଦେଲେ । ଉର୍ବଶୀ ଓ ଚିତ୍ର-

ଲେଖା ସ୍ୱରୂପ ପ୍ରକାଶ କଲେ ଏବଂ ରାଜାଙ୍କ ସହିତ ଆଳାପ କରିବାକୁ ଲାଗିଲେ । ଏ ସମୟରେ ଦେବଦୂତ ପ୍ରବେଶ କରି ଜଣାଇଲା ଯେ ଭରତ ମହର୍ଷି ଯେଉଁ ଅଷ୍ଟରସାଶ୍ରୟ ନାଟକ ଅପ୍ସରାମାନଙ୍କୁ ଶିଖାଇ ଅଛନ୍ତି, ଇନ୍ଦ୍ର ସେହି ନାଟକର ଅଭିନୟ ଦେଖିବାକୁ ଚାହାନ୍ତି । ଏ ହେତୁ ଉର୍ବଶୀଙ୍କୁ ନେଇଯିବା ସକାଶେ ଆଦେଶ ଦେଇଛନ୍ତି । ଉର୍ବଶୀ ରାଜାଙ୍କର ଅନୁମତି ନେଇ ଦୁଃଖରେ ଚିତ୍ରଲେଖାଙ୍କ ସହିତ ପ୍ରସ୍ଥାନ କଲେ । ରାଜା ମନୋବିନୋଦନ ସକାଶେ ଉର୍ବଶୀଙ୍କର ଭୂର୍ଜପତ୍ର ବିଦୂଷକଙ୍କୁ ମାଗିଲେ । କିନ୍ତୁ ସେହି ଭୂର୍ଜପତ୍ରଟି ବିଦୂଷକଙ୍କ ହାତରୁ ଉଡ଼ିଯାଇଥିଲା । ସେ କହିଲେ—କାହିଁ ସେଠା ତ ଦେଖାଯାଉ ନାହିଁ, ସମ୍ଭବତଃ ଉର୍ବଶୀଙ୍କ ସହିତ ଅଦୃଶ୍ୟ ହୋଇଯାଇ ଅଛି । ରାଜା ବିଦୂଷକଙ୍କର ଅସାବଧାନତାକୁ ତିରସ୍କାର କଲେ ଏବଂ ଖୋଜିବାକୁ ଲାଗିଲେ । ଏ ସମୟରେ ନିପୁଣିକା ସହିତ ରାଣୀ ଔଶୀନରୀ ସେଠାରେ ପ୍ରବେଶ କଲେ । ସେହି ଭୂର୍ଜପତ୍ରଟି ଉଡ଼ି ଉଡ଼ି ଯାଇ ତାଙ୍କର ନୂପୁରରେ ଲାଗିଲା । ନିପୁଣିକା ତାହା ପଢ଼ି ରାଣୀଙ୍କୁ ଶୁଣାଇଲା ଏବଂ ସମ୍ଭବତଃ ତାହା ଉର୍ବଶୀଙ୍କର ପ୍ରେମପତ୍ର ବୋଲି ପ୍ରକାଶ କଲା । ରାଣୀ ରାଜାଙ୍କ ଆଗକୁ ଯାଇ ଆପଣ ଯାହା ଖୋଜିବାରେ ବ୍ୟସ୍ତ, ସେହି ପତ୍ର ଆଣିଅଛି ବୋଲି କହିଲେ । ରାଜା ଅନ୍ୟ ଜିନିଷ ଖୋଜୁଅଛି କହି ରାଣୀଙ୍କର କୋପ ଶାନ୍ତ କରିବାକୁ ଯାଇ ତାଙ୍କ ପାଦରେ ପଡ଼ିଲେ । ମାତ୍ର ରାଣୀ କିଛି ନଶୁଣି, ତାଙ୍କ ପ୍ରତି ଧ୍ୟାନ ନ ଦେଇ ଦାସୀ ସହିତ ପ୍ରସ୍ଥାନ କଲେ । ବିଦୂଷକ କହିଲେ, ଭଲ ହେଲା—ରାଣୀ ଯାଇଛନ୍ତି । ଆଖିରେ ରୋଗ ହେଲେ ମନୁଷ୍ୟ ଆଗରେ ପ୍ରଜ୍ୱଳିତ ଦୀପ ମଧ୍ୟ ଦେଖିପାରେ ନାହିଁ । ତା ପରେ ରାଜା କହିଲେ—ମିତ୍ର, କଥାଟା ଠିକ୍ ନୁହେଁ । ଉର୍ବଶୀଙ୍କ ପ୍ରତି

ମୋର ପ୍ରେମ ଜାତ ହୋଇଥିଲେ ମଧ୍ୟ ରାଣୀଙ୍କ ପ୍ରତି ମୋର ପୂର୍ବ-ଭାବ ଅକ୍ଷୁଣ୍ଣ ରହିଛି । ଏହା ପରେ ମଧ୍ୟାହ୍ନ ହେବା ଫଳରେ ଉଭୟେ ସ୍ନାନାଦି କାର୍ଯ୍ୟ କରିବା ଉଦ୍ଦେଶ୍ୟରେ ପ୍ରସ୍ଥାନ କଲେ । (୨ୟ ଅଙ୍କ) ତୃତୀୟ ଅଙ୍କର ପ୍ରାରମ୍ଭରେ ଏକ କ୍ଷୁଦ୍ର ପ୍ରବେଶ-କରେ ଗାଲବ, ମାଧବ ନାମକ ଦୁଇଟି ଭରତଶିଷ୍ୟଙ୍କର କଥୋପକଥନରୁ ଜଣାପଡ଼େ ଯେ ଇନ୍ଦ୍ରସଭାରେ ସରସ୍ୱତୀ-ପ୍ରଣୀତ 'ଲକ୍ଷ୍ମୀସ୍ୱୟମ୍ବର' ନାଟକ ଅଭିନୀତ ହେଉଥିଲା । ତହିଁରେ ମେନକା ଓ ଉର୍ବଶୀ ଯଥାକ୍ରମେ ବାରୁଣୀ ଓ ଲକ୍ଷ୍ମୀଙ୍କର ବେଶ ଧାରଣ କରିଥିଲେ । ସ୍ୱୟମ୍ବରସଭାରେ ବାରୁଣୀ ଲକ୍ଷ୍ମୀଙ୍କୁ ପଚାରିଲେ 'ସଖି, ବିଷ୍ଣୁଙ୍କ ସହିତ ସମସ୍ତ ଲୋକପାଳ ଉପସ୍ଥିତ, ତୁମ ମନ କାହା ପ୍ରତି ବଳିଅଛି ?' ଉର୍ବଶୀ 'ପୁରୁଷୋତ୍ତମଙ୍କ ପ୍ରତି' ବୋଲି କହିବା କଥା । ମାତ୍ର 'ବୁଦ୍ଧିଃ କର୍ମାନୁସାରିଣୀ' ନ୍ୟାୟରେ ଲକ୍ଷ୍ମୀ ବେଶଧାରିଣୀ ଉର୍ବଶୀ ଭୁଲରେ 'ପୁରୂରବା ପ୍ରତି' ବୋଲି କହି ଦେଲେ । ରସଭଙ୍ଗ ହେଲା ! ଭରତମହର୍ଷି କ୍ରୁଦ୍ଧ ହୋଇ ଶାପ ଦେଲେ—ତୁମର ସ୍ୱର୍ଗବାସ ଚ୍ୟୁତ ହେଉ । ନାଟକର ଅଭିନୟ ଶେଷ ହେବା ପରେ ମସ୍ତକ ଅବନତ କରି ରହିଥିବା ଉର୍ବଶୀଙ୍କୁ ଇନ୍ଦ୍ର କହିଲେ—'ପୁରୂରବା ଯୁଦ୍ଧରେ ମୋର ସାହାଯ୍ୟ କରିଛନ୍ତି । ତାଙ୍କର କାମନା ପୂର୍ଣ୍ଣ କରିବା ମୋର କର୍ତ୍ତବ୍ୟ । ତୁମେ ତାଙ୍କ ପାଖକୁ ଯାଅ ଏବଂ ତୁମ ପୁତ୍ର ମୁଖ ରାଜା ଦର୍ଶନ କଲା ପର୍ଯ୍ୟନ୍ତ ତାଙ୍କ ପାଖରେ ରହ ।' ସମ୍ଭବତଃ ଦିନର ତୃତୀୟ ପ୍ରହରରେ ଏହା ଘଟିଥିଲା । ସେ ଦିନର ପରେର ବିଷୟ ମୁଖ୍ୟ ପ୍ରବେଶକରେ ବର୍ଣ୍ଣିତ ହୋଇଅଛି । ପ୍ରଥମେ କଞ୍ଚୁକୀ ପ୍ରବେଶ କରି କ୍ରମାନ୍ୱୟରେ ସାୟଂକାଳର ବର୍ଣ୍ଣନା କରିଅଛି ।

उत्कीर्णा इव वासयष्टिषु निशानिद्रालसा बर्हिणो
धूपैर्जालविनिर्गतैर्वलभयः सन्दिग्धपारावताः ।
आचारप्रयतः सपुष्पबलिषु स्थानेषु चार्चिष्मतीः
सन्ध्यामङ୍गଲदीपिका विभजते शुद्धान्तवृद्धाजनः ॥

'ରାତ୍ରିରେ ମୟୂରମାନେ ବାସଯଷ୍ଟି ଉପରେ ନିଦ୍ରାଭିଭୂତ ହୋଇ ଚିତ୍ରାର୍ପିତ ହେଲା ପରି ନିଶ୍ଚଳ ଦେଖାଯାଉଛନ୍ତି, ପ୍ରାସାଦର ଝରକା ବାଟେ ବାହାରୁଥିବା ଧୂପ ଧୂଆଁରେ କପୋତମାନଙ୍କୁ ଅପ୍ରକାଶିତ କରାଇ ପାରାରେ ଭ୍ରମ ଜାତ କରୁଅଛି । ଅନ୍ତଃପୁରର ବୁଢ଼ୀ ସ୍ତ୍ରୀମାନେ ଅଗ୍ରସରବଶତଃ ସ୍ଥାନେ ସ୍ଥାନେ ପୁଷ୍ପବଳି ସହିତ ସନ୍ଧ୍ୟାକାଳୀନ ମଙ୍ଗଳଦୀପମାନ ସ୍ଥାପନ କରୁଅଛନ୍ତି ।'

ଏହି ଶ୍ଳୋକରେ ସୁନ୍ଦରରୂପେ ସନ୍ଧ୍ୟାର ବର୍ଣ୍ଣନା କରାଯାଇଅଛି । ଏ ସମୟରେ ରାଜା ଓ ବିଦୂଷକ ପ୍ରବେଶ କଲେ । ରାଣୀ କଞ୍ଚୁକୀ ଦ୍ୱାରା ରାଜାଙ୍କୁ କହି ପଠାଇଲେ 'ଆଜି ମଣିହର୍ମ୍ୟ-ପୃଷ୍ଠଦେଶରେ ଚନ୍ଦ୍ର ସୁନ୍ଦର ଦେଖାଯିବେ । ଏ ହେତୁ ତାଙ୍କର ରୋହିଣୀଙ୍କ ସହିତ ସଂଯୋଗ ହେଲା ପର୍ଯ୍ୟନ୍ତ ମୁଁ ମହାରାଜାଙ୍କ ସହିତ ରହିବାକୁ ଚାହେଁ ।' ରାଣୀ ମଣିହର୍ମ୍ୟର ପୃଷ୍ଠ ଉପରକୁ ଯାଇ ଦେଖିଲେ ଯେ ଚନ୍ଦ୍ରଙ୍କର କିରଣରେ ଅନ୍ଧକାର ଦୂରୀଭୂତ ହୋଇଅଛି । ରାଜା ତାତ୍କାଳିକ ଦୃଶ୍ୟ ନିମ୍ନଶ୍ଳୋକରେ ବର୍ଣ୍ଣନା କଲେ —

उदयगूढशशाङ्कमरीचिभिस्तमसि दूरमितः प्रतिसारिते ।
अलकसंयमनादिव लोचने हरति मे हरिवाहनदिङ्मुखम् ॥

ବିକ୍ର, ୩,୬

'ଉଦୟପର୍ବତଅନ୍ତରାଳରେ ଅବୃତ ଚନ୍ଦ୍ରଙ୍କର କିରଣମାନେ ଅନ୍ଧକାର ଦୂର କରିଅଛନ୍ତି । ପୂର୍ବଦିଗଙ୍ଗନାର ମୁଖ ସଂଯତ ଅଳକାବଳୀରେ ଅବୃତ ହେଲପରି ଶୋଭା ପାଇ ମୋର ନେତ୍ର ଆକର୍ଷଣ କରୁଅଛି' । ଏହି ବର୍ଣ୍ଣନାରେ ସମାସୋକ୍ତି ଓ ଉତ୍ପ୍ରେକ୍ଷା ଅର୍ଥାଳଂକାରର ମଧୁର ସମାବେଶ ହୋଇ ଅଛି । ଚନ୍ଦ୍ର ପୂର୍ବାଦିଗଙ୍ଗନାର ପତି । ସେ ପୂର୍ବୀଙ୍କୁ ଆଲିଙ୍ଗନାକାନ୍ତ । ଏହେତୁ ବିରହିଣୀ ସ୍ତ୍ରୀର କେଶ ତୈଳାଦିଦ୍ୱାରା ସଂସ୍କୃତ ନ ହୋଇ ଯେପରି ମୁଖ ଉପରେ ପଡ଼ିଥାଏ, ସେହିପରି ଅନ୍ଧକାର ପୂର୍ବଦିଗକୁ ବ୍ୟାପ୍ତ କରି ରହିଛି । କିନ୍ତୁ ଉଦୟୋନ୍ମୁଖ ଚନ୍ଦ୍ରଙ୍କର କିରଣମାନଙ୍କ ଦ୍ୱାରା ଅନ୍ଧକାର ଦୂର ହେଉଥିବା ହେତୁ ପୂର୍ବଦିଗର ମୁଖ କେଶ ସଂଯତ କରି ପତିଙ୍କର ଆଗମନକୁ ଅପେକ୍ଷା କରୁଥିବା ସ୍ତ୍ରୀର ମୁଖସଦୃଶ ଚକ୍ଷୁର ଆନନ୍ଦଦାୟକ ହେଉଅଛି—ଏହା ହେଉଅଛି ରାଜାଙ୍କର ଉଦ୍ଦେଶ୍ୟ । ଏ ସମୟରେ ଚନ୍ଦ୍ର ଉଦିତ ହେବା ଦେଖି ବିଦୂଷକ କହିଲେ—'ଏଇ ଦେଖନ୍ତୁ ଲଡ଼ୁ ସମାନ ଚନ୍ଦ୍ର ଉଦିତ ହେଲେ ।' ବିଦୂଷକ ଖାଦ୍ୟପ୍ରିୟ । ଏ ହେତୁ ତାଙ୍କର ଉପମାଗୁଡ଼ିକ ଖାଦ୍ୟ-ପେୟାଦି ପଦାର୍ଥମାନଙ୍କ ସହିତ କେବଳ ଦିଆଯାଇଅଛି । ଏମାନେ ଏପରି କଥୋପକଥନ କଲାବେଳେ ଉର୍ବଶୀ ଅଭିସାରିକା ବେଶରେ ନିଜ ସଖୀ ଚିତ୍ରଲେଖା ସହିତ ବିମାନରୁ ଅବତରଣ କଲେ । ତିରସ୍କରିଣୀ ରାଜାଙ୍କର ଭାଷଣ ଶୁଣି ସମ୍ମୁଖରେ ଅବତୀର୍ଣ୍ଣ ହେବାକୁ ଯାଉଥିଲେ । ଏ ସମୟରେ ରାଣୀ ଔଶୀନରୀ ପୂଜା ଉପ-କରଣ ହସ୍ତା ଦାସୀ ସହିତ ସେଠାରେ ପ୍ରବେଶ କଲେ । ସେ ଶୁକ୍ଳବସ୍ତ୍ର ପରିଧାନ କରିଥିଲେ ଏବଂ କେତେକ ସୌଭାଗ୍ୟ ସୂଚକ ଅଳଙ୍କାର ମାତ୍ର ଧାରଣ କରିଥିଲେ । ବ୍ରତ କରିଥିବା ହେତୁ ତାଙ୍କ ହୃଦୟ ଅଭିମାନଶୂନ୍ୟ ଥିଲା । ତାଙ୍କୁ ଦେଖି ଉର୍ବଶୀଙ୍କ

ହୃଦୟଂତରେ ସ୍ୱତଃ ଆଦର ଜନ୍ମିଲା ହେଲା । ରାଜା ତାଙ୍କୁ 'ଦେବି' ବୋଲି ସମ୍ବୋଧନ କଲେ । ତାହା ଶୁଣି ଉର୍ବଶୀ କହିଲେ— ଯଥାର୍ଥରେ 'ଦେବୀ' ସମ୍ବୋଧନ ଏହାଙ୍କ ପକ୍ଷରେ ସମୁଚିତ ହୋଇ ଅଛି, ଏ ତେଜସ୍ୱିତାରେ ଇନ୍ଦ୍ରାଣୀଙ୍କ ଠାରୁ କୌଣସି ଅଂଶରେ ନ୍ୟୂନ ନୁହନ୍ତି । ରାଣୀ ଗନ୍ଧପୁଷ୍ପାଦି ଦେଇ ଚନ୍ଦ୍ରଙ୍କର ପୂଜା କଲେ, ବାହ୍ମଣକଙ୍କୁ ସ୍ୱସ୍ତିବାଚନ ଦକ୍ଷିଣା ଦେଲେ ଏବଂ ରାଜାଙ୍କୁ ପୂଜା କରି ହାତ ଯୋଡ଼ି ଜଣାଇଲେ—'ଏହି ନବସଂଗତ ରୋହିଣୀଚନ୍ଦ୍ରଙ୍କୁ ସାକ୍ଷୀ ରଖି ମୁଁ ପ୍ରମାଣ କରୁଅଛି ଯେ ଆଜିଠାରୁ ଆପଣ ଯେଉଁ ରମଣୀଙ୍କ ପ୍ରତି ଅନୁରକ୍ତ ହେବେ ଏବଂ ଯେଉଁ ସ୍ତ୍ରୀ ଆପଣଙ୍କ ପ୍ରତି ଅନୁରକ୍ତା, ମୁଁ ତାଙ୍କ ସହିତ ସଦ୍ଭାବ ରଖିବି ।' ଏହା ଶୁଣି ବିଦୂଷକ ମନେ ମନେ ଭାବୁଛନ୍ତି—'ହାତରୁ ମାଛ ଖସି ଗଲାପରେ କେଉଟ ଭାବୁଛି—ଭଲ ହେଲା, ମୋର ପୁଣ୍ୟ ହେବ ।' ତା ପରେ ରାଣୀ ପ୍ରସ୍ଥାନ କଲେ । ଉର୍ବଶୀ ଓ ଚିତ୍ରଲେଖା ସ୍ୱରୂପ ପ୍ରକାଶ କଲେ । ପ୍ରଥମେ ସ୍ୱାଗତ କୁଶଳ ପ୍ରଶ୍ନ ହେଲା ପରେ ଚିତ୍ରଲେଖା ରାଜାଙ୍କୁ ବିନୟ ପୂର୍ବକ ଜଣାଇଲେ ଯେ, ବସନ୍ତଋତୁ ପୂର୍ଣ୍ଣ ହେଲେ ଗ୍ରୀଷ୍ମରେ ସେ ସୂର୍ଯ୍ୟଙ୍କର ପୂଜା କରିବାକୁ ଯିବେ; ସଖୀ ସ୍ୱର୍ଗ ଯେପରି ମନେ ନ ପକାଇବ ସେପରି ବ୍ୟବସ୍ଥା କରନ୍ତୁ । ବିଦୂଷକ କହିଲେ—ସଖି, ତୁମର ସ୍ୱର୍ଗରେ କି ସୁଖ ଅଛି ? ନା ଖାଇବାକୁ ଅଛି ନା ପିଇବାକୁ ଅଛି, ଯେଉଁଠାରେ କେବଳ ମାଛ ପରି ଆଖି ଖୋଲି ରହିବାକୁ ହୁଏ ।' ପରେ ଚିତ୍ରଲେଖା ପ୍ରସ୍ଥାନ କଲେ । ରାତି ବେଶି ହେବା ହେତୁ ସମସ୍ତେ ଅଭ୍ୟନ୍ତରକୁ ପ୍ରସ୍ଥାନ କଲେ (ତୃତୀୟ ଅଙ୍କ) ଏହାପରେ ଚଉଦ ପନ୍ଦର ବର୍ଷ ପର ଘଟଣା ଚତୁର୍ଥ ଅଙ୍କରେ ବର୍ଣ୍ଣିତ ହୋଇ ଅଛି । ମଧ୍ୟବର୍ତ୍ତୀ ସମ୍ବାଦ ଚିତ୍ରଲେଖା ଓ ସହଜନ୍ୟା ନାମକ ଦୁଇଟି ଅପ୍ସରାଙ୍କର କଥୋପକଥନରୁ

କଣାଯାଏ—ଉର୍ବଶୀଙ୍କର ସମାଗମପରେ କେତେ ଦିନପାଇଁ ରାଜା ରାଜ୍ୟଭାର ମନ୍ତ୍ରୀମାନଙ୍କ ହସ୍ତରେ ନ୍ୟସ୍ତ କରି ବିହାର କରିବାସକାଶେ ଉର୍ବଶୀଙ୍କ ସହିତ ଗନ୍ଧମାଦନ ପର୍ବତକୁ ଯାଇ ଥିଲେ । ଏକ ସମୟରେ ମନ୍ଦାକିନୀ ତଟରେ କ୍ରୀଡ଼ାରତ ବିଦ୍ୟାଧରକୁମାରୀଙ୍କ ପ୍ରତି ଦୃଷ୍ଟିପାତ କଲେ । ଉର୍ବଶୀ ତାହା ସହ୍ୟ କରି ନପାରି କ୍ରୋଧପରବଶ ହୋଇ ସେ ସ୍ଥାନ ତ୍ୟାଗ କରି ଚଲେ ଏବଂ କ୍ରୋଧପରବଶତଃ ଭୁଲକ୍ରମେ କୁମାର କାର୍ତ୍ତିକେୟଙ୍କର ଆଶ୍ରମରେ ପ୍ରବେଶ କଲେ—କୁମାରସ୍ୱାମୀ ଆଜନ୍ମ-ବ୍ରହ୍ମଚାରୀ ଓ ସ୍ତ୍ରୀ ସନ୍ଦର୍ଶନ ଅନିଷ୍ଟକର ବୋଲି ଭାବନ୍ତି । ଏହେତୁ ସେ ନିୟମ କରିଥିଲେ ଯେ କୌଣସି ସ୍ତ୍ରୀ ତାଙ୍କ ଆଶ୍ରମରେ ପ୍ରବେଶ କଲେ ଲତା ହୋଇଯିବ । ତାର ଫଳରେ ଉର୍ବଶୀ ମଧ୍ୟ ଲତା ପାଲଟି ଗଲେ । ରାଜା ଉର୍ବଶୀଙ୍କର ବିରହ ସହ୍ୟ କରି ନ ପାରି ବନମଧ୍ୟରେ ପରିଭ୍ରମଣ କଲେ । ବର୍ଷା ଋତୁର ମେଘ ସନ୍ଦର୍ଶନରେ ତାଙ୍କର ଅବସ୍ଥା ଅତ୍ୟନ୍ତ ଶୋଚନୀୟ ହୋଇ ଉଠିଲା । ରାଜା ଉନ୍ମତ୍ତ ପରି ହୋଇ ଗଲେ । ମେଘ, ଲତା, ବୃକ୍ଷ, ପଶୁ, ପକ୍ଷୀ ସମସ୍ତଙ୍କୁ ଉର୍ବଶୀଙ୍କର ବିଷୟ ପଚାରିବାକୁ ଲାଗିଲେ । ଆକାଶରେ ଜଳବୃଷ୍ଟି କରୁଥିବା ମେଘକୁ ନିଜପ୍ରିୟା ଉର୍ବଶୀଙ୍କୁ ହରଣ କରିଥିବା ରାକ୍ଷସ ମନେ କରି କହିଲେ—'ରେ ଦୁରାତ୍ମା, ରହ ମୋର ପ୍ରିୟତମାକୁ ନେଇ ତୁ କୁଆଡ଼େ ଯାଉଛୁ ? କଅଣ ପର୍ବତ ଶିଖରରୁ ଆକାଶରେ ମୋ ଉପରେ ବାଣ ବୃଷ୍ଟି କରୁଅଛୁ ?' ପରେ ଟିକିଏ ବିଚାର କରି ପ୍ରକୃତରେ ଏ ରାକ୍ଷସ ନୁହେଁ, ମେଘ ବୋଲି ସ୍ଥିର କରି କହିଲେ—

नवजलधरः सन्नद्धोऽयं न दृप्तनिशाचर.
सुरधनुरिदं दूराकृष्टं न नाम शरासन ।
अयमपि पटुर्धारासारी न बाणपरम्परा
कनकनिकषस्निग्धा विद्युत् प्रिया न ममोर्वशी ॥

ବିକ ୪, ୧

'ଅରେ, ଏ ଯେ ନବୋଦିତ ମେଘ, ଦୃପ୍ତ ରାକ୍ଷସ ନୁହେଁ, ଏତ ସୁଦୂର ଅାକୃଷ୍ଟ ଇନ୍ଦ୍ରଧନୁ, ଧାନୁଷର ଧନୁ ନୁହେଁ, ଏତ ପ୍ରବଳ ଧାରାବୃଷ୍ଟି, ବାଣମାନଙ୍କର ବୃଷ୍ଟି ନୁହେଁ, ଏଯେ କଷଟି ପଥରର ସ୍ୱର୍ଣ୍ଣରେଖା ସଦୃଶ ବିଜୁଳି, ମୋର ପ୍ରିୟତମା ଉର୍ବଶୀ ନୁହେଁ ।' ପରେ ପୃଥିବୀରେ ପାଦ ଯୋଗରେ ବ୍ୟାପ୍ତ, ହରିତ ତୃଣଶ୍ୟାମଳ ଭୂଭାଗ ଦେଖି, ଇନ୍ଦ୍ରଗୋପରଞ୍ଜିତ, ଅଶ୍ରୁବିନ୍ଦୁପୂର୍ଣ୍ଣ ଉର୍ବଶୀଙ୍କର ବକ୍ଷରୁ ବିଗଳିତ ସ୍ତନାଂଶୁକ ମନେ କରି ପରେ ଯଥାର୍ଥଜ୍ଞାନ ଲାଭକଲେ । ଏହିପରି ଭ୍ରମପ୍ରମାଦ ଓ ବିବେକର ବଶବର୍ତ୍ତୀ ହୋଇ ନାନାସ୍ଥାନ ଭ୍ରମଣ କରି ଶେଷରେ ଏକ ରକ୍ତବର୍ଣ୍ଣ ମଣି ଦେଖି ଭାବିଲେ 'ଏହି ମନୋହର ମଣିଟି ଯାହାଙ୍କର ମସ୍ତକରେ ଦେବା କଥା, ସେହି ପ୍ରିୟତମା ମୋର ବର୍ତ୍ତମାନ ଦୁର୍ଲଭ, ଏ ମଣି ମୋର କଅଣ ହେବ' ଭାବି ମଣି ପରିହାର କରି ଯାଉଥିଲେ । ଏ ସମୟରେ ଏକ ଋଷି କହିଲେ 'ଏହି ମଣି ପାର୍ବତୀଙ୍କ ଚରଣପ୍ରସାଦରୁ ଉତ୍ପନ୍ନ । ଏହି ମଣି ଶୀଘ୍ର ଅଭୀଷ୍ଟ ଜନର ସମାଗମ କରାଏ, ତୁମେ ଏହା ଗ୍ରହଣ କର' ଏହିପରି ବାଣୀ ଶୁଣି ରାଜା ତାହା ଗ୍ରହଣ କଲେ ଏବଂ ପାର୍ଶ୍ୱବର୍ତ୍ତିନୀ ପୁଷ୍ପବିରହିତ ହେଲେ ମଧ୍ୟ ମନୋହାରିଣୀ ଲତାକୁ ଆଲିଙ୍ଗନ କଲେ । ଲତାଟି ଉର୍ବଶୀ ପାଲଟିଲେ ।

ଉଭୟଙ୍କର ପୁନର୍ମିଳନ ହେଲା । ଉର୍ବଶୀ 'ଆପଣ ଅନେକ ଦିନ ହେଲା ରାଜ୍ୟ ଛାଡ଼ି ଆସି ଅଛନ୍ତି, ପ୍ରଜାମାନେ ମୋତେ ନିନ୍ଦା କରୁଥିବେ ।' ଏହା କହି ରାଜାଙ୍କୁ ଫେରିଯିବାକୁ ପ୍ରାର୍ଥନା କଲେ । ଉଭୟେ ରାଜ୍ୟକୁ ପ୍ରତ୍ୟାବର୍ତ୍ତନ କଲେ । (୪ର୍ଥ ଅଙ୍କ) ଏହାପରେ ଅବଲମ୍ବରେ ୫ମ ଅଙ୍କର ଘଟଣା ବର୍ଣ୍ଣିତ ହୋଇଛି । ଏକ ଦିନ ରାଜା ରାଣୀଙ୍କ ସହିତ ଗଙ୍ଗାଯମୁନାସଙ୍ଗମସ୍ଥଳରେ ସ୍ନାନ କରି ବସ୍ତ୍ରାଳଙ୍କାରପ୍ରଭୃତି ଗ୍ରହଣ କରୁଥିଲେ । ଗୋଟିଏ ଗୃଧ୍ର ସଂଗମନୀୟ ମଣିକୁ ମାଂସଖଣ୍ଡ ମନେକରି ଟାଣି ମାରି ନେଇଗଲା । ରାଜା ତାକୁ ମାରିବାକୁ ଉଦ୍ୟତ ହେଲେ ଏବଂ ଧନୁ ଓ ବାଣ ଆଣିବାକୁ ଆଦେଶ ଦେଲେ । ମାତ୍ର ଧନୁବାଣ ପାଇବା ପୂର୍ବରୁ ଗୃଧ୍ରଟି ଆକାଶରେ ଅଦୃଶ୍ୟ ହୋଇଗଲା । ରାଜା କଞ୍ଚୁକୀ ଦ୍ୱାରା ଅଟରେ ସେ ଗୃଧ୍ର କେଉଁ ଗଛଉପରେ ବସିବ, ଅନୁସନ୍ଧାନ କରିବାକୁ ନଗରରକ୍ଷକଙ୍କୁ ଆଦେଶ ଦେଲେ ଏବଂ ବିଦୂଷକଙ୍କ ସହିତ ଏହି ବିଷୟ ନେଇ ଚର୍ଚ୍ଚା କରୁଥିଲେ । ଏ ସମୟରେ କଞ୍ଚୁକୀ ସେହି ମଣି ଓ ଏକବାଣ ନେଇ ଉପସ୍ଥିତ ହେଲେ । ବାଣଉପରେ ଉଲ୍ଲିଖିତ ଅକ୍ଷରମାନ ପଢ଼ି 'ସେ ବାଣ ତାଙ୍କର ଔରସରେ ଉର୍ବଶୀଙ୍କର ଗର୍ଭରୁ ସମ୍ଭୂତ ଆୟୁନାମକ ନିଜ ପୁତ୍ରର' ବୋଲି ଜାଣି ବିସ୍ମିତ ହେଲେ ଏବଂ କହିଲେ— 'କେବଳ ନୈମିଷେୟ ସତ୍ର' ସମୟ ଛଡ଼ା ଅନ୍ୟ ସମୟରେ ମୋର ଉର୍ବଶୀଙ୍କ ସହିତ ବିଯୋଗ ହୋଇ ନାହିଁ । ସେ ସମୟରେ ମଧ୍ୟ ସେ ଗର୍ଭବତୀ ଥିଲେ ବୋଲି ମୋର ବିଶ୍ୱାସ ହେଉ ନାହିଁ । ତେବେ ଏ କିପରି ଉର୍ବଶୀଙ୍କର ପୁତ୍ର ।' ବିଦୂଷକ କହିଲେ—'ଉର୍ବଶୀ ଦିବ୍ୟାଙ୍ଗନା, ଦିବ୍ୟସ୍ତ୍ରୀମାନେ ମାନୁଷୀପରି ସବୁବେଳେ ସମାନ ବୋଲି ଭାବନ୍ତୁ ନାହିଁ ।'

ଏହି କଥା ଚର୍ଚ୍ଚା ହେଉଥିବାବେଳେ କଞ୍ଚୁକୀ ଅସି ଜଣାଇଲେ ଯେ ଚ୍ୟବନ ଆଶ୍ରମରୁ ଏକ ଜଣ ତାପସୀ ଏକ କୁମାର ସହ ଉପସ୍ଥିତ । ତାପସୀ କୁମାର ସହ ପ୍ରବେଶ କଲେ । ବିଦୂଷକ କୁମାରଙ୍କୁ ଦେଖିବାମାତ୍ରେ ରାଜାଙ୍କର ସାଦୃଶ୍ୟ ଲକ୍ଷ୍ୟ କଲେ । ରାଜାଙ୍କର ବାତ୍ସଲ୍ୟ ଉଚ୍ଛ୍ୱସିତ ହେଲା । ସେ କହିଲେ—

**बाष्पायते निपतिता मम दृष्टिरस्मिन्**
**वात्सल्यबन्धि हृदयं, मनसः प्रसादः ।**
**संजातवेपथुभिरुज्झितधैर्यवृत्ति-**
**रिच्छामि चैनमदयं परिरब्धुमङ्गैः ॥**

(ବିକ୍ର ୫. ୯.)

'ଏହାଙ୍କୁ ଦେଖିଲାମାତ୍ରେ ମୋର ଚକ୍ଷୁ ଅଶ୍ରୁଜଳରେ ପ୍ଲାବିତ ହେଉଅଛି, ହୃଦୟ ବାତ୍ସଲ୍ୟପୂର୍ଣ୍ଣ ଓ ମନ ପ୍ରସନ୍ନ ହେଉଅଛି; ଧୈର୍ଯ୍ୟ ଚ୍ୟୁତ ହେଉଅଛି, କମ୍ପ ଜାତ ହେଉଅଛି, ନିର୍ଦ୍ଦୟଭାବେ ଗାଢ଼ ଆଲିଙ୍ଗନ କରିବାକୁ ଇଚ୍ଛା ହେଉଅଛି ।' କୁମାରଙ୍କର ମଧ୍ୟ ରାଜାଙ୍କ ପ୍ରତି ଭକ୍ତି ଉଦ୍ରିକ୍ତ ହେଉଥିଲା । ପରଶେଷରେ ତାପସୀ କହିଲେ—'ଉର୍ବଶୀ ଜନ୍ମ ହେଲା ମାତ୍ରେ ଏହି କୁମାରଙ୍କୁ ମୋତେ ଦେଇଥିଲେ । ଭଗବାନ୍ ଚ୍ୟବନ ମହର୍ଷି ଏହାଙ୍କର ଜାତକର୍ମାଦି ସଂସ୍କାର ନିଷ୍ପନ୍ନ କରି ଏହାଙ୍କୁ ଧନୁର୍ବିଦ୍ୟା ଶିକ୍ଷା ଦେଇଅଛନ୍ତି । ଆଜି ପୁଷ୍ପ ସମିଧାଦି ଆଣିବା ସକାଶେ ଋଷିକୁମାରମାନଙ୍କ ସହିତ ବନକୁ ଯାଇଥିଲେ ଏବଂ ବୃକ୍ଷ ଉପରେ ଚଞ୍ଚୁରେ ମାଂସଖଣ୍ଡ ଧରିଥିବା ଏକ ଗୃଧ୍ରକୁ ଶରରେ ବିଦ୍ଧ କଲେ । ମହର୍ଷି ମୋତେ ତାଙ୍କୁ ଏହାଙ୍କ ଜନକଙ୍କୁ ଫେରାଇ ଦେବାକୁ ଆଦେଶ ଦେଲେ ।' ଏହାପରେ

କୁମାର ରାଜାଙ୍କୁ ପ୍ରଣାମ କଲେ । ରାଜା କହିଲେ—'ସେଠାରେ ତୁମ ପିତାଙ୍କର ପ୍ରିୟମିତ୍ର ବ୍ରାହ୍ମଣ ବସିଛନ୍ତି, ତାଙ୍କୁ ବନ୍ଦନାରେ ପ୍ରଣାମ କର ।' ଏହା ଶୁଣି ବିଦୂଷକ କହିଲେ—'ସେ ବା କାହିଁକି ଭୟ କରିବେ, ଆଶ୍ରମରେ ତ ସେ ଅନେକ ବାନର ଦେଖି ଆସିଛନ୍ତି ।' ଉର୍ବଶୀ ପ୍ରବେଶ କଲେ । କୁମାରଙ୍କୁ ଦେଖିଲାମାତ୍ରେ ତାଙ୍କର ହୃଦୟ ଅପତ୍ୟସ୍ନେହରେ ଉଚ୍ଛୁଳି ପଡ଼ିଲା । ମାତ୍ର ପତି ପୁତ୍ରମୁଖ ଦେଖିପାରିଲେ, ଇନ୍ଦ୍ରଙ୍କ ଆଦେଶମତେ ତାଙ୍କର ରାଜାଙ୍କ ସହିତ ବିରହ ହେବ ଭାବିଲାମାତ୍ରେ ତାଙ୍କର ଆଖିରୁ ଅଶ୍ରୁ ବହିବାକୁ ଲାଗିଲା । ରାଜା ଉର୍ବଶୀଙ୍କର କ୍ରନ୍ଦନର କାରଣ ଜାଣିପାରି କୁମାରଙ୍କୁ ରାଜ୍ୟରେ ଅଭିଷିକ୍ତ କରି ବନକୁ ଯିବାକୁ ସ୍ଥିର କଲେ । ଏ ସମୟରେ ନାରଦ ମହର୍ଷି ପ୍ରବେଶ କରି ଇନ୍ଦ୍ରଙ୍କର ସନ୍ଦେଶ ଶୁଣାଇଲେ । 'ରାଜନ୍, ତ୍ରିକାଳଦର୍ଶୀ ମହର୍ଷିମାନେ କହୁଅଛନ୍ତି, ଭବିଷ୍ୟତରେ ସୁର ଓ ଅସୁରମାନଙ୍କର ଭୟଙ୍କର ସଂଗ୍ରାମ ହେବ ଏବଂ ଆପଣ ସେ ସଂଗ୍ରାମରେ ମୋର ସହାୟ ହେବେ । ବର୍ତ୍ତମାନ ଶସ୍ତ୍ର ତ୍ୟାଗ କରନ୍ତୁ ନାହିଁ । ଉର୍ବଶୀ ଆପଣଙ୍କର ଜୀବନ ଥିବା ପର୍ଯ୍ୟନ୍ତ ସହଧର୍ମଚାରିଣୀ ହୋଇ ରହିବ ।' ଏହା ପରେ ଇନ୍ଦ୍ରଙ୍କ ପ୍ରେରିତ ତୀର୍ଥଜଳରେ ଅପ୍ସରାମାନେ ଆୟୁଙ୍କୁ ଯୌବରାଜ୍ୟରେ ଅଭିଷିକ୍ତ କଲେ । କୁମାର ନାରଦଙ୍କୁ ପ୍ରଣାମ କଲେ । ଔଶୀନରୀ ରାଣୀଙ୍କୁ ନମସ୍କାର କରିବା ସକାଶେ କୁମାରଙ୍କୁ ଅନ୍ତଃପୁରକୁ ନେଇଗଲେ ଏବଂ ଭରତବାକ୍ୟରେ ନାଟକ ସମାପ୍ତ ହେଲା । (୫ମ ଅଙ୍କ)

କାଳିଦାସଙ୍କର 'ମାଳବିକାଗ୍ନିମିତ୍ର' ଓ 'ଅଭିଜ୍ଞାନଶାକୁନ୍ତଳ' ନାଟକମାନଙ୍କ ପରି ଏହି ନାଟକର 'ବିକ୍ରମୋର୍ବଶୀୟ' ନାମ ସାର୍ଥକ ଥିଲାପରି ଜଣାଯାଏ ନାହିଁ । ପୁରୂରବାଙ୍କର ନାମ

ବିକ୍ରମ ଥିଲା ପରି କୌଣସି ଉଲ୍ଲେଖ ଦେଖାଯାଏ ନାହିଁ ।' 'ବିକ୍ରମରେ ଲବ୍ଧ ଉର୍ବଶୀଙ୍କୁ ନେଇ ଏହି ନାଟକ ରଚିତ' ଏହି ଅର୍ଥରେ କବି ଏହି ନାଟକକୁ 'ବିକ୍ରମୋର୍ବଶୀୟ' ନାମ ଦେଇଛନ୍ତି ବୋଲି କଳ୍ପନା କରିବାକୁ ହେବ । ସଙ୍ଗେ ସଙ୍ଗେ ସମ୍ଭବତଃ କବି ନିଜ ଆଶ୍ରୟଦାତାଙ୍କର ନାମ ମଧ୍ୟ ଏହା ସହିତ ସଂଶ୍ଳିଷ୍ଟ ରଖି ଅଛନ୍ତି । ଏହିହେତୁ ସେ ନାଟକର ଦୁଇଟି ସ୍ଥାନରେ ବିକ୍ରମଶବ୍ଦ ପ୍ରୟୋଗ କରି ଅଛନ୍ତି ବୋଲି ଅନେକ ଅନୁମାନ କରୁଛନ୍ତି । *

କାଳିଦାସ ଏହି ନାଟକର କଥାବସ୍ତୁ କେଉଁଠାରୁ ଆହରଣ କରିଛନ୍ତି—ଠିକ୍ କରି କହିହେବ ନାହିଁ ।' ପୁରୁରବା ଓ ଉର୍ବଶୀଙ୍କର ପ୍ରେମକଥା ଅତ୍ୟନ୍ତ ପ୍ରାଚୀନ । ଋଗ୍‌ବେଦର ଦଶମ ମଣ୍ଡଳର ୯୫ ତମ ସୂକ୍ତରେ ପୁରୁରବା ଓ ଉର୍ବଶୀଙ୍କର ସଂବାଦ ଦେଖାଯାଏ । ସଂବାଦର ଭାଷା ସ୍ଥାନେ ସ୍ଥାନେ ଦୁର୍ବୋଧ । ତଥାପି ସଂବାଦର ସାଧାରଣ ଅର୍ଥ ବୋଧନରେ ବେଶି କିଛି ଅସୁବିଧା ଦେଖାଯାଏ ନାହିଁ । ଏହା ଛଡ଼ା ଏହି ସୂକ୍ତର ସନ୍ଦର୍ଭ ଓ କେତେକ ଉକ୍ତିର ବ୍ୟାଖ୍ୟା ଶତପଥ ବ୍ରାହ୍ମଣରେ ମଧ୍ୟ (୫,୧—୨) ଦେଖିବାକୁ ମିଳେ । ସେହି କଥାବସ୍ତୁ ହେଉଛି—

ଉର୍ବଶୀ ନାମକ ଅପସରାଙ୍କର ପୁରୁରବାଙ୍କପ୍ରତି ପ୍ରେମ ଜାତ ହେଲା । ସେ ତାଙ୍କ ସହିତ କେତେକ କାଳ ଅତିବାହିତ କଲେ ।

---

* ରାଜଶେଖର ନିଜ 'ପ୍ରଚଣ୍ଡପାଣ୍ଡବ' ନାଟକ ଓ ସୋମେଶ୍ୱର 'ଚଣ୍ଡକୌଶିକ' ନାଟକରେ ନିଜ ନିଜ ଆଶ୍ରୟଦାତା ରାଜାମାନଙ୍କର ନାମ ଶ୍ଳେଷରେ ଉଲ୍ଲିଖିତ କରି ଅଛନ୍ତି—ଏହା ଅନେକ ଅନୁମାନ ପ୍ରକାଶ କରିଅଛନ୍ତି । (K. B. Pathak Commemoration Volume, P. P. 360—394

ପ୍ରଥମରୁ ସେ ରାଜାଙ୍କ ସହିତ ଦୁଇଟି ଶରତ କରିଥିଲେ । ପ୍ରଥମ ଶରତ୍ ହେଉଛି, ତାଙ୍କର ଦୁଇଟି ମେଷ ସବୁବେଳେ ତାଙ୍କର ଶୟନାଗାରରେ ବନ୍ଧା ହୋଇ ରହିବେ । ଦ୍ୱିତୀୟ ଶରତ୍—ରାଜା ତାଙ୍କ ପାଖକୁ ଉଲଗ୍ନ ଅବସ୍ଥାରେ ଯିବେ ନାହିଁ । ରାଜା ଉଭୟ ଶରତ୍ ସ୍ୱୀକାର କରିଥିଲେ । କେତେ ଦିନ ପରେ ଉର୍ବଶୀ ଗର୍ଭବତୀ ହେଲେ । ଏଥିଭିତରେ ଉର୍ବଶୀଙ୍କ ଅଭାବରେ ସ୍ୱର୍ଗ ଶୂନ୍ୟ ବୋଧ ହେଲା । ସେହେତୁ ଗନ୍ଧର୍ବମାନେ ତାଙ୍କୁ ଫେରାଇ ଆଣିବା ଉପାୟ ଉଦ୍ଭାବନ କଲେ । ସେମାନେ ଏକ ରାତିରେ ମେଷ ଦୁଇଟି ନେଇ ପଳାଇବାକୁ ବସିଲେ । ସେମାନଙ୍କର ବିକଳ ରଡ଼ ଶୁଣି ଉର୍ବଶୀ ତାଙ୍କର ପ୍ରିୟତମ ଶିଶୁ ଦୁଇଟିଙ୍କୁ ରକ୍ଷା କରିବାକୁ ଡାକ ପକାଇଲେ । ରାଜା ଡାକ ଶୁଣି ଉଲଗ୍ନାବସ୍ଥାରେ ସେମାନଙ୍କର ରକ୍ଷା କରିବାକୁ ଦୌଡ଼ିଲେ । ଉଲଗ୍ନ ରାଜା ଉର୍ବଶୀଙ୍କ ଦୃଷ୍ଟିରେ ପଡ଼ନ୍ତୁ ବୋଲି ଗନ୍ଧର୍ବମାନେ ବିଜୁଳୀ ପ୍ରକାଶ କଲେ । ତାହା ଦେଖି ଉର୍ବଶୀ ପୂର୍ବନିୟମାନୁଯାୟୀ ରାଜାଙ୍କୁ ଛାଡ଼ି ଚାଲିଯିବାକୁ ବସିଲେ । ରାଜା ତାଙ୍କୁ ଖୁବ୍ ଅନୁନୟ ବିନୟ କଲେ ଏବଂ କହିଲେ – 'ମୁଁ ତୁମର ପ୍ରେମରେ ପାଗଳ ହୋଇ ପ୍ରାଣ ତ୍ୟାଗ କରିବି ଏବଂ ମୋର ଶରୀର ଶୃଗାଳ ଓ କୁକୁରଙ୍କୁ ଖୁଆଇବି ।' ଏହା ଶୁଣି ଉର୍ବଶୀ ଉତ୍ତର ଦେଲେ 'ପୁରୂରବା, ତୁମେ ତୁମର ସର୍ବନାଶ କରନାହିଁ କି ନିଜ ପ୍ରାଣ ତ୍ୟାଗ କର ନାହିଁ । ଶୃଗାଳ ଓ କୁକୁର ତୁମ ଶରୀରର କୌଣସି କ୍ଷତି କରିପାରିବେ ନାହିଁ । ତୁମେ ଫେରିଯାଅ, ସ୍ତ୍ରୀମାନଙ୍କର ପ୍ରେମ କେବେହେଲେ ସ୍ଥିର ନୁହେଁ । ସେମାନଙ୍କର ହୃଦୟ ଶୃଗାଳର ହୃଦୟ ସଦୃଶ ।'' ପରିଶେଷରେ ଦୟାପରବଶ ହୋଇ ସେ ବର୍ଷ ଶେଷରେ ଗୋଟିଏ ରାତି ତାଙ୍କ ସହିତ ଯାପନ କରିବେ ବୋଲି ପ୍ରତିଜ୍ଞା କଲେ । ପରେ ପୁରୂରବା ଗନ୍ଧର୍ବମାନଙ୍କୁ

ସନ୍ତୁଷ୍ଟ କରି, ତାଙ୍କର ନିର୍ଦ୍ଦେଶମତେ ମନୁଷ୍ୟ ଲୋକରୁ ସ୍ୱର୍ଗୀୟ ଅଗ୍ନି ଆଣି ମନ୍ଥନ କଲେ ଏବଂ ଗନ୍ଧର୍ବତ୍ୱ ପ୍ରାପ୍ତ ହେଲେ ।

ଶତପଥ ବ୍ରାହ୍ମଣର ଏହି କଥାବସ୍ତୁ ସାମାନ୍ୟ ପରିବର୍ତ୍ତନସହ ବିଷ୍ଣୁପୁରାଣ ଓ ଭାଗବତ ପୁରାଣରେ ମଧ୍ୟ ଦେଖାଯାଏ । ଉର୍ବଶୀ ମିତ୍ରାବରୁଣଙ୍କର ଶାପରେ ମର୍ତ୍ତ୍ୟ ଲୋକରେ ରହିବାକୁ ବାଧ୍ୟ ହେଲେ । ଏହା ଛଡ଼ା ଏହି କଥାବସ୍ତୁର ଏକ ପ୍ରଭାବମୂଳ ପର ସମସ୍ତ କଥା 'କଥା ସରିତ୍‌' ସାଗରରେ ଦେଖାଯାଏ । ବୋଧହୁଏ, ତତ୍କାଳୀନ 'ବୃହତ୍‌କଥା' ସମ୍ବନ୍ଧ ଅବଶ୍ୟ କାଳିଦାସ ପରିଚିତ ଥିଲେ । 'କଥାସରିତ୍‌ ସାଗର'ରୁ ଜଣାଯାଏ ଯେ ପୁରୁରବା ବିଷ୍ଣୁଭକ୍ତ ଥିଲେ । ବିଷ୍ଣୁ ପୁରୁରବାଙ୍କୁ ଉର୍ବଶୀଙ୍କୁ ଦେବାପାଇଁ ଇନ୍ଦ୍ରଙ୍କୁ ଆଦେଶ ଦେଲେ । ଦିନେ ରାଜା ଇନ୍ଦ୍ରଙ୍କ ସହିତ ସଭାରେ ବସିଥିଲେ । ରମ୍ଭା ନୃତ୍ୟ କରୁଥିଲେ । ରମ୍ଭାଙ୍କର ନୃତ୍ୟରେ ପ୍ରମାଦ ଦେଖି ରାଜା ହସିଦେଲେ । ନୃତ୍ୟାଚାର୍ଯ୍ୟ ତୁମ୍ବୁରୁ ତାହା ଲକ୍ଷ୍ୟ କରି କ୍ରୁଦ୍ଧ ହୋଇଲେ ଏବଂ ଉର୍ବଶୀଙ୍କ ସହିତ ତୁମର ବିଯୋଗ ହେଉ ବୋଲି ଶାପ ଦେଲେ । ରାଜା ତପସ୍ୟାଦ୍ୱାରା ବିଷ୍ଣୁଙ୍କୁ ସନ୍ତୁଷ୍ଟ କରି ପୁଣି ଉର୍ବଶୀଙ୍କୁ ଲାଭ କଲେ ।

ଉପରି ଉଲ୍ଲିଖିତ ପୁରୁରବା ଓ ଉର୍ବଶୀଙ୍କ ପ୍ରେମକଥା ଓ କାଳିଦାସଙ୍କ ବର୍ଣ୍ଣିତ ପ୍ରେମକଥା ପର୍ଯ୍ୟାଲୋଚନା କଲେ କାଳିଦାସଙ୍କର କଳ୍ପନା ଶକ୍ତିର ସ୍ପଷ୍ଟ ପରିଚୟ ମିଳେ । ଉର୍ବଶୀ ଶାପ ପାଇ କେତେଦିନ ମର୍ତ୍ତ୍ୟ ଲୋକରେ ବାସ କରିଥିଲେ ଏବଂ ତାଙ୍କର ଶରତ ପାଳନ ନ କରିବାରୁ ସେ ସ୍ୱର୍ଗକୁ ଫେରିଗଲେ— ଏହି ବର୍ଣ୍ଣନା ଶତପଥ ବ୍ରାହ୍ମଣ ଓ ପୁରାଣମାନଙ୍କରେ ଦେଖିବାକୁ

ମିଳେ । 'ବୃହତ୍କଥା'ରେ ତୁମ୍ବୁରୁଙ୍କ ଶାପରେ ରାଜା ଓ ଉର୍ବଶୀଙ୍କର ବିୟୋଗ ଘଟିଥିଲା ବୋଲି ବର୍ଣ୍ଣିତ । କାଳିଦାସ ଗ୍ରନ୍ଥାଧାନ ରଚନା କଲାବେଳେ ସେ ସମସ୍ତ ଘଟଣାର ତାଙ୍କ ଉପଯୋଗ କରିଅଛନ୍ତି । ପ୍ରଥମାଙ୍କରେ ଉର୍ବଶୀଙ୍କର ପ୍ରଥମ ଦର୍ଶନ-କାଳୀନ ରମଣୀୟ ପ୍ରସଙ୍ଗ ଶ୍ଳୋକରେ ପ୍ରତ୍ୟୁତପ୍ରଦ୍ୟୁତ ମନେ ହୁଏ । ତୃତୀୟାଙ୍କରେ ବର୍ଣ୍ଣିତ ଭରତମୁନିଙ୍କର ଶାପ 'ବୃହତ୍କଥା'ର ତୁମ୍ବୁରୁଙ୍କର ଶାପର ଆଦର୍ଶରେ ଅନୁପ୍ରାଣିତ । ଶତପଥବ୍ରାହ୍ମଣ ଓ ପୁରାଣମାନଙ୍କରେ ବର୍ଣ୍ଣିତ ଶରତଗୁଡ଼ିକ କଳାଦୃଷ୍ଟିରୁ ନୀରସ ବୋଧ ହେବାରୁ ସେ ସ୍ଥାନରେ ପୁତ୍ରଦର୍ଶନରୂପ ଶର୍ତ୍ତ ଯୋଜନା କରିଅଛନ୍ତି । ଚତୁର୍ଥାଙ୍କର କୁମାର ସ୍ୱାମୀଙ୍କର ନିୟମ, ତାପଳରେ ଉର୍ବଶୀଙ୍କର ସ୍ୱରୂପପରିବର୍ତ୍ତନ, ପୁରୂରବାଙ୍କର ଶୋକ ପ୍ରଭୃତି ଏବଂ ପଞ୍ଚମାଙ୍କର ସମସ୍ତ ବିଷୟ କାଳିଦାସଙ୍କର ଅପୂର୍ବ କଳ୍ପନା ଶକ୍ତିର ଫଳ । କୁମାରଦର୍ଶନରେ ଉର୍ବଶୀଙ୍କର ସ୍ୱର୍ଗାରୋହଣ ଓ ରାଜାଙ୍କର ତପସ୍ୟାର୍ଥ ତପୋବନଗମନରେ ନାଟକ ଦୁଃଖାନ୍ତ ହୋଇଥାନ୍ତା । ସଂସ୍କୃତନାଟ୍ୟଶାସ୍ତ୍ରର ନିୟମାନୁସାରେ ନାଟ୍ୟକାର ସେପରି କରିପାରିବେ ନାହିଁ । ଏହେତୁ କବି ନାରଦ-ମୁଖରେ ଇନ୍ଦ୍ରଙ୍କର ସନ୍ଦେଶ ରାଜାଙ୍କୁ ଶୁଣାଇ ନାଟକଟିକୁ ସୁଖାନ୍ତ କରିଅଛନ୍ତି । କେତେକ ପଣ୍ଡିତ କହନ୍ତି—ପ୍ରଥମ ତିନୋଟି ଅଙ୍କର କଥା ଅବିକଳ ମତ୍ସ୍ୟପୁରାଣରେ ଦେଖିବାକୁ ମିଳେ । ଅତଏବ ସମ୍ଭବତଃ କାଳିଦାସ ସେହି କଥାବସ୍ତୁ ମତ୍ସ୍ୟପୁରାଣରୁ ଆହରଣ କରି ଅଛନ୍ତି । କିନ୍ତୁ ପୁରାଣମାନଙ୍କର ବର୍ତ୍ତମାନକାଳୀନ ସ୍ୱରୂପ ବିଶ୍ୱାସଯୋଗ୍ୟ ନୁହେଁ । ଏ ସମସ୍ତରେ ଅନେକ ନୂତନ ବିଷୟ ସନ୍ନିବେଶିତ ହୋଇଅଛି । ଏ ହେତୁ ମତ୍ସ୍ୟପୁରାଣରେ ପୁରୂରବା ଓ ଉର୍ବଶୀଙ୍କର ପ୍ରେମ କଥାର ଇତରପୁରାଣମାନଙ୍କରେ ପରିଦୃଶ୍ୟମାନ

ନାରସ ରୂପ ନ ଦେଇ, ତା ସ୍ଥାନରେ ବିକ୍ରମୋର୍ବଶୀୟର ସରସ କଥାବସ୍ତୁ ସନ୍ନିବେଶିତ କରାଯାଇଅଛି ବୋଲି କୁହାଯାଇ ପାରେ । *

ବିକ୍ରମୋର୍ବଶୀୟ ନାଟକର ସଂବିଧାନ କାଳିଦାସଙ୍କର ପ୍ରଥମ ନାଟକର ସଂବିଧାନ ପରି ଜଟିଳ ନୁହେଁ । ସର୍ବତ୍ର ଗତ ପରି ଓତପ୍ରୋତ କଥାବସ୍ତୁରେ ଦର୍ଶକମାନଙ୍କର ଚିତ୍ତ ସ୍ପର୍ଶ କରିବା ଅପେକ୍ଷା ପ୍ରକୃତିବର୍ଣ୍ଣନର ମନୋହର ଚିତ୍ରଦ୍ୱାରା ଦର୍ଶକ-ମାନଙ୍କୁ ଆକୃଷ୍ଟ କରିବା ଉଦ୍ଦେଶ୍ୟ । ଯେ କୌଣସି କାରଣରୁ ହେଉ 'ମାଳବିକାଗ୍ନିମିତ୍ର' ତୁଳନାରେ ଏହି ନାଟକରେ ସଂବିଧାନ ଚାତୁର୍ଯ୍ୟ ବହୁତ କମ୍ ଦେଖାଯାଏ । ଦ୍ୱିତୀୟ ଓ ତୃତୀୟ ଅଙ୍କର କେତେକ ଘଟଣା କଥାବସ୍ତୁର ପ୍ରଗତିରେ ଆବଶ୍ୟକ ବୋଧ ହୁଏ ନାହିଁ । ଉଦାହରଣସ୍ୱରୂପ କୁହାଯାଇପାରେ—ଏହି ଅଙ୍କରେ ଔଶୀନରୀରାଣୀଙ୍କର ପ୍ରବେଶ ଓ ବିରୋଧାଚରଣ ଉର୍ବଶୀଙ୍କର ସ୍ୱଭାବର ଉତ୍ତେଜନା ପ୍ରକାଶ କେବଳ କରାଯାଇଅଛି । ଏହି ନାଟକର ଭାଷା ପ୍ରଥମନାଟକର ଭାଷା ପରି ପ୍ରସାଦଗୁଣପୂର୍ଣ୍ଣ, ସୌଷ୍ଠବଯୁକ୍ତ ଓ

* ମତ୍ସ୍ୟପୁରାଣର କଥାରେ 'ବୃହତ୍‌କଥା' ଓ 'ବିକ୍ରମୋର୍ବଶୀୟ'ର ବର୍ଣ୍ଣନାର ସାମ୍ୟ ଦେଖାଯାଏ । ତହିଁରେ ଉଲ୍ଲିଖିତ ଅଛି—ଲକ୍ଷ୍ମୀସ୍ୱୟଂବର ପ୍ରସଙ୍ଗରେ ମେନକା ଓ ରମ୍ଭାଙ୍କ ସହିତ ଲକ୍ଷ୍ମୀରୂପ ଧାରିଣୀ ଉର୍ବଶୀ ନାଚ କରୁଅଛନ୍ତି ଏବଂ ଭରତ ଶିଖାଇବା ଅଭିନୟ ଭୁଲିଯାଇଛନ୍ତି' । ସମ୍ଭବତଃ ସ୍ୱୟଂବର-ପ୍ରସଙ୍ଗରେ କନ୍ୟା ନାଚ କରିବା ଅନୁଚିତ ଏହି କଥା ମତ୍ସ୍ୟପୁରାଣକାରଙ୍କର ମନକୁ ସ୍ପର୍ଶ କରି ନାହିଁ ।

ଅଳଂକୃତ । ଏଥିରେ ସମ୍ଭୋଗ ଓ ବିପ୍ରଲମ୍ଭ—ଏହି ଦୁଇ ପ୍ରକାର ଶୃଙ୍ଗାରର ସରସ ସମାବେଶ ଓ ପରିପୋଷ ଦେଖାଯାଏ । ତଥାପି ଚତୁର୍ଥଅଙ୍କର ଆରମ୍ଭରୁ ଶେଷ ଯାଏଁ ଖାଲି କେବଳ ଏକ ପ୍ରକାର ଶୋକ କଲାପରି ବର୍ଣ୍ଣିତ । କରୁଣରସର ପରିପୋଷସକାଶେ ଏହି ଅଙ୍କରେ ଉଚିତ ଭାବର ଅବତାରଣା କରାଯାଇ ନାହିଁ । ଫଳରେ ଏହି ଅଙ୍କଟି ପ୍ରାଣହୀନ ପ୍ରତୀତ ହୁଏ ।

'ମାଳବିକାଗ୍ନିମିତ୍ର' ଦୃଷ୍ଟିରେ ଏହି ନାଟକର ପାତ୍ରସଂଖ୍ୟା ଯଦ୍ୟପି କମ୍, ତଥାପି ସେ ସମସ୍ତ ପାତ୍ରମାନଙ୍କର ଚରିତ୍ର ଅତି-ଚତୁରତା ସହିତ କରାଯାଇଅଛି । ଏମାନଙ୍କ ମଧ୍ୟରେ ପୁରୁଷପାତ୍ର-ମଧ୍ୟରେ ପୁରୂରବା ଓ ବିଦୂଷକ, ସ୍ତ୍ରୀ ପାତ୍ରମଧ୍ୟରେ ଉର୍ବଶୀ ଓ ଔଶୀନରୀ ପ୍ରଧାନ । ନାୟକ ପୁରୂରବା ଧୀରୋଦାତ୍ତ । ସେ ଅତ୍ୟନ୍ତ ଶୂର, ପ୍ରେମିକ ଓ ଦାକ୍ଷିଣ୍ୟପୂର୍ଣ୍ଣ ଦେଖାଯାନ୍ତି । ନାଟକର ପ୍ରାରମ୍ଭରେ ନାୟକଙ୍କ କେଶିଦୈତ୍ୟବିଜୟ ଉର୍ବଶୀ ପରି ଦର୍ଶକମାନ-ଙ୍କର ମନ ମଧ୍ୟ ଆକର୍ଷଣ କରୁଅଛି । ତାଙ୍କର ଅସାଧାରଣ ଶୌର୍ଯ୍ୟ-ହେତୁ ଇନ୍ଦ୍ରଙ୍କୁ ମଧ୍ୟ ତାଙ୍କର ସାହାଯ୍ୟ ନେବା ଆବଶ୍ୟକ ହୋଇଅଛି । ଏହାଙ୍କର ଶୌର୍ଯ୍ୟ ବିନୟରେ ଅଧିକ ଶୋଭାପାଉ-ଅଛି । ଉର୍ବଶୀଙ୍କ ପ୍ରତି ତାଙ୍କର ଅସୀମ ପ୍ରେମ ତାଙ୍କୁ ଉନ୍ମତ୍ତ କରି ଦେଇଛି । ଫଳରେ ସେ ବୃକ୍ଷ, ଲତା, ପଶୁ, ପକ୍ଷୀମାନଙ୍କୁ ଉର୍ବଶୀଙ୍କର ବିଷୟ ପଚାରି ପଚାରି ବୁଲୁଛନ୍ତି । କାଳିଦାସଙ୍କର ଅନ୍ୟାନ୍ୟ ନାଟକର ନାୟକ ପରି ଏ ମଧ୍ୟ ବହୁପତ୍ନୀକ । ତଥାପି ରାଜାଙ୍କ ମନରେ ବଡ଼ ରାଣୀଙ୍କ ପ୍ରତି ଅତ୍ୟନ୍ତ ଆଦର ଓ ବହୁମାନ । ଅନ୍ୟ ସ୍ତ୍ରୀ ପ୍ରତି ତାଙ୍କର ଅନୁରାଗ ବଡ଼ରାଣୀ ଜାଣିପାରିଲେ କଷ୍ଟ ପାଇବେ—ଏ ଉଦ୍ଦେଶ୍ୟରେ ସେ ଯଥାସମ୍ଭବ ତାଙ୍କର ଅନୁରାଗ

ଗୁପ୍ତ ରଖିବାକୁ ଚେଷ୍ଟା କରିଅଛନ୍ତି । ଅଗ୍ନିମିତ୍ରଙ୍କର ସ୍ୱଭାବ ଅପେକ୍ଷା ଏହାଙ୍କ ସ୍ୱଭାବରେ ବିଶେଷତ୍ୱ ଦେଖାଯାଏ । କିନ୍ତୁ ଦୁଷ୍ୟନ୍ତଙ୍କର ପ୍ରଜାବାତ୍ସଲ୍ୟାଦି ଗୁଣ ଏହାଙ୍କଠାରେ ପରିଦୃଷ୍ଟ ହୁଏ ନାହିଁ । ଏହି ନାଟକର ମାଣବକନାମକ ବିଦୂଷକ 'ମାଳବିକାଗ୍ନିମିତ୍ର' ନାଟକର ବିଦୂଷକ ଗୌତମ ପରି ଖାଦ୍ୟପ୍ରିୟ । କିନ୍ତୁ ବୁଦ୍ଧିରେ ତାଙ୍କ ଅପେକ୍ଷା ନିମ୍ନସ୍ତରର । ରାଜାଙ୍କର ମାଳବିକାଙ୍କ ପ୍ରଥମଦର୍ଶନ ଓ ତାଙ୍କ ସହିତ ସମାଗମ ସକାଶେ ଗୌତମ ନାନା ପ୍ରକାର କୌଶଳ ଅବଲମ୍ବନ କରିଥିଲେ । କିନ୍ତୁ ମାଣବକ ରାଜାଙ୍କର ଉର୍ବଶୀ ପ୍ରେମ-କଥାଟିକ ମଧ୍ୟ ଔଶୀନରୀଙ୍କର ଚତୁର ଦାସୀ ପାଖରୁ ଗୋପନୀୟ ରଖିପାରି ନାହାନ୍ତି । ଏହାଙ୍କର ମୂର୍ଖତାରୁ କେବଳ ଔଶୀନରୀ ରାଣୀଙ୍କର ପ୍ରବେଶରେ ଅବକାଶ ମିଳିଛି । ଖାଦ୍ୟପେୟାଦି ପଦାର୍ଥମାନଙ୍କର ଉପମା ପ୍ରଦର୍ଶନ ଓ ନିଜର କୁରୂପତାରେ ଅନ୍ୟାନ୍ୟ ପାତ୍ର ଓ ଦର୍ଶକମାନଙ୍କର ମନୋରଞ୍ଜନ କରିବା ଏହାଙ୍କର କାର୍ଯ୍ୟ । କଥା ବସ୍ତୁର ବିକାଶରେ ଏହାଙ୍କର ବିଶେଷ ଉପଯୋଗ ଦେଖାଯାଏ ନାହିଁ । ଦ୍ୱିତୀୟ ପୁରୁଷପାତ୍ର ରାଜକୁମାର ଆୟୁ । 'ମାଳବିକାଗ୍ନିମିତ୍ର'ର ରାଜକୁମାର ବସୁମିତ୍ର ରଙ୍ଗଭୂମିରେ ଦେଖା ଦେଇ ନାହାନ୍ତି । ତାଙ୍କର ଶୌର୍ଯ୍ୟର ବର୍ଣ୍ଣନା ଶୁଣି ଦର୍ଶକମାନଙ୍କର ତାଙ୍କୁ ଦେଖିବା ଇଚ୍ଛା ଜାତ ହେଉଛି ମାତ୍ର ପୂର୍ଣ୍ଣ ହୋଇ ପାରୁନାହିଁ । କାଳିଦାସ ଏହି ନାଟକରେ ଏକ ଅଳ୍ପବୟସ୍କ କୁମାରକୁ ରଙ୍ଗମଞ୍ଚରେ ସର୍ବ ପ୍ରଥମେ ଅବତୀର୍ଣ୍ଣ କରିଛନ୍ତି । ଏ ବସୁମିତ୍ରଙ୍କ ଅପେକ୍ଷା ବୟସରେ କମ । କିନ୍ତୁ ଏହାଙ୍କ ପ୍ରକୃତି ସୁନ୍ଦରଭାବେ ଚିତ୍ରିତ । ଏହାଙ୍କର ଧନୁର୍ବିଦ୍ୟାରେ ନିପୁଣତା, ପିତାଙ୍କ ପ୍ରତି ସହଜଭକ୍ତି, ଚ୍ୟବନ ଆଶ୍ରମର ସହବାସୀମାନଙ୍କ ପ୍ରତି ମମତା ଏହିପରି କେତେକ ଉତ୍ତମ ଗୁଣ

କେବଳ ପ୍ରଦର୍ଶିତ ହୋଇଅଛି । ସ୍ତ୍ରୀପାତ୍ରମାନଙ୍କ ମଧ୍ୟରେ ଉର୍ବଶୀ ପ୍ରଧାନ । ଏ ଅପ୍ସରା ଓ ରୂପରେ ଅଦ୍ୱିତୀୟା । ସଂସ୍କୃତ-ନାଟ୍ୟକାରମାନଙ୍କର ବର୍ଗୀକରଣ ଅନୁସାରେ ଏ 'ସାଧାରଣୀ' ଓ 'ପ୍ରଗଲ୍‌ଭା' ପୁରୁରବାଙ୍କ ପ୍ରତି ଏହାଙ୍କର ଅସୀମ ପ୍ରେମ । ନିଜର ଉପଭୋଗଲାଳସା ତୃପ୍ତ ହେଲା ପରେ ଉଦାସୀନା, ଏବଂ ପତିଙ୍କର ଅନୁନୟବିନୟ ଶୁଣି 'ସ୍ତ୍ରୀମାନଙ୍କର ପ୍ରେମ ସ୍ଥାୟୀ ନୁହେଁ, ସେମାନଙ୍କର ହୃଦୟ ଶୃଗାଳର ହୃଦୟସଦୃଶ' ବୋଲି ନିର୍ଲଜ୍ଜଭାବେ ଉତ୍ତର ଦେବା ସ୍ୱାର୍ଥପୂର୍ଣ୍ଣ ଋଗ୍‌ବେଦୋକ୍ତ ଉର୍ବଶୀଙ୍କଠାରୁ ଏ ସମ୍ପୂର୍ଣ୍ଣ ପୃଥକ୍ । କାଳିଦାସଙ୍କର ପ୍ରତିଭାବଳରେ ଉର୍ବଶୀଙ୍କର ସ୍ୱଭାବ ଅପୂର୍ବ ଶ୍ରୀ ଧାରଣ କରିଅଛି । ପୁତ୍ର ଦର୍ଶନପରେ ଇନ୍ଦ୍ରଙ୍କର ଚୁକ୍ତିଅନୁଯାୟୀ ଉର୍ବଶୀଙ୍କର ବିୟୋଗ ହେବା କଥା — ଏହା କଳ୍ପନାରେ ରାଜାଙ୍କର ଦୁଃଖ ଘଟିଛି । କିନ୍ତୁ ଉର୍ବଶୀ ନିଜ ସ୍ୱାର୍ଥ ସ୍ଥାପନରେ ନାହାନ୍ତି । ନିଜର ଉପଭୋଗଲାଳସା ଚରିତାର୍ଥ କରିବାକୁ ଯାଇ ନିଜଗର୍ଭସମ୍ଭୂତ ପୁତ୍ରକୁ ଜନ୍ମହେଲାମାତ୍ରେ ଅନ୍ୟଠାରେ ନ୍ୟସ୍ତ କରିବାରେ ସେ ତିଳେହେଲେ ଦୁଃଖ ଅନୁଭବ କରିନାହାନ୍ତି । ଏହାଙ୍କ ସ୍ୱଭାବରେ ସ୍ତ୍ରୀଜନସୁଲଭ ମାଧୁର୍ଯ୍ୟ ରହିଛି । ତଥାପି ଔଶୀନରୀ ରାଣୀଙ୍କର ଗମ୍ଭୀର ଆକୃତି ଦେଖିଲାମାତ୍ରେ ଏହାଙ୍କର ହୃଦୟ ଭକ୍ତିପ୍ରତି ଆକୃଷ୍ଟ ହୋଇଅଛି ଏବଂ ଆଦର ପ୍ରକାଶ କରିଛି । ପୁତ୍ରର ଯୌବରାଜ୍ୟାଭିଷେକପରେ ସେ ନିଜ ପୁତ୍ରକୁ ଜ୍ୟେଷ୍ଠମାତା ଔଶୀନରୀ ରାଣୀଙ୍କୁ ପ୍ରଣାମ କରାଇବା ସକାଶେ ନେଇଛନ୍ତି । ସେଥିରୁ ରାଣୀଙ୍କ ପ୍ରତି ତାଙ୍କର ଗୌରବ ବ୍ୟକ୍ତ ହେଉଅଛି । କାଳିଦାସଙ୍କ ସମୟରେ ଧନୀ ଓ ରସିକମାନେ ବିଦୁଷୀ ଓ ବିବିଧ କଳାକୁଶଳା ଗଣିକାମାନଙ୍କ ସହ କିପରି ସମ୍ପର୍କ ରଖି ଚଳୁଥିଲେ, ତାର ଉତ୍ତମ ଚିତ୍ର ବାତ୍ସ୍ୟାୟନ ମହର୍ଷିଙ୍କର କାମସୂତ୍ରରେ ଦେଖିବାକୁ

ମିଳେ । ଏହି ଶ୍ରେଣୀର ନାଗରିକମାନଙ୍କର ପତ୍ନୀମାନେ ନିଜ ନିଜ ପତିମାନଙ୍କର ଅନ୍ୟସ୍ତ୍ରୀ ପ୍ରତି ଆସକ୍ତ ହେବା ଲକ୍ଷଣ ଦେଖି ମଧ୍ୟ ସେମାନଙ୍କ ସହିତ ପ୍ରେମପୂର୍ଣ୍ଣ ବ୍ୟବହାର କରୁଥିଲେ, ଗୃହର ସମସ୍ତ ବ୍ୟବସ୍ଥା ଦେଖୁଥିଲେ, ସବୁବେଳେ ନାନା ପ୍ରକାର ଗୃହକର୍ମରେ ବ୍ୟାପୃତ ରହୁଥିଲେ—ଏ ସମସ୍ତ ବିଷୟ ଏହି ଗ୍ରନ୍ଥରୁ ଜଣାଯାଏ । ଏହିପରି ପ୍ରେମରେ ପରିପୂର୍ଣ୍ଣା, ମାନିନୀ ଓ ଗମ୍ଭୀରସ୍ୱଭାବା ଗୃହିଣୀର ଛବି କାଳିଦାସ ଔଶୀନରୀ ରାଣୀଙ୍କର ଚରିତ୍ରରେ ପ୍ରତିଫଳିତ କରି ଅଛନ୍ତି । ରାଜା ପୁରୂରବା ଉର୍ବଶୀଙ୍କ ପ୍ରତି ଆସକ୍ତ ହେଲେ ମଧ୍ୟ ଔଶୀନରୀ ରାଣୀଙ୍କ ପ୍ରତି ଆଦର ପ୍ରଦର୍ଶନ କରିଅଛନ୍ତି । ଏହା ଦେଖି ଚିତ୍ରଲେଖା କହିଛନ୍ତି 'ଅନ୍ୟସଂକ୍ରାନ୍ତପ୍ରେମାଣୋ ନାଗରିକା ଅଧିକଂ ଦକ୍ଷିଣା ଭବନ୍ତି' ଅର୍ଥାତ୍ ଅନ୍ୟ ସ୍ତ୍ରୀ ପ୍ରତି ଆସକ୍ତ ନାଗରିକମାନଙ୍କର ବ୍ୟବହାର ଅଧିକ ସୌଜନ୍ୟପୂର୍ଣ୍ଣ ହୋଇଥାଏ ।' ଏହିପରି କହି ଉର୍ବଶୀଙ୍କୁ ବୁଝାଇ ଅଛନ୍ତି । ଏହେତୁ ଏହି ନାଟକ ଲେଖିବା ସମୟରେ କବିଙ୍କର ମନରେ ତାତ୍କାଳିକ ନାଗରିକମାନଙ୍କର ଏବଂ ସେମାନଙ୍କ ସୁଶୀଳା ଓ ସୁଗୁଣା ସ୍ତ୍ରୀମାନଙ୍କର ଚିତ୍ର ବରାବର ଖେଳୁଥିଲା । ଔଶୀନରୀ ପ୍ରଥମେ ରାଜାଙ୍କ କାମୁକତା ସହ୍ୟ କରି ପାରିନାହାନ୍ତି ଓ ତାଙ୍କର ପ୍ରଦର୍ଶିତ ପ୍ରେମ ଓ ନମସ୍କାର ଉପେକ୍ଷା କରି ମାନ କରି ଚାଲିଯାଇଛନ୍ତି । ପରେ ତାଙ୍କର ପଶ୍ଚାତ୍ତାପ ହୋଇଛି ଏବଂ 'ପ୍ରିୟାନୁପ୍ରସାଦନ' ବ୍ରତଚ୍ଛଳରେ ରାଜାଙ୍କୁ ଆମନ୍ତ୍ରଣ କରିଅଛନ୍ତି ଏବଂ ରାଜା ତାଙ୍କର ପ୍ରିୟତମା ଅନ୍ୟ ସ୍ତ୍ରୀ ପ୍ରତି ପ୍ରେମପୂର୍ଣ୍ଣ ବ୍ୟବହାର କରିପାରିବେ ବୋଲି ସ୍ପଷ୍ଟଭାବରେ କହି ରାଜାଙ୍କର ମାର୍ଗ ନିଷ୍କଣ୍ଟକ କରିଅଛନ୍ତି । କେଡେ ବଡ଼ ସ୍ୱାର୍ଥତ୍ୟାଗ ! ମାଳବିକାଗ୍ନିମିତ୍ର'ର ରାଣୀ ଧାରିଣୀ ମଧ୍ୟ ସ୍ୱାର୍ଥତ୍ୟାଗପରାୟଣା ଓ ଉଦାର, କିନ୍ତୁ ସେ ନିଜର ବଚନ ରକ୍ଷା କରିବା ସକାଶେ ଓ ପୁତ୍ରର

ରାଜପୁରମହୋତ୍ସବର ବର୍ତ୍ତେବର୍ତ୍ତୀ ହେବାହେତୁ । ଏହାଙ୍କ ଅପେକ୍ଷା ଔଶୀନରୀଙ୍କର ତ୍ୟାଗ ଅଧିକ ନିରପେକ୍ଷ ଓ ପ୍ରଶଂସନୀୟ । ଉର୍ବଶୀ ଓ ଔଶୀନରୀରାଣୀ ଉଭୟଙ୍କର ରାଜାଙ୍କ ପ୍ରତି ଅସୀମ ପ୍ରେମ । ମାତ୍ର ଉର୍ବଶୀଙ୍କର ପ୍ରେମ ଭୋଗମୂଳକ ଓ ଔଶୀନରୀଙ୍କର ପ୍ରେମ ତ୍ୟାଗମୂଳକ । ଉଭୟଙ୍କର ପ୍ରେମର ତାରତମ୍ୟ କବି ନିପୁଣଭାବେ ପ୍ରଦର୍ଶନ କରି ଅଛନ୍ତି । ସଂସାରିକ ବାଧା ଓ ପ୍ରିୟଜନଙ୍କ ଉପେକ୍ଷାରେ ଯେଉଁ ପ୍ରେମ ଶିଥିଳ ହୁଏ ନାହିଁ ଓ ଯେଉଁ ପ୍ରେମର ଅନ୍ତିମ ପରିଣାମ ଆତ୍ମବିସର୍ଜ୍ଜନ, ସେ ହେଉଛି ପ୍ରକୃତ ପ୍ରେମ— ଏହି ଭାବ କବି ଅନ୍ୟାନ୍ୟ ଗ୍ରନ୍ଥ ପରି ଏହି ନାଟକରେ ମଧ୍ୟ ଔଶୀନରୀରାଣୀଙ୍କର ଚରିତ୍ର ଚିତ୍ରଣରେ ବ୍ୟକ୍ତ କରିଅଛନ୍ତି ।

## ଶାକୁନ୍ତଳ

କାଳିଦାସ 'ମାଳବିକାଗ୍ନିମିତ୍ର' ଓ 'ବିକ୍ରମୋର୍ବଶୀୟ' ଏହି ଦୁଇଟି ନାଟକ ଅବଶ୍ୟ ଲେଖିଅଛନ୍ତି । କିନ୍ତୁ ନାଟକକାରରୂପେ ତାଙ୍କର କୀର୍ତ୍ତି ତାଙ୍କର 'ଅଭିଜ୍ଞାନଶାକୁନ୍ତଳ'ରୁହିଁ ଅନ୍ତିମ, ସର୍ବାଙ୍ଗସୁନ୍ଦର ଓ ନିର୍ଦ୍ଦୋଷରୂପେ ଜାତ ହୋଇଥିଲା । ସଂବିଧାନର ରମଣୀୟତା, ଚରିତ୍ରଚିତ୍ରଣ, ରସପରିପୋଷ, ଭାଷାସୌଷ୍ଠବ ଆଦି ଦୃଷ୍ଟିରୁ ଏହାର ଉତ୍କର୍ଷରେ ମୁଗ୍ଧ ହୋଇ ପ୍ରାଚୀନ ସହୃଦୟ ରସିକମାନେ ସଂସ୍କୃତ ନାଟକମଧ୍ୟରେ ଏହାକୁ ସର୍ବୋତ୍କୃଷ୍ଟ ସ୍ଥିର କରିଅଛନ୍ତି । ୧୭୮୨ ସାଲରେ ସର୍ ଉଇଲିୟମ୍ ଜୋନ୍‌ସ ଏକ ସଂସ୍କୃତପଣ୍ଡିତଙ୍କ ସାହାଯ୍ୟରେ ଇଂରେଜୀଭାଷାରେ ଶାକୁନ୍ତଳର ଅନୁବାଦ କରିଥିଲେ । ଏହି ଅନୁବାଦରେ ଅନେକ ସ୍ଥଳରେ ଅବଶ୍ୟ

ଦୋଷ ଥିଲ । ତଥାପି ୟୁରୋପୀୟ ପଣ୍ଡିତଗଣ ସେହି ଅନୁବାଦ ଦେଖି ମୁଗ୍ଧ ହୋଇଥିଲେ । ତାପରେ ୟୁରୋପର ଅନ୍ୟାନ୍ୟ କେତେକ ଭାଷାରେ ଏହାର ଅନୁବାଦ ହୋଇଥିଲ ଏବଂ ସେ ସମୟରେ ପୃଥିବୀର ଏପରି ଗୋଟିଏ ପ୍ରଧାନ ଭାଷା ନ ଥିଲ, ଯହିଁରେ କି 'ଶାକୁନ୍ତଳ'ର ଅନୁବାଦ ହୋଇ ନ ଥିଲ । ଏହି ନାଟକର ଶେଷ ଅଙ୍କର ବାଳକର ଅକୃତ୍ରିମ ହାସ ଓ ଦଉରିହି ବଚନର ବର୍ଣ୍ଣନା ପଢ଼ିକରି 'ଶେଜୀ' ନାମକ ଏକଜଣ ଫରାସୀ ପଣ୍ଡିତ ଏପରି ଆନନ୍ଦରେ ବିହ୍ୱଳ ହେଲେ ଯେ ସେ ନାଚି ଉଠିଥିଲେ । ପୃଥିବୀବିଖ୍ୟାତ ଜର୍ମାନ କବିବର ଗେଟେ ଏହି ନାଟକର ଅନୁବାଦ ପଢ଼ି କହିଅଛନ୍ତି— 'ମିତ୍ର ତୁମେ ଏକ ସମୟରେ ବସନ୍ତର ଫୁଲ ଚାହଁ; ଶୀତଋତୁର ଫଳ ଚାହଁ; ଅନ୍ତଃକରଣମୋହନ, ଆତ୍ମପ୍ରସାଦନ ଓ ତୃପ୍ତିସାଧନ ରସାପ୍ଲୁତ ଆସ୍ୱାଦନ କରିବାକୁ ଚାହଁ; ପୃଥିବୀ ଓ ସ୍ୱର୍ଗର ସମସ୍ତ ବିଷୟ ଏକତ୍ର ଦେଖିବାକୁ ଚାହଁ; ତାହାହେଲେ ଥରେ 'ଶାକୁନ୍ତଳ' ପଢ଼, ସମସ୍ତ ବିଷୟ ପାଇପାରିବ ।' ଶାକୁନ୍ତଳ କାଳିଦାସଙ୍କର ସମସ୍ତ ଗ୍ରନ୍ଥମାନଙ୍କରେ ଶ୍ରେଷ୍ଠ ହେବା ହେତୁ 'କାଳିଦାସସ୍ୟ ସର୍ବସ୍ୱମଭିଜ୍ଞାନଶକୁନ୍ତଳମ୍' ବୋଲି ପ୍ରବାଦ ସର୍ବବାଦିସମ୍ମତ । ପ୍ରାଚୀନକାଳରେ 'ଶାକୁନ୍ତଳ' ଲୋକପ୍ରିୟ ହେବା ହେତୁ ହସ୍ତଲିଖିତ ପୁସ୍ତକମାନ ଭାରତର ସମସ୍ତ ପ୍ରଦେଶରେ ଦେଖିବାକୁ ମିଳେ । କିନ୍ତୁ ସେ ସମସ୍ତରେ ବିଶେଷ ପାର୍ଥକ୍ୟ ଦେଖାଯାଏ । ଏ ସମସ୍ତ ବିଚାର କରି କାଶ୍ମୀରୀ, ବଙ୍ଗାଳୀ, ଦେବନାଗରୀ ଓ ମାନ୍ଦ୍ରାଜୀ ଏହିପରି ଚାରି ପ୍ରକାର ପାଠପରମ୍ପରା ପ୍ରଚଳିତ ହୋଇଅଛି । ଏ ସମସ୍ତ ପୁଙ୍ଖାନୁପୁଙ୍ଖରୂପେ ପର୍ଯ୍ୟାଲୋଚନ

ରେ କାଳିଦାସଙ୍କର ସର୍ବୋତ୍କୃଷ୍ଟ ନାଟକର ମୂଳସ୍ୱରୂପ ଠିକ୍ କରିବା ନିତାନ୍ତ ଆବଶ୍ୟକ । ଏମାନଙ୍କ ମଧ୍ୟରେ ଦେବ-ନାଗରୀ ପାଠ ସର୍ବଶ୍ରେଷ୍ଠ ବୋଧ ହୁଏ । ଅମ୍ଭେ ସମାଲୋଚନା-ପ୍ରକାଶେ ସେହି ପାଠର ଆଶ୍ରୟ ନେଇଅଛୁଁ ।

ଏହି ନାଟକର ଆରମ୍ଭରେ କବି ଶିବଙ୍କର ସ୍ତୁତି କରି ନାନ୍ଦୀ ଲେଖିଅଛନ୍ତି ଏବଂ ତହିଁରେ ଶିବଙ୍କର ପ୍ରତ୍ୟକ୍ଷ ଦୃଶ୍ୟମାନ ଅଟଟି ସ୍ୱରୂପ ବର୍ଣ୍ଣନ କରିଅଛନ୍ତି । ତାପରେ ସୂତ୍ରଧାର ନଟୀଙ୍କୁ ଡାକି, 'ବିଦ୍ୱତ୍‌ପରିଷଦର ସମ୍ମୁଖରେ କାଳିଦାସଙ୍କର 'ଅଭିଜ୍ଞାନଶାକୁନ୍ତଳ'ନାମକ ନବୀନ ନାଟକର ଅଭିନୟ କରାଯିବ, ଯେହେତୁ ତୁମ୍ଭେ ପ୍ରତ୍ୟେକପାତ୍ରର ତତ୍ତ୍ୱ ନିଅ' ବୋଲି ସୂଚନା ଦେଇଛନ୍ତି । 'ଆପଣ ଭଲରୂପେ ନାଟକର ଅଭିନୟ ଶିକ୍ଷା ଦେଇ ଅଛନ୍ତି, ଅତଏବ କୌଣସି ଅଭାବ ରହିବ ନାହିଁ' ନଟୀଙ୍କର ଏହି ଉତ୍ତର ଶୁଣି ସୂତ୍ରଧାର କହିଅଛନ୍ତି—

> आपरितोषाद् विदुषां न साधु मन्ये प्रयोगविज्ञानम् ।
> बलवदपि शिक्षितानामात्मान्यप्रत्ययं चेतः ॥

ପଣ୍ଡିତମାନଙ୍କର ତୃପ୍ତି ନ ହେଲା ଯାଏ ପ୍ରୟୋଗର ଉତ୍କୃଷ୍ଟତାରେ ମୋର ବିଶ୍ୱାସ ନାହିଁ । କାରଣ କେତେ ଶିକ୍ଷିତ ହେଲେ ମଧ୍ୟ ନିଜ ବିଷୟରେ ତାଙ୍କର ଚିତ୍ତ ସ୍ଥିର ନୁହେଁ । ଅର୍ଥାତ୍ ସନ୍ଦିଗ୍ଧ ଥାଏ ।' ଏହି ପଦ୍ୟରେ ସୂତ୍ରଧାର ମୁଖରେ କବି ନିଜେ ନାଟକ ରଚନାରେ କୁଶଳ ହେଲେ ମଧ୍ୟ ପଣ୍ଡିତ-ମାନଙ୍କର ପରିତୃପ୍ତି ଯାଏ ନିଶ୍ଚିନ୍ତ ନୁହନ୍ତି ବୋଲି ନିଜ ଅଭିପ୍ରାୟ ବ୍ୟକ୍ତ କରିଅଛନ୍ତି । ତାପରେ ନଟୀ ଗ୍ରୀଷ୍ମ ବର୍ଣ୍ଣନା

ଭାବ ଏକ ଗୀତ ଗାଉଛନ୍ତି । ଏହାର ପ୍ରଶଂସା ବ୍ୟାଜରେ ଦୁଷ୍ୟନ୍ତ ପ୍ରବେଶରେ ସୂଚନା ଦେଇ ସୂତ୍ରଧାର ନଟୀ ସହିତ ରଙ୍ଗ ସ୍ଥଳରୁ ନିର୍ଗତ ହେଲେ ଏବଂ ମୂଳ୍ୟ ଅଙ୍କର ଆରମ୍ଭ ହେଲା । ରଥରେ ଚଢ଼ି ହରିଣ ପଛେ ଅନୁଧାବନ କରୁଥିବା ଦୁଷ୍ୟନ୍ତ ଓ ସାରଥିର ପ୍ରବେଶ ହେଲା । ରାଜା ହରିଣକୁ ବାଣ ମାରିବାକୁ ଉଦ୍ୟତ ଥିଲେ । ଏ ସମୟରେ ଏକ ବୈଖାନସ (ତପସ୍ୱୀ) ଶିଷ୍ୟ ସହିତ ପ୍ରବେଶ କରି ଆଶ୍ରମ ମୃଗ, ଏହାକୁ ମାରନ୍ତୁ ନାହିଁ ବୋଲି ରକ୍ଷା କଲେ । ରାଜା ବିନମ୍ର ସହକାରେ ତାଙ୍କ କଥା ଶୁଣି ବାଣ ପ୍ରତିସଂହାର କଲେ । ବୈଖାନସ ରାଜାଙ୍କର କାର୍ଯ୍ୟରେ ସନ୍ତୁଷ୍ଟ ହୋଇ 'ଚକ୍ରବର୍ତ୍ତୀ ପୁତ୍ର ଲାଭ କର' ବୋଲି ଆଶୀର୍ବାଦ କଲେ ଏବଂ ପାର୍ଶ୍ୱବର୍ତ୍ତୀ ମାଳିନୀନଦୀତୀରରେ ଅବସ୍ଥିତ ଆଶ୍ରମରେ ପ୍ରବେଶ କରି ଅତିଥି ସତ୍କାର ଗ୍ରହଣ କରିବାକୁ ଅନୁରୋଧ କଲେ । କୁଳପତି କଣ୍ୱ ଅତିଥି-ସତ୍କାରଭାର ନିଜ କନ୍ୟା ଶକୁନ୍ତଳାଙ୍କ ଉପରେ ନ୍ୟସ୍ତ କରି ହିଁଅର ପ୍ରତିକୂଳ ଦୈବର ଶାନ୍ତି କରିବା ଉଦ୍ଦେଶ୍ୟରେ ସୋମ-ତୀର୍ଥକୁ ଯାଇଛନ୍ତି ବୋଲି ମଧ୍ୟ ଜଣାଇଲେ । ବୈଖାନସ ଶିଷ୍ୟମାନଙ୍କ ସହିତ ପ୍ରସ୍ଥାନ କଲେ । ରାଜା ତପୋବନ-ଅଭିମୁଖରେ ରଥ ସଞ୍ଚାଳନ କରିବାକୁ ସାରଥିକୁ ଆଦେଶ ଦେଲେ । ତପୋବନ ସନ୍ନିହିତ ହେଲା । ରାଜା ତପସ୍ୱୀମାନଙ୍କର କଷ୍ଟ ହେବ ଭାବି ରଥରୁ ଅବତରଣ କଲେ । ନିଜର ଧନୁ ଓ ଅଳଙ୍କାର ସାରଥିଙ୍କୁ ଦେଇ ବିନୀତ ବେଶରେ ଆଶ୍ରମରେ ପ୍ରବେଶ କଲେ । ସେ ସମୟରେ ତାଙ୍କର ଦକ୍ଷିଣ ବାହୁ ସ୍ପନ୍ଦିତ ହେଲା । ଏହା ଏକ ଶୁଭ ଲକ୍ଷଣ । ତାର ଫଳ କଣ ହୋଇ ପାରେ ଭାବି ଭାବି,

ଆଶ୍ରମ ଅଭିମୁଖରେ ଅଗ୍ରେସର ହେଲେ ଏବଂ ପାର୍ଶ୍ୱବର୍ତ୍ତୀ ଲତାମଧ୍ୟରେ କେତେକଙ୍କର କଥାବାର୍ତ୍ତା ଶୁଣିବାକୁ ପାଇଲେ । ପରେ କଳସରେ ଆଶ୍ରମ ବୃକ୍ଷଲତାମାନଙ୍କୁ ପାଣି ଦେଇ ଦେଇ ନିଜ ଅଭିମୁଖରେ ଆସୁଥିବା ତିନୋଟି ତାପସ କନ୍ୟାକାଙ୍କୁ ଦେଖିଲେ । ବୃକ୍ଷର ଅନ୍ତରାଳରେ ରହି ସେମାନଙ୍କର ଗତିବିଧି ଲକ୍ଷ୍ୟ କଲେ । ସେମାନଙ୍କର ସମ୍ଭାଷଣରୁ ଜାଣିପାରିଲେ ଯେ ସେମାନଙ୍କ ମଧ୍ୟରୁ ଜଣେ କଣ୍ୱମହର୍ଷିଙ୍କର କନ୍ୟା ଶକୁନ୍ତଳା ଅନ୍ୟ ଦୁହେଁ ତାଙ୍କର ସଖୀ, ଅନସୂୟା ଓ ପ୍ରିୟମ୍ବଦା । ବଲ୍‌କଳପରିହିତା ଶକୁନ୍ତଳାଙ୍କୁ ଦେଖି ସେ ମନେ ମନେ ଭାବିଲେ ଏହା ସତ ଯେ ଏହାଙ୍କର ସ୍ୱଭାବ ସୁନ୍ଦର ଶରୀର ବଲ୍‌କଳର ଅନୁରୂପ ନୁହେଁ । ତଥାପି ବଲ୍‌କଳଦ୍ୱାରା ଏହାଙ୍କର ଶୋଭା ବଢ଼ିଅଛି । କାରଣ ସହଜ ସୁନ୍ଦର ବସ୍ତୁ ପକ୍ଷରେ କଅଣ ବା ମଣ୍ଡନ ନ ହୋଇଥାଏ ।' ଏମଧ୍ୟରେ ଶକୁନ୍ତଳା ଓ ତାଙ୍କ ସଖୀମାନଙ୍କ ମଧ୍ୟରେ ରହସ୍ୟାଳାପ ଚାଲିଲା । ନବପଲ୍ଲବିତ ସହକାର ଶାଖାରେ ବନଜ୍ୟୋତ୍ସ୍ନା ନାମକ ନବମାଳିକା ବେଷ୍ଟିତ ହେବା ଦେଖି ଶକୁନ୍ତଳା ସେଠାରେ ଛିଡ଼ା ହେଲେ । ପ୍ରିୟମ୍ବଦା କହିଲେ—'ଅନସୂୟେ, ଶକୁନ୍ତଳା କାହିଁକି ଏତେ ମନୋଯୋଗ କରି ଦେଖୁଛି, ତୁମେ ଜାଣିପାରୁଛ ? ବନଜ୍ୟୋତ୍ସ୍ନା ଯୋଗ୍ୟ ବର ସହିତ ଯେପରି ସଂଯୁକ୍ତ ହେଲା, ସେତେ କଣ ମୁଁ ସେପରି ଯୋଗ୍ୟ ପତି ପାଇ ପାରିବି ? ଏହି ଭାବରେ ସେ ଚିନ୍ତୁଛି ।' ଏହାର ଉତ୍ତରରେ ଶକୁନ୍ତଳା କହିଲେ 'ଏହା ତ ତୁମ ମନର କଥା' । ଏଥିରୁ ଶକୁନ୍ତଳା ଅବିବାହିତା ହୋଇ ରାଜା ବୁଝିପାରିଲେ । ସେ କହିଲେ ତେବେ ଏ କଣ୍ୱଙ୍କର ଅସବର୍ଣ୍ଣ କ୍ଷେତ୍ରରୁ ଉତ୍ପନ୍ନ କନ୍ୟା ହୋଇ ପାରନ୍ତି, କାରଣ ମୋର ମନ ଏହାଙ୍କ ପ୍ରତି ଆସକ୍ତ ହେଉଅଛି । ଅତଏବ ଏ ଅବଶ୍ୟ ମୋ

ସଦୃଶ କ୍ଷତ୍ରିୟର ବିବାହଯୋଗ୍ୟା ସ୍ତ୍ରୀ ହେବେ । କାରଣ, ପ୍ରିତି-ଲୋମବିବାହ ଶାସ୍ତ୍ରନିଷିଦ୍ଧ । ଏ ସମୟରେ ପାଣି ପଡ଼ିବା ଫଳରେ ଉତ୍‌କ୍ଷିପ୍ତ ଭ୍ରମର ଶକୁନ୍ତଳାଙ୍କର ମୁଖ ଆଡ଼େ ବୁଲିଲା । ଏହା ଦେଖି ରାଜା ଭ୍ରମରକୁ ପ୍ରଶଂସା କଲେ । ସେ କହିଲେ—

> चलापाङ्गां दृष्टिं स्पृशसि बहुशो वेपथुमतीं
> रहस्याख्यायीव स्वनसि मृदु कर्णान्तिकगतः ।
> करौ व्याधुन्वत्याः पिबसि रतिसर्वस्वमधरं
> वयं तत्त्वान्वेषान्मधुकर हतास्त्वं खलु कृती ॥
>
> ଶାକୁ ୧—୨୩

ରେ ଭ୍ରମର, ତୁ ଏହାଙ୍କର କଟାକ୍ଷଯୁକ୍ତ (କମ୍ପିତ) ନେତ୍ରକୁ ବାରମ୍ବାର ଛୁଉଁଅଛୁ, ଆଉ କାନ ମାଖକୁ ଯାଇ ମୃଦୁ ମଧୁର ସ୍ୱନ କର ଯେପରି କିଛି ରହସ୍ୟ କଥା କହୁଛୁ; ସେ ହାତ ହଲାଇ ବାରଣ କଲେ ମଧ୍ୟ ତାଙ୍କର ରତିସର୍ବସ୍ୱଭୂତ ଅଧର ପାନ କରୁଅଛୁ; ଆମେ ଏହାଙ୍କର ତତ୍ତ୍ୱ ଅନୁସନ୍ଧାନରେ ରହି ମରୁଅଛୁଁ ତୁ ଭାଗ୍ୟବାନ୍ ।' ଏଥିରେ ରାଜା ଭ୍ରମରକୁ କାମୁକରୂପରେ ବର୍ଣ୍ଣନ କରି-ଅଛନ୍ତି ଏବଂ ଶେଷରେ ତତ୍ତ୍ୱଅନୁସନ୍ଧାନରେ ରହିବା ହେତୁ ନିଜକୁ ଅକୃତାର୍ଥ ଓ ଭ୍ରମରକୁ କୃତାର୍ଥ ବୋଲି ନିର୍ଦ୍ଦେଶ କରିଅଛନ୍ତି । ଏହି ଶ୍ଳୋକରେ ସମାସୋକ୍ତି ଓ ବ୍ୟତିରେକ ଅଳଙ୍କାରର ମଧୁର ସମାବେଶ ହୋଇ ଅଛି । ଭ୍ରମର ବେଶି ବାଧା ଦେଉଛି ବୋଲି ଶକୁନ୍ତଳା ସଖୀମାନଙ୍କର ସାହାଯ୍ୟ ପ୍ରାର୍ଥନା କଲେ । ସେମାନେ ହାସ୍ୟରେ ଉଡ଼ାଇ ଦେଇ କହିଲେ—ଆମେ କିଏ ରକ୍ଷା

-କରପାରନ୍ତି ? ରାଜା ଦୁଷ୍ୟନ୍ତଙ୍କୁ ଡାକ, ସେ ରକ୍ଷା କରିବେ । କାରଣ ତପୋବନ ରକ୍ଷା କରିବା ରାଜାଙ୍କର କର୍ତ୍ତବ୍ୟ ।' ଏହା ଆତ୍ମପ୍ରକାଶର ଉପଯୁକ୍ତ ଅବକାଶ ମନେ କରି ରାଜା ଆତ୍ମପ୍ରକାଶ କରି କହିଲେ — ଦୁଷ୍ଟଦମନକାରୀ ରାଜା ଦୁଷ୍ୟନ୍ତ ପୃଥିବୀରେ ରାଜତ୍ୱ କରୁଥିଲାବେଳେ ଏହି ମୁଗ୍ଧ ତପସ୍ୱୀ କନ୍ୟାମାନଙ୍କ ପ୍ରତି କିଏ ଅବିନୟ ଆଚରଣ କରୁଅଛି ?' ହଠାତ୍ ଅପରିଚିତ ପୁରୁଷଙ୍କୁ ଦେଖି ସେମାନେ ଟିକିଏ ବିଚଳିତ ହେଲେ ମାତ୍ର ଆତ୍ମସଂବରଣ କରି ଅତିଥିଙ୍କର ସ୍ୱାଗତ କଲେ । ରାଜାଙ୍କୁ ଦେଖି ଶକୁନ୍ତଳାଙ୍କ ମନରେ ପ୍ରେମ-ବିକାର ଜାତ ହେଲା । ମୁଁ 'ରାଜା' ବୋଲି ଜାଣିଲେ ଖୋଲା ହୃଦୟରେ ମୋ ସହିତ ଆଳାପ କରିବେ ନାହିଁ ଭାବି ଦୁଷ୍ୟନ୍ତ କହିଲେ—ରାଜା ଧର୍ମବିଭାଗରେ ମୋତେ ନିଯୁକ୍ତ କରିଅଛନ୍ତି । ଏହି ଆଶ୍ରମରେ ଧର୍ମକାର୍ଯ୍ୟ ନିର୍ବିଘ୍ନରେ ସମାହିତ ହେଉଅଛି କି ନାହିଁ—ଏହା ବୁଝିବାକୁ ଆସିଅଛି ।' ତା ପରେ ତାଙ୍କର ସହିତ ଆଳାପ କରି ରାଜା ବୁଝି-ପାରିଲେ ଯେ 'ବିଶ୍ୱାମିତ୍ରଙ୍କର ଉଗ୍ରତପସ୍ୟା ଦେଖି ଦେବତାମାନେ ତାଙ୍କର ତପସ୍ୟା ଭଗ୍ନ କରିବାକୁ ମେନକା ନାମକ ଅପ୍ସରାଙ୍କୁ ପଠାଇଥିଲେ । ତାଙ୍କଠାରୁ ଶକୁନ୍ତଳାଙ୍କର ଜନ୍ମ ହୋଇଅଛି । ମା ମେନକା ତାଙ୍କୁ ଛାଡ଼ି ଚାଲି-ଗଲାପରେ କଣ୍ୱଋଷି ତାଙ୍କର ପାଳନ କରିଅଛନ୍ତି । ଏହେତୁ ସେ ଧର୍ମତଃ ପିତା ଅଟନ୍ତି । ଉପଯୁକ୍ତ ବର ମିଳିଲେ ତାଙ୍କ ହସ୍ତରେ ଅର୍ପଣ କରିବାକୁ ଋଷିଙ୍କର ଇଚ୍ଛା ।' ନିଜ ବିଷୟର ଚର୍ଚ୍ଚା ଶୁଣି ଶକୁନ୍ତଳା କ୍ରୋଧରେ ପ୍ରିୟସଖୀ ଗୌତମୀଙ୍କ ପାଖରେ

ସମସ୍ତ ଜଣାଇବାକୁ ଯିବାକୁ ବସିଲେ । ତାଙ୍କୁ ବାରଣ କରିବାକୁ ଯାଇ ପ୍ରିୟମ୍ବଦା କହିଲେ 'ମୁଁ ତୁମର ଦୁଇଟି ଗଛରେ ପାଣି ଦେଇଅଛି, ତୁମେ ପ୍ରଥମେ ମୋର ଋଣ ପରି-ଶୋଧ କର, ପରେ ଯିବ' । ରାଜା 'ବୃକ୍ଷରେ ପାଣି ଦେଇ ଦେଇ ଏ ଭାରି ଶ୍ରାନ୍ତ ହୋଇ ଅଛନ୍ତି, ମୁଁ ତାଙ୍କୁ ଋଣରୁ ମୁକ୍ତ କରୁଅଛି' କହି ନିଜ ମୁଦ୍ରିକାଟି ପ୍ରିୟମ୍ବଦାଙ୍କୁ ଦେଲେ । ମୁଦ୍ରିକାରେ ରାଜାଙ୍କର ନାମ ପଢ଼ି ସେମାନେ ବିସ୍ମିତ ହେଲେ । ଏହା ଦେଖି ରାଜା କହିଲେ—ମୁଁ ଅନ୍ୟ କିଏ ବୋଲି ଭାବନ୍ତୁ ନାହିଁ । ଏହା ରାଜାଙ୍କର ପୁରସ୍କାର ।' ପ୍ରିୟମ୍ବଦା କହିଲେ – ତାହାହେଲେ ଏହା ଆପଣଙ୍କର ଅଙ୍ଗୁଳିରେ ଥାଉ, ଆପଣଙ୍କର ଅନୁରୋଧରେ ସେ ଋଣମୁକ୍ତ ହେଉ ।' ଏପରି ସମ୍ଭାଷଣ ଚାଲିଥିଲା ବେଳେ 'ରାଜା ଦୁଷ୍ମନ୍ତ ମୃଗୟାବିହାର ପ୍ରସଙ୍ଗରେ ତପୋବନକୁ ଆସିଛନ୍ତି । ତାଙ୍କର ରଥ ଦେଖି ଡରିକରି ଏକ ହାତୀ ହରିଣ-ମାନଙ୍କୁ ଛିନ୍ନଛିନ୍ନ କରି ତପୋବନରେ ପ୍ରବେଶ କରୁଅଛି । ଏହେତୁ ସମସ୍ତେ ସାବଧାନ ହୋଇ ତପୋବନର ପ୍ରାଣୀମାନଙ୍କୁ ରକ୍ଷା କର ।' ଏହିପରି ଘୋଷଣା ଶୁଣାଗଲା । ରାଜାଙ୍କର ଅନୁଜ୍ଞା ନେଇ ମୁନି-କନ୍ୟାମାନେ ପର୍ଣ୍ଣକୁଟୀରକୁ ଗଲେ । ଯିବା ସମୟରେ ଶକୁନ୍ତଳା 'ପାଦ କୁଶାଙ୍କୁରରେ କ୍ଷତ ହେଲା ଓ ମୋର ବଳ୍କଳ ବୃକ୍ଷଶାଖାରେ ଲାଗିଗଲା' କହି ଛଳନା କରି ପଛରେ ରହି ରାଜାଙ୍କୁ ଦେଖି ଦେଖି ସଖୀମାନଙ୍କ ସହ ପ୍ରସ୍ଥାନ କଲେ । (୧ମ ଅଙ୍କ) ଏହାପରେ ଦ୍ୱିତୀୟ ଦିବସର ଘଟଣା ଦ୍ୱିତୀୟ ଅଙ୍କରେ ବର୍ଣ୍ଣିତ ହୋଇଅଛି । ତପୋ-

ବନାନ୍ତରେ ରାଜା ନିଜ ସେନାନିବେଶ ସ୍ଥାପନ କରିଥିଲେ । ସେହି ସେନାନିବେଶ ଦ୍ୱିତୀୟ ଅଙ୍କର ସ୍ଥଳ । ପ୍ରଥମେ ବିଦୂଷକ ପ୍ରବେଶ କରି କହିଲେ— 'ଏହି ମୃଗୟାଶୀଳ ରାଜାଙ୍କ ସହ ବୁଲି ବୁଲି ମୁଁ ବିଶେଷ କଷ୍ଟ ପାଇଲଣି । କାହିଁ ହରିଣ, କାହିଁ ବରାହ, କାହିଁ ବ୍ୟାଘ୍ର ବୋଲି ରଡ଼ି ଛାଡ଼ି ଏହି ଗ୍ରୀଷ୍ମ ଋତୁରେ ବଣରେ ବୁଲିବାକୁ ହୁଏ । ସବୁଦିନେ ତପ୍ତ ଓ ଲବଣ ବହୁଳ ମାଂସ ଖାଇବାକୁ ମିଳେ । ଏହିପରି ମୋର ଧ୍ୟାନ କଟୁଅଛି । ରାତିରେ ସୁଖରେ ମୋତେ ପୁଣି ନିଦ ହେଉ ନାହିଁ । ମୋର ଦୌର୍ଭାଗ୍ୟରୁ କାଲି ତାପସକନ୍ୟା ଶକୁନ୍ତଳା ରାଜାଙ୍କର ଦୃଷ୍ଟିରେ ପଡ଼ିଛି । ବର୍ତ୍ତମାନ ରାଜା ଆଉ ଘର ଫେରିବା କଥା ଭୁଲିରେ ମଧ ଧରୁନାହାନ୍ତି ।' ବିଦୂଷକ ନିଜ ମନେ ମନେ ଏପରି ଭାବନା କରୁଥିବା ବେଳେ ରାଜା ଉପସ୍ଥିତ ହେଲେ । ଶକୁନ୍ତଳାଙ୍କ ପ୍ରତି ମନ ଆସକ୍ତ ହେବା ହେତୁ ରାଜାଙ୍କର ମୃଗୟା ପ୍ରତି ଉତ୍ସାହ କମି ଯାଇଥିଲା । ଏହେତୁ ମୃଗୟା ବନ୍ଦ କରିବା ସକାଶେ ବିଦୂଷକଙ୍କର ପ୍ରସ୍ତାବକୁ ଗ୍ରହଣ କଲେ ଏବଂ ମୃଗୟା ବନ୍ଦ କରିବାକୁ ଆଦେଶ ଦେଲେ । ତାପରେ ଏକ ଗଛତଳେ ବସି ବିଦୂଷକଙ୍କ ଅନୁରୋଧରେ ଶକୁନ୍ତଳାଙ୍କର ଜନ୍ମ କଥା ପ୍ରକାଶ କଲେ । ତାପରେ କି ଉପାୟରେ ପୁଣି ଆଶ୍ରମରେ ପ୍ରବେଶ କରିବେ—ଏ ବିଷୟରେ ଚର୍ଚ୍ଚା କରୁଥିଲେ—ଏ ସମୟରେ ଦୁଇଟି ଋଷିକୁମାର ପ୍ରବେଶ କରି 'କଣ୍ୱ ମହର୍ଷି ନ ଥିବାରୁ ରାକ୍ଷସମାନେ ଯଜ୍ଞକର୍ମରେ ବିଘ୍ନ କରୁଛନ୍ତି, ଏହେତୁ ଆପଣ କେତେଦିନ ଆଶ୍ରମରେ

ରହନ୍ତୁ' ବୋଲି ଅଶ୍ରମବାସୀ ଋଷିମାନଙ୍କର ପ୍ରାର୍ଥନା ଶୁଣା-ଗଲେ । ରାଜା ଆନନ୍ଦ ସହକାରେ ସେମାନଙ୍କର ପ୍ରାର୍ଥନା ଗ୍ରହଣ କଲେ । ତାପରେ ରାଜା ବିଦୂଷକଙ୍କୁ କହିଲେ— 'ଶକୁନ୍ତଳାଙ୍କୁ ଦେଖିବାକୁ ତୁମର ଇଚ୍ଛା ଅଛି କି ?' ବିଦୂଷକ ଉତ୍ତର କଲେ—'ପ୍ରଥମରେ ତ ବଡ଼ କୁତୂହଳ ଥିଲା । କିନ୍ତୁ ଏହି ରାକ୍ଷସକଥା ଶୁଣିଲାପରେ ଅଉ ଟିକିଏ ହେଲେ ନାହିଁ । ଠିକ୍ ଏହି ସମୟରେ ରାଜଧାନୀରୁ ଏକ ଦୂତ ଆସି ରାଜମାତାଙ୍କର ସନ୍ଦେଶ ଶୁଣାଇଲେ ଯେ ଆଜିଠାରୁ ଚତୁର୍ଥ ଦିବସରେ 'ପୁତ୍ରପିଣ୍ଡ ପାଳନ' ନାମକ ବ୍ରତର ପାରଣା ହେବ, ସେ ସମୟରେ ରାଜାଙ୍କୁ ଉପସ୍ଥିତ ହେବାକୁ ହେବ । ରାଜା ବିଷମ ସମସ୍ୟାରେ ପଡ଼ିଲେ—କଅଣ କରିବେ କିଛି ସ୍ଥିର କରିପାରିଲେ ନାହିଁ । ଶେଷରେ ବିଦୂଷକଙ୍କୁ କହିଲେ 'ମାଆ ତୁମକୁ ପୁଅପରି ମନେ କରନ୍ତି, ସେହେତୁ ତୁମେ ଯାଅ । ମାଆଙ୍କୁ ମୁଁ ତପସ୍ୱୀ-ମାନଙ୍କର କାର୍ଯ୍ୟରେ ବ୍ୟସ୍ତ ବୋଲି କହି ପୁତ୍ରକାର୍ଯ୍ୟ ସମ୍ପାଦନ କର ।' ଘରକୁ ଫେରି ବିଦୂଷକଙ୍କାଳେ ଶକୁନ୍ତଳା କଥା ଅନ୍ତଃ-ପୁରର ସ୍ତ୍ରୀମାନଙ୍କୁ କହିଦେବ—ଏହି ଭୟରେ ରାଜା ବିଦୂଷକଙ୍କୁ କହିଲେ—'ଋଷିମାନଙ୍କର ଅନୁରୋଧର ଗୌରବ ରକ୍ଷା କରିବାକୁ ମୁଁ ଆଶ୍ରମକୁ ଯାଉଅଛି । ପ୍ରକୃତରେ ଋଷିକନ୍ୟାଙ୍କ ପ୍ରତି ମୋର ଅଭିଳାଷ ନାହିଁ । ମୁଁ ପରିହାସରେ ଏ ସମସ୍ତ କହିଛି, ତୁମେ ତାକୁ ସତ ବୋଲି ଭାବିବ ନାହିଁ ।' (୨ୟ ଅଙ୍କ) ଏହାପରେ ପ୍ରାୟ ପନ୍ଦର ଦିନ ପରେ ତୃତୀୟାଙ୍କର ବୃତ୍ତାନ୍ତ ବର୍ଣ୍ଣିତ । ପ୍ରଥମେ ଗୋଟିଏ ଛୋଟ ଧରଣର ପ୍ରବେଶକ । ଏଥିରେ ଶିଷ୍ୟଙ୍କର ଭାଷଣରୁ ଜଣାଯାଏ ଯେ ରାଜା ପାଖରେ ଥିବା ହେତୁ ଯଜ୍ଞକର୍ମ ନିର୍ବିଘ୍ନରେ ସମାପ୍ତ ହେଉଅଛି । ତାପରେ ରାଜା ପ୍ରବେଶ

କର ଚନ୍ଦ୍ର ଓ ମଦନ ପ୍ରଭାବରେ ନିଜ କାମ ପୀଡ଼ା ବର୍ଣ୍ଣନ କରୁଛନ୍ତି । ମଧ୍ୟାହ୍ନ ସମୟରେ ଶକୁନ୍ତଳା ନିଜ ସଖୀମାନଙ୍କ ସହିତ ମାଳିନୀ ତୀରରେ ଅବସ୍ଥାନ କରନ୍ତି— ଭାବି ମାଳିନୀତୀର ଅଭିମୁଖରେ ପ୍ରସ୍ଥାନ କରି ସେଠାରେ ଏକ ଲତା ଗୃହ ପାଖରେ ଶକୁନ୍ତଳାଙ୍କର ପାଦଚିହ୍ନ ଦେଖି କିଛି ଦୂର ଯାଇ ଦେଖିଲେ ଯେ ଶକୁନ୍ତଳା ପୁଷ୍ପାଚ୍ଛାଦିତ ଶିଳାତଳ ଉପରେ ଶୋଇକରି ସଖୀମାନଙ୍କ ସହିତ କଥାବାର୍ତ୍ତା କରୁଅଛନ୍ତି । ସେମାନଙ୍କର ବିଶ୍ରମ୍ଭାଳାପ ଶୁଣିବା ଉଦ୍ଦେଶ୍ୟରେ ବୃକ୍ଷ ଅନ୍ତରାଳରେ ଲୁଚି ରହିଲେ । 'ଦୁଷ୍ୟନ୍ତଙ୍କର ପ୍ରଥମ ଦର୍ଶନଠାରୁ ଶକୁନ୍ତଳା ଦିନୁ ଦିନ ଦୁର୍ବଳ ହୋଇ ଯାଉଛନ୍ତି ଏ ହେତୁ ଏହାର ବିକାର ପ୍ରେମମୂଳକ ହୋଇ ପାରେ' ଭାବି ଅନସୂୟା ଶକୁନ୍ତଳାଙ୍କୁ କହିଲେ 'ଶକୁନ୍ତଳା, ଆମେତ ପ୍ରେମବ୍ୟାପାର କ'ଣ ଜାଣୁ ନାହୁଁ । କିନ୍ତୁ ଇତିହାସରେ କାମାର୍ତ୍ତ ଲୋକମାନଙ୍କର ଅବସ୍ଥା ଯେପରି ବର୍ଣ୍ଣିତ ହୋଇ ଅଛି, ଆମେ ସେହିପରି ଅବସ୍ଥା ଲକ୍ଷ୍ୟ କରୁଅଛୁଁ । ତୁମେ କହ କହେତୁ ତୁମର ଏହି ସନ୍ତାପ ହୋଇ ଅଛି । ରୋଗର ନିଦାନ ନଜାଣିଲେ ପ୍ରତୀକାରର ଆରମ୍ଭ କରି ହୁଏ ନାହିଁ । ଲଜ୍ଜାବଶତଃ ଶକୁନ୍ତଳା କୌଣସି କଥା ପ୍ରକାଶ କରିପାରିଲେ ନାହିଁ । ପ୍ରିୟମ୍ବଦା ମନୋଭାବ ପ୍ରକାଶ କରିବାକୁ ନିର୍ବନ୍ଧ କଲେ । ଶକୁନ୍ତଳା କହିଲେ ଯେଉଁଦିନ ତପୋବନର ରକ୍ଷକ ରାଜର୍ଷି ମୋର ଦୃଷ୍ଟିପଥରେ ପଡ଼ିଲେ, ସେହି ଦିନଠାରୁ ତାଙ୍କଠାରେ ଅସକ୍ତ ଜାତ ହେବାରୁ ମୋର ଏହି ଅବସ୍ଥା ହୋଇଅଛି । ତୁମେମାନେ ସମ୍ମତ ହେଲେ, ଯେପରି ତାଙ୍କର ମୋ ପ୍ରତି ଦୟା ହେବ, ତାର ବ୍ୟବସ୍ଥା କର । ନ ହେଲେ ମୋତେ ତିଳୋଦକ ଦେବାକୁ ପ୍ରସ୍ତୁତ ହୁଅ ।

ସଖୀମାନେ ପୁରୁବଂଶଗୁଣଙ୍କ ରାଜର୍ଷିଙ୍କ ପ୍ରତି ଶକୁନ୍ତଳାଙ୍କର ଅନୁରାଗ ଜାଣି ଆନନ୍ଦିତ ହେଲେ । ରାଜା ମଧ୍ୟ ଶକୁନ୍ତଳା-ବିରହରେ ଏହିପରି ଅବସ୍ଥା ଅନୁଭବ କରୁଅଛନ୍ତି ବୋଲି ପ୍ରିୟମ୍ବଦା ଲକ୍ଷ୍ୟ କରିଥିଲେ । ଏ ହେତୁ ସେ ଶକୁନ୍ତଳାଙ୍କୁ କହିଲେ—'ତୁମେ ଏହି ପଦ୍ମପତ୍ର ଉପରେ ନିଜ ନଖରେ ଏକ ମଦନଲେଖ ଲେଖ । ମୁଁ 'ଦେବତା ପ୍ରସାଦ ଦେବାଛଳରେ ଫୁଲରେ ଘୋଡ଼ାଇ ଏହି ପତ୍ର ରାଜାଙ୍କ ହସ୍ତଗତ କରିଦେବି ।' ତାପରେ ଶକୁନ୍ତଳା ନିଜ କାମତାପ ସୂଚକ ଏକ ପ୍ରାକୃତଗାଥା ରଚନା କରି ନିଜ ସଖୀମାନଙ୍କୁ ଶୁଣାଇଲେ । ରାଜା ତାହା ଶୁଣି ଆତ୍ମପ୍ରକାଶ କରି କହିଲେ—କାମପ୍ରଭାବରେ ତାଙ୍କର ଅବସ୍ଥା ଶକୁନ୍ତଳାଙ୍କ ଠାରୁ ମଧ୍ୟ ଅଧିକ ଅସହ୍ୟ । ତାପରେ ପ୍ରିୟମ୍ବଦା ଶକୁନ୍ତଳାଙ୍କୁ ସ୍ୱୀକାର କରିବା ସକାଶେ ଅନୁରୋଧ କଲେ । ଶକୁନ୍ତଳା କହିଲେ— 'ପ୍ରିୟମ୍ବଦା, ବର୍ତ୍ତମାନ ଅନ୍ତଃପୁର ବିରହରେ ଉତ୍କଣ୍ଠିତ ରାଜାଙ୍କୁ କାହିଁକି ଅନୁରୋଧ କରୁଅଛ ?' ଅନସୂୟା ମଧ୍ୟ କହିଲେ— ରାଜାଙ୍କର ଅନେକ ଭାର୍ଯ୍ୟା ଥାଆନ୍ତି, ଏହେତୁ ଆମ ପ୍ରିୟସଖୀ ବନ୍ଧୁଜନଙ୍କର ଦୁଃଖର କାରଣ ଯେପରି ନ ହେବ, ସେପରି ବ୍ୟବହାର କରିବେ । ତାପରେ ରାଜା ଉତ୍ତର ଦେଲେ—ମୋର ଅନେକ ଭାର୍ଯ୍ୟା ଥିଲେ ମଧ୍ୟ ସମୁଦ୍ରରସନା ପୃଥିବୀ ଓ ତୁମର ସଖୀ ଏ ଦୁହେଁ କୁଳର ପ୍ରତିଷ୍ଠାର କାରଣ ହେବେ । ଏହା ଶୁଣି ସମସ୍ତଙ୍କ ମନରେ ସନ୍ତୋଷ ଜାତ ହେଲା । ସେମାନେ ହରିଣବାଳକକୁ ମାଆ ସହିତ ମିଳାଇବା ଛଳରେ ସେଠାରୁ ପ୍ରସ୍ଥାନ କଲେ । ଶକୁନ୍ତଳା ମଧ୍ୟ ତାଙ୍କ ପଛେ ପଛେ ଯିବାକୁ ଚାହାଁଥିଲେ । ରାଜା ତାଙ୍କ କର ଧରି ଗାନ୍ଧର୍ବ ବିବାହରେ ଅନେକ ଋଷିଙ୍କ କନ୍ୟା ବିବାହ କରି

ଅଛନ୍ତି, ଏହେତୁ ତୁମେ ଗୁରୁଜନଙ୍କ ଭୟ କରିବାର କୌଣସି କାରଣ ନାହିଁ—ବୋଲି ବୁଝାଇ ତାଙ୍କ ମନ ଆକର୍ଷଣ କଲେ । ଠିକ୍ ଏହି ସମୟରେ 'ଚକ୍ରବାକବଧୂ ! ନିଜ ସହଚରଙ୍କୁ ବିଦାୟ ମାଗ, ରାତ୍ରି ଆସିଗଲା' ବୋଲି ଶୁଣାଗଲା । ଶକୁନ୍ତଳା ରାଜାଙ୍କୁ କହିଲେ—'ଗୌତମୀ ମୋ ସ୍ୱାସ୍ଥ୍ୟ ବୁଝିବା ସକାଶେ ଆସୁଅଛନ୍ତି, ଆପଣ ବୃକ୍ଷାନ୍ତରାଳରେ ଲୁଚି ରହନ୍ତୁ । ତା ପରେ ପ୍ରିୟମ୍ବଦା ଓ ଅନସୂୟାଙ୍କ ସହିତ ଗୌତମୀ ପ୍ରବେଶ କଲେ । ତାଙ୍କର ସ୍ୱାସ୍ଥ୍ୟ କଥା ପଚାରିଲେ ଓ ଶକୁନ୍ତଳାଙ୍କ ଉପରେ ଦର୍ଭୋଦକ ସିକ୍ତ କଲେ । ସେ ସମୟରେ ସନ୍ଧ୍ୟା ହେବା ହେତୁ ଶକୁନ୍ତଳାଙ୍କୁ ନିଜ ସାଥିରେ ନେଇ ଗଲେ । ଯିବାବେଳେ ଶକୁନ୍ତଳା 'ସନ୍ତାପହାରକ ଲତାକୁଞ୍ଜ, ମୁଁ ପୁଣି ଉପଭୋଗ ସକାଶେ ଆମନ୍ତ୍ରଣ କରୁଅଛି' କହି ଦୁଷ୍ୟନ୍ତଙ୍କୁ ପୁନର୍ବାର ମିଳନର ସୂଚନା ଦେଇ ପ୍ରସ୍ଥାନ କଲେ । 'ସାୟଂକାଳୀନ ଯଜ୍ଞବିଧି ଆରମ୍ଭ ହେବାବେଳେ ବେଦିର ଚତୁଃ ପାଖରେ ରାକ୍ଷସମାନଙ୍କର ଭୟଙ୍କର ଛାୟା ଦେଖା ଯାଉଅଛି' ଏହି ଶବ୍ଦ ରାଜା ଶୁଣି ପାରିଲେ ଏବଂ ଯଜ୍ଞରକ୍ଷାର୍ଥ ପ୍ରସ୍ଥାନକଲେ । (ତୃତୀୟ ଅଙ୍କ) । ଚତୁର୍ଥାଙ୍କର ଆରମ୍ଭରେ ଏକ ବିଷ୍କମ୍ଭକ ଦେଖାଯାଏ । ଏଥିରେ ଅନସୂୟା ଓ ପ୍ରିୟମ୍ବଦା ଶକୁନ୍ତଳାଙ୍କର ସୌଭାଗ୍ୟ ଦେବତାଙ୍କ ପୂଜା କରିବା ସକାଶେ ଫୁଲ ତୋଳିବା ଦେଖାଯାଏ । ସେ ଦୁହିଙ୍କର ଭାଷଣରୁ ଜଣାଯାଏ ଯେ ରାଜା ଯଜ୍ଞ ସମାପ୍ତି ପରେ ଋଷିମାନଙ୍କର ଆଦେଶ ନେଇ ନିଜ ରାଜଧାନୀକୁ ଫେରି ଯାଇଛନ୍ତି । ସେମାନେ ଆଳାପ କଲାବେଳେ 'କିଏ ଅଛ, ମୁଁ ଉପସ୍ଥିତ' ବୋଲି ଗମ୍ଭୀର ଶବ୍ଦ ଶୁଣାଗଲା । 'ଶକୁନ୍ତଳା କୁଟୀରରେ ଥିଲେ ମଧ୍ୟ ଶୂନ୍ୟହୃଦୟା । କାଳେ ଅତିଥି ସତ୍କାରରେ ବାଧା ହେବ' ଭାବି ସେମାନେ ଯିବାକୁ ତତ୍ପର

ହେଲେ ଏବଂ ଶୁଣିପାରିଲେ ଯେ 'ତୁମେ ଯାହା ଧ୍ୟାନରେ ତନ୍ମୟ ହୋଇ ମୋ ଭଳି ତପୋଧନଙ୍କୁ ମଧ୍ୟ ଦେଖିପାରୁ ନାହଁ, ସେହି ତୁମର ପ୍ରିୟ କେତେ ବୁଝାଇଲେ ମଧ୍ୟ ତୁମକୁ ଚିହ୍ନିପାରିବ ନାହିଁ ।' କିଛିଦୂର ଯାଇ ଦେଖିଲେ ଯେ ଦୁର୍ବାସା କ୍ରୋଧରେ ଫେରି ଯାଉଛନ୍ତି । ପ୍ରିୟମ୍ବଦା ତାଙ୍କୁ କାକୁତିମିନତି କରି କେତେ ପ୍ରାର୍ଥନା କଲେ । ଦୁର୍ବାସା ପରିଶେଷରେ କହିଲେ 'ମୋର ଶାପ ତ ଅନ୍ୟଥା ହେବାର ନୁହେଁ । ତେବେ କୌଣସି ଅଭିଜ୍ଞାନ ଦେଖିଲେ ଶାପର ନିବୃତ୍ତି ହେବ ।' ପ୍ରିୟମ୍ବଦା ମନରେ ଟିକିଏ ଆଶ୍ୱାସନା ପାଇଲେ । କାରଣ ଶକୁନ୍ତଳାଙ୍କ ପାଖରେ ରାଜାଙ୍କର ମୁଦିଟି ଅଛି, ଶାପବାଧା ପଡ଼ିବ ନାହିଁ । 'ଶକୁନ୍ତଳା ଅତ୍ୟନ୍ତ କୋମଳସ୍ୱଭାବା, ଏହି ଦାରୁଣ ଶାପ ସମ୍ବାଦ ଶୁଣିଲେ ବିଶେଷ ଅଘାତ ପାଇବେ' ଭାବି ଦୁଇ ସଖୀ ଏ ସମ୍ବାଦ ଶକୁନ୍ତଳାଙ୍କୁ ଜଣାଇଲେ ନାହିଁ ।

ତା ପରେ କେତେ ଦିନ ପରେ ଚତୁର୍ଥ ଅଙ୍କର ଆରମ୍ଭ । 'ମୋର ଏହି ମୁଦିର ଏକ ଏକ ଅକ୍ଷର ପ୍ରତିଦିନ ତୁମେ ଗଣୁଥାଅ, ଶେଷ ଅକ୍ଷର ପୂର୍ଣ୍ଣ ନ ହେବା ପୂର୍ବରୁ ତୁମକୁ ନେବା ସକାଶେ ମୋର ଲୋକ ତୁମ ପାଖକୁ ଆସିଯିବ' ଏହିପରି ରାଜା କହି ଯାଇଥିଲେ, କିନ୍ତୁ କେତେ ମାସ ଅତୀତ ହେଲଣି । ଆଜ ଯାଏ କୌଣସି ସମ୍ବାଦ ପଠାଇଲେ ନାହିଁ—କ'ଣ କରିବାକୁ ହେବ—ଏହି ଚିନ୍ତାରେ ଅନସୂୟା ଲିପ୍ତ ଥିଲେ । ପ୍ରିୟମ୍ବଦା ଆସି କହିଲେ— 'ପ୍ରବାସରୁ ଫେରି ଅଗ୍ନିଗୃହରେ ଉପସ୍ଥିତ ହେଲା ମାତ୍ରେ ବାପା କଣ୍ୱଙ୍କୁ ଅକାଶ ବାଣୀ 'ଶକୁନ୍ତଳା ଦୁଷ୍ମନ୍ତଙ୍କ ସମ୍ପର୍କରେ ଗର୍ଭବତୀ' ବୋଲି ସୂଚନା ଦେଲା । ତା ପରେ ବାପା କଣ୍ୱ ଶକୁନ୍ତଳାଙ୍କୁ 'ବତ୍ସେ, ଉତ୍ତମ ଶିଷ୍ୟକୁ ଦିଆଯିବା ବିଦ୍ୟା ପରି ତୁମ ବିଷୟରେ ମୋର ଆଉ ଚିନ୍ତା ନାହିଁ' ବୋଲି କହି ଅନନ୍ଦିତ ହେଲେ ।

ସେ ପୁଣି ଆଜହିଁ ତାଙ୍କୁ ଋଷିମାନଙ୍କ ସହିତ ଶାଶୁ ଘରକୁ ପଠାଉଛନ୍ତି । ଚାଲ, ଶକୁନ୍ତଳାଙ୍କୁ ବିଦାୟ ଦେବା ଯୋଗାଡ଼ କରିବା ।' ତା ପରେ ସେମାନେ ଯେଉଁଠାରେ ତାପସୀମାନେ ଶକୁନ୍ତଳାଙ୍କୁ ଆଶୀର୍ବାଦ ଦେଉଥିଲେ, ସେଠାରେ ଉପସ୍ଥିତ ହେଲେ ଏବଂ ଶକୁନ୍ତଳାଙ୍କୁ ଆଶ୍ରମୋଚିତ ଅଳଙ୍କାର ପିନ୍ଧାଇବାକୁ ଲାଗିଲେ । ସେମାନେ ପ୍ରକାଶ କଲେ ଯେ ଶକୁନ୍ତଳାଙ୍କର ସୌନ୍ଦର୍ଯ୍ୟର ଅନୁରୂପ ଅଳଙ୍କାର ଆଶ୍ରମରେ ନାହିଁ । ଏହି ସମୟରେ ଋଷିକୁମାର ହାରୀତ ତପୋବନଦେବତାମାନେ ଦେଇଥିବା ପଟ୍ଟବସ୍ତ୍ର, ଲକ୍ଷାରାଗ ଓ ନାନାବିଧ ଅଳଙ୍କାର ଆଣି ଦେଲେ । ସଖୀମାନେ ଶକୁନ୍ତଳାଙ୍କୁ ପିନ୍ଧାଇବାକୁ ଲାଗିଲେ । ଏ ସମୟରେ ଭଗବାନ୍ କଣ୍ୱ ସ୍ନାନ ସାରି ସେଠାରେ ଉପସ୍ଥିତ ହେଲେ । ଶକୁନ୍ତଳା ଶାଶୁ ଘରକୁ ଯାଉଛି— ଏହା ଋଷି ପ୍ରକାଶ କରିଅଛନ୍ତି—

**यास्यत्यद्य शकुन्तलेति हृदयं संस्पृष्टमुत्कण्ठया**
**कण्ठः स्तम्भितवाष्पवृत्तिकलुषश्चिन्ताजडं दर्शनम् ।**
**वैक्लव्यं मम तावदीदृशमहो स्नेहादरण्यौकसः**
**पीड्यन्ते गृहिणः कथं नु तनयाविश्लेषदुःखैः नवैः ॥**

ଶାକୁ ୪,୬

'ଆଜି ଶକୁନ୍ତଳା ଯିବ—ଏହା ବିଚାରରେ ମୋର ହୃଦୟ ଉତ୍କଣ୍ଠାରେ ପୂର୍ଣ୍ଣ, କଣ୍ଠ ଗଦ୍‌ଗଦ, ଦୃଷ୍ଟି ଚିନ୍ତାରେ ଜଡ଼ୀଭୂତ ହେଉଅଛି । ମୁଁ ଅରଣ୍ୟବାସୀ ହେଲେ ବି କନ୍ୟା ସ୍ନେହରେ ଏତେଦୂର ବ୍ୟାକୁଳ ହେଉଅଛି, ଗୃହସ୍ଥମାନେ କନ୍ୟାବିରହରେ କି ଦୁଃଖ ନ ପାଉଥିବେ ।' ଶକୁନ୍ତଳା ଋଷିଙ୍କର ପାଦ ବନ୍ଦନ

କଲେ । ଋଷି ତାଙ୍କୁ ଆଶୀର୍ବାଦ କଲେ, 'ତୁ ନିଜ ଭର୍ତ୍ତାଙ୍କର ପ୍ରୀତିପାତ୍ର ହୁଅ ଏବ ଚକ୍ରବର୍ତ୍ତୀ ପୁତ୍ର ଲାଭ କର'। ଅଗ୍ନି ପ୍ରଦକ୍ଷିଣ କଲାପରେ ସମସ୍ତେ ପ୍ରସ୍ଥାନ କରିବାକୁ ଲାଗିଲେ । ସେତେବେଳେ ଋଷି ତପୋବନର ତରୁ ଲତାଙ୍କୁ ସମ୍ବୋଧନ କରି କହିଲେ—

> पातुं न प्रथमं व्यवस्यति जलं युष्मास्वपीतेषु या
> नादत्ते प्रियमण्डनापि भवतां स्नेहेन या पल्लवम् ।
> आद्ये वः कुसुमप्रसूतिसमये यस्या भवत्युत्सवो
> सेयं याति पतिगृहं शकुन्तला सर्वैरनुज्ञायताम् ॥
>
> ଶାକୁ ୪,୯,

'ଯେ ତୁମମାନଙ୍କୁ ଆଗ ପାଣି ନ ଦେଲେ ନିଜେ ପାଣି ଛୁଏଁ ନାହିଁ, ଅଳଙ୍କାର ପ୍ରତି ମମତା ଥିଲେ ମଧ୍ୟ ଯେ ସ୍ନେହ-ଥିବାରୁ ତୁମମାନଙ୍କର ପତ୍ର ମଧ୍ୟ ଛିଣ୍ଡାଏ ନାହିଁ, ତୁମମାନଙ୍କର ପ୍ରଥମେ ଫୁଲ ଫୁଟିବା ଦେଖିଲେ ଯାର ଅମିତ ଆନନ୍ଦ ହୁଏ, ସେହି ଶକୁନ୍ତଳା ଆଜି ନିଜ ସ୍ୱାମୀଙ୍କର ଘରକୁ ଯାଉଅଛି, ତୁମେମାନେ ଅନୁମତି ଦିଅ ।' ଏସମୟରେ ତପୋବନଦେବତାମାନେ ଆଶୀର୍ବାଦ ଦେଲେ । ଶକୁନ୍ତଳା ଚାଲିଯାଉଛି ବୋଲି ସମସ୍ତ ଆଶ୍ରମ ବିଷାଦରେ ବ୍ୟାକୁଳ । ହରିଣମାନଙ୍କର ମୁଖରୁ ଦର୍ଭକବଳ ଖସିପଡ଼ୁଥିଲା, ମୟୂରମାନେ ନୃତ୍ୟ ବନ୍ଦ କରିଦେଲେ । ଲତାମାନେ ଶିଥିଳ ପତ୍ରବ୍ୟାଜରେ ଅଶ୍ରୁ ବିସର୍ଜନ କଲେ । ଏହିପରି ବୋଧ ହେଲା । ଶକୁନ୍ତଳା ନିଜ ଭଉଣୀ ବନଜ୍ୟୋତ୍ସ୍ନାକୁ ଆଲିଙ୍ଗନ କଲେ । ସ୍ନେହପାଳିତ ଗର୍ଭିଣୀ ମୃଗୀ ଯେବେ ପ୍ରସବ କରିବ—ଜଣାଇବ ବୋଲି ପିତାଙ୍କୁ ଅନୁରୋଧ କଲେ । ସ୍ୱହସ୍ତ-ସମ୍ବର୍ଦ୍ଧିତ, ଲଗାକାନିରେ ଘଷିହେବା ନିଜର କୃତ୍ରିମ ପୁତ୍ର

ହସ୍ତିନାକୁ ଆଲିଙ୍ଗନ କଲେ । ତାପରେ ସମସ୍ତେ କ୍ଷୀରବୃକ୍ଷର ଗ୍ରଛରେ ଉପସ୍ଥିତ ହେଲେ । କଣ୍ୱମହର୍ଷି ନିଜ ସନ୍ଦେଶ କହିଲେ—

**अस्मान् साधु विचिन्त्य संयमधनानुच्चैः कुलंचात्मन-**
**स्त्वय्यस्याः कथमप्यबान्धवकृतां स्नेहप्रवृत्तिं च ताम् ।**
**सामान्यप्रतिपत्तिपूर्वकमियं दारेषु दृश्या त्वया**
**भाग्यायत्तमतःपरं न खलु तद्वाच्यं वधूबन्धुभिः ॥**

ଶାକୁ ୪,୦୨

'ଆମେ ସଂଯମପ୍ରବଣ, ତୁମର କୁଳ ଉନ୍ନତ, ଏ ନିଜ ଗୁରୁଜନଙ୍କୁ ନ ପଚାରି ମଧ୍ୟ ନିଜ ହୃଦୟ ତୁମକୁ ନିଜେ ଅର୍ପଣ କରିଅଛି—ଏ ସମସ୍ତ ବିଚାର କରି ଅନ୍ୟାନ୍ୟ ସ୍ତ୍ରୀ ପରି ଏହାଙ୍କୁ ମଧ୍ୟ ଦେଖିବ । ତାହାପରେ ତା ଭାଗ୍ୟରେ ଯାହା ଥିବ, ତାହା ହେବ—ସେ ସମସ୍ତ କନ୍ୟାର ବନ୍ଧୁମାନେ କହନ୍ତି ନାହିଁ ।' ଏହା ପରେ କଣ୍ୱ ଏକ ଶ୍ଳୋକରେ ଶକୁନ୍ତଳାଙ୍କୁ ମଧ୍ୟ ଉପଦେଶ ଦେଲେ । 'କାଳେ ତୁମର ପତି ତୁମକୁ ଯଦି ନ ଚିହ୍ନନ୍ତି, ତେବେ ଏହି ମୁଦିଟି ଦେଖାଇବ' ବୋଲି ସଖୀମାନେ କହିଲେ । ତାହା ଶୁଣିଲମାତେ ଶକୁନ୍ତଳାଙ୍କର ହୃଦୟ କମ୍ପିତ ହେଲା । 'ଭୟର କୌଣସି କାରଣ ନାହିଁ । ବେଶି ସ୍ନେହ ଥିଲେ ଏହିପରି ଅନଷ୍ଟ ଆଶଙ୍କା ହୋଇଥାଏ' ବୋଲି ସଖୀମାନେ ଆଶ୍ୱାସନା ଦେଲେ । ସୂର୍ଯ୍ୟ ମଧ୍ୟଉପରକୁ ଉଠିଲେ । ଗୌତମୀ ଋଷିଙ୍କୁ ଆଶ୍ରମକୁ ଫେରିବାକୁ କହିଲେ । ଶକୁନ୍ତଳା ପିତାଙ୍କର ବିରହ-କାତର ହୋଇ ପଚାରିଲେ – 'ବାପା, ପୁଣି ମୁଁ କେବେ ତପୋବନ ଦେଖିପାରିବ ?' କଣ୍ୱମହର୍ଷି ଉତ୍ତର ଦେଲେ—

**भूत्वा चिराय चतुरन्तमहीसपत्नी**
**दौष्यन्तिमप्रतिरथं तनयं प्रसूय ।**

मस्त्रा तदर्पितकुटुम्बभरेण सार्द्धं
शान्ते करिष्यसि पदं पुनराश्रमेऽस्मिन् ॥

ଶାକୁ ୪,୨୦

'ବହୁତ ସମୟ ସମୁଦ୍ରବଳୟବେଷ୍ଟିତ ପୃଥିବୀର ସପତ୍ନୀ ହୋଇ, ଅଳ୍ପସମୟପରେ ଅନୁପମ ରଥୀ କୁମାର ଜାତ କରି ଶେଷରେ ସେହି କୁମାରଠାରେ ସମସ୍ତ କୁଟୁମ୍ବଭାର ଅର୍ପଣ କରି ସ୍ୱାମୀଙ୍କ ସହିତ ଏହି ଶାନ୍ତିମୟ ଆଶ୍ରମରେ ପାଦନ୍ୟାସ କରିବ ।' ଶକୁନ୍ତଳା ଶେଷରେ କଣ୍ୱଙ୍କୁ ଅନୁରୋଧ କଲେ 'ବାପା, ତପସ୍ୟା କରି କରି ତୁମର ଶରୀର କ୍ଷୀଣ ହୋଇ ଯାଇଅଛି । ମୋ ପାଇଁ ଶୋକ କରି କଷ୍ଟ ପାଇବ ନାହିଁ ।' ଶକୁନ୍ତଳା ଗୌତମୀ ଓ ଶିଷ୍ୟମାନଙ୍କ ସହିତ ପ୍ରସ୍ଥାନ କଲେ । କଣ୍ୱମହର୍ଷି କହିଲେ—

अर्थो हि कन्या परकीय एव
तामद्य संप्रेष्य परिग्रहीतुः ।
जातो ममायं विशदः प्रकामं
प्रत्यर्पितन्यास इवान्तरात्मा ॥

ଶାକୁ ୪,୨୨

'କନ୍ୟା ପରର ସମ୍ପତ୍ତି । ଏ ହେତୁ ତାକୁ ଆଜ ସ୍ୱାମୀଙ୍କ ପାଖକୁ ପଠାଇ ଦେଇ ମୋର ମନ ଏପରି ସ୍ଥିର ହୋଇଅଛି ଯେପରି କି କୌଣସି ନ୍ୟାସ ପ୍ରତ୍ୟର୍ପଣ କରି ଦେଇଛି ।' (୪ର୍ଥ ଅଙ୍କ) କନ୍ୟାକୁ ପତିଘରକୁ ପଠାଇବାରେ କଣ୍ୱଙ୍କର ଶୋକ, ଶକୁନ୍ତଳାଙ୍କ ପ୍ରତି ବହୁମୂଲ୍ୟ ଉପଦେଶ, ତାଙ୍କର ଭବୀ

ସୌଭାଗ୍ୟର ଚିହ୍ନ ଓ ସେ ବିବାହରେ କଣ୍ୱଙ୍କର ନିର୍ଶ୍ଚିନ୍ତତା— ଏ ସମସ୍ତ ଯେଉଁ ଚାରିଗୋଟି ଶ୍ଲୋକରେ ବର୍ଣ୍ଣନା କରାଯାଇଅଛି ସେହି ଚାରିଗୋଟି ଶ୍ଳୋକ ଉପରେ ଉଲ୍ଲିଖିତ ହୋଇଅଛି । ଏହି ଚାରିଗୋଟି ଶ୍ଲୋକ ସମଗ୍ର 'ଶାକୁନ୍ତଳ' ନାଟକରେ ଅତ୍ୟୁତ୍କୃଷ୍ଟ ରୂପେ ପରିଗଣିତ । ପଞ୍ଚମ ଅଙ୍କର ଦୃଶ୍ୟସ୍ଥଳ — ଦୁଷ୍ୟନ୍ତଙ୍କର ରାଜଧାନୀ । ରାଜା ଓ ବିଦୂଷକ ବସି କଥୋପକଥନ କରୁଥିଲେ । ଏ ସମୟରେ ହଂସପଦିକା ନିମ୍ନଲିଖିତ ଭାବଗର୍ଭକ ଏକ ଗୀତ ଗାଇଲେ । 'ହେ ଭ୍ରମର, ତୁମେ ନବ ନବ ମକରନ୍ଦ ପାନରେ ଆମ୍ରମଞ୍ଜରୀକୁ ସମାଦରରେ ଚୁମ୍ବନ କରି ବର୍ତ୍ତମାନ କେବଳ କମଳରେ ବାସକରି ତୃପ୍ତ ହୋଇ କିପରି ଏକବାରେ ତାକୁ ଭୁଲି ଯାଉଛ ? ।' ରାଜା ମନେକଲେ 'ମୁଁ ପ୍ରଥମେ ହଂସପଦିକାକୁ ପ୍ରେମ କରୁଥିଲି । ବର୍ତ୍ତମାନ ବସୁମତୀକୁ ବେଶି ପ୍ରେମ କରି ତାକୁ ଭୁଲି ଯାଇଛି ବୋଲି ଆକ୍ଷେପ କରୁଛନ୍ତି ।' ମୁଁ ଚତୁରତା ସହକାରେ ଆକ୍ଷିପ୍ତ ହୋଇ ଅଛି ବୋଲି ହଂସପଦିକାକୁ କହିଦେବାକୁ ରାଜା ବିଦୂଷକଙ୍କୁ ପଠାଇଦେଲେ ; ପରେ ଗୀତର ଭାବ ଆଲୋଚନା କରି ମନେ ମନେ ବିଶେଷ ବ୍ୟାକୁଳ ହେଲେ କିନ୍ତୁ ସେପରି ବ୍ୟାକୁଳତାର କୌଣସି କାରଣ ସ୍ଥିର କରି ପାରିଲେ ନାହିଁ । ବିଶେଷ ଚିନ୍ତିତ ହେଲେ, ଏ ସମୟରେ କଞ୍ଚୁକୀ ପ୍ରବେଶ କରି ଋଷିମାନେ କଣ୍ୱମହର୍ଷିଙ୍କର ସନ୍ଦେଶ ନେଇ ଆସିଛନ୍ତି ବୋଲି ଖବର ଦେଲେ । 'ସେମାନଙ୍କୁ ସତ୍କାର କରି ଅଗ୍ନିଗୃହକୁ ନେଇ ଆସ, ମୁଁ ସେଠାକୁ ଯାଉଅଛି' କହି କଞ୍ଚୁକୀଙ୍କୁ ପଠାଇଲେ ଏବଂ ନିଜେ ଅଗ୍ନିଗୃହକୁ ଯାଇ ସେମାନଙ୍କୁ ଅପେକ୍ଷା କଲେ । ଋଷିମାନଙ୍କ ସହ ଆଗତା ଅବଗୁଣ୍ଠନବତୀ ଶକୁନ୍ତଳାଙ୍କର ରମଣୀୟ ଆକୃତି ରାଜାଙ୍କର ଦୃଷ୍ଟି ଆକର୍ଷଣ କଲା । ତଥାପି

ପରସ୍ତ୍ରୀ ଦର୍ଶନ ସମୁଚିତ ନୁହେଁ ଭାବି ନିଜମନକୁ ସଂଯତ କଲେ । ରାଜା ଋଷିମାନଙ୍କୁ ପ୍ରଣାମ କଲେ । ଶାର୍ଙ୍ଗରବ ଆଶୀର୍ବାଦ କରି ମହର୍ଷିଙ୍କର ସନ୍ଦେଶ ଶୁଣାଇଲେ—ତୁମେ ଏକାନ୍ତରେ ମୋର କନ୍ୟାର ପାଣିଗ୍ରହଣ କରିଅଛ । ମୁଁ ସେଥିରେ ସମ୍ମତ ଦେଉଛି ଏବଂ ଆନନ୍ଦ ଅନୁଭବ କରୁଛି, କାରଣ ତୁମେ ଦୁହେଁ ପରସ୍ପର ଯୋଗ୍ୟ । ବର୍ତ୍ତମାନ ସେ ଗର୍ଭବତୀ, ତୁମେ ତାଙ୍କୁ ଗ୍ରହଣ କର !' ରାଜାଙ୍କର ମନ ଦୁର୍ବାସାଙ୍କର ଶାପରେ ଗ୍ରସ୍ତ ଥିଲା । ସେ ହେତୁ ତାଙ୍କ ମନରେ ଶକୁନ୍ତଳାଙ୍କ ସ୍ମରଣ ଆଦୌ ହେଲେ ମାତ୍ର ହେଉ ନ ଥିଲା । ସେ କହିଲେ—'କଅଣ ମୁଁ କେବେ ହେଲେ ଏହାଙ୍କର ପାଣିଗ୍ରହଣ କରିଅଛି ?' ତାହା ଶୁଣି ଶାର୍ଙ୍ଗରବ କ୍ରୋଧରେ କହିଲେ - 'ତୁମର କୃତକର୍ମରେ ପଶ୍ଚାତ୍ତାପ ଜାତ ହୋଇଅଛି ? ନା ତୁମେ ଧର୍ମଛଡ଼ା ହୋଇଅଛ ? ନା ଆମମାନଙ୍କୁ ଅବଜ୍ଞା କରୁଅଛ ? ଐଶ୍ୱର୍ଯ୍ୟ ମତ୍ତ ଲୋକମାନଙ୍କ ଠାରେ ଏହିପରି ବିକାର ସବୁ ଦେଖାଯାଇ ଥାଏ ।' ଏହା ପରେ ଗୌତମୀ ମଧ୍ୟ ତାଙ୍କର ସ୍ମୃତି ଜାଗରୂକ କରିବା ସକାଶେ ଶକୁନ୍ତଳାଙ୍କର ଅବଗୁଣ୍ଠନ କାଢ଼ିଦେଲେ । ରାଜା ଶକୁନ୍ତଳାଙ୍କର ସୌନ୍ଦର୍ଯ୍ୟ ଦେଖି ବିସ୍ମିତ ହୋଇଗଲେ । କିନ୍ତୁ ଅଧର୍ମ ଭୟରେ ତାଙ୍କୁ ସ୍ୱୀକାର କରିବାକୁ ବିମୁଖ ହେଲେ । ଶାର୍ଙ୍ଗରବ କ୍ରୋଧରେ ଜଳିଯାଇ କହିଲେ—'ଯେପରି ଚୋରକୁ ଚୋରିଯାଇଥିବା ମାଲ ପୁରସ୍କାର ଦିଆଯାଏ, ସେହିପରି ତୁମେ ବିବାହ କରିଥିବା କନ୍ୟାକୁ ଋଷି ତୁମକୁ ଅର୍ପଣ କରି ଅଛନ୍ତି, ତୁମେ ତାଙ୍କର ଅପମାନ କର ନାହିଁ ।' ତଥାପି ରାଜା ସ୍ୱୀକାର କଲେ ନାହିଁ । ସେତେବେଳେ ତାଙ୍କର ବିଶ୍ୱାସ ଜନ୍ମାଇବା ସକାଶେ ଶକୁନ୍ତଳା ମୁଦି ଦେଖାଇବାକୁ ଗଲେ ମାତ୍ର ମୁଦିଟି ଅଙ୍ଗୁଳିରେ ନ ଥିଲା । ସେତେବେଳେ ଗୌତମୀ ସରଳ

ସବେ କହିଲେ—କ୍ରୋବତୀର 'ଘାଟରେ ଶଚୀତୀର୍ଥକୁ ନମସ୍କାର କଲାବେଳେ ଅବଶ୍ୟ ମୁଦିଟି ତୁମ ଅଙ୍ଗୁଳିରୁ ଖସି ପଡ଼ିଛି । ଏହା ଶୁଣି ରାଜା ପରିହାସ କରି କହିଲେ—'ଏହା ହେଉଛି ସ୍ତ୍ରୀମାନଙ୍କର ପ୍ରତ୍ୟୁତ୍ପନ୍ନମତିତ୍ୱର ନିଦର୍ଶନ ।' ଏହା ପରେ ଆଶ୍ରମର କେତେକ ଘଟନା କହିଲେ କାଳେ ରାଜାଙ୍କର ବିଶ୍ୱାସ ହେବ—ଏହି ଆଶାରେ ଶକୁନ୍ତଳା କେତେକ ଅତୀତ ଘଟନା ବର୍ଣ୍ଣନା କଲେ । ରାଜା ସେ ସମସ୍ତ ସ୍ତ୍ରୀ ମାନଙ୍କର କୌଶଳ ମନେକଲେ । ସେତେବେଳେ ଗୌତମୀ କହିଲେ—'ରାଜନ୍ ଏହି ଶକୁନ୍ତଳା ଆଶ୍ରମରେ ପରି-ପାଳିତା, ଛଳ କଅଣ ପୋଟେ ଜାଣେ ନାହିଁ ।' ରାଜା କହିଲେ—ତାପସବୃଦ୍ଧେ,

**स्त्रीणामशिक्षितपटुत्वममानुषीषु**
**संदृश्यते किमुत याः प्रतिबोधवत्यः ।**
**प्रागन्तरीक्ष गमनात् स्वमपत्यजात-**
**मन्यैर्द्विजैः परभृताः किल पोषयन्ति ॥**

ଶାକୁ ୫, ୨୨,

'ମନୁଷ୍ୟେତର ପ୍ରାଣୀମାନଙ୍କ ଠାରେ ମଧ୍ୟ ବିନା ଶିକ୍ଷାରେ ଅସାଧାରଣ ଚତୁରତା ଦେଖାଯାଏ । ଯେଉଁମାନଙ୍କର ଅବବୋଧ ଶକ୍ତି ଅଛି, ସେମାନଙ୍କ କଥା ଛାଡ଼, ଆକାଶରେ ଉଡ଼ିବା ଶକ୍ତି ଲାଭ କରିବା ପୂର୍ବରୁ କୋକିଳା ନିଜ ସନ୍ତାନମାନଙ୍କୁ ଅନ୍ୟପକ୍ଷୀମାନଙ୍କ ଦ୍ୱାରା ବଢ଼ାଇଥାଏ ।' ରାଜା ନିଜ ପକ୍ଷ ପରିପୁଷ୍ଟ କରିବା ସକାଶେ କୋକିଳାବୃତ୍ତାନ୍ତ ଉଲ୍ଲେଖ କରିଥିଲେ । କିନ୍ତୁ ଏହି ଶ୍ଳୋକରେ ଅନ୍ତରୀକ୍ଷଗମନ, ଦ୍ୱିଜ ଓ ପରଭୃତା ଏହି ଶବ୍ଦଗୁଡ଼ିକ ଦ୍ୱ୍ୟର୍ଥକ ହେବା ହେତୁ ପରୋପଜୀବୀ ଅପ୍ସରା ନିଜ ସଂତାନକୁ ଅନ୍ୟ

ବ୍ରାହ୍ମଣ ଦ୍ୱାରା ବଢ଼ାଇଅଛୁ'—ଏହାପର ଏକ ଅର୍ଥ ମଧ୍ୟ ଧ୍ୱନିତ ହୁଏ । ରାଜା ଏହି ପ୍ରକାରେ 'ମୋର ମାଆଙ୍କୁ ନିନ୍ଦା କରୁଛନ୍ତି' ଭାବି ଶକୁନ୍ତଳାଙ୍କର କ୍ରୋଧ ସୀମା ଲଂଘନ କଲା । ସେ ରୋଷାବେଗରେ କହିଲେ—'ଅନାର୍ଯ୍ୟ, ତୁମେ ନିଜ ପରି ଅନ୍ୟଙ୍କୁ ମଧ୍ୟ ଭାବୁଅଛ । ତୁମେ ତୃଣାଚ୍ଛାଦିତ କୂପ ସଦୃଶ ଧର୍ମର ଢାଙ୍କ ନେଇ ଅଛ, କିଏ ତୁମର ଅନୁକରଣ କରିବ'? ଏହାଙ୍କର ଅକୃତ୍ରିମ କ୍ରୋଧ ଦେଖି ରାଜାଙ୍କ ହୃଦୟରେ ସନ୍ଦେହ ଜାତ ହେଲା କିନ୍ତୁ ବିଶ୍ୱାସ କରି ପାରିଲେ ନାହିଁ । ତାହା ପରେ 'ଏ ତୁମର ପତ୍ନୀ, ତୁମେ ତାଙ୍କୁ ଗ୍ରହଣ କର ବା ଛାଡ଼, ଆମେ ଯାଉଛୁ' କହି ତପସ୍ୱି-କୁମାରମାନେ ପ୍ରସ୍ଥାନ କଲେ । ଶକୁନ୍ତଳା ମଧ୍ୟ ସେମାନଙ୍କ ପଛେ ପ୍ରସ୍ଥାନ କରିବାକୁ ଉଦ୍ୟତ ହେଲେ । ସେତେବେଳେ ଶାର୍ଙ୍ଗରବ ରାଗିଯାଇ କହିଲେ 'ଦୁଷ୍ଟା କନ୍ୟକା, ତୁମେ କିଅଣ ସ୍ୱାତନ୍ତ୍ର୍ୟ ଅବଲମ୍ବନ କରୁଅଛ ?' ଶକୁନ୍ତଳା ଭୟରେ କମ୍ପିତ ହେଲେ । ପୁରୋହିତ ସେ ସମୟରେ ଏକ ଯୁକ୍ତି ଦେଖାଇ କରି କହିଲେ—'ମହାରାଜ, ସାଧୁମାନେ କହିଛନ୍ତି, ପ୍ରଥମେ ଆପଣଙ୍କର ଚକ୍ରବର୍ତ୍ତୀ ପୁତ୍ର ଜାତ ହେବ । ଅତଏବ ପ୍ରସବ ପର୍ଯ୍ୟନ୍ତ ଏହାଙ୍କୁ ଆମ ଘରେ ରହିବାକୁ ଆଦେଶ ଦିଅନ୍ତୁ, ଏହାଙ୍କର ପୁତ୍ର ଯଦି ଚକ୍ରବର୍ତ୍ତି ଲକ୍ଷଣଯୁକ୍ତ ହେବ, ତେବେ ଆଦରସହକାରେ ଗ୍ରହଣ କରିବେ, ନାହିଁ ତ ତାଙ୍କୁ ପିତାଙ୍କ ପାଖକୁ ପଠାଇ ଦେବେ ।' ରାଜା ତାହା ସ୍ୱୀକାର କଲେ । ତା ପରେ ସେ ସମସ୍ତେ ପ୍ରସ୍ଥାନ କଲେ । ଅଳ୍ପ ସମୟପରେ ପୁରୋହିତ ପ୍ରବେଶ କରି ଜଣାଇଲେ—'ମହାରାଜ, କଣ୍ୱ ଶିଷ୍ୟମାନେ ଗଲା ପରେ ସେ ନିଜ ଭାଗ୍ୟ ନିନ୍ଦା କରି ବାହୁ ଟେକି କାନ୍ଦିବାକୁ ଲାଗିଲେ । ଏ ସମୟରେ ଅପ୍ସରା-ତୀର୍ଥ ପାଖରେ ସ୍ତ୍ରୀ ଆକୃତି ଏକ ତେଜସ୍ୱିନୀ ମୂର୍ତ୍ତି ତାଙ୍କୁ ନେଇ

ଅଦୃଶ୍ୟ ହୋଇଗଲା । 'ପ୍ରଥମରୁ ତ ଆମେ ଏ ବସ୍ତୁ ପରିତ୍ୟାଗ କରି ଅଛେ, ଆଜ ତାର ଶୋଚନା କରିବା ଦରକାର ନାହିଁ ।' ଏହା କହି ରାଜା ବିଶ୍ରାମାଗାରରେ ପ୍ରବେଶ କଲେ । (୫ମ ଅଙ୍କ) ଏ ଉତ୍ତାରୁ କେତେ ଦିନ ଗଲା ପରେ ଷଷ୍ଠ ଅଙ୍କର ଆରମ୍ଭ । ପ୍ରାରମ୍ଭିକ ପ୍ରବେଶକରେ ନଗରର ଅଧିକାରୀ ରାଜାଙ୍କର ଶ୍ୟାଳକ ଓ ଦୁଇଟି ପୋଲିସ ଗୋଟିଏ କେଉଟକୁ ରାଜାଙ୍କର ମୁଦ୍ରିକା ଚୋରିକରା ଅପରାଧରେ ଦୋଷୀ କରି ହାତ ବାନ୍ଧିନେଇ ଆସୁଛନ୍ତି । ରାଜାଙ୍କର ଶ୍ୟାଳକ ପଚାରିଲେ —

ପଚାଅ—ତୁ ଏହି ମୁଦ୍ରିଟି କେଉଁଠାରୁ ପାଇଲୁ?

ଧୀବର—ମୁଁ ଏହି ଶକ୍ରାବତାର ଘାଟର ନିକଟବର୍ତ୍ତୀ କେଉଟ ।

ପୋଲିସ—ରେ ଚୋର, ଆମେ ତୁଅଣ ତୋର ଜାତି ପଚାରୁଛୁ ?

ରାଜଶ୍ୟାଳକ—ସୂଚକ, ତାକୁ ସବୁ କଥା କ୍ରମରେ କହିବାକୁ ଦିଅ । ମଝିରେ ମଝିରେ ବାଧା ଦିଅ ନାହିଁ ।

ଦୁଇ ପୋଲିସ—ଯେ ଆଜ୍ଞା ।

ଧୀବର—ଜାଲ, ଲଟି ପ୍ରଭୃତି ମ୍ୟକାଇ ମୁଁ ମାଛ ଧରେ । ଏବଂ ତହିଁରେ ଜୀବିକା ନିର୍ବାହ କରେ ।

ରାଜଶ୍ୟାଳକ—ବଡ଼ ଉତ୍କୃଷ୍ଟ ବ୍ୟବସାୟ !

ଧୀବର—ଆଜ୍ଞା ସେପରି କହନ୍ତୁ ନାହିଁ । ନିନ୍ଦନୀୟ ହେଲେ ମଧ୍ୟ ଯେଉଁ ଜାତିର ଯାହା କର୍ତ୍ତବ୍ୟ, ତାହା ଛାଡ଼ିବା ଉଚିତ ନୁହେଁ । ବ୍ରାହ୍ମଣ ସ୍ୱଭାବତଃ ଦୟାଳୁ । ତଥାପି ଯଜ୍ଞରେ ପଶୁ ହିଂସା କରି ନିଷ୍ଠୁର ହୋଇଥାଏ । ତା ପରେ ମୁଁ ଏକ ଦିନ ଜାଲରେ ପଡ଼ିଥିବା ମାଛକୁ ଚିରିଦେଖେ ତ

ଏହି ମୁଦ୍ରିକା ଥିଲା । ଏହାକୁ ବଜାରକୁ ଯାଇ ଲୋକମାନଙ୍କୁ ଦେଖାଇବାବେଳେ ଆପଣମାନେ ମୋତେ ବନ୍ଦ କଲେ । ଏହା ଶୁଣି ରାଜଶ୍ୟାଳକ ମୁଦ୍ରିକାଟି ନେଇ ରାଜାଙ୍କ ସମୀପରେ ଉପସ୍ଥିତ ହେଲେ । ସେହି ମୁଦ୍ରିକାଟି ଦେଖିବା ମାତ୍ରେ ରାଜାଙ୍କ ଶକୁନ୍ତଳା-ସ୍ମୃତି ଜାଗରୁକ ହେଲା । ସେହେତୁ ସେ ସେହି ମୁଦ୍ରିକାର ମୂଲ୍ୟ ଧୀବରକୁ ଦେବାକୁ ଆଦେଶ ଦେଲେ । ଏକ ଘଣ୍ଟା ପୂର୍ବରୁ ଯେଉଁ ଧୀବରକୁ ବଧ ସ୍ତମ୍ଭରେ ଚଢ଼ାଇବାକୁ ନେଇ ଯାଉଥିଲେ ସେହି ରାଜଶ୍ୟାଳକ ତାକୁ ଉପହାର ମିଳିବା ଦେଖି ମିତ୍ର ପାଲଟି ଗଲେ ଏବଂ ନିଜ ମିତ୍ରତା ମଦିରଦ୍ୱାରା ଦୃଢ଼ କରିବାକୁ ମଦ୍ୟଶାଳାକୁ ଗଲେ । ଏହା ପରେ ମେନକାଙ୍କର ସଖୀ ସାନୁମତୀ ନାମକ ଅପ୍ସରା ରାଜବାଟୀର ପ୍ରମୋଦୋଦ୍ୟାନରେ ପ୍ରବେଶ କଲେ । ବସନ୍ତ ଋତୁର ପ୍ରାଦୁର୍ଭାବ ହେଲେ ମଧ୍ୟ ବସନ୍ତୋତ୍ସବର କୌଣସି ସୂଚନା ଦେଖି ନ ପାରି ବିସ୍ମିତ ହେଲେ । ଏ ସମୟରେ ଦୁଇଟି ଉଦ୍ୟାନପାଳିକା ପ୍ରବେଶ କଲେ ଏବଂ ନବବିକଶିତ ଚୂତମଞ୍ଜରୀ ତୋଳି କାମଦେବଙ୍କର ପୂଜା କରିବାକୁ ଲାଗିଲେ । କଞ୍ଚୁକୀ ପ୍ରବେଶ କରି ଆମ୍ରମଞ୍ଜରୀ ତୋଳିବାକୁ ମନା କଲେ । 'ଆମେ ଅଳ୍ପଦିନ ହେଲା ଅନ୍ୟ ଗ୍ରାମରୁ ଆସିଅଛୁ, ମହାରାଜ ବସନ୍ତୋତ୍ସବ ନିଷିଦ୍ଧ କରିଥିବା ଜାଣିନାହୁଁ । ତେବେ ଏହାର କାରଣ କଅଣ ?' ବୋଲି ପଚାରିଲେ । କଞ୍ଚୁକୀ ଉତ୍ତର ଦେଲେ—ମୁଦ୍ରିକା ଦେଖିବା ପରେ ଶକୁନ୍ତଳାଙ୍କୁ ପ୍ରଥମେ ବିବାହ କରିଥିବା ବିଷୟ ମହାରାଜାଙ୍କର ମନେ ପଡ଼ିଲା । ଯେ ଭ୍ରମ-ବଶତଃ ତାଙ୍କୁ ପରିତ୍ୟାଗ କରିଛନ୍ତି ଭାବି ପଶ୍ଚାତ୍ତାପ କଲେ । ଏ ହେତୁ ସେ କୌଣସି ରମଣୀୟ ବସ୍ତୁ ଦେଖିପାରୁନାହାନ୍ତି, ରାତିରେ ତାଙ୍କର ଆଖିପତା ପଡ଼ୁନାହିଁ ।

ଏହି ମାନସିକ ଅସୁସ୍ଥତା ହେତୁ ବସନ୍ତୋତ୍ସବ ନିଷିଦ୍ଧ କରିଛନ୍ତି । ଏହା ଶୁଣି ସେମାନେ ନିଜ ନିଜ କାର୍ଯ୍ୟ କରିବାକୁ ଗଲେ । ରାଜା ବିଦୂଷକ ସହିତ ପ୍ରବେଶ କରି ପ୍ରତିହାରୀଦ୍ୱାରା ମନ୍ତ୍ରୀଙ୍କୁ କହି ପଠାଇଲେ 'ମୁଁ ରାତ୍ରି ଜାଗରଣ କରିବାରୁ ବେଶି ବିଳମ୍ବରେ ଉଠିଥିବା ହେତୁ ଆଜି ନ୍ୟାୟାସନରେ ରାଜକାର୍ଯ୍ୟ ଦେଖିପାରିବି ନାହିଁ, ଏହେତୁ ତୁମେ ପୁରବାସୀମାନଙ୍କର ଯେଉଁ ସବୁ କାର୍ଯ୍ୟ ଦେଖି ଅଛ, ସେ ସମସ୍ତ ଲେଖିକରି ପଠାଅ ।' ଏହାପରେ ସେ ବିଦୂଷକ ସହିତ ମନୋରଞ୍ଜନ ସକାଶେ ମାଧବୀମଣ୍ଡପକୁ ଗଲେ । ଦୁଷ୍ୟନ୍ତ କହିଲେ—'ମୋର ଶକୁନ୍ତଳା ବିଷୟ ସମସ୍ତ ମନେ ପଡ଼ୁଅଛି । ସେ ସମସ୍ତ ମଧ୍ୟ ମୁଁ ତୁମ୍ଭଙ୍କୁ କହିଥିଲି । ଅବଶ୍ୟ ଯେଉଁଦିନ ସେ ଆସିଥିଲେ, ତୁମ୍ଭେ ସେଠାରେ ଉପସ୍ଥିତ ନଥିଲ । କିନ୍ତୁ ତାପୂର୍ବରୁ ତ ଥରେ ସୁଦ୍ଧା ତାଙ୍କ ବିଷୟ କେବେ ହେଲେ ମୋତେ କହି ନାହଁ । ତେବେ କଅଣ ମୋ ପରି ତୁମେ ମଧ୍ୟ ପାସୋରି ଯାଇଥିଲ ?' ବିଦୂଷକ କହିଲେ—'ମୋର ସମସ୍ତ ମନେଥିଲା । ତେବେ ଆପଣ ସବୁ କହିସାରି ଶେଷରେ କହିଥିଲେ— ସେ ସମସ୍ତ ପରିହାସକଥା, ସେଥିରେ କୌଣସି ସତ୍ୟତା ନାହିଁ । ମୁଁ ତ ମନ୍ଦବୁଦ୍ଧି, ଆପଣଙ୍କ କଥା ସତ ବୋଲି ଭାବିଲି । ଆଉ ସେକଥା ଭବିତବ୍ୟତା ତ ଅନ୍ୟଥା ହେବାର ନୁହେଁ ଏହା ସତକଥା ।' ରାଜା କହିଲେ—'ସମ୍ଭବତଃ ଶକୁନ୍ତଳାଙ୍କୁ ତାଙ୍କର ମା କି ମେନକାଙ୍କର ସଖୀ ନେଇଥିବେ । ହଁ, ଏହି ମୁଦ୍ରିକାଟି ମଧ୍ୟ ଶକୁନ୍ତଳାଙ୍କର ଅଙ୍ଗୁଳିରେ ରହିବା ସୌଭାଗ୍ୟ ପାଇଥିଲା, ତଥାପି ଖସିପଡ଼ିଲା, କାରଣ ତାର ପୁଣ୍ୟବଳ ମଧ୍ୟ ଶେଷ ହୋଇଯାଇଥିବ ।' ଏ ସମୟରେ ଏକଦାସୀ ଶକୁନ୍ତଳାଙ୍କର ଛବି ନେଇ ସେଠାରେ ଉପସ୍ଥିତ ହେଲା ।

ଅଦୃଶ୍ୟରୂପରେ ପାର୍ଶ୍ୱରେ ଦଣ୍ଡାୟମାନ ସାନୁମତୀ ରାଜାଙ୍କର ଚିତ୍ରକଳା ନୈପୁଣ୍ୟ ଦେଖି ଚକିତ ହୋଇଗଲେ । ରାଜା ସେହି ଚିତ୍ରରେ ଅନେକଜଣ ସ୍ତ୍ରୀଙ୍କର ରୂପ ଅଙ୍କନ କରିଥିଲେ । ରାଜା 'ଏହି ମଧ୍ୟରୁ କିଏ ଶକୁନ୍ତଳା ବୋଲି ଭାବୁଛ' ବୋଲି ପଚାରିଲାମାତ୍ରେ ବିଦୂଷକ କହିଲେ—'ମୋର ମନେ ହେଉଛି । ଯେ ଯିଏ ପରିଶ୍ରାନ୍ତା ପରି ଜଣାପଡ଼ୁଛନ୍ତି, ଜଳସେଚନ ହେତୁ ଯାହାର କୋମଳ କରପଲ୍ଲବ ଈଷତ୍ ତାମ୍ରବର୍ଣ୍ଣ, ଆମ୍ରଗଛ ପାଖରେ ଅବସ୍ଥିତ, ବେଣୀ ଫିଟିଯିବାରୁ ଫୁଲଗୁଡ଼ିକ କେଶଗୁଚ୍ଛରୁ ଖସିପଡ଼ୁଅଛି ମୁହଁରେ ଝାଳଟୋପା ଦେଖାଯାଉଅଛି, ଏବଂ ଭୁଜଯୁଗଳ ଶିଥିଳ ଦେଖାଯାଉଅଛି, ସେ ଶକୁନ୍ତଳା, ଅନ୍ୟ ଦୁହେଁ ତାଙ୍କର ସଖୀ ।' ସେହି ଚିତ୍ରରେ ଶକୁନ୍ତଳା ମୁହଁ ପାଖରେ ବୁଲୁଥିବା ଭ୍ରମର ଉପରେ ଚକିତ ହେଲାପରି ଚିତ୍ରିତ ହୋଇଥିଲେ । ସେହି ଭ୍ରମରକୁ ପ୍ରକୃତ ଭ୍ରମର ମନେ କରି ରାଜା ତାହା ସହିତ କଥାବାର୍ତ୍ତା କରିବାକୁ ଲାଗିଲେ । ବିଦୂଷକ କହିଲେ-- 'ମହାରାଜ, ଏ ଚିତ୍ର ।' ସେତେବେଳେ ସାନୁମତୀ ଭାବିଲେ ଯେତେ କଅଣ ଏହା ଚିତ୍ର, ପୁଣି ଏହି ଚିତ୍ରିତ ବିଷୟ ଯେବେ ନିଜେ ଅନୁଭବରେ ଲଭାଇଛନ୍ତି, ତାଙ୍କର ଅବସ୍ଥା କଅଣ ହେଉନଥିବ । ଏ ସମୟରେ ଦାସୀ ପ୍ରବେଶ କରି ଜଣାଇଲା— 'ରଙ୍ଗପେଡ଼ି ଧରି ମୁଁ ଆସୁଥିଲି । ସାନୁମତୀ ଦେଖି ମୋ ହାତରୁ ରଙ୍ଗପେଡ଼ି ଛଡ଼ାଇନେଇ ମୁଁ ନିଜେ ମହାରାଜାଙ୍କୁ ଦେବି ବୋଲି ଆସୁଅଛନ୍ତି ।' ଏହା ଶୁଣି ରାଜା ଚିତ୍ରଟିକୁ ବିଦୂଷକଙ୍କୁ ଦେଇ ମେଘଚ୍ଛନ୍ଦ ପ୍ରାସାଦକୁ ପଠାଇଦେଲେ । ଏମଧ୍ୟରେ ପ୍ରତିହାରୀ ଅମାତ୍ୟଙ୍କର କାଗଜପତ୍ର ନେଇ ଉପସ୍ଥିତ ହେଲା । ତହିଁରେ ଲେଖାଥିଲା— ସମୁଦ୍ରବ୍ୟାପାରୀ ଧନମିତ୍ରନାମକ ଶ୍ରେଷ୍ଠୀ ଜାହାଜ ବୁଡ଼ିଯିବା ଫଳରେ ମରିଯାଇଛନ୍ତି,

ସେ ସନ୍ତାନହୀନ, ଅତଏବ ତାଙ୍କର ସମସ୍ତ ସମ୍ପତ୍ତି ରାଜାଙ୍କର ହେବ ।' ଏହା ଦେଖି ରାଜା ତାଙ୍କର କୌଣସି ଗର୍ଭବତୀ ସ୍ତ୍ରୀ ଅଛନ୍ତି କି ନାହିଁ – ଅନୁସନ୍ଧାନ କରିବାକୁ ଆଦେଶ ଦେଲେ । ପ୍ରତୀହାରୀ ଅସି ତାଙ୍କର ଜଣେ ଗର୍ଭବତୀ ସ୍ତ୍ରୀ ଅଛନ୍ତି ବୋଲି କହିବାରୁ 'ସମସ୍ତ ସମ୍ପତ୍ତି ତାଙ୍କୁ ଦିଅ' ବୋଲି ମନ୍ତ୍ରୀଙ୍କୁ ଆଦେଶ ଦେଲେ । ଏହା ଛଡା ପ୍ରଜାମାନଙ୍କ ମଧ୍ୟରେ 'ଯଦି କାହାର କିଏ ମରିଯାଆନ୍ତି, ତାହାହେଲେ ପାପକର୍ମ ସମ୍ବନ୍ଧ ଛଡ଼ା ଅନ୍ୟ ସମସ୍ତ ବିଷୟରେ ଦୁଷ୍ୟନ୍ତଙ୍କୁ ସେହିପରି ଗ୍ରହଣ କରିବେ' ବୋଲି ଘୋଷଣା କରିବାକୁ ଆଦେଶ ଦେଲେ । ତାପରେ 'ମୁଁ ନିଜେ ଅପୁତ୍ରକ, ମୋପରେ ପିତୃଗଣଙ୍କୁ ପିଣ୍ଡ କିଏ ଦେବ' ଭାବି ବିଶେଷ ଦୁଃଖିତ ହେଲେ । ଏହିସମୟରେ ମେଘଚ୍ଛନ୍ଦପ୍ରାସାଦରୁ ବିଦୂଷକଙ୍କ ଆର୍ତ୍ତନାଦ ଶୁଣାଗଲା । କୌଣସି ରାକ୍ଷସ ସମ୍ଭବତଃ ବିଦୂଷକଙ୍କୁ ପୀଡ଼ା ଦେଉଛନ୍ତି ଭାବି ରାଜା ବାଣ ଧରି ମାରିବାକୁ ଉଦ୍ୟତ ଥିଲେ । ଏହିସମୟରେ ଇନ୍ଦ୍ରଙ୍କର ସାରଥି ମାତଳି ପ୍ରବେଶ କରି କହିଲେ-- 'ମହାରାଜ, ଇନ୍ଦ୍ର ଅସୁରଯୁଦ୍ଧରେ ଆପଣଙ୍କର ସାହାଯ୍ୟ ପ୍ରାର୍ଥନା କରିବାକୁ ପଠାଇ ଅଛନ୍ତି, ମୁଁ ଆସି ଦେଖିଲି ଯେ ଆପଣ ଶୋକାକୁଳ, ଆପଣଙ୍କୁ କ୍ରୋଧାନ୍ୱିତ କରିବାକୁ ବିଦୂଷକଙ୍କୁ ପୀଡ଼ା ଦେଇଅଛି ।' ତାପରେ ରାଜା ମନ୍ତ୍ରୀଙ୍କ ହସ୍ତରେ ରାଜ୍ୟଭାର ଅର୍ପଣ କରି ମାତଳି ସହିତ ସ୍ୱର୍ଗଅଭିମୁଖରେ ପ୍ରସ୍ଥାନ କଲେ । (ଷଷ୍ଠ ଅଙ୍କ) ସପ୍ତମାଙ୍କର ପ୍ରାରମ୍ଭରେ ରାଜା ମାତଳି ରଥରେ ସ୍ୱର୍ଗରୁ ଅବତରଣ କରିବା ଦୃଶ୍ୟ ଦେଖାଯାଏ । ରାଜା କହିଲେ— 'ସ୍ୱର୍ଗରୁ ଫେରିବା ସମୟରେ ମୋତେ ଇନ୍ଦ୍ର ବିଶେଷ ସମ୍ମାନ ଦେଇଛନ୍ତି ।' ମାତଳି କହିଲେ — 'ପ୍ରଥମେ ନରସିଂହଙ୍କର ନଖ ଏବଂ ବର୍ତ୍ତମାନ ଆପଣଙ୍କର ବାଣରେ ସୁଖୋପଭୋଗମଗ୍ନ ଇନ୍ଦ୍ରଙ୍କର ସମସ୍ତ ଶତ୍ରୁ

ନଷ୍ଟ ହୋଇଛନ୍ତି । ଏହେତୁ ଆପଣ ତାଙ୍କର ସମ୍ମାନର ପାତ୍ର ।' ଏପରି ଆଳାପ କର କର ସୁରଅସୁରବନ୍ଦିତା ମାରୀଚଙ୍କର ଅଶ୍ରମ ସମୀପରେ ଉପସ୍ଥିତ ହେଲେ । ମାତଳିଙ୍କ ଠାରୁ ମାଳ୍ପଗୁଣ୍ଠମର ପଦ୍ଧତିଯୁ ପାଇ ମାରୀଚଙ୍କୁ ପ୍ରଣାମ କରିବା ସକାଶେ ସେଠାରେ ପ୍ରବେଶ କଲେ । ମାତଳି ରାଜାଙ୍କ ଆଗମନ ସମ୍ବାଦ ମହର୍ଷିଙ୍କୁ ଜଣାଇବାକୁ ଗଲେ ଏବଂ ରାଜା ଏକ ବୃକ୍ଷତଳେ ବସିଲେ । ସେ ସମୟରେ ତାଙ୍କର ଦକ୍ଷିଣବାହୁ ସ୍ପନ୍ଦନରୂପ ଶୁଭ ଲକ୍ଷଣ ଦେଖା-ଗଲା ! ଏ ସମୟରେ ମାର ଦୁଧ ପିଉଥିବା ଏକ ସିଂହଶାବକକୁ ଖେଳିବା ପାଇଁ ବଳାତ୍କାରରେ ସିଂହୀ ମୁଖରୁ ଟାଣିଆଣୁଥିବା ଏକ ବାଳକ ଓ ତାଙ୍କୁ ବାରଣ କରୁଥିବା ଦୁଇଟି ତାପସୀ ତାଙ୍କ ସମ୍ମୁଖରେ ଉପସ୍ଥିତ ହେଲେ । ସେମାନଙ୍କର କଥୋପକଥନରୁ ରାଜା ଜାଣିପାରିଲେ ଯେ ମହର୍ଷି ବାଳକଙ୍କୁ 'ସର୍ବଦମନ' ବୋଲି ଯଥାର୍ଥ ନାମ ଦେଇ ଅଛନ୍ତି । ସେମାନେ ସିଂହ ଶିଶୁକୁ ମୁକ୍ତ କରିବା ଉଦ୍ଦେଶ୍ୟରେ ଖେଳନା ଦେବାକୁ କହିଲେ । 'କାହିଁ ଦିଅ' କହି ବାଳକ ହାତ ଦେଖାଇଲା । ରାଜା ବାଳକର ହସ୍ତ-ତଳରେ ଚକ୍ରବର୍ତ୍ତି ଲକ୍ଷଣ ଦେଖିପାରିଲେ ଏବଂ ବାଳକର ଆକୃତିରେ ମୁଗ୍ଧ ହୋଇ କୋଳ କରିବାକୁ ଚାହିଁଲେ । ସେ କହିଲେ—

आलक्ष्यदन्तमुकुलाननिमित्तहासै—
रव्यक्तवर्णरमणीयवचःप्रवृत्तीन्
अङ्काश्रयप्रणयिनस्तनयान् वहन्तो
धन्यास्तदङ्गरजसा कलुषी भवन्ति ।

ଶାକୁ ୭ମ, ୧୭

'ବିନା କାରଣରେ ହସୁଥିବା ଅଳପ ଅଳପ ଦନ୍ତକଳିକା ପ୍ରକାଶ କରୁଥିବା, ଅବ୍ୟକ୍ତ ମଧୁର ଦରହୋଟି ବଚନରେ ମନ ଆକର୍ଷଣ କରୁଥିବା, ପିତାଙ୍କର କୋଳରେ ବସିବାକୁ ଉତ୍ସୁକ, ଧୂଳିଧୂସର ପୁତ୍ରମାନଙ୍କୁ ଧରି ଯେଉଁମାନଙ୍କର ଅଙ୍ଗ ଧୂଳିରେ ମଳିନ ହୁଏ, ସେମାନେ ପ୍ରକୃତରେ ଧନ୍ୟ !' । ସର୍ବଦମନ କାହାର କଥା ନଶୁଣିବା ଦେଖି ତାପସୀ ଦୁଷ୍ୟନ୍ତଙ୍କର ସାହାଯ୍ୟ ପ୍ରାର୍ଥନା କଲେ । ରାଜାଙ୍କର କଥା ଶୁଣି ସର୍ବଦମନ ତାଙ୍କ ପାଖକୁ ଆସିଲେ । ତାପସୀମାନେ ରାଜା ଓ ସର୍ବଦମନଙ୍କର ଆକୃତିସାମ୍ୟ ଦେଖି ବିସ୍ମିତ ହେଲେ । ସେମାନଙ୍କର କଥାରୁ ରାଜା ଜାଣିପାରିଲେ ଯେ—ସେହି ବାଳକ ପୁରୁବଂଶୀୟ, ତାଙ୍କର ମାତାଙ୍କ ଅପ୍ସରା-ସମ୍ବନ୍ଧ ଥିବାରୁ ସେ ଏହି ଆଶ୍ରମରେ ରହିଛନ୍ତି ଏବଂ ସେ ବାଳକ ଆଶ୍ରମରେ ଉତ୍ପନ୍ନ ହୋଇଛନ୍ତି । ଏସମୟରେ ଦ୍ଵିତୀୟ ତାପସୀ ରଙ୍ଗ୍‌ରଙ୍ଗିଆ ଏକ ମାଟିର ନିର୍ମିତ ମୟୂର ଆଣିବାକୁ ଯାଇଥିଲେ । ସେ ମୟୂର ଧରି ଆସି କହିଲେ—'ସର୍ବଦମନ, ଏହି ଶକୁନ୍ତଲାବଣ୍ୟ ଦେଖ !' ସର୍ବଦମନ ଅକ୍ଷର-ସାଦୃଶ୍ୟରେ ଭୁଲିଯାଇ 'ମୋ ମା କାହିଁ ?' ବୋଲି ପ୍ରଶ୍ନ କଲେ । ସେଥିରୁ ରାଜା ଜାଣି ପାରିଲେ ଯେ, ସେ ବାଳକର ମା'ର ନାମ ମଧ୍ୟ ଶକୁନ୍ତଳା । ତେବେ ଅନେକଙ୍କର ମଧ୍ୟ ଏକ ନାମ ଥାଇପାରେ । ପୁଣି ଯେବେ ଅନ୍ୟ ପ୍ରକାର ହୁଏ ତେବେ ଶେଷରେ ମୃଗତୃଷ୍ଣା ପରି ବିଫଳମନୋରଥ ହେବାକୁ ହେବ ବୋଲି ରାଜା ଶଙ୍କିତ ହେଲେ । ଏ ମଧ୍ୟରେ ତାପସୀ ଦେଖିଲେ ଯେ ସର୍ବଦମନଙ୍କର କଣ୍ଠରେ ରକ୍ଷାକବଚ ନାହିଁ । ଦୁଷ୍ୟନ୍ତ ତାପସୀ-ବାରଣ ନ ମାନି ରକ୍ଷା କବଚଟି ଭୂମିରୁ ଉଠାଇ ନେଇ ସିଂହ ସହିତ ସଂଘର୍ଷ ଫଳରେ ଏହା ଖସି ପଡ଼ିଛି କହି ଦେଖାଇଲେ ।

ଦୁଷ୍ୟନ୍ତ କାହିଁକି ବାରଣ କରୁଥିଲେ —ବୋଲି ପଚାରିଲେ । ତାପସୀ କହିଲେ—ଭଗବାନ୍ ମାରୀଚ ଏହି ବାଳକର ଜାତକର୍ମ କଲାପରେ 'ଅପରାଜିତା' ନାମକ ଔଷଧି ରଖି ଏହି କବଚଟି କଣ୍ଠରେ ବାନ୍ଧି କହିଛନ୍ତି—'ଏହାକୁ ମା, ବାପ ଏବଂ ମୋ ଛଡ଼ା ଅନ୍ୟ କେହି ଭୂମିରେ ଖସିପଡ଼ିଲେ ଗ୍ରହଣ କରିବ ନାହିଁ । ଯଦି ଗ୍ରହଣ କରିବ ତେବେ ଏହା ସର୍ପ ହୋଇ ତାକୁ ଦଂଶନ କରିବ ।' ଏହା ଅନେକ-ଥର ପରୀକ୍ଷିତ ହୋଇ ସାରିଛି । ଏହା ଫଳରେ ଦୁଷ୍ୟନ୍ତଙ୍କର ସନ୍ଦେହ ପୂର୍ଣ୍ଣମାତ୍ରାରେ ଅପନୋଦିତ ହେଲା । ତାପସୀ ଏ ସମ୍ବାଦ ଦେବା ସକାଶେ ଶକୁନ୍ତଳାଙ୍କ ପାଖକୁ ଦୌଡ଼ି ଗଲେ । ସର୍ବଦମନ ତାଙ୍କ ପଛେ ଯିବାକୁ ଲାଗିଲେ । ରାଜା ବାରଣ କରି କହିଲେ—'ବାପା, ରହ, ମୋ ସହିତ ମାଆ ପାଖକୁ ଯିବ' ତାହା ଶୁଣି 'ମୋର ପିତା ଦୁଷ୍ୟନ୍ତ, ତୁମେ ନୁହଁ' ବୋଲି ଉତ୍ତର ଦେଲେ । ଦୁଷ୍ୟନ୍ତଙ୍କର ବିଶ୍ୱାସ ଦୃଢ଼ ହେଲା । ଏହା ପରେ ମଳିନବସନା ଏକବେଣୀଧରା ଶକୁନ୍ତଳା ପ୍ରବେଶ କଲେ । ରାଜା ପଶ୍ଚାତ୍ତାପ ଦୁଃଖରେ ଏତେ ଦୂର ବିବର୍ଣ୍ଣ ଦେଖା ଯାଉଥିଲେ ଯେ ଶକୁନ୍ତଳା ହଠାତ୍ ଚିହ୍ନି ପାରିଲେ ନାହିଁ । କିନ୍ତୁ ପରେ ପରେ ତାଙ୍କର ବିଶ୍ୱାସ ହେଲା, ସେ ପ୍ରଣାମ କଲେ । ସର୍ବଦମନ ପଚାରିଲେ—'ମା ଏ କିଏ?' 'ବାପା, ତୋର ଭାଗ୍ୟକୁ ପଚାର' ବୋଲି କହି ଶକୁନ୍ତଳା କାନ୍ଦି ପକାଇଲେ । 'ପ୍ରିୟେ, ମୁଁ ତୁମକୁ ପ୍ରତ୍ୟାଖ୍ୟାନ କରିଛି ବୋଲି ମନରେ କେବେହେଲେ ଦୁଃଖ କରିବ ନାହିଁ । କାରଣ ସେ ସମୟରେ ମୋ ମନ କଣ ଥିଲା, କଅଣ ହେଲା—ମୁଁ ବୁଝିପାରୁ ନାହିଁ ।' ଏହା କହି ଶକୁନ୍ତଳାଙ୍କର ପାଦ ତଳେ ପଡ଼ିବାକୁ ଗଲେ । ଶକୁନ୍ତଳା ରାଜାଙ୍କୁ ଉଠାଇଲେ । ସେ ସମସ୍ତେ ମିଶି ମାରୀଚଙ୍କୁ ଦର୍ଶନ କରିବାକୁ ଗଲେ । ମାରୀଚ ମହର୍ଷି ଓ ତାଙ୍କର ପତ୍ନୀ

ଅଦିତ ସେମାନଙ୍କୁ ଆଶୀର୍ବାଦ କଲେ । ମାରୀଚଙ୍କ ଠାରୁ ରାଜା ଦୁର୍ବାସାଙ୍କ ର ଶାପ ବୃତ୍ତାନ୍ତ ଜାଣି ପାରିଲେ ଏବଂ ନିଜକୁ ଦୋଷମୁକ୍ତ ଭାବି ଆନନ୍ଦିତ ହେଲେ । ଶକୁନ୍ତଳା ମଧ୍ୟ ସ୍ୱାମୀ ବିନା କାରଣରେ ପରିତ୍ୟାଗ କରି ନାହାନ୍ତି ଭାବି ସନ୍ତୁଷ୍ଟ ହେଲେ । ରାଜାଙ୍କ ଅନୁରୋଧରେ ମାରୀଚ ଏକ ଜଣ କୁମାରଙ୍କ ହାତରେ ଶକୁନ୍ତଳା-ପରିଗ୍ରହଣ ବିଷୟ କଣ୍ୱଙ୍କ ପାଖକୁ ପଠାଇଲେ ଏବଂ ପତ୍ନୀ ଓ ପୁତ୍ର ସହିତ ରାଜଧାନୀକୁ ଫେରିଯିବାକୁ ଆଦେଶ ଦେଲେ । ଭରତ-ବାକ୍ୟ ପରେ ନାଟକ ଶେଷ ହେଲା ।

କାଳିଦାସ ଏହି ନାଟକର କଥାବସ୍ତୁ କେଉଁ ଗ୍ରନ୍ଥରୁ ଆହରଣ କରି ଅଛନ୍ତି—ଏ ବିଷୟରେ ଭାଗ୍ୟର କଥା ଯେ ବାଦବିବାଦର ଅବକାଶ ନାହିଁ । ଅନନ୍ତକଥାରତ୍ନର ଆକର ମହାଭାରତର ଆଦି-ପର୍ବରେ ପ୍ରାୟ ୩୦୦ ଶ୍ଳୋକରେ ଶକୁନ୍ତଳାଙ୍କର ଉପାଖ୍ୟାନ ବର୍ଣ୍ଣିତ ହୋଇଅଛି । ଏହି ବୃତ୍ତାନ୍ତ ସହିତ ନାଟକୀୟ ବୃତ୍ତାନ୍ତର ତୁଳନା କଲେ, କାଳିଦାସଙ୍କର ଅନୁପମ ରଚନାକୌଶଳ ଓ କଳା-କୁଶଳତାର ପରିଚୟ ମିଳେ । ଏ ହେତୁ ମହାଭାରତ ବୃତ୍ତାନ୍ତ ସଂକ୍ଷେପରେ ନିମ୍ନରେ ଦିଆ ଗଲା । *

ଏକ ଦିନ ପୁରୁବଂଶୀୟ ରାଜା ଦୁଷ୍ୟନ୍ତ ନିଜେ ଅନେକ ସୈନିକ, ଅମାତ୍ୟ ଓ ପୁରୋହିତ ପ୍ରଭୃତି ଗହଣରେ ମୃଗୟା କରିବାକୁ ଯାଇଥିଲେ । ଅନେକ ସମୟ ମୃଗୟା ବିହାର କରି-

* ଏହି କଥା ସାରାଂଶ 'ଭଣ୍ଡାରକାର, ଓରିଏଣ୍ଟାଲ, ଇନ୍‌ଷ୍ଟି-ଚ୍ୟୁଟ୍' ଦ୍ୱାରା ପ୍ରକାଶିତ ମହାଭାରତ ଆଦିପର୍ବର ନବୀନ ସଂସ୍କରଣରୁ ଗୃହୀତ ।

ପରେ ଏକ ଆଶ୍ରମରେ ପହଞ୍ଚିଲେ । ତପୋବନ ବାହାରେ ସେନାମାନଙ୍କୁ ରଖି ରାଜଚିହ୍ନମାନ କାଢିଦେଇ, ପୁରୋହିତ ଓ ଅମାତ୍ୟଙ୍କ ସହିତ ଆଶ୍ରମରେ ପ୍ରବେଶ କଲେ । କେତେ ଦୂର ଗଲା ପରେ ଅମାତ୍ୟ ଓ ପୁରୋହିତଙ୍କୁ ଏକ ସ୍ଥାନରେ ରଖାଇ, ଏକାକୀ କଣ୍ୱଙ୍କର କୁଟୀର ଅଭିମୁଖରେ ଗଲେ । ସେ ସମୟରେ ଋଷି ଫଳମୂଳ ଆଣିବାକୁ ବାହାରକୁ ଯାଇଥିଲେ । କେବଳ ତାଙ୍କର ପରମସୁନ୍ଦରୀ କନ୍ୟା ଶକୁନ୍ତଳା ପର୍ଣ୍ଣକୁଟୀରରେ ଥିଲେ । ସେ ରାଜାଙ୍କର ସ୍ୱାଗତ ସତ୍କାର କଲେ । ତାଙ୍କୁ ଦେଖିବାମାତ୍ରେ ରାଜାଙ୍କର ମନରେ କାମ ବିକାର ଜାତ ହେଲା । ରାଜାଙ୍କ ପ୍ରଶ୍ନରେ ଶକୁନ୍ତଳା ନିଜ ଜନ୍ମବୃତ୍ତାନ୍ତ ବିସ୍ତୃତ ଭାବରେ ଶୁଣାଇଲେ । ସେ ସମୟରେ ନାନା ପ୍ରକାର ବସ୍ତ୍ର ଅଳଙ୍କାରର ପ୍ରଲୋଭନ ଦେଖାଇ ଶକୁନ୍ତଳାଙ୍କୁ ନିଜର ପତ୍ନୀ ହେବାକୁ ଅନୁରୋଧ କଲେ । ଶକୁନ୍ତଳା ଉତ୍ତର ଦେଲେ—'ମୋର ପିତା ଫଳ ଆଣିବାକୁ ଯାଇଅଛନ୍ତି । ଏକ ଘଡ଼ୀ ମଧ୍ୟରେ ଆସିଯିବେ ଏବଂ ମୋତେ ଆପଣଙ୍କୁ ଅର୍ପଣ କରିବେ ।' କିନ୍ତୁ ରାଜା କହିଲେ—'କ୍ଷତ୍ରିୟଙ୍କ ପକ୍ଷରେ ଗାନ୍ଧର୍ବବିବାହ ପ୍ରଶସ୍ତ । ତୁମେ ନିଜେ ନିଜକୁ ଦାନ କରିବାକୁ ସମର୍ଥ । ଶକୁନ୍ତଳାଙ୍କର ମନ ମଧ୍ୟ ରାଜାଙ୍କ ପ୍ରତି ଆକୃଷ୍ଟ ହେଲା । ନିଜ ସମ୍ମତି ଜଣାଇବା ପୂର୍ବରୁ 'ଆପଣଙ୍କ ପରେ ମୋର ସନ୍ତାନ ରାଜସିଂହାସନର ଅଧିକାରୀ ହେବ' ବୋଲି ଶରତ୍ ଜଣାଇଲେ ଏବଂ ରାଜା ତାହା ସ୍ୱୀକାର କଲେ । ତାପରେ ରାଜା ଗାନ୍ଧର୍ବ ବିବାହରେ ତାଙ୍କର ପାଣିଗ୍ରହଣ କଲେ ଏବଂ କେତେକ ସମୟ ଅତିବାହିତ କଲେ । ଶକୁନ୍ତଳାଙ୍କୁ ନେବା ସକାଶେ ନିଜ ସୈନ୍ୟମାନଙ୍କୁ ପଠାଇବେ କହି ରାଜା ମୁନିଙ୍କର ଶାପଭୟରେ ସେଠାରୁ ବିଦାୟ ନେଲେ । ଋଷି ଫେରିବା ପରେ

ଶକୁନ୍ତଳା ଲଜ୍ଜାରେ ପୂର୍ବପର ଋଷିଙ୍କ ପାଖକୁ ଆସି ପାରିଲେ ନାହିଁ । ଋଷି ଆଧ୍ୟାତ୍ମିକଜ୍ଞାନବଳରେ ସମସ୍ତ ବିଷୟ ବୁଝିପାରିଲେ ଏବଂ ଶକୁନ୍ତଳାଙ୍କୁ ଆଶୀର୍ବାଦ କଲେ ଏବଂ ଅଶେଷ ବର ପ୍ରଦାନ କଲେ । ରାଜା ଫେରି ନିଜ କଥା ଅନୁଯାୟୀ ଶକୁନ୍ତଳାଙ୍କୁ ନେବା ସକାଶେ ସୈନ୍ୟ ପଠାଇଲେ ନାହିଁ କି କୌଣସି ସମ୍ବାଦ ମଧ୍ୟ ପଠାଇଲେ ନାହିଁ । କାଳକ୍ରମେ ଶକୁନ୍ତଳାଙ୍କର ଏକ ପୁତ୍ର ସନ୍ତାନ ହେଲା । କଣ୍ୱ ନିଜେ ଉକ୍ତ ସନ୍ତାନର ଜାତକର୍ମ ପ୍ରଭୃତି ସଂସ୍କାର କଲେ । ସନ୍ତାନଟି ଛ ବର୍ଷ ବୟସରୁ ବ୍ୟାଘ୍ର ସିଂହ ପ୍ରଭୃତି କ୍ରୂର ପଶୁମାନଙ୍କୁ ଧରି ଖେଳାବୁଲା କରିବାକୁ ଲାଗିଲେ । ଏହେତୁ ଆଶ୍ରମବାସୀ ତାଙ୍କୁ 'ସର୍ବଦମନ' ବୋଲି ନାମ ଦେଇଥିଲେ । ବଳପରାକ୍ରମଯୁକ୍ତ ହେବା ହେତୁ ସେ ଯୁବରାଜ ହେବା ଉଚିତ ଭାବି କଣ୍ୱ ପୁତ୍ର ସହିତ ଶକୁନ୍ତଳାଙ୍କୁ ହସ୍ତିନାପୁରକୁ ନେଇ ଯିବାକୁ ଶିଷ୍ୟମାନଙ୍କୁ ଆଦେଶ ଦେଲେ । ଶକୁନ୍ତଳା ରାଜସଭାରେ ଉପସ୍ଥିତ ହୋଇ ରାଜାଙ୍କୁ ପୂର୍ବ ପ୍ରସଙ୍ଗ ମନେ ପକାଇଲେ ଏବଂ ପୁତ୍ରକୁ ସ୍ୱୀକାର କରିବାକୁ ଅନୁରୋଧ କଲେ । ରାଜା ଉତ୍ତର ଦେଲେ—'ତୁମ ସହିତ ବିବାହ କରିବା କଥା ମୋର ମନେ ପଡୁନାହିଁ, ତୁମର ଇଚ୍ଛା ହେଲେ ଏଠାରେ ରହିପାର ବା ଚାଲି-ଯାଇପାର ।' ଶକୁନ୍ତଳାଙ୍କ ମନରେ ଦାରୁଣ ସନ୍ତାପ ହେଲା, ସେ କହିଲେ—ରାଜା ତୁମେ ସାଧାରଣ କ୍ଷୁଦ୍ର ଲୋକପରି କପଟ ମିଥ୍ୟା କହୁଅଛ, ମୁଁ ଯାହା କହୁଛି, ତାହା ସତ୍ୟ କି ମିଥ୍ୟା ତୁମର ମନକୁ ଜଣା । ମନୁଷ୍ୟ ଭାବୁଛି—ପାପ କଲା-ବେଳେ ମୋତେ କେହି ଦେଖି ନାହାନ୍ତି । କିନ୍ତୁ ଈଶ୍ୱର ଓ ପାପକର୍ତ୍ତାର ମନ ସବୁ ଦେଖିଥାନ୍ତି । ଭାର୍ଯ୍ୟା ପୁରୁଷର ଅର୍ଦ୍ଧାଙ୍ଗ ।

ତାଠାରୁ ପୂର୍ବରୁପେ ପତି ଜନ୍ମ ଗ୍ରହଣ କରନ୍ତି । ପୁତ୍ରଠାରୁ ଅଧିକ ଆନନ୍ଦଦାୟକ ବସ୍ତୁ ଜଗତରେ ବିରଳ ।' ଇତ୍ୟାଦି କହି ତାଙ୍କର ମନ ଆକର୍ଷଣ କରିବାକୁ ଚେଷ୍ଟା କଲେ । ମାତ୍ର ରାଜା କିଛି ଶୁଣିଲେ ନାହିଁ । 'ତୁମେ ଏହାକୁ ସ୍ୱୀକାର କରୁନାହଁ, ଦେଖିବ ମୋର ପୁଅ ସମଗ୍ର ପୃଥିବୀକୁ ପଦାକ୍ରାନ୍ତ କରିବ ।' ଏହା କହି ପୁଅ ସହିତ ଫେରିବାକୁ ବସିଲେ । ଏ ସମୟରେ ଆକାଶବାଣୀ ହେଲା—'ଦୁଷ୍ୟନ୍ତ, ଏ ତୁମର ପୁତ୍ର, ଏହାକୁ ସ୍ୱୀକାର କର ।' ସେତେବେଳେ ରାଜା ଆନନ୍ଦିତ ହୋଇ ପୁରୋହିତ-ଅମାତ୍ୟ ପ୍ରଭୃତିଙ୍କୁ କହିଲେ—'ଆପଣମାନେ ଦେବଦୂତଙ୍କର ବାଣୀ ଶୁଣିଲେ । ମୁଁ ଏହାକୁ ପ୍ରଥମରେ ଗ୍ରହଣ କରିନେଇଥିଲେ—ଏ ବିଶୁଦ୍ଧ ସନ୍ତାନ କି ନୁହେଁ—ଆପଣମାନଙ୍କ ମନରେ ସନ୍ଦେହ ରହିଥାନ୍ତା ।' ତାପରେ ଶକୁନ୍ତଳାଙ୍କୁ କହିଲେ 'ମୁଁ ସେପରି ନକରିଥିଲେ ଲୋକମାନେ କହନ୍ତେ— ମୁଁ ତୁମକୁ କାମୁକଭାବରେ ସ୍ୱୀକାର କଲି । ମୁଁ କ୍ରୋଧରେ ରୂଢ଼ ବ୍ୟବହାର କରିଅଛି, ସେଥି ସକାଶେ କ୍ଷମା କର ।' ତାପରେ ଶକୁନ୍ତଳାଙ୍କୁ ପାଟରାଣୀ କଲେ ଏବଂ ସର୍ବଦମନଙ୍କୁ ଯୁବରାଜପଦରେ ଅଭିଷିକ୍ତ କଲେ ।

ମହାଭାରତର ଉପରଲିଖିତ ସାଧାରଣ ଓ ବୈଚିତ୍ର୍ୟହୀନ କଥାକୁ ପ୍ରକାଶ କରି ଯଦି କାହାରିକୁ କୁହାଯାଏ ଯେ ଏହି କଥାରୁ— ପୃଥିବୀରେ ଏକ ଅତ୍ୟନ୍ତ ଉତ୍କୃଷ୍ଟ ନାଟକ ହୋଇ ପାରିଛି, ତାହାହେଲେ ସେ ତାହା ସତ ବୋଲି ଭାବିବ ନାହିଁ । ଖଣିରୁ ବାହାର କରିଥିବା ମୋଟା ଖେଳା ପଥର ଦେଖି-ରହିବାରୁ ଏକ ରମଣୀୟ ମୂର୍ତ୍ତି ଗଢ଼ାଯାଇ ପାରିବ ବୋଲି

କଳ୍ପନା କରିବା କଠିନ । ମାତ୍ର ସାମାନ୍ୟ ଲୋକ ଚର୍ମ-ଚକ୍ଷୁରେ ଯାହା ଦେଖିପାରେ ନାହିଁ, କଳାବନ୍ତ ପ୍ରତିଭାଶାଳୀ ଦିବ୍ୟ ଦୃଷ୍ଟିରେ ତାହା ସହଜରେ ଦେଖିପାରେ । ବ୍ୟାସଙ୍କର ସାଧାରଣ ସାଧନ ସାମଗ୍ରୀରେ ନିଜ ପ୍ରତିଭା ବଳରେ କଳ୍ପିତ ବୈଚିତ୍ର୍ୟପୂର୍ଣ୍ଣ ପ୍ରସଙ୍ଗ ଯୋଗ କଲେ ଉତ୍କୃଷ୍ଟ ରସ ପରିପାକ ହୋଇପାରେ—ଏହା କାଳିଦାସ ହୃଦୟଙ୍ଗମ କରିପାରିଥିଲେ । * ଦ୍ୱିତୀୟ କଥା—ମହାଭାରତର କଥାବସ୍ତୁ ଘଟନା ବହୁ ପ୍ରାଚୀନ କାଳରେ ହୋଇ ଥିଲା । ସମାଜର ଏହି ପ୍ରାଥମିକ ଅବସ୍ଥାରେ ସେହି ପ୍ରସଙ୍ଗ ଓ ବସ୍ତୁର ଅସମ୍ଭାବ୍ୟ ଓ ଅନୁଚିତ ବୋଧ ହେଉ ନଥିଲା । ତଥାପି କାଳିଦାସଙ୍କ ସମୟରେ ସୁସଂସ୍କୃତ ସମାଜରେ ତାହା ଆଦୃତ ହୋଇ ପାରି ନଥିଲା । ତାହା ଛଡ଼ା ବ୍ୟାସଙ୍କର ପୁରାଣ କଥାର ନାୟକ ଦୁଷ୍ୟନ୍ତ ଓ ନାୟିକା ଶକୁନ୍ତଳା କେବଳ ସ୍ୱାର୍ଥରେ ପ୍ରେରିତ ହୋଇଥିଲା ପରି ପ୍ରତୀତ ହୁଅନ୍ତି । ନାଟକରେ ଏମାନଙ୍କର ଚରିତ୍ର ରମଣୀୟ ଓ ଆକର୍ଷକ କରିବା ସକାଶେ ସେମାନଙ୍କର ସ୍ୱଭାବରେ ନାନା ପ୍ରକାର ଛଟା ରଙ୍ଗୋଚିତ ପ୍ରମାଣ ସହକାରେ ସନ୍ନିବେଶିତ କରିବା ଆବଶ୍ୟକ ହୋଇ ପଡ଼ିଲା । ଏ ହେତୁ କାଳିଦାସ ମୂଳ କଥାର ବହୁତ ପରିବର୍ତ୍ତନ କରିଛନ୍ତି । ଏହା ଜଣାଶୁଣା କଥା ଯେ 'ଶକୁନ୍ତଳୋପାଖ୍ୟାନ' ଓ 'ଶାକୁନ୍ତଳ' ଏ ଦୁଇଟିର କଥାବସ୍ତୁ ତୁଳନା କଲେ ଜଣାଯିବ—ଦୁର୍ବାସାଙ୍କ ର ଶାପ ଓ ତାର ନିବୃତ୍ତି ସକାଶେ ଆବଶ୍ୟକ ମୁଦ୍ରିକା—ଏହି ଦୁଇ ବିଶିଷ୍ଟ ବିଷୟ

---

* ଆନନ୍ଦବର୍ଦ୍ଧନାଚାର୍ଯ୍ୟ ଧ୍ୱନ୍ୟାଲୋକ (ପୃ ୧୦୮) ରେ ଏହି କଥା କହିଛନ୍ତି ।

କାଳିଦାସ ନିଜେ କଳ୍ପନା କରି ଅଛନ୍ତି । ଏଥିରୁ ପ୍ରଥମଟିର ଦୁଇପ୍ରକାର ଉପଯୋଗ ଦେଖାଯାଏ । ମହାଭାରତର ଦୁଷ୍ୟନ୍ତ କାମାସକ୍ତ, ଭୟଭୀତ ଓ ସ୍ୱାର୍ଥପ୍ରବଣ । କଣ୍ୱମହର୍ଷି ଘଣ୍ଟାଏ ବା ଦୁଇଘଣ୍ଟାରେ ଫେରିବା କଥା । ତଥାପି ତାଙ୍କୁ ଅପେକ୍ଷା ନ କରି ତାଙ୍କ ପରୋକ୍ଷରେ ତାଙ୍କର କନ୍ୟାକୁ ଉପଭୋଗ କରିଛନ୍ତି । ଉପଭୋଗଲାଳସା ଚରିତାର୍ଥ ହେବାପରେ ଋଷି କ୍ରୁଦ୍ଧ ହେବେ ଭାବି ଭୟରେ ସେଠାରୁ ଶୀଘ୍ର ଚାଲିଯାଇଛନ୍ତି । ପରେ ଶକୁନ୍ତଳାଙ୍କୁ ଦେବା ପ୍ରତିଶ୍ରୁତି ମଧ୍ୟ ରକ୍ଷା କରି ନାହାନ୍ତି । ଖାଲି ସେତିକି ନୁହେଁ — ଶକୁନ୍ତଳା ନିଜପୁଅ ସହିତ ରାଜସଭାରେ ଉପସ୍ଥିତ ହେଲେ ମଧ୍ୟ ଲୋକାପବାଦ ଭୟରେ ନିଜ କର୍ତ୍ତବ୍ୟ ଭୁଲିଯାଇଛନ୍ତି । ଆକାଶବାଣୀ ନ ହୋଇଥିଲେ ନିଜର ନିରପରାଧ ପୁଅ ଓ ପତ୍ନୀକୁ ତ୍ୟାଗ କରିବାକୁ ଟିକିଏ ହେଲେ କୁଣ୍ଠିତ ହୋଇ ନଥାନ୍ତେ । ଏହିପରି ନିକୃଷ୍ଟ କୋଟିର ନାୟକକୁ ପରାକ୍ରମୀ, ପ୍ରେମୀ, ପାପଭୀରୁ ଓ କର୍ତ୍ତବ୍ୟପରାୟଣ ନାୟକରୂପେ ପରିବର୍ତ୍ତିତ କରିବାରେ ଦୁର୍ବାସାଙ୍କର ଶାପ ନିଦ୍ଦୋଷିତା ପରି ପ୍ରଧାନ ସାଧନ ହୋଇଅଛି । ଏହି ଶାପପ୍ରଭାବରେ ରାଜାଙ୍କର ସ୍ମୃତି ନଷ୍ଟ ହୋଇଅଛି ଏବଂ ସବୁବେଳେ ନିଜର କର୍ତ୍ତବ୍ୟ ତତ୍ପରତା ସହିତ ସମ୍ପାଦନ କରୁଥିବା ରାଜା ଶାକୁନ୍ତଳନାଟକରେ ପରସ୍ତ୍ରୀସ୍ପର୍ଶ ଭୟରେ ନିଜର ପତ୍ନୀକୁ ତ୍ୟାଗ କରିବା ଦେଖାଯାଏ । ପଞ୍ଚମାଙ୍କରେ ଦୁଇଟି ରମଣୀୟ କଳାଧର ସଂଘର୍ଷ ଏହି ଶାପ ଫଳରେ ହୋଇପାରିଛି । ଷଷ୍ଠ ଅଙ୍କରେ ଦୁଷ୍ୟନ୍ତଙ୍କର ଶୋକ ଓ ସପ୍ତମାଙ୍କରେ ଶକୁନ୍ତଳାଙ୍କର ଅତ୍ୟନ୍ତ କାରୁଣ୍ୟୋତ୍ପାଦକ ଦୃଶ୍ୟ ଶାପପ୍ରସଙ୍ଗର ଆଧାରଉପରେ ନିର୍ଭର କରୁଅଛି । ସାରକଥା ଏହା ଯେ ଏହି ଶାପ ନାୟକ ନାୟିକାଙ୍କୁ କେତେ ସମୟ ବିରହିତ ରଖି, କଷ୍ଟ ଦେଇ,

ଅଭିଶାପରେ ସେମାନଙ୍କର ସ୍ୱଭାବରେ ଉଦାରତା ବ୍ୟକ୍ତ କରି ସେମାନଙ୍କର ଉପକାର କରିଅଛନ୍ତି । ଏହି ଶାପ କଥାବସ୍ତୁକୁ ମଧ୍ୟ ବୈଚିତ୍ର୍ୟପୂର୍ଣ୍ଣ ଓ ରମଣୀୟପ୍ରସଙ୍ଗସଂଯୋଗରେ ଅଧିକ ଚିତ୍ତାକର୍ଷକ କରିଅଛୁ । ଏହା ଛଡ଼ା ଶାପ ଅବତରଣରେ କାଳିଦାସଙ୍କର ଅନ୍ୟ ଏକ ଉଦ୍ଦେଶ୍ୟ ମଧ୍ୟ ରହିଅଛି । କେବଳ ବାହ୍ୟରୂପ ସନ୍ଦର୍ଶନରେ ସଂଜାତ ପ୍ରେମ ଦୈହିକ ଓ ଅନ୍ତଃସାରଶୂନ୍ୟ ଏବଂ କ୍ଷଣସ୍ଥାୟୀ । ନାନାବିଧ ସଂଘର୍ଷପରେ ସଂକଟ ପାର ହୋଇ ଯେଉଁ ପ୍ରେମ ଆତ୍ମପ୍ରକାଶ କରେ, ସେହି ପ୍ରେମ ସ୍ୱାର୍ଥବର୍ଜିତ, ତାହାହିଁ କର୍ତ୍ତବ୍ୟରୂପରେ ପରିଣତ ହୋଇଥାଏ । ଏହିପରି ନିରପେକ୍ଷ, ଉଦାର, ପ୍ରେମ ସମାଜର ରକ୍ଷା ଓ ଅଭ୍ୟୁଦୟ ନିମନ୍ତେ ନିତାନ୍ତ ଆବଶ୍ୟକ । ଏ ହେତୁ କାଳିଦାସ ନିଜର ଅନ୍ୟ ଗ୍ରନ୍ଥମାନଙ୍କରେ ମଧ୍ୟ ସେହି ପ୍ରକାର ପ୍ରେମର ଚିତ୍ର ଅଙ୍କନ କରିଅଛନ୍ତି । 'କୁମାରସମ୍ଭବ'ର ପାର୍ବତୀ, 'ମେଘଦୂତ'ର ଯକ୍ଷପତ୍ନୀ, ଓ 'ବିକ୍ରମୋର୍ବଶୀୟ'ର ଔଶୀନରୀ ଏହି ସ୍ୱର୍ଗୀୟ ପ୍ରେମର ପ୍ରତିମୂର୍ତ୍ତି । ବିକ୍ରମୋର୍ବଶୀୟର ଔଶୀନରୀ ପାତ୍ର ଉଦାରସ୍ୱଭାବ ହେଲେ ମଧ୍ୟ ପ୍ରଧାନ ହୋଇ ପାରି ନାହିଁ । ଏହିହେତୁ କବିଙ୍କର ଅଭିପ୍ରାୟ ସେହି ନାଟକରେ ସ୍ପଷ୍ଟ ହୋଇ ପାରିନାହିଁ । ସେହି ନ୍ୟୁନତା କବି ଶାକୁନ୍ତଳରେ ପୂର୍ଣ୍ଣ କରିଅଛନ୍ତି । ଶକୁନ୍ତଳାଙ୍କର ପବିତ୍ର ପ୍ରେମର ପରୀକ୍ଷା କରିବା ନିମନ୍ତେ କବି ଦୁର୍ବାସାଙ୍କର ଶାପର ଉପଯୋଗ କୁଶଳତାସହକାରେ କରିଅଛନ୍ତି । ଏହାଙ୍କର ଅନ୍ୟାନ୍ୟ ନାଟକରେ ମଧ୍ୟ କୌଣସି ଦୈବୀଘଟନା ବିଶେଷତଃ ନାୟକନାୟିକାଙ୍କର ବିରହ ପ୍ରସଙ୍ଗ ସଂଘଟିତ ହେବା ଦେଖାଯାଏ । ଏହିପରି ପ୍ରସଙ୍ଗ କୌଣସି ଋଷିଙ୍କ ଶାପରେ ହେବା ସ୍ୱାଭାବିକ । ଶକୁନ୍ତଳାଙ୍କ ପରି ପ୍ରେମିକା, ପତିଚିନ୍ତାପରାୟଣା ନାୟିକାଙ୍କୁ ଶାପ ଦେବା ନିମନ୍ତେ ଦୁର୍ବାସାଙ୍କ ପରି-

ନିଷ୍ଠୁର ଓ ସୁଲଭକୋପୀ ଆଉ ଜଣେ ମିଳିବ ନାହିଁ । ଶାପର ପୁଣି ମୋଚନ ହେବା ବାଞ୍ଛନୀୟ । ଶାପପ୍ରଭାବରେ ରାଜାଙ୍କର ଶକୁନ୍ତଳା ବିସ୍ମରଣ ହେଲା । ସେହି ସ୍ମୃତି ପୁଣି ଜାଗରୁକ କରିବା ସକାଶେ କୌଣସି ଅଭିଜ୍ଞାନ ଆବଶ୍ୟକ । ମୁଦ୍ରିକା ଏହି ଅଭିଜ୍ଞାନକାର୍ଯ୍ୟ ସମ୍ପାଦନ କରୁଅଛି । ମୁଦ୍ରିକା ପୂର୍ବପରିଚୟର ସ୍ମୃତି ଜାଗରୁକ କରିବାରେ ବିଶେଷ ଉପକାରୀ । ହନୁମାନ୍ ସୀତାଙ୍କର ପ୍ରତୀତି ଜନ୍ମାଇବା ସକାଶେ ରାମଚନ୍ଦ୍ରଙ୍କର ମୁଦ୍ରିକା ନିଜ ସାଥିରେ ନେଇଥିଲେ । ଏହା କବିଙ୍କର ପରିଚିତ ଥିଲା । ସମ୍ଭବତଃ ମେଘଦୂତ ରଚନା ସମୟରେ ଏହି ବିଷୟ କବିଙ୍କର ମସ୍ତିଷ୍କରେ ଖେଳୁଥିଲା । ଅତଏବ ମୁଦ୍ରିକା ଦର୍ଶନରେ ଶକୁନ୍ତଳାଙ୍କର ସ୍ମୃତି ଜାଗରିତ କରିବା କଳ୍ପନା କବିଙ୍କର ସ୍ଵାଭାବିକ । ଏଥିରେ ବିସ୍ମିତ ହେବାର କୌଣସି କାରଣ ନାହିଁ । ବୌଦ୍ଧଙ୍କର ପାଲୀଭାଷା ଲିଖିତ 'ଜାତକମାଳା' ଗ୍ରନ୍ଥରେ ବୁଦ୍ଧଙ୍କର ପୂର୍ବ ଜନ୍ମବୃତ୍ତାନ୍ତ ବର୍ଣ୍ଣିତ ହୋଇଅଛି । ତହିଁରେ 'କଟ୍ଠହାରି' ଜାତକରେ 'ଶକୁନ୍ତଳା'ର ଉପାଖ୍ୟାନ ସଦୃଶ ଏକ କଥା ଦେଖାଯାଏ । ବାରଣସୀ ନଗରରେ ବ୍ରହ୍ମଦତ୍ତ ରାଜା ବଣରେ ଏକ ସୁନ୍ଦରୀ ସ୍ତ୍ରୀ ଦେଖିଲେ । ତାଙ୍କ ସହିତ କେତେ ସମୟ ବିହାର କରି ନଗରକୁ ଫେରିଆସିଲେ । ଫେରିବାବେଳେ ସେହି ସ୍ତ୍ରୀଙ୍କୁ ନିଜପରିଚୟ ରକ୍ଷା କରିବାକୁ ଏକ ମୁଦ୍ରିକା ପିନ୍ଧାଇ ଆସିଥିଲେ । ପରେ ସେହି ସ୍ତ୍ରୀଙ୍କର ଏକ ପୁଅ ଜାତ ହେଲା । ସେହି ବାଳକହିଁ ବୋଧିସତ୍ତ୍ଵ । ସେ ବଡ଼ ହେଲାପରେ ତାଙ୍କୁ ଧରି ସେହି ସ୍ତ୍ରୀ ରାଜାଙ୍କ ପାଖକୁ ଗଲେ ଏବଂ ଅଭିଜ୍ଞାନ-ସ୍ଵରୂପ ମୁଦ୍ରିକାଟି ଦେଖାଇଲେ । ରାଜା ଜାଣି ଶୁଣି କହିଲେ ଯେ ତୁମ ସହିତ ମୋର କୌଣସି ପରିଚୟ ନାହିଁ । ତାପରେ ସତ୍ୟର ପ୍ରମାଣ ଦେବା ଛଡ଼ା ଅନ୍ୟ ଉପାୟ ନ ଦେଖି ସେ ନିଜ ପୁଅର

ଦୁଇଟି ପାଦ ଧରି ଆକାଶ ଉପରକୁ ଫିଙ୍ଗିଦେଲେ ଏବଂ ରାଜାଙ୍କୁ କହିଲେ – ରାଜା, ଯେ ଯଦି ପ୍ରକୃତରେ ତୁମର ପୁତ୍ର ହୋଇଥିବ, ତେବେ ଆକାଶରେ ସୁରକ୍ଷିତ ରହିବ, ନ ହୋଇଥିଲେ ତଳେ ପଡ଼ି ଖଣ୍ଡ ଖଣ୍ଡ ହୋଇଯିବ ।' ବୋଧିସତ୍ତ୍ୱ ଆକାଶରେ ସ୍ଥିରହୋଇ ରହିଲେ । ଏହା ଦେଖି ସେ ରାଜାଙ୍କର ପୁତ୍ର—ଏଥିରେ କାହାର ଆଉ କେହି ହେଲେ ସଂଶୟ ହେଲା ନାହିଁ । ରାଜା ତାକୁ ସ୍ୱୀକାର କରି ଯୁବରାଜ ପଦରେ ଅଭିଷିକ୍ତ କଲେ ।" ଜାତକର ଏହି କାହାଣୀ ଶୁଣି କାଳିଦାସ ମୁଦ୍ରିକା କଳ୍ପନା କରିଅଛନ୍ତି ବୋଲି କେତେକ ପାଶ୍ଚାତ୍ୟ ପଣ୍ଡିତ କହିଅଛନ୍ତି । କିନ୍ତୁ ଆମେ ଏହା ସ୍ୱୀକାର କରିବାକୁ ପ୍ରସ୍ତୁତ ନୋହୁଁ । ଉପରକଥିତ ଜାତକମାଳାର କଥାବସ୍ତୁ ଓ ମହାଭାରତୀୟ କଥାବସ୍ତୁରେ ବିଶେଷ ସାମଞ୍ଜସ୍ୟ ଦେଖାଯାଏ । ବୌଦ୍ଧମାନେ ଏହି କଥା ହିନ୍ଦୁ ଗ୍ରନ୍ଥମାନଙ୍କରୁ ସଂଗ୍ରହ କରି ସାମାନ୍ୟ ପରିବର୍ତ୍ତନ କରି ଗୌତମଙ୍କର ପୂର୍ବଜନ୍ମ ସହିତ ସମ୍ବନ୍ଧ ଯୋଡ଼ି ଥିଲାପରି ବୋଧହୁଏ । ଜାତକମାଳାର ଅନେକ କଥାରେ ଏହି ରୀତି ପରିଦୃଷ୍ଟ ହୁଏ । ଏହା ସ୍ପଷ୍ଟ । କାଳିଦାସଙ୍କର ନାଟକରେ ଦୁର୍ବାସାଙ୍କର ଶାପ ଓ ମୁଦ୍ରିକାର ଘନିଷ୍ଠ ସମ୍ବନ୍ଧ । ଜାତକମାଳାର କଥାରେ ଶାପର ଉଲ୍ଲେଖ ନାହିଁ । ଶାକୁନ୍ତଳରେ ମୁଦ୍ରିକା ପ୍ରକରଣର କଳ୍ପନା କାଳିଦାସଙ୍କ କପରି ସ୍ୱାଭାବିକ ରୂପେ ସ୍ଫୁର୍ତ୍ତି କଲା—ତାହା ପୂର୍ବରେ ଆମେ ପ୍ରତିପାଦିତ କରିଅଛୁଁ । ମାଳବିକାଗ୍ନିମିତ୍ରରେ ମଧ୍ୟ କବି ପରିଚୟ ସଙ୍କେତ ମୁଦ୍ରିକାର ସଦୁପଯୋଗ କରିଅଛନ୍ତି—ଏହା ମଧ୍ୟ ବିସ୍ମୃରଣଯୋଗ୍ୟ ।

ମୁଦ୍ରିକାଦର୍ଶନମାନେ ରାଜାଙ୍କର ଶକୁନ୍ତଳା ସ୍ମୃତି ଜାଗରୂକ ହୋଇଯିବ—ଏହିହେତୁ କବି ଶକୁନ୍ତଳା ରାଜାଙ୍କ

ମାଛଙ୍କୁ ଦିବାପୂର୍ବରୁ ମୁଦ୍ରିକା ଅଙ୍ଗୁଳିରୁ ଖସିପଡ଼ିବା ଏବଂ ଶକୁନ୍ତଳାଙ୍କ ପ୍ରତ୍ୟାଖ୍ୟାନ ପରେ ମୁଦ୍ରିକା ଦେଖି ରାଜାଙ୍କର ଶକୁନ୍ତଳାସ୍ମୃତି ଜାଗରିତ ହେବା ଏହି ଦୁଇଟି ଘଟଣା ଅତି ସ୍ୱାଭାବିକ ରୀତିରେ ରଚିତ ହୋଇଅଛି । ଏହା କିପରି ଘଟିଥିଲା—ଏହା ଦେଖାଇବା ଉଦ୍ଦେଶ୍ୟରେ କବି ଧୀବର ଓ ରାଜପୁରୁଷଙ୍କର ଦୃଶ୍ୟର ଅବତାରଣା କରିଛନ୍ତି । ଏଥିରୁ କବିଙ୍କର ଅଲୌକିକକଳ୍ପନାକୁଶଳତାର ପରିଚୟ ମିଳେ । ଖ୍ରୀଷ୍ଟପୂର୍ବ ପଞ୍ଚମ ଶତାବ୍ଦୀରେ 'ହେରୋଡୋଟସ୍' ନାମକ ଗ୍ରୀକ ଇତିହାସକାରଙ୍କ ଗ୍ରନ୍ଥରେ ମଧ୍ୟ ଏହିପରି ଏକ ପ୍ରସଙ୍ଗର ବର୍ଣ୍ଣନା ଦେଖାଯାଏ । ତହିଁରୁ କାଳିଦାସ ଆହରଣ କରି-ଅଛନ୍ତି ବୋଲି ଜଣେ ପଣ୍ଡିତ ମତ ବ୍ୟକ୍ତ କରିଅଛନ୍ତି ।* 'ପାଲିକ୍ରେଟସ୍' ନାମକ ଏକଜଣ ଗ୍ରୀକ୍ ରାଜା ଦିନେ ନିଜ-ଭାଗ୍ୟ ପରୀକ୍ଷା କରିବା ସକାଶେ ବହୁମୂଲ୍ୟ ରତ୍ନ ଖଚିତ ନିଜ ମୁଦ୍ରିକାଟି ସମୁଦ୍ରରେ ପକାଇଦେଲେ । ପାଞ୍ଚ ଛଅ ଦିନପରେ ଏକ ଧୀବର ଧରିଥିବା ମାଛର ପେଟରୁ ସେହି ମୁଦ୍ରିକାଟି ପାଇଥିଲେ । ଉପରକଥିତ ପଣ୍ଡିତଙ୍କ ମତଅନୁଯାୟୀ ଏହିକଥା କାଳିଦାସଙ୍କର ଅବଶ୍ୟ ଜ୍ଞାତ ଥିଲା । କାରଣ, ଖ୍ରୀଷ୍ଟାବ୍ଦ ପ୍ରଥମ ଶତାବ୍ଦୀ ପର୍ଯ୍ୟନ୍ତ ଭଡ଼ୋଚ ଗହ୍ୱବନ୍ଦର ଦରିଆରେ ମାଳବ ଓ କାଠିଆବାଡ଼ ପ୍ରଦେଶମାନଙ୍କରେ ପଶ୍ଚିମ ଦେଶମାନଙ୍କ ବ୍ୟବସାୟ ପ୍ରଚଳିତ ଥିଲା । ସେହି ଦେଶମାନଙ୍କରୁ ହିନ୍ଦୁସ୍ଥାନର ରଜା-ମାନଙ୍କ ଉପଭୋଗ ସକାଶେ ଅନେକ ସୁନ୍ଦରୀ ଗ୍ରୀକ୍ ସ୍ତ୍ରୀ ମଧ୍ୟ ଆଣାଯାଉଥିଲା । କାଳିଦାସ ନିଜ ପ୍ରଦେଶର ରାଜସଭାରେ ଏହି ଯବନୀ ସ୍ତ୍ରୀମାନଙ୍କୁ ଅବଶ୍ୟ ଦେଖିଥିବେ । ଏହେତୁ

* J. B. O. R. S. Vol VII. P. 97

କାଳିଦାସ ଶାକୁନ୍ତଳ ନାଟକରେ ଦୁଷ୍ୟନ୍ତ ରାଜାଙ୍କ ରକ୍ଷଣରେ ମୃଗୟା ସମୟରେ ମଧ୍ୟ ଯବନୀମାନେ ଥିଲେ ବୋଲି ବର୍ଣ୍ଣନା କରିଅଛନ୍ତି । ଏହି ଯବନୀମାନଙ୍କ ମୁଖରୁ କବି ଗ୍ରୀକ୍ କାହାଣୀ ଶୁଣିଥିବେ ।' ଏହି ମତରେ ବହୁତ ବିଷୟ ବିଶ୍ୱାସଯୋଗ୍ୟ ବୋଧହୁଏ ନାହିଁ । ହିରୋଡୋଟସଙ୍କ ବର୍ଣ୍ଣିତ କାହାଣୀ ତାଙ୍କପରେ ଅଠଶ କ ନଅଶବର୍ଷ ପର୍ଯ୍ୟନ୍ତ ଗ୍ରୀକ୍ ସ୍ତ୍ରୀମାନଙ୍କର ପରିଚିତ ଥିଲା, ଯେଉଁପରି ସ୍ତ୍ରୀମାନଙ୍କ ସହିତ କାଳିଦାସଙ୍କର ସମ୍ବନ୍ଧ ଥିଲା, ସେମାନଙ୍କ କଥୋପକଥନରୁ ସେହି କାହାଣୀ ଆସିଥିଲା, ଏବଂ ସେଥିରୁ କବି ଶକୁନ୍ତଳାର ପ୍ରସଙ୍ଗ ନେଇଅଛନ୍ତି । ଏ ସମ୍ବନ୍ଧରେ ବହୁତ ଦୂର ସମ୍ପର୍କ ଯୋଡ଼ାଯାଇଅଛି । କାଳିଦାସ ତାଙ୍କର କୌଣସି ଗ୍ରନ୍ଥରେ ଗ୍ରୀକ୍ କାହାଣୀର ଉପଯୋଗ କରିଥିଲା ପରି ଜଣାପଡ଼େ ନାହିଁ । ଅତଏବ ଏହି କଳ୍ପନାର ଗୌରବ କବିଙ୍କୁ ହିଁ ଦେବା ଉଚିତ । ଗ୍ରୀକ୍ ଓ ଭାରତୀୟ ତତ୍ତ୍ୱମାନ ପର୍ଯ୍ୟାଲୋଚନା କଲେ ବହୁତ ଆଶ୍ଚର୍ଯ୍ୟଜନକ ସାମଞ୍ଜସ୍ୟ ଦେଖାଯାଏ । ଉପରଲିଖିତ ପ୍ରସଙ୍ଗ ମଧ୍ୟ ଏହି ଧରଣର । ଏହାର ଉତ୍ତର 'ମାନବୀୟ ମନ ସର୍ବତ୍ର ଏକରୂପ' ଏହି ନୀତି ପ୍ରକାରେ କରାଯାଇପାରେ ।

ଦୁର୍ବାସାଙ୍କ ଶାପ ଓ ମୁଦ୍ରିକା—ଏହି ଦୁଇଟି ବିଶିଷ୍ଟ ବିଷୟ କବିଙ୍କୁ କିପରି ସ୍ପର୍ଶ କରିଥିଲା, ତାହା ଆମେ ଉପରେ ଦେଖାଇଅଛୁଁ । ବର୍ତ୍ତମାନ ମୂଳକଥାର ଅନ୍ୟାନ୍ୟ ପରିବର୍ତ୍ତନର କାରଣ ବୁଝାଇବା ଦରକାର । ଦୁଷ୍ୟନ୍ତ ଆଶ୍ରମରେ ପ୍ରବେଶ କଲେ । ସେ ସମୟରେ କଣ୍ୱଋଷି ଫଳପୁଷ୍ପ ଆଣିବାକୁ ବଣକୁ ଯାଇଥିଲେ । ସେ ଫେରିବା ପୂର୍ବରୁ ରାଜା ଶକୁନ୍ତଳାଙ୍କର ଜନ୍ମବୃତ୍ତାନ୍ତ ଶୁଣିଲେ । ତାଙ୍କେ ଲମ୍ବାଚୌଡ଼ା କଥାବାର୍ତ୍ତା କରି

ଶକୁନ୍ତଳାଙ୍କର ମନ ଆକୃଷ୍ଟ କଲେ, ବିହାର କରି ଚାଲିଗଲେ— ଏହା ହେଉଛି ମହାଭାରତର ବର୍ଣ୍ଣନା । ଘଣ୍ଟାଏ କି ଦୁଇଘଣ୍ଟାରେ ଏ ସମସ୍ତ ଘଟିବା ଅସମ୍ଭବ ଏବଂ କଳାଦୃଷ୍ଟିରେ ସମର୍ଥନଯୋଗ୍ୟ ନୁହେଁ । ତାହାଛଡ଼ା ରଜାଙ୍କର ଗୌରବପର ପଳାୟନ ଓ ଶକୁନ୍ତଳାଙ୍କର ସ୍ୱାର୍ଥପରତା ଅକ୍ଷମଣୀୟ । କଳାବିଳାସ ଓ ଔଚିତ୍ୟଦୃଷ୍ଟିରୁ ଏ ସମସ୍ତର ପରିବର୍ତ୍ତନ ଆବଶ୍ୟକ ବୋଧ-ହେଲା । ଏହେତୁ କାଳିଦାସ କଣ୍ୱଋଷିଙ୍କୁ ଶକୁନ୍ତଳାଙ୍କର ପ୍ରତିକୂଳ ଭାଗ୍ୟର ଶାନ୍ତି କରିବା ସକାଶେ ସୋମତୀର୍ଥକୁ ପଠାଇଛନ୍ତି । ଫେରିବା ସକାଶେ ତାଙ୍କ ପ୍ରାୟ ଚାରି ଛ'ମାସ ଲାଗିବାକଥା । ଏ ମଧ୍ୟରେ ଯଜ୍ଞରକ୍ଷା ସକାଶେ ଆଶ୍ରମବାସୀଙ୍କର ଅନୁରୋଧରେ ଦୁଷ୍ୟନ୍ତ ଆଶ୍ରମରେ ଅବସ୍ଥାନ କଲେ । ତାଙ୍କର ଓ ଶକୁନ୍ତଳାଙ୍କର ମଦନବାଧା କ୍ରମେ କ୍ରମେ ବଢ଼ିବାକୁ ଲାଗିଲା ଏବଂ ଅସହ୍ୟ ହେଲା । ଏ ସମୟରେ ସେ ଗାନ୍ଧର୍ବବିବାହ କଲେ— ଏହା କବି ଦେଖାଇ ଦେଇଛନ୍ତି । ଏଥିରେ ଠିକ୍ ଏହେଲେ ଅସ୍ୱାଭାବିକତା ନାହିଁ । ଶକୁନ୍ତଳାଙ୍କର ଉପଯୁକ୍ତ ମତ ସହିତ ଗାନ୍ଧର୍ବ ବିବାହ ହୋଇଅଛି ଏବଂ ସେ ଗର୍ଭବତୀ ଏହା ବୁଝିପାରି କଣ୍ୱ ତାଙ୍କୁ ପତିଗୃହକୁ ପଠାଇବାକୁ ସ୍ଥିର କଲେ । ଏଥିରେ କାଳିଦାସଙ୍କ ସମୟର ଲୋକମାନଙ୍କର ସ୍ତ୍ରୀବିଷୟ ଆଗ୍ରହର ବ୍ୟବ-ହାରର ପ୍ରତିବିମ୍ବ ପଡ଼ିଅଛି । ଏହି ସମୟରେ ସ୍ତ୍ରୀମାନଙ୍କର ଶାଳୀନତା-ବିଷୟକ କଳ୍ପନା ମହାଭାରତକାଳରୁ ସମ୍ପୂର୍ଣ୍ଣ ପୃଥକ୍ ଥିଲା । ଏହେତୁ କାଳିଦାସ ଶକୁନ୍ତଳାଙ୍କର ଜନ୍ମବୃତ୍ତାନ୍ତ ତାଙ୍କ ମୁଖରେ ନ କୁହାଇ, ସଖୀମାନଙ୍କଦ୍ୱାରା କୁହାଇଅଛନ୍ତି । ମହାଭାରତରେ ଶକୁନ୍ତଳା 'ମୋର ପୁତ୍ରହିଁ ସିଂହାସନ ପାଇବ ।' ଏହି ପ୍ରତିଜ୍ଞା କରିବାକୁ ରଜାଙ୍କୁ କହିଥିଲେ ଏବଂ ରଜା ସେ

ପ୍ରତିଜ୍ଞା କଲାପରେ ଆତ୍ମସମର୍ପଣ କରିଥିଲେ ! ଏଥିରେ ସେ ବ୍ୟବସାୟୀ କଲାପରି ଦେଖାଯାନ୍ତି । ତାହାଛଡ଼ା ଏହା ମଧ୍ୟ ପ୍ରମାଣିତ ହୁଏ ଯେ ତାଙ୍କ ହୃଦୟରେ ରାଜାଙ୍କର ଦର୍ଶନମାତ୍ରେ ସହଜ ପ୍ରେମର ପ୍ରାଦୁର୍ଭାବ ହୋଇ ନଥିଲା । କାଳିଦାସଙ୍କର ଶକୁନ୍ତଳା ପ୍ରେମପରବଶା । ତାଙ୍କୁ କପରି ସେପରି ଶରତ୍ ସ୍ପର୍ଶ କରିପାରିବ ? ତାଙ୍କର ସଖୀମାନେ ବେଶି ଚତୁର ଥିଲେ । ତଥାପି ସେମାନେ 'ରାଜାଙ୍କର ଅନେକ ଭାର୍ଯ୍ୟା ରହିବା ସ୍ୱାଭାବିକ ଯେହେତୁ ଆମର ସଖୀ ଯେପରି ବାନ୍ଧବମାନଙ୍କର ଦୁଃଖର କାରଣ ନହେବେ, ସେହିପରି ବ୍ୟବହାର କରିବେ' ଏତିକିମାତ୍ର ଅନୁରୋଧ କରିଥିଲେ । ଏହି ପ୍ରସଙ୍ଗରେ ଏ ସମସ୍ତ କଥା ନାୟିକାଙ୍କଦ୍ୱାରା କୁହାଇବା ସମୁଚିତ ହେବନାହିଁ, ଏହା ଭାବି କବି ଅନସୂୟା ଓ ପ୍ରିୟମ୍ବଦାଙ୍କୁ ଶକୁନ୍ତଳାଙ୍କର ପ୍ରିୟସଖୀ ରୂପେ ଉପସ୍ଥାପିତ କରିଅଛନ୍ତି । ଏହା ଛଡ଼ା କଣ୍ୱ ଶିଷ୍ୟ ଶାର୍ଙ୍ଗରବ ଓ ଶାରଦ୍ୱତ, ଶକୁନ୍ତଳାଙ୍କର ପାଳୟିତ୍ରୀ ତାପସୀ ଗୌତମୀ, ରାଜ-ପୁରୋହିତ, ମାଢବ୍ୟ ନାମକ ବିଦୂଷକ, ବୈଖାନସ, ସେନାପତି ପ୍ରଭୃତି ଅନେକ ପାତ୍ରଙ୍କୁ କବି କଥାବସ୍ତୁର ବିକାଶ ସକାଶେ କଳ୍ପନା କରିଅଛନ୍ତି । ସେମାନଙ୍କ ମଧ୍ୟରୁ କେତେକ ପାତ୍ର ଯଥା — ଶାରଦ୍ୱତ, ଶାର୍ଙ୍ଗରବ, ପୁରୋହିତ, ପ୍ରିୟମ୍ବଦା, ଓ ଗୌତମୀ 'ପଦ୍ମପୁରାଣ'ର ଶକୁନ୍ତଳୋପାଖ୍ୟାନରେ ଦେଖାଯାନ୍ତି । ତାହାଛଡ଼ା ପଦ୍ମପୁରାଣର କଥା ଶାକୁନ୍ତଳ କଥା ସହିତ ଅନେକ ଅଂଶରେ ସଦୃଶ । ଏହେତୁ କାଳିଦାସ ପଦ୍ମପୁରାଣରୁ ନିଜ ନାଟକର କଥାବସ୍ତୁ ଓ ଅନେକ ପାତ୍ର ସଂଗ୍ରହ କରିଅଛନ୍ତି ବୋଲି ଡା. ବିଣ୍ଟରନିଜ୍ ପ୍ରଭୃତି ସମାଲୋଚକମାନେ କହନ୍ତି । ଏହି ମତମାନଙ୍କର ସଂକ୍ଷିପ୍ତ ବିଚାର କରିବା ଆବଶ୍ୟକ ।

ପଦ୍ମପୁରାଣ ଓ ରଘୁବଂଶରେ ଦଳୀପଙ୍କଠାରୁ ଆରମ୍ଭ କରି ଦଶରଥ ପର୍ଯ୍ୟନ୍ତ ରଜାମାନଙ୍କ ବର୍ଣ୍ଣନାରେ ଅନେକ-ସ୍ଥାନରେ ଅଷ୍ଟର୍ଯକଳକ ଶବ୍ଦସାମ୍ୟ ଓ କଳ୍ପନାସାମ୍ୟ ପରିଲକ୍ଷିତ ହୁଏ, ଏହା ପୂର୍ବରୁ କହିଅଛୁଁ । ସେହିପରି ଏହି ନାଟକରେ ମଧ୍ୟ ସାମ୍ୟ ଦେଖାଯାଏ । ଦୁଷ୍ୟନ୍ତଙ୍କର ବିକଳ ମୃଗାନୁଧାବନ, ବୈଖାନସ କର୍ତ୍ତୃକ ନିବାରଣ, ଆଶ୍ରମରେ ପ୍ରବେଶ କଲାପରେ ବୃକ୍ଷସେଚନତତ୍ପର ଶକୁନ୍ତଳା ଓ ସଖୀଙ୍କ ଦର୍ଶନ, ପ୍ରଶ୍ନ କଲାପରେ ସଖୀମୁଖରେ ଶକୁନ୍ତଳା ଜନ୍ମବୃତ୍ତାନ୍ତ ବର୍ଣ୍ଣନ, ରଜାଙ୍କର ପ୍ରସ୍ଥାନପରେ ଦୁର୍ବାସାଙ୍କର ଶାପ, ହସ୍ତିନାପୁର ମାର୍ଗରେ ଏକ-ତୀର୍ଥରେ ମୁଦ୍ରିକାପତନ ଓ ଅଦର୍ଶନ, ଦୁଷ୍ୟନ୍ତଙ୍କର ସ୍ମୃତିଭ୍ରମ, ଶକୁନ୍ତଳାନିରାକରଣ, ଧୀବରଠାରୁ ମୁଦ୍ରିକାପ୍ରାପ୍ତି, ମୁଦ୍ରିକା-ଦର୍ଶନରେ ରଜାଙ୍କର ପଶ୍ଚାତ୍ତାପ ଓ ଶୋକ, ପରିଶେଷରେ ସ୍ୱର୍ଗରୁ ଫେରିଲାବେଳେ ମାରୀଚଙ୍କର ଆଶ୍ରମରେ ଶକୁନ୍ତଳା ଓ ସର୍ବଦମନଙ୍କ ମିଳନ ଇତ୍ୟାଦି ବିଷୟ 'ଶାକୁନ୍ତଳ' ଓ 'ପଦ୍ମପୁରାଣ'ରେ ସମାନ ଏବଂ ଏ ପ୍ରସଙ୍ଗମାନଙ୍କର ବର୍ଣ୍ଣନା ମଧ୍ୟ ଅନେକାଂଶରେ ସମାନ ଶବ୍ଦରେ କରାଯାଇଅଛି । କେତେକ ସ୍ଥଳରେ ବିଶିଷ୍ଟ ଭେଦ ମଧ୍ୟ ଦେଖାଯାଏ । ମହାଭାରତ ପରି ପଦ୍ମପୁରାଣରେ ମଧ୍ୟ କଣ୍ୱମହର୍ଷି ଅନ୍ୟସ୍ଥାନକୁ ଯାଇ ନାହାନ୍ତି କିନ୍ତୁ ଫଳ ଓ ପୁଷ୍ପ ଆହରଣ କରିବା ସକାଶେ ବଣକୁ ଯାଇଛନ୍ତି, ଏବଂ ସେ ଫେରିବା ପୂର୍ବରୁ ଦୁଷ୍ୟନ୍ତ ନଗରକୁ ଫେରି ଯିବାର ବର୍ଣ୍ଣନା କରାଯାଇଅଛି । ହସ୍ତିନାପୁରକୁ ଗିବା-ବେଳେ ଶାରଦ୍ୱତ, ଶାର୍ଙ୍ଗରବ, ଓ ଗୌତମୀଙ୍କ ସହିତ ପ୍ରିୟମ୍ବଦା ମଧ୍ୟ ଶକୁନ୍ତଳାଙ୍କ ସହିତ ଥିଲେ । ତୀର୍ଥରେ ସ୍ନାନ କଲାବେଳେ ଶକୁନ୍ତଳା ମୁଦ୍ରିକାଟି ପ୍ରିୟମ୍ବଦାକୁ ରଖିବାକୁ

ଦେଉଥିଲେ ଏବଂ ପ୍ରିୟମ୍ବଦା ତାଙ୍କୁ ଲତାରେ ବାନ୍ଧୁଥିଲେ ଏବଂ ଲତା ଚିରିଲାବେଳେ ତାହା ପାଣିରେ ପଡ଼ିଯାଉଥିଲା । ପ୍ରିୟମ୍ବଦା ଏ ବିଷୟ ଶକୁନ୍ତଳାଙ୍କୁ କହି ନଥିଲେ କି ଶକୁନ୍ତଳା ତାହା ମନେ ରଖିନଥିଲେ । କିନ୍ତୁ ରାଜାଙ୍କ ସମ୍ମୁଖରେ ମୁଦ୍ରିକା ଦରକାର ପଡ଼ିଲା, ସେ ପ୍ରିୟମ୍ବଦାଙ୍କୁ ମାଗିଲେ—ଏହି ବିଷୟ ପଦ୍ମପୁରାଣରେ ବର୍ଣ୍ଣିତ ହୋଇଅଛି । 'ଶାକୁନ୍ତଳ' ପର ମହା-ଭାରତ ବୃତ୍ତାନ୍ତ ସହିତ ମଧ୍ୟ ପଦ୍ମପୁରାଣ ବୃତ୍ତାନ୍ତର କେତେକ ଅଂଶରେ ଅତ୍ୟନ୍ତ ସାମଞ୍ଜସ୍ୟ ଦେଖାଯାଏ । ଶକୁନ୍ତଳାଙ୍କୁ ବଶ କରିବା ସକାଶେ ଦୁଷ୍ୟନ୍ତଙ୍କ ପ୍ରଲୋଭନ ପରିପୂର୍ଣ୍ଣ ଭାଷଣ, ବନରୁ ଫେରିଲାପରେ କଣ୍ୱଋଷିଙ୍କର ଶକୁନ୍ତଳା ଅଭିନନ୍ଦନ, ଶକୁନ୍ତଳାଙ୍କୁ ବରପ୍ରଦାନ, ରାଜାଙ୍କ ପ୍ରତ୍ୟାଖ୍ୟାନରେ ଅତ୍ୟନ୍ତ ସନ୍ତପ୍ତା ଶକୁନ୍ତଳାଙ୍କର ଭର୍ତ୍ସନାବାକ୍ୟରେ ରାଜାଙ୍କର ଉତ୍ତର, ମହାଭାରତ ଓ ପଦ୍ମପୁରାଣରେ ଏକବାରେ ଏକଶବ୍ଦରେ ରଚିତ କରାଯାଇଅଛି । ପ୍ରାୟ ଏକଶତ ଶ୍ଳୋକ ଏହି ଦୁଇ ଗ୍ରନ୍ଥରେ ସମାନ । ଏହି ସାମଞ୍ଜସ୍ୟ ଲକ୍ଷ୍ୟ କଲେ ବ୍ୟାସ ଓ କାଳିଦାସ ପଦ୍ମପୁରାଣର କଥା ଓ କଳ୍ପନା ନେଇ ନିଜ ଗ୍ରନ୍ଥ ରଚନା କରିଅଛନ୍ତି ଅଥବା ପଦ୍ମପୁରାଣକର୍ତ୍ତା 'ଶାକୁନ୍ତଳ'ର କେତେକ ପ୍ରସଙ୍ଗ ଓ ମହାଭାରତର କେତେକ ଭାଷଣ ନେଇ ଓ କେତେକ କଳ୍ପନା ମିଶାଇ ନିଜ କଥାବସ୍ତୁ ସଜାଇଅଛନ୍ତି—ଏହିପରି ଦୁଇପ୍ରକାର ପକ୍ଷ ସମ୍ଭବପର ହୋଇପାରେ । ଆମକୁ ଦ୍ୱିତୀୟ ପକ୍ଷ ଅଧିକ ଯୁକ୍ତିଯୁକ୍ତ ମନେହୁଏ । 'ହରିବଂଶ' ଓ 'ଭାଗବତ' ପ୍ରଭୃତି ପୁରାଣମାନଙ୍କରେ ମଧ୍ୟ ମହାଭାରତ କଥା ସଦୃଶ ଶକୁନ୍ତଳାଙ୍କର କଥା ବର୍ଣ୍ଣିତ ହୋଇଅଛି । ପଦ୍ମପୁରାଣର କଥା ପୁରୁଣା ହୋଇଥିଲେ ଏହି ପୁରାଣମାନଙ୍କରେ ଅବଶ୍ୟ ସ୍ଥାନ-

ପାଉଅଛନ୍ତି । ପୁରାଣ କାହାଣୀରେ ବହୁବାର ଶାରଦ୍ୱତ, ଶାର୍ଙ୍ଗରବ, ଗୌତମୀ, ପ୍ରିୟମ୍ୱଦା ପ୍ରଭୃତି ବିଶେଷ ଆବଶ୍ୟକ ନ ଥିବା ପାତ୍ରମାନଙ୍କର ନିର୍ଦ୍ଦେଶ ଦେଖାଯାଏ ନାହିଁ, ପଦ୍ମପୁରାଣରେ ମଧ୍ୟ ଶାର୍ଙ୍ଗରବ ଓ ଶାରଦ୍ୱତ ଏହି ଦୁଇଟି ଶିଷ୍ୟଙ୍କର ନାମ ଥିଲେ ମଧ୍ୟ କୌଣସି ସ୍ୱତନ୍ତ୍ର ଭାଷଣ ନ ଥିବାରୁ ସେମାନଙ୍କର ନାମ ନିର୍ଦ୍ଦେଶ ଆବଶ୍ୟକ ଅଙ୍ଗ ପରି ଜଣାଯାଏ ନାହିଁ । ପଦ୍ମପୁରାଣ ଉପାଖ୍ୟାନରେ କେବଳ କେତେକ ପାତ୍ର ଦେଖାଯାନ୍ତି, ତାର କାରଣ ଲେଖକ ସେହି କଥାବସ୍ତୁ କାଳିଦାସଙ୍କର ଶାକୁନ୍ତଳରୁ ସଂକ୍ଷେପରୂପରେ ନେଇଛନ୍ତି । ମତ୍ସ୍ୟପୁରାଣରେ ମଧ୍ୟ 'ବିକ୍ରମୋର୍ବଶୀୟ'ର କେତେକ ପ୍ରସଙ୍ଗ ଉଲ୍ଲିଖିତ ହୋଇଅଛି—ଏହା ଆମେ ଆଗରୁ କହିଅଛୁଁ । ସେହିପରି ପଦ୍ମପୁରାଣକାର 'ଶାକୁନ୍ତଳ'ର ପ୍ରସଙ୍ଗ ଓ ମହାଭାରତର ଓଜସ୍ୱୀ ଭାଷଣ ନେଇ ନିଜ ଶକୁନ୍ତଳୋପାଖ୍ୟାନର ବିଷୟବସ୍ତୁ ପରିପୁଷ୍ଟ କରିଛନ୍ତି ବୋଲି ପ୍ରତୀତ ହୁଏ ।

'ଶାକୁନ୍ତଳ'ର ସଂବିଧାନକୁ 'ମାଳବିକାଗ୍ନିମିତ୍ର'ର ସଂବିଧାନକ ପରି ଉଲଗ୍ନ ହୋଇନାହିଁ, ତଥାପି ତାହାର ପ୍ରସଙ୍ଗମାନଙ୍କରେ ସନ୍ନିବେଶ ଏତେ କୁଶଳତା ସହକାରେ କରାଯାଇଅଛି ଯେ ଦର୍ଶକମାନଙ୍କର ଉତ୍କଣ୍ଠା ଅଙ୍କର ସମାପ୍ତିପର୍ଯ୍ୟନ୍ତ ଉତ୍ତରୋତ୍ତର ବଢ଼ିଅଛି । ଏଥିରେ ନାନାପ୍ରକାର ଘଟନା ଏକପରେ ଏକ ଅତ୍ୟନ୍ତ ସ୍ୱାଭାବିକ ରୀତିରେ ଉତ୍ପନ୍ନ ହେବା ଦେଖାଯାଏ । ଏ ସମସ୍ତ ପ୍ରଧାନ ଲକ୍ଷ୍ୟଭୂତ ଘଟନା ସହିତ ନ୍ୟୁନାଧିକ ଭାବେ ସମ୍ବଦ୍ଧ । ଏକ ଦୁଇ ସ୍ଥଳରେ ଆକାଶବାଣୀ ପ୍ରଭୃତି ଅଦ୍ଭୁତ ବିଷୟମାନଙ୍କର ମଧ୍ୟ ଅବତରଣ କଥାବସ୍ତୁର ବିକାଶ ପକାଶେ କରି କରି-

ଅଛନ୍ତି । ତଥାପି ସେହି ସମୟର ଲୋକମାନଙ୍କ ପକ୍ଷରେ ସେ ସମସ୍ତ ଅସମ୍ଭବନୀୟ ବୋଧ ହେଉ ନଥିଲା ଏହା-ଆମ୍ଭେମାନେ ମନେ ରଖିବାକୁ ହେବ । ଏହି ନାଟକର ପ୍ରତ୍ୟେକ ପ୍ରବେଶ ବିଶେଷତଃ ପ୍ରତ୍ୟେକ ପ୍ରସଙ୍ଗ ସହେତୁକ । ଉଦାହରଣ-ସ୍ୱରୂପ ପଞ୍ଚମାଙ୍କରେ ହଂସପଦିକାଗାନ ଧରନ୍ତୁ । ଏହା ଫଳରେ ଶକୁନ୍ତଳାଙ୍କର ଆଗାମୀ ନିରାକରଣ ଦର୍ଶକମାନଙ୍କ ଆଗରୁ ମିଳୁଅଛି । ପୂର୍ବଘଟିତ ବୃତ୍ତାନ୍ତ ରାଜାଙ୍କ ମନରେ ସ୍ପଷ୍ଟରୂପେ ପ୍ରତିଭାତ ହେଉନାହିଁ, ତଥାପି ତାଙ୍କ ମନର ଉତ୍କଣ୍ଠା ରହିଯାଉଅଛି । ଗୀତ ଶୁଣିଲାପରେ ନିଜ ସନ୍ଦେଶ ଜଣାଇବା ସକାଶେ ସେ ବିଦୂଷକଙ୍କୁ ହଂସପଦିକାଙ୍କ ପାଖକୁ ପଠାଇ ଦେଇଛନ୍ତି । ସେ ଗଲାପରେ ଶକୁନ୍ତଳାଙ୍କ ବିଷୟ ଜାଣିବା ଲୋକ କେହିହେଲେ ରାଜାଙ୍କ ପାଖରେ ରହି ନଥିଲେ । ଏ ହେତୁ ପଞ୍ଚମାଙ୍କରେ ଶକୁନ୍ତଳାଙ୍କର ପ୍ରତ୍ୟାଖ୍ୟାନ ପ୍ରସଙ୍ଗ ଅସ୍ୱାଭାବିକ ବୋଧ ହୁଏ ନାହିଁ । ଏସବୁ ଉଦ୍ଦେଶ୍ୟରେ କବି ଏହି ଗାନର ଅବତାରଣା ପଞ୍ଚମାଙ୍କର ଆରମ୍ଭରେ କରିଅଛନ୍ତି । ଶେଷ ଅଙ୍କରେ ଦୁଷ୍ୟନ୍ତଙ୍କର ସର୍ବଦମନଙ୍କ ପରିଚୟ ଧୀରେ ଧୀରେ ଅଥଚ ପ୍ରବଳ କାରଣ-ସହକାରେ କରାଯାଇଅଛି । ଏହି ପ୍ରସଙ୍ଗ ଅତିବିଜ୍ଞ୍ଛତାଭାବେ ରଚିତ ।

'ଶାକୁନ୍ତଳ' ନାଟକର ଭାଷା ଅତ୍ୟନ୍ତ ପ୍ରସାଦଯୁକ୍ତ ଓ ରମଣୀୟ । ଏଥିରେ ଉପମା, ଉତ୍ପ୍ରେକ୍ଷା, ସ୍ୱଭାବୋକ୍ତି, ଅର୍ଥାନ୍ତରନ୍ୟାସ ପ୍ରଭୃତି ଅନେକ ଅଳଙ୍କାର ପ୍ରସଙ୍ଗ କ୍ରମେ ସ୍ଥାନ ପାଇଛି । ଭାଷାରେ କୌଣସିଠାରେ କ୍ଲିଷ୍ଟତା, କଳ୍ପନାକାଠିନ୍ୟ, ଦୁରାନ୍ୱୟ ପ୍ରଭୃତି ଦୋଷ ଦେଖାଯାଏ ନାହିଁ । ପ୍ରତ୍ୟେକ ପାତ୍ରର ମୁଖରୁ ଅନୁରୂପ

ଭୂଷା, ୧ବଂ ଯାହା ସୌନ୍ଦର୍ଯ୍ୟରେ ରହିବା ଉଚିତ, ତାହାଙ୍କ ଅଳଙ୍କାର ସନ୍ନିବେଶିତ କରିବାରେ କବି ଅତ୍ୟନ୍ତ ସାବଧାନତା ଅବଲମ୍ବନ କରିଅଛନ୍ତି । ଶକୁନ୍ତଳା ଓ ତାଙ୍କର ସଖୀମାନେ ସବୁବେଳେ ଲତାବୃକ୍ଷାଦିଙ୍କ ସହବାସରେ ଖେଳାବୁଲ୍ଲ କରନ୍ତି । ଅତଏବ ସେମାନଙ୍କର ଆଳାପରେ 'କୋ ଇଦାନୀଂ ସହକାର-ମନ୍ତରେଣାତିମୁକ୍ତଲତାଂ ପଲ୍ଲବିତାଂ ସହତେ' ( ଅମ୍ବ ବୃକ୍ଷ ଛଡ଼ା ଆଉ କିଏ ପଲ୍ଲବିତା ମାଧବୀ ଲତାର ଯୋଗ୍ୟ ହେବ ?) 'କୋ ନାମୋଷ୍ଣୋଦକେନ ନବମଲ୍ଲିକାଂ ସିଞ୍ଚତି?' (କିଏ ବା ନବମଲ୍ଲିକା ଉପରେ ଗରମ ଜଳ ପକାଇବ ? ) ଏହିମଣି ଲତାବୃକ୍ଷ ସମ୍ବନ୍ଧ ସୁଭାଷିତମାନ ବ୍ୟବହୃତ ହୋଇଅଛି । କଣ୍ୱମହର୍ଷି ସବୁବେଳେ ଯାଗ ଯଜ୍ଞରେ ଓ ଅଧ୍ୟାପନାଦି କର୍ମରେ ନିମଗ୍ନ ରହନ୍ତି । ଏ ହେତୁ ଯଦି ସେ 'ଦିଷ୍ଟ୍ୟା ଧୂମାକୁଳଦୃଷ୍ଟେରପି ଯଜମାନସ୍ୟ ପାବକ-ଏବାହୁତିଃ ପତିତା' (ଦୃଷ୍ଟି ଧୂଆଁରେ ବ୍ୟାକୁଳ ହେଲେ ମଧ୍ୟ ଯଜମାନର ଆହୁତି ଭାଗ୍ୟବଶତଃ ଅଗ୍ନିରେ କେବଳ ପଡ଼ିଅଛି ! ) 'ବତ୍ସେ, ସୁଶିଷ୍ୟପରିଦତ୍ତେବ ବିଦ୍ୟାଽଶୋଚନୀୟାସି ସଂବୃତ୍ତା ।' (ମା, ଉତ୍ତମଶିଷ୍ୟକୁ ଦିଆଯିବା ବିଦ୍ୟାପରି ତୁମ ବିଷୟରେ ଆଉ ଶୋକ କରିବାର ଅବକାଶ ନାହିଁ । ) ଏତାଦୃଶ ଦୃଷ୍ଟାନ୍ତ ଓ ଉପମାମାନଙ୍କର ପ୍ରୟୋଗ କରିଅଛନ୍ତି, ଏଥିରେ ବିସ୍ମିତ ହେବା ଅବକାଶ ନାହିଁ । ସବୁବେଳେ ଖାଦ୍ୟପ୍ରିୟ ଓ ବଟନାପ୍ରିୟ ବିଦୂଷକଙ୍କର ମୁଖରେ ପ୍ରତିବନ୍ଧ ଏହି ଉପମାରେ ପ୍ରତିଫଳିତ । 'ଯଥା କସ୍ୟାପି ପିଣ୍ଡଖର୍ଜୁରୈରୁଦ୍ୱେଜିତସ୍ୟ ତିନ୍ତିଣ୍ୟାମ-ଭିଲାଷୋ ଭବେତ୍, ତଥା ସ୍ତ୍ରୀରତ୍ନପରିଭୋଗିଣୋ ଭବତ ଇୟ-ମଭ୍ୟର୍ଥନା' ( ଯେପରି ପିଣ୍ଡଖଜୁରୀ ଖାଇ ଖାଇ ମନ୍ଦୁକିଆ ହୋଇଥିବା ଲୋକର ତେନ୍ତୁଳିରେ ଅଭିଳାଷ ହୋଇଥାଏ, ସେହିପରି ସ୍ତ୍ରୀ-

ଚନ୍ଦ୍ରମାନଙ୍କ ଭୋଗ କରି କରି ଅଭ୍ୟସ୍ତ ଆପଣଙ୍କର ଏହି ଅଭିଳାଷ ହୋଇଅଛି ।' ନାଟକର ପ୍ରତ୍ୟେକ ଶ୍ଳୋକ ଶ୍ଳୋକ ଓ ଚମତ୍କାର ପୂର୍ଣ୍ଣ ହେବା ହେତୁ ସେ ସମସ୍ତ ପଢ଼ିବାବେଳେ ବା ଶୁଣିବାବେଳେ ପାଠକ ଓ ଦର୍ଶକ— ଦୁହିଙ୍କର ଚିତ୍ତ ପ୍ରସନ୍ନ ହୋଇଥାଏ । ଏ ସମସ୍ତ ପ୍ରସଙ୍ଗ ଦେଖିଲେ ଦର୍ଶକର ମନେହୁଏ- ଆମେ ନାଟକର ପ୍ରସଙ୍ଗ ଦେଖୁନାହୁଁ କିନ୍ତୁ ପ୍ରକୃତ ଘଟଣାମାନ ସାକ୍ଷାତ୍ କରୁଅଛୁଁ ।, ଏଥିରୁ କାଳିଦାସଙ୍କର କଳାଚାତୁରୀର ଉତ୍କର୍ଷ ପ୍ରତୀତ ହୁଏ ।

'ଶାକୁନ୍ତଳ'ରେ ସମ୍ଭୋଗ ଓ ବିପ୍ରଲମ୍ଭ ଦୁଇପ୍ରକାର ଶୃଙ୍ଗାର, କରୁଣ ଓ ଶାନ୍ତ— ଏମାନେ ପ୍ରଧାନ ରସ । ପ୍ରଥମ ତିନି ଅଙ୍କରେ ଶୃଙ୍ଗାର ରସର ସାମ୍ରାଜ୍ୟ । ତଥାପି ପ୍ରସଙ୍ଗକ୍ରମେ ଅନ୍ୟାନ୍ୟ ରସମାନଙ୍କର ମଧ୍ୟ ସମାବେଶ ଦେଖାଯାଏ । ପ୍ରଥମାଙ୍କର ଆରମ୍ଭରେ ଦୁଷ୍ୟନ୍ତଙ୍କ ଆଗେ ନିଜ ଜୀବନରକ୍ଷା ସକାଶେ ପଳାୟମାନ ମୃଗ ଓ ଅଙ୍କ ଶେଷରେ ହାତୀର ଉପଦ୍ରବ ବର୍ଣ୍ଣନାରେ ଭୟାନକ ରସ, ଦ୍ୱିତୀୟାଙ୍କରେ ବିଦୂଷକଙ୍କର ବିନୋଦୀ ଭାଷଣରେ ହାସ୍ୟ, ତୃତୀୟାଙ୍କଶେଷରେ ରାକ୍ଷସମାନଙ୍କ ବିଘ୍ନ- ବର୍ଣ୍ଣନାରେ ଭୟାନକ— ଏହିପରି ଅନ୍ୟାନ୍ୟ ରସମାନଙ୍କର ଶୃଙ୍ଗାରରସ ସହିତ ସମାବେଶ ବର୍ଣ୍ଣିତ ହୋଇଅଛି । ଚତୁର୍ଥାଙ୍କରେ ଆକାଶବାଣୀ ଓ ବନଦେବତାମାନଙ୍କ ପ୍ରଦତ୍ତ ବସ୍ତ୍ରାଳଙ୍କାର— ବର୍ଣ୍ଣନାରେ ଅଦ୍ଭୁତ ରସର ଅବତରଣ ଦେଖାଯାଏ । କିନ୍ତୁ କରୁଣ କେବଳ ଏହି ଅଙ୍କର ପ୍ରଧାନ ରସ । ଏକ ସୁଭାଷିତକାର କହିଅଛନ୍ତି— ଏହି ଅଙ୍କ ସମ୍ପୂର୍ଣ୍ଣ ଉତ୍କୃଷ୍ଟ ବର୍ଣ୍ଣନା ସମଗ୍ର ସଂସ୍କୃତ ବାଙ୍ମୟରେ ବିରଳ । ଏହା ସର୍ବସମ୍ମତ ।

ପଞ୍ଚମାଙ୍କରେ ଦୁଷ୍ୟନ୍ତ ଓ ଶକୁନ୍ତଳାଙ୍କର ବାକ୍‌ବିତଣ୍ଡାପ୍ରସଙ୍ଗଟି ଅତ୍ୟନ୍ତ ଉପଭୋଗ୍ୟ । ରାଜାଙ୍କଦ୍ୱାରା ପ୍ରତ୍ୟାଖ୍ୟାତା ଶକୁନ୍ତଳାଙ୍କ ମୁଖରେ ରୌଦ୍ର ରସ, ପରେ ତାଙ୍କର ଅସହାୟ ଅବସ୍ଥାଦର୍ଶନରେ କରୁଣ ରସ, ପରିଶେଷରେ ଅପ୍‌ସରାତୀର୍ଥ ସମୀପରେ ତାଙ୍କର ଅନ୍ତର୍ଧାନରେ ଅଦ୍ଭୁତ ରସ—ଏହିପରି ଅନେକ ରସ ଦର୍ଶକମାନେ ଅନୁଭବ କରିପାରୁଛନ୍ତି । ଷଷ୍ଠାଙ୍କରେ କରୁଣ ଓ ଶୃଙ୍ଗାରରସର ପରିପୋଷ ଅତି ଉତ୍କୃଷ୍ଟ ଧରଣରେ କରାଯାଇଅଛି । ବିରହପୋଷଣୀଦୃଷ୍ଟିରେ ଚତୁର୍ଥ ଅଙ୍କରେ ଏକପାତ୍ର ପାତ୍ର ଶୋକାକୁଳ ହୋଇ ରୋଦନ କରୁଥିବା ଦେଖି ଦେଖି ଦର୍ଶକ ଥକିଯାଏ ଓ ସେହି ରସର ଉତ୍ତମରୂପେ ଆସ୍ୱାଦ ଘଟିପାରେ ନାହିଁ । ତାହା ପ୍ରତ୍ୟକ୍ଷ କରି କବି ରାଜାଙ୍କର କରୁଣ, ଓ ଶୃଙ୍ଗାର ରସକୁ ବିଦୂଷକଙ୍କର ହାସ୍ୟରସରେ ସମ୍ମିଳିତ କରିଅଛନ୍ତି । ଶେଷଅଙ୍କରେ ସର୍ବଦମନ ଓ ଦୁଷ୍ୟନ୍ତଙ୍କ ମିଳନପ୍ରସଙ୍ଗରେ ଅଦ୍ଭୁତ ଓ ବତ୍ସଲ ଏବଂ ପରିଶେଷରେ ମାରୀଚଋଷିଙ୍କର ସାନ୍ନିଧ୍ୟରେ ଶାନ୍ତପ୍ରକୃତ ରସର ଆବିର୍ଭାବ ଦେଖାଯାଏ । ନାଟକର ଅବସାନରେ ଦର୍ଶକମାନଙ୍କର ଚିତ୍ତବୃତ୍ତି ଅନେକ ରସର ଅନୁଭବପରେ ଶାନ୍ତରସରେ ମଗ୍ନ ହୋଇ ଯାଏ ।

ଆକର୍ଷକ ସଂବିଧାନକ, ସୁମଧୁର ଭାଷା, ଉତ୍କୃଷ୍ଟ ବର୍ଣ୍ଣନାଶୈଳୀ ଉତ୍କୃଷ୍ଟରସପରିପୋଷ ଇତ୍ୟାଦି ଗୁଣ 'ଶାକୁନ୍ତଳ' ନାଟକରେ ଦେଖାଯାଏ । କିନ୍ତୁ ଏ ସମସ୍ତ ଅପେକ୍ଷା ଅତ୍ୟନ୍ତ କୌଶଳପୂର୍ଣ୍ଣତା-ସହକାରେ ସମ୍ପାଦିତ ପ୍ରକୃତିଚିତ୍ରଣ ରସିକମାନଙ୍କର ଚିତ୍ତ-ଆକୃଷ୍ଟ କରେ । ଏଥିରେ ଦୁଷ୍ୟନ୍ତ, ବିଦୂଷକ, କଣ୍ୱ—ଏହି ତିନୋଟି ପୁରୁଷପାତ୍ର, ଏବଂ ଶକୁନ୍ତଳା, ଅନସୂୟା ଏବଂ

ଚନ୍ଦ୍ରମାନଙ୍କ ଭୋଗ କରି କରି ଅଭ୍ୟସ୍ତ ଆପଣଙ୍କର ଏହ ଅଭିଳାଷ ହୋଇଅଛି ।' ନାଟକର ତାତ୍ପର୍ଯ୍ୟଶୀଳ ଛୋଟ ଛୋଟ ଓ ଚମତ୍କାର ପୂର୍ଣ୍ଣ ହେବା ହେତୁ ସେ ସମସ୍ତ ପଢ଼ିବାବେଳେ ବା ଶୁଣିବାବେଳେ ପାଠକ ଓ ଦର୍ଶକ— ଦୁହିଙ୍କର ଚିତ୍ତ ପ୍ରସନ୍ନ ହୋଇଥାଏ । ଏ ସମସ୍ତ ପ୍ରସଙ୍ଗ ଦେଖିଲେ ଦର୍ଶକର ମନେହୁଏ-ଆମେ ନାଟକର ପ୍ରସଙ୍ଗ ଦେଖୁନାହୁଁ କିନ୍ତୁ ପ୍ରକୃତ ଘଟଣାମାନ ସାକ୍ଷାତ୍ କରୁଅଛୁଁ ।, ଏଥିରୁ କାଳିଦାସଙ୍କର କଳାଚାତୁରୀରେ ଉତ୍କର୍ଷ ପ୍ରତୀତ ହୁଏ ।

'ଶାକୁନ୍ତଳ'ରେ ସମ୍ଭୋଗ ଓ ବିପ୍ରଲମ୍ଭ ଦୁଇପ୍ରକାର ଶୃଙ୍ଗାର, କରୁଣ ଓ ଶାନ୍ତ— ଏମାନେ ପ୍ରଧାନ ରସ । ପ୍ରଥମ ତିନି ଅଙ୍କରେ ଶୃଙ୍ଗାର ରସର ସାମ୍ରାଜ୍ୟ । ତଥାପି ପ୍ରସଙ୍ଗକ୍ରମେ ଅନ୍ୟାନ୍ୟ ରସମାନଙ୍କର ମଧ୍ୟ ସମାବେଶ ଦେଖାଯାଏ । ପ୍ରଥମାଙ୍କର ଆରମ୍ଭରେ ଦୁଷ୍ୟନ୍ତଙ୍କ ଆଗେ ନିଜ ଜୀବନରକ୍ଷା ସକାଶେ ପଳାୟ-ମାନ ମୃଗ ଓ ଅଙ୍କ ଶେଷରେ ହାତୀର ଉପଦ୍ରବ ବର୍ଣ୍ଣନାରେ ଭୟାନକ ରସ, ଦ୍ୱିତୀୟାଙ୍କରେ ବିଦୂଷକଙ୍କର ବିନୋଦୀ ଭାଷଣରେ ହାସ୍ୟ, ତୃତୀୟାଙ୍କଶେଷରେ ରାକ୍ଷସମାନଙ୍କ ବିଘ୍ନ-ବର୍ଣ୍ଣନାରେ ଭୟାନକ— ଏହିପରି ଅନ୍ୟାନ୍ୟ ରସମାନଙ୍କର ଶୃଙ୍ଗାରରସ ସହିତ ସମାବେଶ ବର୍ଣ୍ଣିତ ହୋଇଅଛି । ଚତୁର୍ଥାଙ୍କରେ ଆକାଶବାଣୀ ଓ ବନଦେବତାମାନଙ୍କ ପ୍ରଦତ୍ତ ବସ୍ତ୍ରାଳଙ୍କାର— ବର୍ଣ୍ଣନାରେ ଅଦ୍ଭୁତ ରସର ଅବତରଣ ଦେଖାଯାଏ । କିନ୍ତୁ କରୁଣ କେବଳ ଏହି ଅଙ୍କର ପ୍ରଧାନ ରସ । ଏକା ଧୁରନ୍ଧିତକାର କହିଅଛନ୍ତି— ଏହି ଅଙ୍କ ସନ୍ଦେଶ ଉତ୍କୃଷ୍ଟ ବର୍ଣ୍ଣନା ସମଗ୍ର ସଂସ୍କୃତ ବାଙ୍ମୟରେ ବିରଳ । ଏହା ସର୍ବ . ବିସମ୍ମତ ।

ପଞ୍ଚମାଙ୍କରେ ଦୁଷ୍ୟନ୍ତ ଓ ଶକୁନ୍ତଳାଙ୍କର ବାକ୍‌କଳହପ୍ରସଙ୍ଗଟି ଅତ୍ୟନ୍ତ ଉପଭୋଗ୍ୟ । ରାଜାଙ୍କଦ୍ୱାରା ପ୍ରତ୍ୟାଖ୍ୟାତା ଶକୁନ୍ତଳାଙ୍କ ଭର୍ତ୍ସନାରେ ରୌଦ୍ରରସ, ପରେ ତାଙ୍କର ଅସହାୟ ଅବସ୍ଥାଦର୍ଶନରେ କରୁଣ ରସ, ପରିଶେଷରେ ଅପ୍‌ସରତୀର୍ଥ ସମୀପରେ ତାଙ୍କର ଅନ୍ତର୍ଧାନରେ ଅଦ୍ଭୁତ ରସ—ଏହିପରି ଅନେକରସ ଦର୍ଶକମାନେ ଅନୁଭବ କରୁଥାନ୍ତି । ଷଷ୍ଠାଙ୍କରେ କରୁଣ ଓ ଶୃଙ୍ଗାରରସର ସମ୍ମେଳନ ଅତି ଉତ୍କୃଷ୍ଟ ଧରଣରେ କରାଯାଇଅଛି । ବିକ୍ରମୋ-ର୍ବଶୀୟରେ ଚତୁର୍ଥ ଅଙ୍କରେ ଏକମାତ୍ର ପାତ୍ର ଶୋକାକୁଳ ହୋଇ ରୋଦନ କରୁଥିବା ଦେଖି ଦେଖି ଦର୍ଶକ ଥକିଯାଏ ଓ ସେହି ରସର ଉତ୍ତମରୂପେ ଆସ୍ୱାଦ ଘଟିପାରେ ନାହିଁ । ତାହା ପ୍ରତ୍ୟକ୍ଷ କରି କବି ରାଜାଙ୍କର କରୁଣ, ଓ ଶୃଙ୍ଗାର ରସକୁ ବିଦୂଷକଙ୍କର ହାସ୍ୟରସରେ ସମ୍ମିଳିତ କରିଅଛନ୍ତି । ଶେଷଅଙ୍କରେ ସର୍ବଦମନ ଓ ଦୁଷ୍ୟନ୍ତଙ୍କ ମିଳନପ୍ରସଙ୍ଗରେ ଅଦ୍ଭୁତ ଓ ବତ୍ସଳ ଏବଂ ପରିଶେଷରେ ମାରୀଚଋଷିଙ୍କର ସାନ୍ନିଧ୍ୟରେ ଶାନ୍ତପ୍ରଭୃତ ରସର ଆବିର୍ଭାବ ଦେଖାଯାଏ । ନାଟକର ଅବସାନରେ ଦର୍ଶକମାନଙ୍କର ଚିତ୍ତବୃତ୍ତି ଅନେକ ରସର ଅନୁଭବପରେ ଶାନ୍ତରସରେ ମଗ୍ନ ହୋଇ ଯାଏ ।

ଆକର୍ଷକ ସଂବିଧାନକ, ସୁମଧୁର ଭାଷା, ଉତ୍କୃଷ୍ଟ ବର୍ଣ୍ଣନାଶୈଳୀ ଉତ୍କଟରସପରିପୋଷ ଇତ୍ୟାଦି ଗୁଣ 'ଶାକୁନ୍ତଳ' ନାଟକରେ ଦେଖାଯାଏ । କିନ୍ତୁ ଏ ସମସ୍ତ ଅପେକ୍ଷା ଅତ୍ୟନ୍ତ ନିପୁଣତା-ସହକାରେ ସମ୍ପାଦିତ ପ୍ରକୃତିଚିତ୍ରଣ ରସିକମାନଙ୍କର ଚିତ୍ତ-ଆକୃଷ୍ଟ କରେ । ଏଥିରେ ଦୁଷ୍ୟନ୍ତ, ବିଦୂଷକ, କଣ୍ୱ—ଏହି ତିନୋଟି ପୁରୁଷପାତ୍ର, ଏବଂ ଶକୁନ୍ତଳା, ଅନସୂୟା ଏବଂ

ପ୍ରିୟମ୍ବଦା—ଏହି ତନୋଟି ସ୍ତ୍ରୀପାତ୍ର ପ୍ରଧାନ । ଏମାନଙ୍କ ଛଡ଼ା କବି କଥାବସ୍ତୁର କୋଣସିକାଳେ ଦୁର୍ବାସା ମାରୀଚ ପ୍ରଭୃତି ଋଷି, ଗୌତମୀ ଓ ଅଦିତି ପ୍ରଭୃତି ତପସ୍ୱିନୀ, ସାନୁମତୀ ଅପ୍ସରା, ଶାର୍ଙ୍ଗରବ ଓ ଶାରଦ୍ୱତ କଣ୍ୱଶିଷ୍ୟ, ବୈଖାନସ, ସେନାପତି, କଞ୍ଚୁକୀ, ରାଜଶ୍ୟାଳ, ଧୀବର, ରାଜପୁରୁଷ ପ୍ରଭୃତି ପାତ୍ରମାନଙ୍କର ଯୋଜନା କରିଅଛନ୍ତି । ଏସମସ୍ତ ମଧ୍ୟରେ ନାୟକ ଦୁଷ୍ୟନ୍ତ ଓ ନାୟିକା ଶକୁନ୍ତଳା ଏ ଦୁହିଙ୍କର ସ୍ୱଭାବ ଚିତ୍ରଣରେ କବି ନିଜର ଧମସ୍ତ କଳା ପ୍ରଦର୍ଶିତ କରିଅଛନ୍ତି ।

କାଳିଦାସଙ୍କର ନାୟକମାନଙ୍କ ମଧ୍ୟରେ ଦୁଷ୍ୟନ୍ତ ଶ୍ରେଷ୍ଠ । ସେ ଅକୃତିରେ ମନୋରମ, ଓ ପ୍ରକୃତିରେ କୋମଳ, ଗମ୍ଭୀର ଆକୃତି ଓ ମଧୁର ସମ୍ଭାଷଣରେ ଅନ୍ୟମାନଙ୍କର ମନ ଏକବାରେ ଆକୃଷ୍ଟ କରିନିଅନ୍ତି । ଏ ମଧ୍ୟ ପୁରୁରବା ପରି ପରାକ୍ରମୀ । ରାଜ୍ୟ ରକ୍ଷା କରିବା ସକାଶେ ଧନୁରେ ବାଣଯୋଜନା ମଧ୍ୟ ଆବଶ୍ୟକ ହେଉ ନଥିଲା । ଏହାଙ୍କର ଧନୁର ଟଙ୍କାରଧ୍ୱନିରେ ସମସ୍ତ ବିଘ୍ନ ଦୂର ହୋଇଯାଉଥିଲା । ଏହେତୁ ସେ ସମସ୍ତ ସୈନିକଙ୍କୁ ବଧୂପକଙ୍କ ଗହଣରେ ଛାଡ଼ିଦେଇ ରାକ୍ଷସମାନଙ୍କର ନିବାରଣ ସକାଶେ ଏକାକୀ ଆଶ୍ରମରେ ପ୍ରବେଶ କରିଥିଲେ । ରାକ୍ଷସମାନଙ୍କ ସହିତ ଯୁଦ୍ଧ କରିବାକୁ ସ୍ୱୟଂ ଇନ୍ଦ୍ର ଏହାଙ୍କୁ ଡକାଇଥିଲେ ଏବଂ ବିଜୟପରେ ପୁନର୍ବାର ନିଜ ସିଂହାସନର ଅର୍ଦ୍ଧାସନରେ ବସାଇ ନିଜ ବକ୍ଷସ୍ଥଳର ମନ୍ଦାରମାଳା ଏହାଙ୍କ ଗଳାରେ ଦେଇ ସମ୍ମାନ କରିଥିଲେ । ରାଜ୍ୟରେ ମଧ୍ୟ ଏହାଙ୍କର ବିଲକ୍ଷଣ ପ୍ରଭାବ ଥିଲା । ଏହାଙ୍କ ରାଜ୍ୟରେ ଅତି ନିକୃଷ୍ଟ ସ୍ତରର ପ୍ରଜା ମଧ୍ୟ କୁମାର୍ଗଗାମୀ ହୋଇପାରୁ ନଥିଲେ-

ବୋଲି ଶାର୍ଙ୍ଗରବ କହିଅଛନ୍ତି । ନେତ୍ରଳଙ୍କର ମୁଦ୍ରିକା ପାଇଲାପରେ ତାଙ୍କର ପଶ୍ଚାତ୍ତାପ ହେଲା । ସେହି ଦୁଃଖରେ ସେ ବସନ୍ତୋତ୍ସବ ମନା କରିଦେଇଥିଲେ । ସେ ସଂପୁରରେ ଲତା, ବୃକ୍ଷ ଓ ତହିଁରେ ବାସ କରୁଥିବା ପକ୍ଷୀ ମଧ୍ୟ ତାଙ୍କର ଆଦେଶ ପାଳନ କରୁଥିଲେ ବୋଲି କଞ୍ଚୁକୀ ବର୍ଣ୍ଣନା କରି ଅଛନ୍ତି । ସାନୁମତୀ ସେଥିରେ ଟିକିଏ ହେଲେ ଅତିଶୟୋକ୍ତି ଥିଲା ପରି ଭାବିନଥିଲେ । ସେ କହିଲେ - ଏ ଜଣେ ମହାପ୍ରଭାବଶାଳୀ ରାଜର୍ଷି । ଦୁଷ୍ୟନ୍ତଙ୍କର ପରାକ୍ରମ ସ୍ୱର୍ଗପୁରରେ ବନ୍ଦିତ ଥିଲା । ଅସୁରମାନଙ୍କୁ ଜୟ କରି ମଧ୍ୟ ସେ ତିଳେ ହେଲେ ଗର୍ବ କରି ନ ଥିଲେ । ତାହା ଇନ୍ଦ୍ରଙ୍କର ପ୍ରଭାବର ଫଳ ବୋଲି ଅତିବିନୟସହକାରେ କହିଥିଲେ । ବିନୀତବେଶରେ ଆଶ୍ରମରେ ପ୍ରବେଶ କରିବାକୁ ହେବାରୁ ସେ ନିଜର ବହୁମୂଲ୍ୟ ପରିଚ୍ଛଦ ଓ ଅଳଙ୍କାର ସାରଥିଙ୍କ ପାଖରେ ରଖି ଦେଇଥିଲେ । ଦୁଷ୍ଟଦମନ ଓ ଶିଷ୍ଟ-ରକ୍ଷଣସକାଶେ କେବଳ ସେ ନିଜ ପରାକ୍ରମର ଉପଯୋଗ କରୁଥିଲେ । ସେ ଅତ୍ୟନ୍ତ ଧାର୍ମିକ, ପାପଭୀରୁ ଓ ପ୍ରଜାପାଳନତତ୍ପର ଥିଲେ । କଣ୍ୱ ଋଷିଙ୍କର ଶିଷ୍ୟମାନଙ୍କର ଆଗମନ ଶୁଣିବା ମାତ୍ରେ ସେ ଭାବିଲେ—କିଅବା ଆଶ୍ରମରେ ତପସ୍ୟାରେ ବିଘ୍ନ ହେଲା, ନା ଆଶ୍ରମବାସୀ ପ୍ରାଣୀମାନଙ୍କୁ କିଏ ପୀଡ଼ା ଦେଲା, ନା ମୋର ପାପ ଫଳରେ ଆଶ୍ରମସ୍ଥ ଲତାମାନଙ୍କର ଫଳ ପୁଷ୍ପ ବନ୍ଦ ହୋଇଅଛି—ଏହିପରି ନାନା ପ୍ରକାର ବିକଳ୍ପରେ ତାଙ୍କର ମନ ବ୍ୟାକୁଳ ହୋଇଥିଲା । ମୁଁ ଋଷିମାନଙ୍କୁ ରକ୍ଷା କରେ, ତା ବଦଳରେ ସେମାନେ ତପସ୍ୟାର ଷଷ୍ଠାଂଶ ଦେଇଥାନ୍ତି ବୋଲି ସେ ମନେ କରୁଥିଲେ । ସେ ଧୃତିବଳେ ସତର୍କ ରହି ପ୍ରଜାମାନଙ୍କୁ ରକ୍ଷା କରୁଥିଲେ । ଲୋକମାନଙ୍କୁ କୁମାର୍ଗରୁ ବିରତ

କର, ସେମାନଙ୍କର କଳହ—ଅଶାନ୍ତି ଦୂର କରି, ସେମାନଙ୍କୁ ସୁରକ୍ଷିତ କରିବା ନିଜର କର୍ତ୍ତବ୍ୟ ମନେ କରୁଥିଲେ । ପାପକାର୍ଯ୍ୟ ଛଡ଼ା, ପ୍ରଜାମାନେ ଯେଉଁ ଯେଉଁ ଆତ୍ମୀୟମାନଙ୍କ ଦ୍ୱାରା ବଞ୍ଚିତ ହେଉଅଛନ୍ତି, ତାଙ୍କୁ ସେହିପରି ଭାବନ୍ତୁ ବୋଲି ଘୋଷଣା କରିଥିଲେ ।' ଧନ ପ୍ରତି ତାଙ୍କର ମୋଟେ ଲାଳସା ନ ଥିଲା । ଜଳ ବ୍ୟବସାୟୀ ଅପୁତ୍ରକ ଧନଦତ୍ତ ମଲାପରେ ତାଙ୍କର ସମସ୍ତ ସମ୍ପତ୍ତି ନିୟମାନୁଯାୟୀ ରାଜଗାମୀ ହେବା କଥା । ମାତ୍ର ସେ ସମସ୍ତ ସମ୍ପତ୍ତି ଗର୍ଭସ୍ଥ ଶିଶୁକୁ ଅର୍ପଣ କରିଥିଲେ । କାଳିଦାସଙ୍କର ଅନ୍ୟାନ୍ୟ ନାଟକର ନାୟକମାନଙ୍କ ପରି ଦୁଷ୍ମନ୍ତ ମଧ୍ୟ ବହୁପତ୍ନୀକ ଥିଲେ । ତାଙ୍କ ଅନ୍ତଃପୁରରେ ବହୁତ ସ୍ତ୍ରୀ ଥିବା ଯୋଗୁଁ ଏକ ପ୍ରତି ବିଶେଷ ଆସକ୍ତି, ଅନ୍ୟ ପ୍ରତି ଉପେକ୍ଷା-ପ୍ରଭୃତି ଦେଖିବାକୁ ମିଳେ । ଏ ହେତୁ ହଂସପଦିକା ନିଜ ପ୍ରତି ଅନାଦାର ଦେଖାଇ ରାଜାଙ୍କୁ ବ୍ୟଙ୍ଗ କରିଅଛନ୍ତି ଏଥିରେ ଆଶ୍ଚର୍ଯ୍ୟର ବିଷୟ କିଛି ନାହିଁ । ତଥାପି ସେ କୌଣସି ସ୍ତ୍ରୀଙ୍କ ଦେଖି ମୁଗ୍ଧ ହେବା ମାଧୁକରୀ ବୃତ୍ତି ତାଙ୍କ ପାଖରେ ନ ଥିଲା । ନ ହେଲେ ଶକୁନ୍ତଳାଙ୍କ ପରି ଅସାଧାରଣ ରୂପବତୀ ସ୍ତ୍ରୀ ସ୍ୱୟଂ ଉପସ୍ଥିତ ହେଲେବେଳେ ସେ ବିଚାର ନ କରି ଗ୍ରହଣ କରିପାରିଥାନ୍ତେ । ପରସ୍ତ୍ରୀଙ୍କ ନିରୀକ୍ଷଣ ସମୁଚିତ ନୁହେଁ ବୋଲି ପ୍ରଥମରୁ ସେ ଶକୁନ୍ତଳାଙ୍କ ପ୍ରତି ଦୃଷ୍ଟିପାତ କରି ନଥିଲେ । କଣ୍ୱାଶ୍ରମରେ ପ୍ରବେଶ କଲାପରେ ଅତିଥିଦେବୀ କନ୍ୟାମାନେ ତାଙ୍କର ଦୃଷ୍ଟିଗୋଚର ହୋଇଥିଲେ । ସେମାନଙ୍କ ମଧ୍ୟରୁ ସୌନ୍ଦର୍ଯ୍ୟର ଅଧିଦେବତା ଶକୁନ୍ତଳା ତାଙ୍କର ମନ ଆକୃଷ୍ଟ କରିଥିଲେ । ତଥାପି ପ୍ରଥମରେ ସେ ବ୍ରାହ୍ମଣ କନ୍ୟା କି ନୁହେଁ ସନ୍ଦେହ କରିଥିଲେ । ପ୍ରକୃତରେ ସେ ବ୍ରାହ୍ମଣ କନ୍ୟା ହୋଇଥିଲେ ସେ ଇନ୍ଦ୍ରିୟ ନିଗ୍ରହ କରି ଅବଶ୍ୟ ପ୍ରତ୍ୟାବୃତ୍ତ

ହୋଇଥାନ୍ତେ—ଏଥିରେ ସନ୍ଦେହ ନାହିଁ । କିନ୍ତୁ ନିଜର ସୁସଂସ୍କୃତ ମନର ପ୍ରବୃତ୍ତିରେ ବିଶ୍ୱାସ ରଖି ସେ ତାଙ୍କର ବିବାହ-ଯୋଗ୍ୟା କ୍ଷତ୍ରିୟ କନ୍ୟା ବୋଲି ସ୍ଥିର କରିଥିଲେ । ଶକୁନ୍ତଳା ଓ ସଖୀମାନଙ୍କର ଭାଷଣରୁ ତାଙ୍କର ଅନୁମାନ ସମର୍ଥିତ ହୋଇଥିଲା ଏବଂ ଶକୁନ୍ତଳାଙ୍କ ଜନ୍ମବୃତ୍ତାନ୍ତ ଶ୍ରବଣ କଲାପରେ ସନ୍ଦେହ ଏକବାରେ ତିରୋହିତ ହୋଇଥିଲା । ଦୁଷ୍ୟନ୍ତଙ୍କ ଦର୍ଶନରେ ଶକୁନ୍ତଳାଙ୍କର ମଦନ ବିକାର ବଢ଼ିବାକୁ ଲାଗିଲା । କଣ୍ୱଋଷି ଶୀଘ୍ର ଫେରିବା ସମ୍ଭବପର ଥିଲେ ହୁଏତ ସେ ଇନ୍ଦ୍ରିୟନିଗ୍ରହ କରି ଅପେକ୍ଷା କରିଥାନ୍ତେ । ମାତ୍ର ଶକୁନ୍ତଳାଙ୍କର ଅବସ୍ଥା ନିତାନ୍ତ ଶୋଚନୀୟ ହୋଇ ଉଠିଲା । 'ଏହି ରାଜର୍ଷିଙ୍କ ସହିତ ଯଦି ମୋର ପାଣି ଗ୍ରହଣ ନ କରାଅ, ତେବେ ମୋତେ ତିଳୋଦକ ଦେବାକୁ ପ୍ରସ୍ତୁତ ହୋଇଯାଅ' ଏହିପରି ଶକୁନ୍ତଳାଙ୍କର ନିବେଦ ଉକ୍ତି ସେ ଶୁଣିବାକୁ ପାଇଲେ । ସଖୀମାନେ ମଧ୍ୟ ଶକୁନ୍ତଳାଙ୍କୁ ସ୍ୱୀକାର କରିବାକୁ ଅନୁରୋଧ କଲେ । ଏହେତୁ ସେ ପ୍ରସ୍ତାବକୁ ଏ ଆନନ୍ଦସହକାରେ ସ୍ୱୀକାର କଲେ । ରବୀନ୍ଦ୍ରନାଥ ଠାକୁର କହିଅଛନ୍ତି—

'କଣ୍ୱାଶ୍ରମରୂପୀ ସ୍ୱର୍ଗରେ ପାପ ଲୁଚିକରି ପ୍ରବେଶ କଲା ; ତା ସଙ୍ଗେ ସଙ୍ଗେ କୀଟଦଷ୍ଟ (ପୋକ ଖାଇଯାଇଥିବା) ଫୁଲ ପରି ସେ ସ୍ଥାନର ଦିବ୍ୟ ସୌନ୍ଦର୍ଯ୍ୟ ବିଶୀର୍ଣ୍ଣ ଓ କ୍ଳିଷ୍ଟ ହୋଇଗଲା । ତାପରେ ଲଜ୍ଜା, ସଂଶୟ, ଦୁଃଖ, ବିଯୋଗ ଓ ପଶ୍ଚାତ୍ତାପ ଉପସ୍ଥିତ ହେଲେ । ପରିଶେଷରେ ବିଶୁଦ୍ଧତର ଓ ଉନ୍ନତତର ସ୍ୱର୍ଗ ଲୋକରେ କ୍ଷମା, ପ୍ରୀତି ଓ ଶାନ୍ତି ଦେଖାଗଲା । 'ଶକୁନ୍ତଳା'କୁ 'Paradise Lost' ଏବଂ 'Paradise regained' ବୋଲି ମଧ୍ୟ

କୁ ହାଯାଇପାରେ । ଏଥିରେ ଦୁଷ୍ୟନ୍ତଙ୍କର ସ୍ୱର୍ଗକୁ ଲଢିବା ଯାଗ ଓ କୁଷ୍ଠୀଙ୍କୁ ନଷ୍ଟ କରିବା ଭଳି ଏହିପରି ଦୁଇଟି ଉପମା ଦିଆଯାଇ- ଯାଇଅଛି । ଏହି ଉପମା ଦୁଇଟି କାଳିଦାସଙ୍କ ଦୁଷ୍ୟନ୍ତ ଅପେକ୍ଷା ମହାଭାରତୀୟ ଦୁଷ୍ୟନ୍ତଙ୍କଠାରେ ବେଶୀ ପରିମାଣରେ ସମନ୍ୱିତ ହୁଏ ।

ଦୁର୍ବାସାଙ୍କର ଶାପରେ ଦୁଷ୍ୟନ୍ତଙ୍କର ସ୍ମୃତି ନଷ୍ଟ ହୋଇ ଯାଇଥିଲା – ଏହେତୁ ସେ ଶକୁନ୍ତଳାଙ୍କୁ ପ୍ରତ୍ୟାଖ୍ୟାନ କଲେ – ଏହା ଦେଖାଇ କାଳିଦାସ ନିଜ ନାୟକଙ୍କୁ ଏ ବିଷୟରେ ଦୋଷମୁକ୍ତ କରିଅଛନ୍ତି । ସପ୍ତମାଙ୍କରେ ମାରୀଚଋଷି ଯେତେବେଳେ ଶାପ ବୃତ୍ତାନ୍ତ ପ୍ରକାଶ କଲେ, ସେତେବେଳେ ଦୁଷ୍ୟନ୍ତ 'ଭଗବତଃ ଦୋଷ ମୁକ୍ତ ହୋଇଛି' କହି ସମାଧାନର ଆଶ୍ୱାସ ପାଇଛନ୍ତି । ଏଥିରୁ ମଧ୍ୟ ଉପରଉଲ୍ଲିଖିତ ବିଷୟ ଜବସ୍ଥିତ ବୋଲି ପ୍ରମାଣିତ ହୁଏ । କାଳିଦାସଙ୍କର ଦୁଷ୍ୟନ୍ତ ଅତ୍ୟନ୍ତ କୋମଳହୃଦୟ । ନିରପରାଧ ପତ୍ନୀଙ୍କୁ ମୁଁ ତ୍ୟାଗ କରିଛି ବୋଲି ତାଙ୍କ ମନରେ ଦୁଃଖ ବରାବର ଖେଳୁଥିଲା । ପଷ୍ଠାଙ୍କ ପରେ ସେ ଏତେଦୂର ବିବର୍ଣ୍ଣ ଓ କ୍ଷୀଣ ହୋଇ ଉଠିଥିଲେ ଯେ ଶକୁନ୍ତଳା ମଧ୍ୟ ହଠାତ୍ ଚିହ୍ନି ପାରିଲେ ନାହିଁ । ତାଙ୍କ ସହିତ ମିଳନ ହେଲାବେଳେ ମହାଭାରତର ଦୁଷ୍ୟନ୍ତ ପରି ଏ ଅଭିମାନରେ କହି ନାହାନ୍ତି ଯେ 'ତୁମେ ମୋତେ ଯେଉଁ ଦୁର୍ବଚନ କହିଛ, ମୁଁ ସେ ସବୁ କ୍ଷମା କଲି ।' ଖାଲି ଏତିକି ନୁହେଁ, ସେ ତାଙ୍କ ପାଦତଳେ ପଡ଼ି ବିନୟ- ସହକାରେ କ୍ଷମା ମାଗିଛନ୍ତି । ମାତୃଭକ୍ତି ଓ ପୁତ୍ରସ୍ନେହ – ଏହି ଦୁଇଟି ଗୁଣର ମଧ୍ୟ କୋମଳ ସମାବେଶ କବି ତାଙ୍କ ଚରିତ୍ରରେ ପ୍ରସଙ୍ଗ କ୍ରମେ ପ୍ରତିଫଳିତ କରିଅଛନ୍ତି । ସାରାଂଶ – ପରାକ୍ରମୀ,

ବନୀତ, ଧାର୍ମିକ, ପ୍ରେମିକ ଓ କର୍ତ୍ତବ୍ୟପରାୟଣ ଧୀରୋଦାତ୍ତ-ନାୟକର ଚିତ୍ର ଅଙ୍କନ କରି କାଳିଦାସ ଆମ ଆଗରେ ଏକ ଆଦର୍ଶ ପୁରୁଷ ଉପସ୍ଥାପିତ କରିଅଛନ୍ତି ।

ଏହି ନାଟକରେ ନାୟିକାର ଚରିତ୍ରଚିତ୍ରଣ ମଧ୍ୟ ଅତି ଉତ୍ତମ ପ୍ରକାରରେ କରାଯାଇଅଛି । ନାଟକର ଆରମ୍ଭରେ ଶକୁନ୍ତଳା ଲତା ବୃକ୍ଷ ପ୍ରଭୃତିଙ୍କୁ ଭଗିନୀ ଭଳି ପରି ବ୍ୟବହାର କରିଛନ୍ତି । ସ୍ୱୟଂ ସେମାନଙ୍କର ତତ୍ତ୍ୱ ନେଉଥିଲେ, ସେମାନଙ୍କୁ ବନ୍ଧୁର ନାମ ଦେଉଥିଲେ, ବଡ଼ ହେଲାପରେ ସେମାନଙ୍କର ବିବାହ ମଧ୍ୟ କରାଇ ଆନନ୍ଦ ଉପଭୋଗ କରୁଥିଲେ । ସ୍ୱୟଂ ଯୁବତୀ ହେଲାପରେ ପ୍ରିୟ ସଖୀମାନଙ୍କ ସହିତ ବିବାହ ବିଷୟକ ପରିହାସ କରୁଥିଲେ । ଏହିପରି ପ୍ରଥମେ ଏକ ମୁଗ୍ଧା ତରୁଣୀ ରୂପରେ ଦେଖା ଦେଇଛନ୍ତି । ଅନ୍ତିମ ଅଙ୍କରେ ପତିବିଯୋଗବଶତଃ ମଳିନବସନା, ଏକବେଣୀଧରା, ବ୍ରତୋପବାସାଦିନିୟମବଶତଃ କ୍ଷୀଣଶରୀରା ପତିବ୍ରତା, ପୁତ୍ରବତ୍ସଳା ପ୍ରୌଢ଼ା ସ୍ତ୍ରୀ ରୂପରେ ପରିଣତ ହୋଇ-ଅଛନ୍ତି । ଯେପରି ପ୍ରାତଃକାଳୀନ ନୀହାର ବିନ୍ଦୁସ୍ନାତ କୋମଳ-କଳିକା ଧୀରେ ଧୀରେ ସୁନ୍ଦରପୁଷ୍ପରୂପରେ ବିକଶିତ ହୋଇ ସୂର୍ଯ୍ୟଙ୍କର ପ୍ରଖର ତାପରେ ସାୟଂକାଳରେ ମ୍ଳାନପ୍ରଭ ହୋଇଥାଏ, ସେହିପରି ଶକୁନ୍ତଳାଙ୍କ ସ୍ୱଭାବରେ ଆମ ଆଖି ଆଗରେ ପରିବର୍ତ୍ତନ ଦେଖାଯାଏ । ଏଥିରେ କାଳିଦାସଙ୍କ କଳାର ଚରମ ଉତ୍କର୍ଷ ଦେଖାଯାଏ । ବାଲ୍ୟାବସ୍ଥାରେ ପିତା ମାତା ତ୍ୟାଗ କରିଥିଲେ ମଧ୍ୟ କଣ୍ୱ ଓ ଗୌତମୀ ନିଜ ପ୍ରେମର ଆଶ୍ରୟରେ କୌଣସି ବିଷୟରେ ମଧ୍ୟ ତାଙ୍କୁ ଅଭାବରେ ପୀଡ଼ିତ କରି ନାହାନ୍ତି । ଭାଗ୍ୟ-ବଶତଃ ସମବୟସ୍କା ଅନସୂୟା ଓ ପ୍ରିୟମ୍ବଦାଙ୍କୁ ସେ ନିଜର ପ୍ରିୟ

ମହର୍ଷିଙ୍କଠାରୁ ଲାଭ କରିଥିଲେ । ସେ ଦୁହିଙ୍କ ସହିତ ତାଙ୍କର ଲେଖନ, ବାଚନ, କାବ୍ୟ ଉଦ୍ଭାବ ପ୍ରଭୃତି ବିଷୟ ସମେତ ଚାରୁ କଳା ହେଉ ଲଳିତ କଳାର ଶିକ୍ଷା ମଧ୍ୟ ପାଇଥିଲେ । ଆଶ୍ରମର ଲତା, ବୃକ୍ଷ ଓ ପଶୁପକ୍ଷୀମାନଙ୍କର ସହବାସରେ ବଢ଼ିବା ଫଳରେ ସେମାନଙ୍କ ପ୍ରତି ତାଙ୍କର ଅସୀମ ପ୍ରେମ ଜାତ ହୋଇଥିଲା । 'ଶକୁନ୍ତଳେ, ତୁମ ଅପେକ୍ଷା ବାପା କଣ୍ୱଙ୍କର ଆଶ୍ରମ ବୃକ୍ଷ ଅଧିକ ପ୍ରିୟ ବୋଲି ମୋତେ ବୋଧ ହୁଏ । କାରଣ ତୁମେ ନବମାଳିକା ପରି କୋମଳାଙ୍ଗୀ ହେଲେ ମଧ୍ୟ ତୁମକୁ ଏହି ବୃକ୍ଷମାନଙ୍କର ଜଳସେଚନରେ ସେ ନିଯୁକ୍ତ କରି ଅଛନ୍ତି ।' ଏହା ଅନସୂୟା ହସି ହସି କହିବା ଦେଖି ଶକୁନ୍ତଳା ଉତ୍ତର ଦେଇଛନ୍ତି – ଖାଲି ପିତାଙ୍କର ନିର୍ଦ୍ଦେଶରୁ ନୁହେଁ, ମୋର ମଧ୍ୟ ଏମାନଙ୍କ ପ୍ରତି ସହୋଦରସହୋଦରୀଭାବ ରହିଛି । ଏହି ସ୍ନେହ-ଫଳରେ ନିଜ ପ୍ରସାଧନ ସକାଶେ ପଲ୍ଲବଟିଏ ମଧ୍ୟ ସେ ତୋଳିବାକୁ ପରାଙ୍ମୁଖ ହେଉଥିଲେ । ସେମାନଙ୍କର ପ୍ରଥମେ ଫୁଲ ଫୁଟିଲେ ଅପାର ଆନନ୍ଦ ଲାଭ କରୁଥିଲେ । ପତି ଘରକୁ ଯିବା ବେଳେ ବନଜ୍ୟୋତ୍ସ୍ନା ରୂପିଣୀ ଲତାଭଗିନୀକୁ ଆଲିଙ୍ଗନ କରିବାକୁ ମଧ୍ୟ ଭୁଲି ନ ଥିଲେ । ଆଶ୍ରମର ପଶୁ ପକ୍ଷୀମାନଙ୍କ ପ୍ରତି ମଧ୍ୟ ତାଙ୍କର ଅଗାଧ ସ୍ନେହ ଥିଲା । ଗର୍ଭଭାରାଳସା, ପର୍ଣ୍ଣ କୁଟୀର ପାଶରେ ମନ୍ଦ ମନ୍ଦ ସଞ୍ଚରିଣୀ ହରିଣୀ ପ୍ରସବ କଲେ ପ୍ରିୟ ସମ୍ବାଦ ପଠାଇବେ ବୋଲି ପିତାଙ୍କୁ ଅନୁରୋଧ କରିଥିଲେ । ପିଲାଦିନୁ ଯେଉଁ ହରିଣ ଶିଶୁଟିକୁ ମା'ଆପର ପାଳିଥିଲେ ସେ ପଛକୁ ଯିବାବେଳେ ଆସି ଶକୁନ୍ତଳାଙ୍କର ଲୁଗା ଭିତରେ ଲଟିଯିବା ଦେଖି ଶକୁନ୍ତଳାଙ୍କର ଗଳା ରୁଦ୍ଧ ହୋଇଗଲା । ସେହିପରି ସ୍ନେହମୟୀ ଶକୁନ୍ତଳାଙ୍କୁ ତପୋବନରେ ଚରାଚର ସମସ୍ତ ସ୍ନେହ

କରୁଥିଲେ । ପତି ଘରକୁ ଯିବା ବେଳେ ଅନସୂୟା ଓ ପ୍ରିୟମ୍ବଦା ଛଡ଼ା ତାଙ୍କର ଦୁଃଖର କଳନା ଆଉ କିଏ ହେଲେ କରିପାରି ନ ଥିଲେ । କଣ୍ୱମହର୍ଷି ତାଙ୍କର ପିତା । ତାଙ୍କର ଅଙ୍କରେ ସେ ପିଲାକାଳରୁ ଲାଳିତପାଳିତ । 'ମୁଁ ମଳୟପର୍ବତରୁ ଉନ୍ମୂଳିତ ଚନ୍ଦନଲତା ପରି ଆପଣଙ୍କର ଅଙ୍କରୁ ବିଚ୍ୟୁତ ହୋଇ ଅନ୍ୟଠାରେ କିପରି ଜୀବନ ଧାରଣ କରି ରହି ପାରିବି ?' ବୋଲି ପଚାରୁଥିଲେ । ଯିବାରେ ବିଳମ୍ବ ହେଉଥିଲା । ଶାର୍ଙ୍ଗରବ ଶୀଘ୍ର ଯିବାକୁ ସୂଚନା ଦେଉଥିଲେ । ତଥାପି, 'ବାପା, ଏହି ତପୋବନ ପୁଣି ମୁଁ କେବେ ଦେଖିବି ?' ଏହିପରି ସେ ନିଜର ହୃଦୟଭାବ ବ୍ୟକ୍ତ କରିଥିଲେ । 'ମା, ତପୋନୁଷ୍ଠାନ ସମାପ୍ତ ହୋଇଗଲା ' ବୋଲି କହିଲା ମାତ୍ରେ ପ୍ରଥମରୁ ତପୋନୁଷ୍ଠାନରେ କୃଶଶରୀର ପିତାଙ୍କ ମନରେ ବିୟୋଗଦୁଃଖ ଅସହ୍ୟ ହେବ ଭାବି କହିଲେ — ବାପା, ତୁମେ ତପ କରି କରି ଦୁର୍ବଳ ହୋଇ ଯାଇଅଛ, ମୋ ପାଇଁ ପୁଣି ବହୁତ ଦୁଃଖ କରିବ ନାହିଁ ବୋଲି ତାଙ୍କୁ ଅନୁରୋଧ କରିଥିଲେ ।

ରାଜାଙ୍କୁ ଦେଖିଲାମାତ୍ରେ ଶକୁନ୍ତଳାଙ୍କର ମନରେ ଅନନୁଭୂତ ପ୍ରେମ ବିକାର ଜାତ ହୋଇଥିଲା । ରାଜାଙ୍କର ଧୀରଗମ୍ଭୀର ଆକୃତି, ମଧୁର ଭାଷଣ, ଅସାମାନ୍ୟ ପରାକ୍ରମରେ ତାଙ୍କର ହୃଦୟ ଆକୃଷ୍ଟ ହେଲା । ସେ କାମପୀଡ଼ିତା ହେଲେ ମଧ୍ୟ ସ୍ୱାଭାବିକ ଲଜ୍ଜାବଶତଃ ନିଜର ମନୋଭାବ ପ୍ରିୟସଖୀମାନଙ୍କୁ ମଧ୍ୟ ପ୍ରକାଶ କରି କହିପାରି ନ ଥିଲେ । ରାଜାଙ୍କୁ କହିବା ଦୂରରେ ଥାଉ, ତାଙ୍କ ଆଗରେ ଛିଡ଼ା ମଧ୍ୟ ହୋଇପାରୁ ନ ଥିଲେ । ବିଦୂଷକଙ୍କ ପ୍ରଶ୍ନର ଉତ୍ତରରେ ରାଜା

ଶକୁନ୍ତଳାଙ୍କର ପ୍ରକୃତ ନିମ୍ନଲିଖିତ ଶ୍ଳୋକରେ ବର୍ଣ୍ଣନା କରିଅଛନ୍ତି —

अभिमुखे मयि संहृतमीक्षितं हसितमन्यनिमित्तकथोदयम् ।
विनयवारितवृत्तिरतस्तया न विवृतो मदनो नच संवृतः ॥

ଶାକୁନ୍ତଳ ୨, ୧୧,

ମହାଭାରତର ଶକୁନ୍ତଳା ନିଜେ ନିଜ ଜନ୍ମବୃତ୍ତାନ୍ତ ବିସ୍ତୃତ-ଭାବେ ବର୍ଣ୍ଣନା କରିଥିଲେ । ସେମାନେ ହେବା ସକାଶେ ରାଜାଙ୍କର ଅନୁରୋଧ ଶୁଣି ନିଜର ସର୍ତ୍ତ ବାଢ଼ିଥିଲେ ଏବଂ ରାଜା ସେ ସର୍ତ୍ତ ସ୍ୱୀକାର କଲାପରେ ନିଜେ ସମ୍ମତ ହୋଇଥିଲେ ବୋଲି ପ୍ରତୀତ ହୁଏ । ଏଥିପାଇଁ ନାଟ୍ୟକାର ବ୍ୟବହାରକୁଶଳା ବାକ୍ପଟୁ ପ୍ରୌଢ଼ାକନ୍ୟା ଶକୁନ୍ତଳାଙ୍କୁ ନିଜ ପ୍ରତିଭାବଳରେ ଲଜ୍ଜାଶୀଳା, ପ୍ରେମପରବଶା ମୁଗ୍ଧା ବାଳିକାରୂପରେ ପରିଣତ କରିଅଛନ୍ତି । କାଳିଦାସଙ୍କର ଶକୁନ୍ତଳାଙ୍କର ମଦନବିକାର ଯେତେବେଳେ ଅସହ୍ୟ ହେଲା, ସେତେବେଳେ ସେ ପ୍ରିୟ ସଖୀମାନଙ୍କର ନିକଟରେ ନିଜ ଅଭିପ୍ରାୟ ବ୍ୟକ୍ତ କରିଛନ୍ତି । ସେମାନେ ଅନୁମତି ଦେଲେ ମଧ୍ୟ ପିତାଙ୍କର ଆଦେଶ ବିନା ରାଜାଙ୍କ ବିବାହ କରିବାକୁ ପ୍ରସ୍ତୁତ ନ ଥିଲେ । ଋଷିପୁତ୍ରମାନଙ୍କର ଗାନ୍ଧର୍ବ ବିବାହ ପ୍ରଶସ୍ତ, ତୁମର ପିତା କଦାପି କ୍ରୋଧ କରିବେ ନାହିଁ ବୋଲି ଯେତେବେଳେ ବିଶ୍ୱାସ ଜାତ କରାଇଲେ, ସେତେବେଳେ ସେ ସମ୍ମତ ହେଲେ । ଶେଷ ଅଙ୍କରେ ରାଜା ସ୍ୱୀକାର କଲା ପରେ ପୁତ୍ରର ହାତ ଧରି କହିଲେ —'ତୁମ ସହିତ ଭଗବାନ୍ ମାରୀଚଋଷିଙ୍କର ଦର୍ଶନ କରିବାକୁ ମୋର ଇଚ୍ଛା' ସେତେବେଳେ ଶକୁନ୍ତଳା

କହିଲେ 'ଆପଣଙ୍କ ସହିତ ଗୁରୁଜନଙ୍କ ସମ୍ପ୍ରତିରୁ ଦିବାକୁ ମୋର ଲଜ୍ଜା ହେଉଅଛି ।' ଏହି ପ୍ରସଙ୍ଗରେ ତାଙ୍କର ବିନୟଶୀଳତା ଭାବ ଦେଖାଇଅଛନ୍ତି । ଶକୁନ୍ତଳାଙ୍କ ସ୍ୱଭାବ ଅତ୍ୟନ୍ତ କୋମଳ ଓ ସରଳ । ପଞ୍ଚମାଙ୍କରେ ରାଜାଙ୍କର ପ୍ରତ୍ୟୟ ଜଣାଇବା ବେଳେ ଯେତେବେଳେ ସମସ୍ତ ଉପାୟ ଶେଷ ହେଲା, ମୁଦ୍ରିକା ମଧ୍ୟ ଉପଯୁକ୍ତ ସମୟରେ ଦୁର୍ଲଭ ଦେଖାଗଲା, ସେତେବେଳେ 'ମୋର ପାଳିତ ଦୀର୍ଘାପାଙ୍ଗ ନାମକ ମୃଗ ଯେତେବେଳେ ତୁମ ହାତରୁ ପାଣି ପିଉନ ନାହିଁ, ସେହି ପାଣି ଯେତେବେଳେ ମୁଁ ଦେଖାଇଲି, ପିଇଲା, ସେତେବେଳେ ତୁମେ ହସି କରି କହିଥିଲ—'ପ୍ରତ୍ୟେକ ଜନ୍ତୁର ନିଜ ସଜାତୀୟଠାରେ ବିଶ୍ୱାସ ହୋଇଥାଏ, ତୁମେ ଦୁହେଁ ଅରଣ୍ୟବାସୀ' ଏହା କହି ତାଙ୍କର ସ୍ମୃତି ଜାଗରିତ କରିବାକୁ ଚେଷ୍ଟା କରିଥିଲେ । ଏହାଦ୍ୱାରା କଅଣ ତାଙ୍କର ସ୍ମୃତି ଜାଗ୍ରତ ହୋଇ ଆସିଲା ? ତେବେ ସରଳମତି ଶକୁନ୍ତଳାଙ୍କ ପକ୍ଷରେ ତାହା ସମ୍ଭବପର ବୋଧ ହୋଇଥିଲା । ଏହିପରି ସରଳ ମନା ଓ ପ୍ରେମ-ଶୀଳା ଶକୁନ୍ତଳାଙ୍କ ପକ୍ଷରେ ପ୍ରତ୍ୟାଖ୍ୟାନ ବିଷୟ ବଜ୍ରାଘାତ ପରି ଉପସ୍ଥିତ ହେଲା । ଗୌତମୀ ଓ ଶାର୍ଙ୍ଗରବ ମଧ୍ୟ ନାନାଭାବେ ବୁଝାଇଲେ, ମାତ୍ର ରାଜା ବୁଝିଲେ ନାହିଁ । ସେତେବେଳେ ଶାରଦ୍ୱତ 'ତୁମେ ତାହାଙ୍କୁ ବିଶ୍ୱାସ କରାଅ' ବୋଲି କହିଲେ । ସେତେବେଳେ ପ୍ରଥମେ 'ଆର୍ଯ୍ୟପୁତ୍ର' ବୋଲି ସମ୍ବୋଧନ କରୁଥିଲେ । କିନ୍ତୁ ଯେତେବେଳେ ରାଜା ବିବାହ ପ୍ରସଙ୍ଗ ମୋଟେ ମାନୁ ନାହାନ୍ତି, ସେତେବେଳେ ସେପରି ସମ୍ବୋଧନ କରିବା ଅନୁଚିତ ଭାବି 'ପୌରବ' ବୋଲି ସମ୍ବୋଧନ କଲେ । ତାଙ୍କର ସ୍ମୃତି ଜାଗରିତ କରିବାରେ ସେ ସଫଳ ହୋଇପାରିଲେ ନାହିଁ -ପ୍ରତ୍ୟୁତ ରାଜା କୋକିଳାଦୃଷ୍ଟାନ୍ତ ଦେଇ 'ସ୍ତ୍ରୀମାନେ ସ୍ୱଭାବତଃ

ମିଥ୍ୟାପ୍ରତାରଣାପରାୟଣା' ବୋଲି ଅକ୍ଷେପ କଲେ । ଏହି ଭାଷଣରେ ଦ୍ୱ୍ୟର୍ଥକ (ଶ୍ଳିଷ୍ଟ) ଶବ୍ଦ ଥିବାରୁ ତାଙ୍କର ମା ଙ୍କର ନିନ୍ଦା କଲେ ବୋଲି ଭାବିଲେ । ତାଙ୍କର କ୍ରୋଧ ସୀମା ଲଙ୍ଘନ କଲା । ଯେତେବେଳେ ସେ ରାଜାଙ୍କୁ 'ଅନାର୍ଯ୍ୟ' ବୋଲି ସଂବୋଧନ କରି ରାଜାଙ୍କର ପ୍ରବଞ୍ଚନାର ତୀବ୍ର ନିନ୍ଦା କଲେ ।

ସୀତାଙ୍କ ପରି ଶକୁନ୍ତଳା ମଧ୍ୟ ପତିବ୍ରତା । ପତି ବିନା କାରଣରେ ପରିତ୍ୟାଗ କରିଥିଲେ ମଧ୍ୟ ସେ ସବୁବେଳେ ପତିଙ୍କୁ ଧ୍ୟାନ କରୁଥିଲେ ଏବଂ ବିରହିଣୀ ସ୍ତ୍ରୀ ପତି ବ୍ରତ ଆଚରଣ କରି ସମୟ କଟାଉଥିଲେ । ଯେତେବେଳେ ସାନୁମତୀଙ୍କଠାରୁ ରାଜାଙ୍କର ପଶ୍ଚାତ୍ତାପ ସଂବାଦ ପାଇଲେ ଏବଂ ଅଦିତିଙ୍କର ଆଶ୍ୱା-ସନାରୁ ଅଳ୍ପ ସମୟ ମଧ୍ୟରେ ତାଙ୍କର ପତିଙ୍କ ସହିତ ମିଳନ ହେବ ବୋଲି ଆଶାରେ ରହିଥିଲେ ଏବଂ ପରେ ରାଜାଙ୍କ ସହିତ ମିଳନ ହେଲା, ଯେତେବେଳେ ସେ ରାଜା ପ୍ରତ୍ୟାଖ୍ୟାନ କରିଥିଲେ ବୋଲି ତାଙ୍କ ଉପରେ କ୍ରୋଧ ପ୍ରକାଶ କରି ନ ଥିଲେ । କିନ୍ତୁ ଯେତେବେଳେ ରାଜା ପଶ୍ଚାତ୍ତାପ କରି ନିଜକୁ ଦୋଷ ଦେବାକୁ ଲାଗିଲେ, ସେତେ-ବେଳେ ସେ 'ତାଙ୍କ ଭାଗ୍ୟ ଦୋଷରୁ କେବଳ ସେପରି ଦୟାର୍ଦ୍ର ପତି ମଧ୍ୟ ସେପରି ନିଷ୍ଠୁର ହୋଇଥିଲେ' ବୋଲି ମନେ କଲେ । ମୋଟାମୋଟିରେ କହିବାକୁ ଗଲେ କବି ଶକୁନ୍ତଳାଙ୍କର ଚରିତ୍ରକୁ ଲଜ୍ଜାସ୍ୱଭାବା, ସଦ୍‌ଗୁଣବତୀ କର୍ତ୍ତବ୍ୟନିଷ୍ଠାରେ ଏକ ଆଦର୍ଶ ହିନ୍ଦୁ ଗୃହିଣୀଙ୍କର ରୂପ ପ୍ରତିଫଳିତ କରିଅଛନ୍ତି ।

ନାୟକ ଓ ନାୟିକାଙ୍କ ଚରିତ୍ର ଚିତ୍ରଣରେ କାଳିଦାସ ନିଜର ସମସ୍ତ ଶକ୍ତି ବ୍ୟୟ କରିଥିଲେ ମଧ୍ୟ ଅନ୍ୟାନ୍ୟ ପାତ୍ରମାନଙ୍କୁ ମଧ୍ୟ

ଅତ୍ୟନ୍ତ କୁଶଳତା ସହକାରେ ଚିତ୍ରିତ କରିଅଛନ୍ତି । ସାମ୍ୟ ଓ ବୈଷମ୍ୟର ସନ୍ନିବେଶରେ ପାତ୍ରଗୁଡ଼ିକ ସ୍ୱଭାବର ଉତ୍କର୍ଷ ହୋଇଥାଏ ଯାହା କବି କେତେକ ଯୁଗ୍ମ ପାତ୍ରମାନଙ୍କର ଅବତାରଣା କରିଅଛନ୍ତି । ଦୁର୍ବାସା-କଣ୍ୱ, ପ୍ରିୟମ୍ବଦା-ଅନସୂୟା, ଶାର୍ଙ୍ଗରବ ଶାରଦ୍ୱତ— ଏମାନଙ୍କର ଚରିତ୍ର ବିଶ୍ଳେଷଣ କଲେ ଉପରଉଲ୍ଲିଖିତ ଉକ୍ତି ଯଥାର୍ଥରେ ହୃଦୟଙ୍ଗମ ହେବ । ଦୁର୍ବାସା ଅତ୍ୟନ୍ତ ଅଭିମାନୀ, କ୍ରୋଧୀ ଓ ନିଷ୍ଠୁର ପ୍ରକୃତିର ଋଷି । ସେ ଦିବ୍ୟ ଦୃଷ୍ଟି ବଳରେ ସ୍ୱଗୃହାଭିମୁଖରେ ପ୍ରସ୍ଥିତ ପତି ବିୟୋଗରେ ଶକୁନ୍ତଳା ଶୂନ୍ୟହୃଦୟା ଓ ପତିଚିନ୍ତାମଗ୍ନା ବୋଲି ଜାଣିପାରିଥିଲେ, ତଥାପି ସେ ତାଙ୍କର ଅପମାନ କଲି ଭାବି ପତିବିୟୋଗ ରୂପ ଦାରୁଣ ଶାପ ଦେଇଥିଲେ । ଅପରାଧ କେତେ ସ୍ୱଳ୍ପ ! ଓ ଦଣ୍ଡ କେତେ ବଡ଼ ! !

ଦୁର୍ବାସାଙ୍କ ପରି କଣ୍ୱ ମଧ୍ୟ ତପସ୍ୱୀ, ମହାପ୍ରଭାବଶାଳୀ ଓ ଅନ୍ତର୍ଜ୍ଞାନୀ । ପରନ୍ତୁ ଏ ଦୁହିଙ୍କ ମଧ୍ୟରେ ଅତ୍ୟନ୍ତ ବୈଷମ୍ୟ ଦେଖାଯାଏ । ଦୁର୍ବାସା କ୍ରୋଧୀ, କଣ୍ୱ ଶାନ୍ତ, ଦୁର୍ବାସା ନିଷ୍ଠୁର— କଣ୍ୱ ଅତ୍ୟନ୍ତ କୋମଳହୃଦୟ ଓ ପ୍ରେମଶୀଳ । ଶକୁନ୍ତଳା ଅଜ୍ଞାତ ଅରଣ୍ୟରୁ ମିଳିଥିବା କନ୍ୟା, ତଥାପି ନିଜ ଝିଅ ପରି ତାଙ୍କର ଲାଳନ ପାଳନ କରିଥିଲେ ଏବଂ ନାନା ପ୍ରକାର ଶିକ୍ଷାରେ ଦୀକ୍ଷିତ କରିଥିଲେ । 'ଶକୁନ୍ତଳା ମନେକର ଆମ କୁଳପତିଙ୍କର ପ୍ରାଣ' (ସା ହି କୁଳପତେରୁଚ୍ଛ୍ୱସିତମ୍) ବୋଲି ଯାହାକି ତାଙ୍କର ଶିଷ୍ୟ କହିଛନ୍ତି, ସେଥିରେ ମିଥ୍ୟାର ଅବକାଶ ନାହିଁ । ସେ ଶକୁନ୍ତଳାଙ୍କର ପ୍ରତିକୂଳ ଦୈବର ଶାନ୍ତି କରିବାକୁ ଦୀର୍ଘ ପ୍ରବାସ ସ୍ୱୀକାର କରିଥିଲେ । ତାଙ୍କ

ଅଜ୍ଞାତସାରରେ ଶକୁନ୍ତଳା ବିବାହ କରିଥିଲେ—ସେଥିରେ ମଧ୍ୟ ସେ ଅସ୍ୱୀକୃତ ହୋଇନାହାନ୍ତି, ପ୍ରତ୍ୟୁତ ଦୁଷ୍ୟନ୍ତ ସଦୃଶ ଉପଯୁକ୍ତ ଗୁଣୀଜନ ପାଖରେ ଥିଲେ ମଧ୍ୟ ସେ ବୁଝିପାରି ନ ଥିଲେ ବୋଲି ବିସ୍ମିତ ହୋଇଛନ୍ତି । ଭାଗ୍ୟବଶତଃ ସେ ନିଜର ଉପଯୁକ୍ତ ପତି ବରଣ କରିଅଛି ଭାବି ଆନନ୍ଦ ଅନୁଭବ କରୁଅଛନ୍ତି । ତାଙ୍କର ଯେଉଁ ଭାବ ସେ 'ଦିଷ୍ଟ୍ୟା ଧୂମାକୁଳିତ-ଦୃଷ୍ଟେରପି ଯଜମାନସ୍ୟ ପାବକେ ଏବାହୁତିଃ ପତିତା' ଏହି ଦୃଷ୍ଟାନ୍ତଦ୍ୱାରା ବ୍ୟକ୍ତ କରିଅଛନ୍ତି । ଯେତେବେଳେ ଶକୁନ୍ତଳା ପତି-ଘରକୁ ଯାଉଛନ୍ତି, ସେତେବେଳେ ତାଙ୍କର ହୃଦୟ ଉତ୍କଣ୍ଠାରେ ପରିପୂର୍ଣ୍ଣ ହୋଇ ଯାଉଅଛି, କଣ୍ଠ ରୁଦ୍ଧ ହେଉଅଛି. ନେତ୍ରରୁ ଅଶ୍ରୁ ଝରି ପଡ଼ୁଛି । ଏହି ଅବକାଶରେ ସେ 'ମୋ ସଦୃଶ ଅରଣ୍ୟବାସୀ ନିସ୍ପୃହର ମଧ୍ୟ ଯେତେବେଳେ କନ୍ୟା ପ୍ରେମରୁ ଏହିପରି ଅବସ୍ଥା, ସେତେବେଳେ ସାଂସାରିକ ଜନମାନଙ୍କର କେଉଁଣ ବା ଅବସ୍ଥା ନ ହେଉଥିବ' ଏହିପରି ବ୍ୟକ୍ତ କରି କାତରଚିତ୍ତ ହୋଇଛନ୍ତି । ସେ ସବୁବେଳେ ଅରଣ୍ୟରେ ଥିଲେ ମଧ୍ୟ ଲୋକବ୍ୟବହାରଜ୍ଞାନରେ ଧୁରନ୍ଧର ଥିଲେ । ଶ୍ୱଶୁରଘରେ କିପରି ରହିବାକୁ ହେବ ଏ ବିଷୟରେ ଶକୁନ୍ତଳାଙ୍କୁ ଯେଉଁ ଉପଦେଶ ଦେଇଅଛନ୍ତି, ତାହା ବହୁମୂଲ୍ୟ । 'ବାପା, ମୋ ସକାଶେ ଶୋକ କରିବ ନାହିଁ' ବୋଲି ଯେତେବେଳେ ଶକୁନ୍ତଳା ଅନୁରୋଧ କଲେ, ସେତେବେଳେ ସେ କହିଲେ 'ତୁମ ପ୍ରେମର ଚିହ୍ନ ଯେତେବେଳେ ଆଶ୍ରମର ଚାରିଆଡ଼େ ଦେଖିବାକୁ ପାଉଛି. ଶୋକ କିପରି ନ ହେବ ?' ବୋଲି ପ୍ରକାଶ କରି ଅଛନ୍ତି । ତଥାପି ଶକୁନ୍ତଳା ଯେତେବେଳେ ଚାଲିଗଲେ, ସେତେବେଳେ ସେ କହୁଛନ୍ତି— କନ୍ୟା ପରର ସମ୍ପତ୍ତି, ଆଜି ତାକୁ ତାର ସ୍ୱାମିହାତରେ ଅର୍ପଣ କରି ମୁଁ ପରିତୃପ୍ତ ।' ବୋଲି

ଆଶ୍ୱାସନା ପାଇଛନ୍ତି । କଣ୍ୱଙ୍କ ଚରିତ୍ରରେ କାଳିଦାସ ପ୍ରେମିକ ପିତାର ହୃଦୟସ୍ପର୍ଶୀ ଚିତ୍ର ପ୍ରତିଫଳିତ କରିଅଛନ୍ତି ।

ଦୁର୍ବାସା ଋଷି ମାରୀଚ ଦିବ୍ୟପ୍ରକୃତିର । ତାଙ୍କ ଆଶ୍ରମରେ ସମସ୍ତ ସ୍ୱର୍ଗୀୟ ସୁଖସାଧନ ବିଦ୍ୟମାନ । ତଥାପି ସେଠାର ଋଷିମାନେ ସେଥିପ୍ରତି ଆସକ୍ତ ନ ହୋଇ ତପଶ୍ଚର୍ଯ୍ୟାପରାୟଣ । ସେଠାରେ ଉପସ୍ଥିତ ହେବାମାତ୍ରେ ଦୁଷ୍ୟନ୍ତ ଅନୁଭବ କଲେ ଯେ ସେ ସ୍ଥାନଟି ସ୍ୱର୍ଗରୁ ମଧ୍ୟ ଅଧିକ ଆନନ୍ଦଦାୟୀ । ମାରୀଚ ଋଷି ଇନ୍ଦ୍ରାଦିଦେବତାମାନଙ୍କର ପିତା । ଭଗବାନ୍ ବିଷ୍ଣୁ ବାମନାବତାରରେ ତାଙ୍କର ପୁତ୍ର ଥିଲେ । ସେ ସ୍ୱୟଂ ସିଦ୍ଧ ହେଲେ ମଧ୍ୟ ଲୋକହିତ ସକାଶେ ତପଶ୍ଚର୍ଯ୍ୟାରତ ରହନ୍ତି । ତାଙ୍କର ଆଶ୍ରମରେ ଶକୁନ୍ତଳା ଆଶ୍ରୟ ପାଇଥିଲେ । ତାଙ୍କଠାରୁ ପତିବ୍ରତା ଧର୍ମ ଶୁଣି ସେ ମାନସିକ ଶାନ୍ତି ଲାଭ କରୁଥିଲେ । ତାଙ୍କର ପୁତ୍ର ଜନ୍ମହେବା ପରେ ସେ ସନ୍ତାନର ଜାତକର୍ମାଦି ସମସ୍ତ ସଂସ୍କାର କରିଥିଲେ । ଏତାଦୃଶ ଜ୍ଞାନନିଷ୍ଠ, ଲୋକହିତବ୍ରତ ମହାତ୍ମାଙ୍କର ଆଶୀର୍ବାଦରେ କବି ନାଟକର ପରିସମାପ୍ତି କରି ବିଶେଷ ଔଚିତ୍ୟ ଦେଖାଇ ଅଛନ୍ତି ।

ପ୍ରିୟମ୍ବଦା ଓ ଅନସୂୟା ଦୁହେଁ ଶକୁନ୍ତଳାଙ୍କର ଅତ୍ୟନ୍ତ ପ୍ରିୟତମ ସଖୀ । ଦୁହେଁ ଶକୁନ୍ତଳାଙ୍କ ପରି ବିବିଧକଳାକୁଶଳା । ଦୁହିଙ୍କର ଶକୁନ୍ତଳାଙ୍କ ପ୍ରତି ଅଗାଧ ସ୍ନେହ । ତଥାପି ଦୁହିଙ୍କର ସ୍ୱଭାବରେ ବୈଶିଷ୍ଟ୍ୟ ଦେଖାଯାଏ । ଅନସୂୟା ଗମ୍ଭୀରା, ବିବେକଶୀଳା, ଦୂରଦର୍ଶିନୀ ଓ ବ୍ୟବହାରକୁଶଳା । ପ୍ରିୟମ୍ବଦା ନାଜନାମାନୁଯାୟୀ ମଧୁରଭାଷିଣୀ, ସଦାନନ୍ଦା ଓ ବିନୋଦନପ୍ରବଣା । ରାଜାଙ୍କର ସ୍ୱାଗତ, ଶକୁନ୍ତଳାଙ୍କର ଜନ୍ମବୃତ୍ତାନ୍ତବର୍ଣ୍ଣନ,

ଶକୁନ୍ତଳାଙ୍କ ପ୍ରତି ଭଲ ବ୍ୟବହାର କରିବା ସକାଶେ ଦୁଷ୍ୟନ୍ତଙ୍କୁ ଅନୁରୋଧ ଏ ପରାମର୍ଶ ଅନସୂୟା ହିଁ କରି ଅଛନ୍ତି । ଏହାଙ୍କର ଗମ୍ଭୀର ସ୍ୱଭାବ ଦେଖି କଣ୍ୱ ମଧ୍ୟ ବେଳେ ତାଙ୍କ ସହିତ କଥୋପକଥନ କରନ୍ତି । ପ୍ରିୟମ୍ବଦାଙ୍କ ସ୍ୱଭାବ ଠିକ୍ ଏହାର ବିପରୀତ । ସେ ସବୁବେଳେ ଶକୁନ୍ତଳାଙ୍କୁ ହାସରେ ଉଡ଼ାଇ ଦେଉଥିଲେ । 'ପ୍ରିୟମ୍ବଦା ମୋର ବଲ୍‌କଲ ଖୁବ ଭିଡ଼ କରି ବାନ୍ଧି ଦେଇଛନ୍ତି ଟିକିଏ ଶିଥିଳ କରିଦିଅ' ବୋଲି ଯେତେବେଳେ ଶକୁନ୍ତଳା ଅନସୂୟାଙ୍କୁ କହିଲେ, ସେତେବେଳେ ସେ କହିଲେ —'ସ୍ତନ-ବୃଦ୍ଧିକାରୀ ନିଜ ଯୌବନକୁ ଦୋଷ ଦିଅ, ମୋତେ କାହିଁକି ଦୋଷ ଦେଉଅଛ ।' ଶକୁନ୍ତଳା! ବକୁଳବୃକ୍ଷ ପାଖରେ ଛିଡ଼ା ହେବା ଦେଖି ପ୍ରିୟମ୍ବଦା କହିଲେ —'ଶକୁନ୍ତଳା! ଟିକିଏ ସେଠାରେ ଛିଡ଼ା ହୁଅ, ତୁମକୁ ବକୁଳ ଗଛ ପାଖରେ ଦେଖିଲେ ବାଉଳଗଛଟି ଲତାଦ୍ୱାରା ସଂଯୁକ୍ତ ହେଲା ପରି ଦିଶୁଅଛି ।' ଶକୁନ୍ତଳା ମଧ୍ୟ ତାଙ୍କ ଭଲ ପାଉଥିଲେ, ସେ ତାଙ୍କୁ ପ୍ରଶଂସା କରି କହିଲେ 'ଏହେତୁ ତୁମ ନାମ ପ୍ରିୟମ୍ବଦା ।' ଦୁର୍ବାସା ସଦୃଶ ନିଷ୍ଠୁର ଋଷି ଶାପ ଦେଇ ଯେତେବେଳେ ଧାବିତପଦରେ ଚାଲିଯାଉଥିଲେ, ସେତେବେଳେ ପ୍ରିୟମ୍ବଦା ତାଙ୍କର ଅନୁସରଣ କରି ନିଜ ମଧୁର ଭାଷଣରେ ତାଙ୍କ ହୃଦୟରେ ମଧ୍ୟ ଶକୁନ୍ତଳାଙ୍କ ବିଷୟରେ ଦୟା ଜାତ କରାଇ ପାରିଥିଲେ । ଶକୁନ୍ତଳା ପତିଗୃହକୁ ଯିବାବେଳେ ଦୁହିଙ୍କର ଅସୀମ ଦୁଃଖ ହୋଇଥିଲା । ବ୍ୟଥା ଆମେ ଦୁହେଁ ଯେ କୌଣସିମତେ ଭୁଲିଯିବା, ସେ ବରଂ ଟିକିଏ ସୁଖୀ ହେଉ ବୋଲି କହି ତାଙ୍କର ପ୍ରସ୍ଥାନକାଳୀନ ଅଳଙ୍କାର ପ୍ରଭୃତି ସଜାଇବାରେ ଲାଗିଥିଲେ । ଯେତେବେଳେ ଶକୁନ୍ତଳା ନିଜ ପ୍ରିୟ ଭଗିନୀ ବନଜ୍ୟୋତ୍ସ୍ନାଙ୍କୁ ତାଙ୍କ ହସ୍ତରେ ନ୍ୟାସ କଲେ, ସେତେବେଳେ ଅମକୁ କାହାଠାରେ

ରହିଅଛନ୍ତି' ବୋଲି କହି କାନ୍ଦିବାକୁ ଲାଗିଲେ । ଶକୁନ୍ତଳା ପିତାପରେ ତପୋବନ ତାଙ୍କୁ ଶୂନ୍ୟ ବୋଧ ହେଲା । ଏହିପରି ସରଳ ପ୍ରକୃତି, ସ୍ନେହମୟୀ, ଦୋଷବିରହିତା ସଖୀଦ୍ୱୟ ସମଗ୍ର ସଂସ୍କୃତ ସାହିତ୍ୟରେ ବିରଳ ।

'ଶାକୁନ୍ତଳ'ର ମାଧବ୍ୟ ନାମକ ବିଦୂଷକ କେବଳ ବାଚାଳ । 'ବିକ୍ରମୋର୍ବଶୀୟ'ର ମାଣବକ ନିର୍ବୋଧତାବଶତଃ ରହସ୍ୟ ପ୍ରକାଶ କରି ଦେଇଛନ୍ତି । ମାତ୍ର ମାଧବ୍ୟ ରାଜାଙ୍କ କଥିତ ବାକ୍ୟକୁ ସତ୍ୟ ମନେ କରି ମୂର୍ଖରେ ତାଲି ପକାଇ ଦେଇଛନ୍ତି । ଜଣେ କହି କରି କାର୍ଯ୍ୟ ପଣ୍ଡ କରୁଅଛନ୍ତି ତ ଅନ୍ୟ ଜଣକ ଚୁପ୍ ରହି କଥାଟିକ ପିଇ ଦେଉଛନ୍ତି । ଅନ୍ୟ ସମସ୍ତ ବିଷୟରେ ହାସ୍ୟପରିହାସ ଓ ବିନୋଦ ଭାଷଣରେ ଦୁହେଁ ସମାନ । ଶାର୍ଙ୍ଗରବ ଓ ଶାରଦ୍ୱତ-ନାମକ ଦୁଇଟି ଋଷି କୁମାରଙ୍କର ସ୍ୱଭାବରେ ମଧ୍ୟ ବୈଶିଷ୍ଟ୍ୟ ଦେଖାଯାଏ । ଶାର୍ଙ୍ଗରବ ସ୍ଥୂଳବୁଦ୍ଧି ଓ ସ୍ପଷ୍ଟବକ୍ତା । ଶକୁନ୍ତଳାଙ୍କ ଗହଣରେ ଯାଇଥିବା ବ୍ୟକ୍ତିମାନଙ୍କ ମଧ୍ୟରେ ସେ ପ୍ରଥମେ କଣ୍ୱଙ୍କର ସନ୍ଦେଶ ଶୁଣାଇ ଶକୁନ୍ତଳାଙ୍କୁ ଗ୍ରହଣ କରିବାକୁ ରାଜାଙ୍କୁ ଅନୁରୋଧ କରିଥିଲେ । ଯେତେବେଳେ ଦେଖିଲେ ଯେ ରାଜା ଏକବାରେ ସ୍ୱୀକାର କରୁନାହାନ୍ତି, ସେତେବେଳେ ନାନା ପ୍ରକାର ଯୁକ୍ତି ଦେଖାଇ ତାଙ୍କ ମନ ଆକର୍ଷଣ କରିବାକୁ ଚେଷ୍ଟା କରିଥିଲେ । ତଥାପି ଯେତେବେଳେ ରାଜା ଶୁଣିଲେ ନାହିଁ, ସେତେବେଳେ ତାଙ୍କୁ 'ଐଶ୍ୱର୍ଯ୍ୟମତ୍ତ' କହି ଚୋର ସହିତ ତୁଳନା କରିବାକୁ ମଧ୍ୟ ସଙ୍କୋଚ ବୋଧ କରି ନାହାନ୍ତି । ତାଙ୍କର ରାଜାଙ୍କ ସହିତ କଳହ ଉତ୍ତରୋତ୍ତର ବଢ଼ିବା ଦେଖି ଶାରଦ୍ୱତ ବାଧା ଦେଲେ ଏବଂ 'ଆମେ ଗୁରୁଙ୍କର ସନ୍ଦେଶ ଶୁଣାଇଦେଲୁଁ,

ଚଳ — ଯିବା ।’ କହି ପ୍ରସ୍ଥାନ କରିବାକୁ ଲାଗିଲେ । ସେ ସ୍ୱଭାବତଃ ବିବେକୀ ଓ ସୌମ୍ୟପ୍ରକୃତି ।

ଶକୁନ୍ତଳାଙ୍କର ମାତୃସ୍ଥାନୀୟା ଗୌତମୀ, ସିଂହଶିଶୁକୁ ମା·ଆଙ୍କରୁ ଟାଣି ଆଣି ଦାନ୍ତ ଗଣୁଥିବା ନିର୍ଭୀକ ସର୍ବଦମନ, ସ୍ୱାମୀଙ୍କର ମନ ଅନୁସରଣ କରିବାରେ ପାରଙ୍ଗମ ସେନାପତି, ଦରିଦ୍ର ଅଥଚ ଅଭିମାନୀ ଧୀବର, ପ୍ରଥମେ ସିଦ୍ଧସାଧକରୂପେ ଅପରାଧୀକୁ ଶାସ୍ତି ଦେବା ଏବଂ ପରେ ପଇସା ଦେଖି ମଦ୍ୟଆଶାରେ ଘଷ୍ଠ ମରବର୍ତ୍ତନ ଭଳି ମିତ୍ର ହେବା ରାଜକର୍ମଚାରୀ ଓ ରାଜଶ୍ୟାଳ — ଏ ସମସ୍ତଙ୍କର ଚରିତ୍ର ମଧ୍ୟ ଅତିମନୋହରଭାବେ କରାଯାଇଅଛି । ଏହିପରି ମନୁଷ୍ୟମାନଙ୍କୁ ଆମେ ପ୍ରତିଦିନ ଦେଖିଥାଉଁ । ଏ ସମସ୍ତ ପାତ୍ରମାନଙ୍କର ଚରିତ୍ରଚିତ୍ରଣ ଦେଖିଲେ କାଳିଦାସଙ୍କର ଅସାଧାରଣ ଅନ୍ତସ୍ତତ୍ତ୍ୱଚିତ୍ରଣକୁଶଳତା ପ୍ରମାଣ ହୁଏ ।

— ୪*୧ —

# ୭ କାଳିଦାସୀୟ ଗ୍ରନ୍ଥମାନଙ୍କର ବିଶେଷତ୍ୱ

"निर्गतासु न वा कस्य कालिदासस्य सूक्तिषु ।
प्रीतिर्मधुरसान्द्रासु मञ्जरीष्विव जायते ॥"

ବାଣ—ହର୍ଷଚରିତ ।

(କବିବର କାଳିଦାସଙ୍କର ମଞ୍ଜରୀସଦୃଶ ସୁମଧୁର ସୂକ୍ତି ଶୁଣିଲେ କାହାର ହୃଦୟରେ ଆନନ୍ଦର ଉଦ୍ରେକ ନହୋଇ ରହିବ ?)

ମମ୍ମଟ ନିଜ କାବ୍ୟପ୍ରକାଶରେ ଯଶ କାବ୍ୟରଚନାର ମୁଖ୍ୟ ଉଦ୍ଦେଶ୍ୟ କହି ଉଦାହରଣ ସ୍ୱରୂପ କାଳିଦାସଙ୍କ ଉଲ୍ଲେଖ କରିଅଛନ୍ତି । ଧ୍ୱନ୍ୟାଲୋକ ପ୍ରଭୃତି ସର୍ବଜନାଦୃତ ସାହିତ୍ୟ ଗ୍ରନ୍ଥର ଲେଖକ, ମାର୍ମିକ ଓ ସହୃଦୟ ଟୀକାକାର ଆନନ୍ଦବର୍ଦ୍ଧନ ଏକ ସ୍ଥାନରେ କହିଛନ୍ତି—**'अस्मिन्नु विचित्रकविपरम्परावाहिनि संसारे कालिदासप्रभृतयो द्वित्राः पञ्चषा वा महाकवय इति गण्यन्ते'** (ଏହି ସଂସାରରେ ଅନେକ କବି ଜାତ ହୋଇ ଅଛନ୍ତି, ତଥାପି ସେମାନଙ୍କ ମଧ୍ୟରେ କାଳିଦାସ ସମାନ ଦୁଇଜଣ ବା ବଡ଼ ହେଲେ ପାଞ୍ଚ ଛଅ ଜଣ ବ୍ୟକ୍ତିଙ୍କୁ କେବଳ 'ମହାକବି' ଉପାଧି ଦିଆଯାଇପାରେ ।) ଜୟଦେବ ତବ କାଳିଦାସଙ୍କୁ 'କବିକୁଳଗୁରୁ' ବୋଲି ସର୍ବଶ୍ରେଷ୍ଠ ଉପାଧି ଦେଇଅଛନ୍ତି । ଜଣେ ସୁହୃଦ ତଜ୍ଞାର **'पुरा कवीनां गणनाप्रसङ्गे कनिष्ठिकाऽधिष्ठित-**

**कालिदासो अद्यापि तत्तुल्यकवेरभावादनामिका सार्थवती बभूव** ।।' ( ପୂର୍ବ କାଳରେ ମହାକବିମାନଙ୍କର ଗଣନା କଲାବେଳେ ସର୍ବ ପ୍ରଥମେ କାଣି ଅଙ୍ଗୁଳିରେ କାଳିଦାସଙ୍କର ଗଣନା କରାଗଲା । ଆଜି ପର୍ଯ୍ୟନ୍ତ ସୁଦ୍ଧା ସେହିପରି ଦ୍ୱିତୀୟ କବି ନ ମିଳୁଥିବାରୁ ତାପରେ ଥିବା ଅନାମିକା ଅଙ୍ଗୁଳିର ଉପଯୋଗ ହୋଇପାରୁନାହିଁ ଏବଂ ସେ ଆଙ୍ଗୁଳି ଅନ୍ୟକବିଙ୍କର ନାମ ନ ପାଇବାରୁ ସାର୍ଥକ 'ଅନାମିକା' ନାମ ଧାରଣ କରି ଅଛି ।) ଏହା କହି କାଳିଦାସଙ୍କୁ ଅସାଧାରଣ ସ୍ଥାନ ଦେଇଅଛନ୍ତି । ଅର୍ବାଚୀନ ପାଶ୍ଚାତ୍ୟ ପଣ୍ଡିତମାନେ କାଳିଦାସଙ୍କୁ 'ହିନ୍ଦୁସ୍ଥାନର ସେକ୍ସପିୟର' କହି ମୁକ୍ତ କଣ୍ଠରେ ପ୍ରଶଂସା କରୁଅଛନ୍ତି ଏବଂ ସଂସାରର ଅତ୍ୟୁତ୍କୃଷ୍ଟ ଶ୍ରେଷ୍ଠ କବିମାନଙ୍କ ଶ୍ରେଣୀରେ ସ୍ଥାନ ଦେଇ ଅଛନ୍ତି । କାଳିଦାସଙ୍କୁ ପ୍ରାଚୀନ ଓ ଅର୍ବାଚୀନ, ପ୍ରାଚ୍ୟ ଓ ପାଶ୍ଚାତ୍ୟ ସୁଧୀବୃନ୍ଦ ଯେଉଁ ଗୌରବ ଅର୍ପଣ କରି ଅଛନ୍ତି—ତାହାର କାରଣ ଆମେ ଏହି ପ୍ରକରଣରେ ପର୍ଯ୍ୟାଲୋଚନା କରିବୁଁ ।

ଉତ୍କୃଷ୍ଟ କାବ୍ୟ ପଢ଼ିଲେ ପ୍ରତ୍ୟେକ ସହୃଦୟ ବ୍ୟକ୍ତିଙ୍କର ଅପୂର୍ବ ଆନନ୍ଦ ହୁଏ । କିନ୍ତୁ କାହିଁକି ଓ କିପରି ହୁଏ—ତାହା ସେ ବିଶ୍ଳେଷଣ କରିପାରେ ନାହିଁ । ଏକ କବିଙ୍କ ମତରେ '**घृतक्षीर-द्राक्षामधुमधुरिमा कैरपि पदैर्विशेष्याना्ख्येयो भवति रसना-मात्रविषयः** ।' ( ଘିଅ, ଦୁଧ, ଦ୍ରାକ୍ଷା, ମହୁ —ଏମାନଙ୍କର ସ୍ୱାଦ କେବଳ ଜିହ୍ୱାଦ୍ୱାରା ଅନୁଭୂତ ହୋଇଥାଏ, ଶବ୍ଦରେ ତାର ବିଶ୍ଳେଷଣ କରି ହୁଏ ନାହିଁ ।) ସାଧାରଣ ପାଠକ କେବଳ ଏ ବିଷୟରେ ନିଜ ଦୁର୍ବଳତା ହୃଦୟଙ୍ଗମ କରିଥାଏ ଏହା ନୁହେଁ, ପ୍ରାଚୀନ କାଳରୁ ଆଜି ପର୍ଯ୍ୟନ୍ତ ଅନେକ ସାହିତ୍ୟକୋବିଦ କାବ୍ୟ-

ନିର୍ମିତ। ମଧ୍ୟ କାବ୍ୟକୁ ଭିନ୍ନ ଭିନ୍ନ କରି ବ୍ୟାଖ୍ୟା କରିବାକୁ ଚେଷ୍ଟା କରିଅଛନ୍ତି, ତଥାପି କାବ୍ୟର କୌଣସି ଲକ୍ଷଣ ବର୍ତ୍ତମାନ ସୁଦ୍ଧା ସର୍ବବାଦି ସମ୍ମତ ହୋଇପାରି ନାହିଁ । ଭାରତବର୍ଷରେ ମଧ୍ୟ ଭରତ ପ୍ରଭୃତ ଅନେକ ସାହିତ୍ୟଶାସ୍ତ୍ରକାର କାବ୍ୟର ବ୍ୟାଖ୍ୟା କରିଅଛନ୍ତି । ତଥାପି ସେ ସମସ୍ତ ବ୍ୟାଖ୍ୟାରେ ମତ ବୈଚିତ୍ର୍ୟ ଦେଖାଯାଉଅଛି । ଧ୍ୱନ୍ୟାଲୋକକାର ଆନନ୍ଦବର୍ଦ୍ଧନ ଧ୍ୱନି ବା ବ୍ୟଙ୍ଗ୍ୟ ଅର୍ଥକୁ ପ୍ରାଧାନ୍ୟ ଦେଇ, ତାକୁ କାବ୍ୟର ଆତ୍ମା ବୋଲି ପ୍ରତିପାଦନ କରିଅଛନ୍ତି । ସାହିତ୍ୟଦର୍ପଣକାର ବିଶ୍ୱନାଥ 'ବାକ୍ୟଂ ରସାତ୍ମକଂ କାବ୍ୟମ୍' (ରସାତ୍ମକ ବାକ୍ୟକୁ କାବ୍ୟ କୁହାଯାଏ ।') ବୋଲି ଲକ୍ଷଣ କରି ରସକୁ ପ୍ରଧାନ ସ୍ଥାନ ଦେଇଅଛନ୍ତି । 'କାବ୍ୟାଲଙ୍କାରସୂତ୍ରବୃତ୍ତି'ର ଲେଖକ ବାମନ ରୀତି ବା ବିଶିଷ୍ଟ ପଦ ରଚନାକୁ କାବ୍ୟର ଆତ୍ମା ବୋଲି ସ୍ୱୀକାର କରିଅଛନ୍ତି । ଏମାନଙ୍କର ବିରୋଧୀ ଭାମହାଦି ଆଳଙ୍କାରିକମାନେ ଅଳଙ୍କାରକୁ ପ୍ରଧାନ ସ୍ଥାନ ଦେଇଅଛନ୍ତି । ଏହା ଛଡ଼ା କୁନ୍ତକ ପ୍ରଭୃତି ଇତର ଗ୍ରନ୍ଥକାରମାନେ ନିଜ ନିଜ ମତ ବଡ଼ ଜୋରରେ ସମର୍ଥନ କରିଅଛନ୍ତି । ତଥାପି ଏ ସମସ୍ତ ସମାଲୋଚନାରେ ଧ୍ୱନି, ରସ, ରୀତି ଓ ଅଳଙ୍କାର—ଏହି ଚାରୋଟି ମତ ପ୍ରଧାନ । ଏ ମଧ୍ୟରୁ କେଉଁଟି ଯୁକ୍ତିଯୁକ୍ତ—ଆମେ ତାର ଚର୍ଚ୍ଚା କରିବାକୁ ଯାଉ ନାହୁଁ । ତଥାପି ଯେ କୌଣସି ମତ ନେଇ ମଧ୍ୟ ପରୀକ୍ଷା କଲେ ଏହା ନିସ୍ସନ୍ଦେହରେ କୁହାଯାଇ ପାରିବ ଯେ କାଳିଦାସଙ୍କର ସମସ୍ତ ଗ୍ରନ୍ଥ କାବ୍ୟଲକ୍ଷଣ ରୂପ କଷଟି ପଥରରେ ପୂର୍ଣ୍ଣରୂପରେ ଉଜ୍ଜ୍ୱଳ ପ୍ରତିଭାତ ହେବ ।

**୧ । ଧ୍ୱନି**—ଉତ୍ତମ କାବ୍ୟମାନଙ୍କରେ ଶବ୍ଦବୋଧ୍ୟ ବାଚ୍ୟାର୍ଥ, କେତେକ ସ୍ଥଳରେ ଶବ୍ଦବୋଧ୍ୟ ବାଚ୍ୟାର୍ଥ ଉପପନ୍ନ ନ ହୋଇ

ତହିଁରୁ ଆକ୍ଷିପ୍ତ ଲକ୍ଷ୍ୟାର୍ଥ—ଏହି ଦୁଇଟିରୁ ଭିନ୍ନ ସହୃଦୟାହ୍ଲାଦକ ଧ୍ୱନି ବା ବ୍ୟଙ୍ଗ୍ୟାର୍ଥ କେବଳ ବିବକ୍ଷିତ ହୋଇଥାଏ । ଏହି ହେତୁ କାବ୍ୟରେ ରମଣୀୟତା ଆସିଥାଏ । ଏହି ମତ ସର୍ବ ପ୍ରଥମେ ଆନନ୍ଦ-ବର୍ଦ୍ଧନ ନିଜ 'ଧ୍ୱନ୍ୟାଲୋକ'ରେ ବିସ୍ତୃତଭାବେ ପ୍ରତିପାଦନ କରିଅଛନ୍ତି ଏବଂ ମମ୍ମଟ ପ୍ରଭୃତି ସାହିତ୍ୟଶାସ୍ତ୍ରକାରମାନେ ତାହା ସମର୍ଥନ କରିଅଛନ୍ତି । ଯେଉଁ କାବ୍ୟରେ ବାଚ୍ୟାର୍ଥ ଅପେକ୍ଷା ବ୍ୟଙ୍ଗ୍ୟାର୍ଥ ବିଶେଷ ମନୋହର, ସେହି କାବ୍ୟ ଉତ୍କୃଷ୍ଟ । ଯେଉଁ କାବ୍ୟରେ ବ୍ୟଙ୍ଗ୍ୟାର୍ଥ ବାଚ୍ୟାର୍ଥ ଅପେକ୍ଷା ନ୍ୟୂନ କୋଟିର, ତାହା ମଧ୍ୟମ କାବ୍ୟ ଏବଂ ଯେଉଁ କାବ୍ୟରେ ବ୍ୟଙ୍ଗ୍ୟାର୍ଥ ଏକବାରେ ନାହିଁ ବା ଅତ୍ୟନ୍ତ ଅସ୍ପଷ୍ଟ ବା ଦୁର୍ବୋଧ, ଅଥଚ ଅଳଙ୍କାରାଦି ବିନ୍ୟାସରେ ବିଶେଷ ଧ୍ୟାନ ଦିଆଯାଇଅଛି, ତାହା ଅଧମ କାବ୍ୟ । ଗ୍ରନ୍ଥକାରମାନେ ଏହିପରି କାବ୍ୟର ଶ୍ରେଣୀବିଭାଗ କରିଅଛନ୍ତି । ଏହି ଦୃଷ୍ଟିରେ ଦେଖିବାକୁ ଗଲେ କାଳିଦାସଙ୍କର ଗ୍ରନ୍ଥମାନ ଉଚ୍ଚ କୋଟିର—ଏଥିରେ ଟିକିଏ ହେଲେ ସନ୍ଦେହ ନାହିଁ । କୌଣସି ଭାବକୁ ସ୍ପଷ୍ଟ ରୂପେ ଶବ୍ଦରେ କହିବା ଅପେକ୍ଷା ତାକୁ ସୂକ୍ଷ୍ମ ରୂପରେ ପ୍ରକଟିତ କରିବା କାଳିଦାସଙ୍କର ବାହାଦୁରି । ଉଦାହରଣ ସ୍ୱରୂପ ଦେଖନ୍ତୁ । ଅଙ୍ଗିରା ମହର୍ଷି ମହାଦେବଙ୍କ ସକାଶେ ପାର୍ବତୀଙ୍କ ପ୍ରାର୍ଥନା କରୁଥିଲେ ପାର୍ବତୀ ପିତା ହିମାଳୟଙ୍କର ପାଖରେ ଥିଲେ । କାଳିଦାସ 'କୁମାରସମ୍ଭବ'ରେ ତାଙ୍କର ଅବସ୍ଥା କିପରି କୌଶଳରେ ବର୍ଣ୍ଣନ କରିଅଛନ୍ତି—ଦେଖନ୍ତୁ—

**एवंवादिनि देवर्षौ पार्श्वे पितुरधोमुखी ।**
**लीलाकमलपत्राणि गणयामास पार्वती ॥**

କୁମାର ୬, ୮୪

'ଯେତେବେଳେ ଦେବର୍ଷି ଏହି ପ୍ରସଙ୍ଗ ଚର୍ଚ୍ଚା କରୁଥିଲେ, ସେତେବେଳେ ପିତାଙ୍କ ପାଖରେ ମୁହଁ ନତ କରି ବସିଥିବା ପାର୍ବତୀ ହସ୍ତଧୃତ ଲୀଳାକମଳର ପତ୍ରମାନ ଗଣୁଥିଲେ ।' ଏହି ଶ୍ଳୋକରେ କୌଣସି ଅଳଙ୍କାର ନାହିଁ । ତଥାପି କମଳ ପତ୍ର ଗଣନାରୁ ପାର୍ବତୀଙ୍କର ଲଜ୍ଜା, ମନୋଗତ ପ୍ରେମ ଏବଂ ଆନନ୍ଦୋଚ୍ଛ୍ୱାସ ଲୁଚାଇବା ଚେଷ୍ଟା ଅତ୍ୟନ୍ତ ସୁନ୍ଦରଭାବେ କବି ସୂଚିତ କରିଅଛନ୍ତି । ସାହିତ୍ୟଶାସ୍ତ୍ରକାରମାନେ ଏହି ଶ୍ଳୋକକୁ ଉତ୍କୃଷ୍ଟ କାବ୍ୟ (ଧ୍ୱନି)ର ଉଦାହରଣ ସ୍ୱରୂପ ଉଦ୍ଧୃତ କରିଅଛନ୍ତି । ଦ୍ୱିତୀୟ ଉଦାହରଣ 'ମେଘଦୂତ'ର ଗଙ୍ଗାବର୍ଣ୍ଣନା ଦେଖନ୍ତୁ —

तस्माद्गच्छेरनुकनखलं शैलराजावतीर्णां
जह्नोः कन्यां सगरतनयस्वर्गसोपानपङ्क्तिम् ।
गौरीवक्त्रभ्रुकुटिरचनां या विहस्येव फेनैः
शम्भोः केशग्रहणमकरोदिन्दुलग्नोर्मिहस्ता ॥

ମେଘ, ୫୨,

'ତାପରେ ତୁମେ କନଖଳ ପାଖରେ ହିମାଳୟରୁ ତଳକୁ ଖସୁଥିବା, ସଗରତନୟମାନଙ୍କର ସ୍ୱର୍ଗାରୋହଣର ନିଶୁଣୀ ସଦୃଶୀ, ଜହ୍ନୁକନ୍ୟା ଗଙ୍ଗାଙ୍କ ଅଭିମୁଖେ ଯାତ୍ରା କରିବ । ଯେ କି ପାର୍ବତୀଙ୍କର କୁଟିଳ କଟାକ୍ଷକୁ ଫେନଚ୍ଛଳରେ ଉପହାସ କରି ଲଲାଟସ୍ଥିତ ଚନ୍ଦ୍ର ପର୍ଯ୍ୟନ୍ତ ନିଜ ତରଙ୍ଗରୂପ ହସ୍ତ ପ୍ରସାରି କରି ମହାଦେବଙ୍କର କେଶଗୁଚ୍ଛ ଗ୍ରହଣ କରିଛନ୍ତି ।'

ଏହି ଶ୍ଳୋକରେ ରୂପକ, ଉତ୍ପ୍ରେକ୍ଷା, ସମାସୋକ୍ତିପ୍ରଭୃତି ଅଳଙ୍କାରମାନଙ୍କର ବିଚିତ୍ର ସମାବେଶ ଦେଖାଯାଏ । ତଥାପି

ସଗରତନୟ ମାନଙ୍କର ସ୍ୱର୍ଗପ୍ରାପ୍ତିର ସାଧନ ହେବା ହେତୁ ଗଙ୍ଗାଙ୍କର ପବିତ୍ରତା, ପାର୍ବତୀଙ୍କର ପ୍ରେମମାତ୍ସର୍ଯ୍ୟ ପ୍ରଯୁକ୍ତ ଭ୍ରୂକ୍ଷେପ, ମହାଦେବ ନିଜ ମସ୍ତକରେ ସ୍ଥାନ ଦେବା ହେତୁ ଗଙ୍ଗାଙ୍କର ମହତ୍ତ୍ୱ ମଧ୍ୟ ସୂଚିତ ହେବା ହେତୁ ପରମରମଣୀୟତା ଅନୁଭୂତ ହୁଏ । କାଳିଦାସଙ୍କର ପ୍ରତ୍ୟେକ ପଦ ଓ ଲିଙ୍ଗ, ବିଭକ୍ତି, ବଚନ ପ୍ରଭୃତି ଏବଂ ସେମାନଙ୍କର ଅବସ୍ଥିତି ମଧ୍ୟ କିପରି ରମଣୀୟାର୍ଥବ୍ୟଞ୍ଜକ—ହୋଇ ଆନନ୍ଦବର୍ଦ୍ଧନ, ମମ୍ମଟପ୍ରଭୃତି ଅନେକ ଉଦାହରଣରେ ପ୍ରଦର୍ଶିତ କରିଅଛନ୍ତି । ଗ୍ରନ୍ଥବିସ୍ତାର-ଭୟରେ ସେ ସମସ୍ତ ଉଦାହରଣ ଏଠାରେ ଦିଆଗଲା ନାହିଁ ।

କାଳିଦାସ ଓ ଭବଭୂତି ତଥା ପ୍ରଭୃତି ଅନ୍ୟାନ୍ୟ କବି-ମାନଙ୍କ ଗ୍ରନ୍ଥମାନ ସୂକ୍ଷ୍ମରୂପେ ପର୍ଯ୍ୟବେକ୍ଷଣ କଲେ ବିଶେଷ ପ୍ରଭେଦ ପାଠକମାନେ ବୁଝିପାରିବେ । ବର୍ତ୍ତମାନ ତାହାର ଉଲ୍ଲେଖ ଆବଶ୍ୟକ । ସାଧାରଣତଃ କୌଣସି ରମଣୀୟ କଳ୍ପନା ମନରୁ ସ୍ଫୂର୍ତ୍ତି କଲେ ଅନ୍ୟକବିମାନେ ଲମ୍ବା ଚୌଡ଼ା ବର୍ଣ୍ଣନା କରିବସନ୍ତି । କିନ୍ତୁ କାଳିଦାସ ବଛା ବଛା ଶବ୍ଦରେ ପ୍ରଥମେ ତାର ଲେଖାଚିତ୍ର ଅଙ୍କନ କରି ତହିଁରେ ରଙ୍ଗଚଢ଼ାଇବାର ସହୃଦୟପାଠକମାନଙ୍କ ଉପରେ ଛାଡ଼ି ଦିଅନ୍ତି । ଏହି ହେତୁ କାଳିଦାସଙ୍କର କାବ୍ୟ 'କ୍ଷଣେ କ୍ଷଣେ ଯନ୍ନବତାମୁପୈତି' ନ୍ୟାୟରେ ପ୍ରତିକ୍ଷଣ ରମଣୀୟ, କଷଟି-ପଥରରେ ପରୀକ୍ଷିତ କାକ୍ୟାବଳୀମାନ ରତ୍ନ ଏବଂ ପଙ୍କ୍ତିମାନେ ପାଠକର ମନ ଆକର୍ଷଣ କରିବାକୁ ସମର୍ଥ । ଉଦାହରଣସ୍ୱରୂପ ଦେଖନ୍ତୁ—ମଦନଦାହପରେ ବସନ୍ତଙ୍କୁ ଦେଖି ରତିଙ୍କର ଦୁଃଖ ଦୁଇ ଗୁଣ ବଢ଼ିଗଲା—ଏହି ଭାବ ବ୍ୟକ୍ତ କରିବାକୁ ଯାଇ କାଳିଦାସ **'स्वजनस्य हि दुःखमग्रतो विवृतद्वारमिवोपजायते'** ଏହି

ପଂକ୍ତିରେ 'ବଜ୍ରଦ୍ୱାରମିବ' ଏହି ସାମାନ୍ୟ ଉପମାର ସାହାଯ୍ୟରେ ବଜ୍ରଗମ୍ଭୀର ଧ୍ୱନିରେ ପ୍ରବାହିତ ପାଣି ପରି ଦୁଃଖର ଅପ୍ରତିହତ ପ୍ରବାହର ସୂଚନା ଦେଇଛନ୍ତି । ଠିକ ଏହି କଥାଟି ଏକ ବର୍ଣ୍ଣନାକୁ ଉଦ୍ଧୃତ ସମଗ୍ର ଏକ ଶ୍ଳୋକରେ ପ୍ରତିପାଦନ କରି ବଭିନ୍ନ ଅଳଙ୍କାରରେ ବିଭୂଷିତ କରିଅଛନ୍ତି —

सन्तानवाहीन्यपि मानुषाणां दुःखानि सद्बन्धुवियोगजानि ।
दृष्टे जने प्रेयसि दुःसहानि स्रोतःसहस्रैरिव संप्लवन्ते ॥'

ଉତ୍ତରରାମଚରିତ ୪,୮

'ମାଳବିକାଗ୍ନିମିତ୍ର'ର ଉପାଖ୍ୟାନ ରଚନା କରିବାକୁ ଯାଇ କବି ଇରାବତୀଙ୍କର ଅନାବଶ୍ୟକ ନୃତ୍ୟପ୍ରସଙ୍ଗ କପଟ କୌଶଳରେ ବାଦ ଦେଇଛନ୍ତି, ତାହାର ବିଶ୍ଳେଷଣ ପ୍ରଥମେ ଆମେ କରି ସାରିଛୁଁ । ଏହିପରି ସ୍ଥଳମାନଙ୍କରେ କବିଙ୍କର ସଂଯମ ଓ କଳାକୁଶଳତା ଅତୀବ ଉତ୍କୃଷ୍ଟ ବୋଧ ହୁଏ ।

୨ । **ରସ**— ଆଳଙ୍କାରିକମାନେ ବିଷୟ ଭେଦରେ ଧ୍ୱନି ତିନି ପ୍ରକାର ବୋଲି ସ୍ୱୀକାର କରିଅଛନ୍ତି— ବସ୍ତୁଧ୍ୱନି, ଅଳଙ୍କାରଧ୍ୱନି ଓ ରସଧ୍ୱନି । ଏମାନଙ୍କ ମଧ୍ୟରେ ରସଧ୍ୱନି ପ୍ରଧାନ । ଆନନ୍ଦବର୍ଦ୍ଧନାଚାର୍ଯ୍ୟ କହିଅଛନ୍ତି--ବ୍ୟଙ୍ଗ୍ୟବାଚକସମ୍ବନ୍ଧ ନାନା ପ୍ରକାର ହୋଇପାରେ, ତଥାପି କାବ୍ୟ ନାଟକ ପ୍ରଭୃତି ପ୍ରବନ୍ଧମାନଙ୍କରେ ରସକୁ କେବଳ ପ୍ରାଧାନ୍ୟ ଦେଇ ତଦନୁଗୁଣ ଅଳଂକାରମାନଙ୍କର ଯୋଜନା କରିବା ବାଞ୍ଛନୀୟ । ଏହି ହେତୁ ରସପକ୍ଷକୁ ପ୍ରାଧାନ୍ୟ ଦେଇ ବିଶ୍ୱନାଥ ନିଜ 'ସାହିତ୍ୟଦର୍ପଣ'ରେ ରସକୁ କେବଳ

କାବ୍ୟର ଆତ୍ମା ବୋଲି ପ୍ରତିପାଦନ କରିଅଛନ୍ତି । ସାହିତ୍ୟ ଶାସ୍ତ୍ରରେ ଶୃଙ୍ଗାର, ବୀର, କରୁଣ, ହାସ୍ୟ, ରୌଦ୍ର, ଭୟାନକ, ବୀଭତ୍ସ, ଅଦ୍ଭୁତ ଓ ଶାନ୍ତରସ ଏହିପରି ନଅ ପ୍ରକାର ରସ ସ୍ୱୀକାର କରିଅଛନ୍ତି । ଏ ମଧ୍ୟରୁ ସଂଯୋଗ ଓ ବିପ୍ରଲମ୍ଭଭେଦରେ ଦୁଇ ପ୍ରକାର ଶୃଙ୍ଗାର ଓ କରୁଣ ରସକୁ କାଳିଦାସ ଅତି ଉତ୍କୃଷ୍ଟରୂପରେ ଚିତ୍ରିତ କରିଅଛନ୍ତି । ବିଶେଷତଃ ଶୃଙ୍ଗାର ରସବର୍ଣ୍ଣନାରେ କବିଙ୍କର ସିଦ୍ଧହସ୍ତତା ଦେଖି ଜୟଦେବ 'କବିତାକାମିନୀର ବିଳାସ' ବୋଲି ଉପାଧି ଦେଇ ଅଛନ୍ତି । ଅନ୍ୟ ଏକ ଜଣ ସୁଭାଷିତକାର ଶୃଙ୍ଗାରରସ ଓ ଲଳିତ ପଦ ବିନ୍ୟାସରେ କୌଣସି କବି ଏ ପର୍ଯ୍ୟନ୍ତ କାଳିଦାସଙ୍କଠାରୁ ଅଧିକ ହୋଇପାରି ନାହାନ୍ତି ବୋଲି ପ୍ରକାଶ କରିଅଛନ୍ତି । କାଳିଦାସଙ୍କର ତନୋଟିଯାକ ନାଟକ, କୁମାରସମ୍ଭବ ଓ ମେଘଦୂତ କାବ୍ୟ ଶୃଙ୍ଗାରରସପ୍ରଧାନ ହେବାହେତୁ ଏମାନଙ୍କରେ ଅନ୍ୟ ରସମାନଙ୍କର ବହୁଳ ସମାବେଶ କରିବାର ଅବକାଶ ଘଟି ପାରିନାହିଁ । ତଥାପି ପ୍ରସଙ୍ଗବଶତଃ ହାସ୍ୟ, କରୁଣ, ଭୟାନକ, ପ୍ରଭୃତି ଅନ୍ୟାନ୍ୟ ରସମାନଙ୍କର ମଧ୍ୟ ମଧ୍ୟରେ ସମାବେଶ ଦେଖାଯାଏ । 'ରଘୁବଂଶ'ରେ ଅବଶ୍ୟ ଶୃଙ୍ଗାର ରସ ଛଡ଼ା ଅନ୍ୟାନ୍ୟ ରସମାନ ମଧ୍ୟ ଅତି ସ୍ୱତନ୍ତ୍ରରୂପେ ଚିତ୍ରିତ କରାଯାଇଅଛି ବୋଲି ଆମେ ପ୍ରଥମରୁ କହିଅଛୁଁ ।

ଯେ କୌଣସି ରସର ପୂର୍ଣ୍ଣ ପରିପୋଷ ସକାଶେ ବିଭାବ—ଅନୁଭାବ—ପ୍ରଭୃତି ଅଙ୍ଗମାନଙ୍କୁ ଭଲରୂପେ ବର୍ଣ୍ଣନା କରିବା ବାଞ୍ଛନୀୟ । ଏହେତୁ ରସମାନଙ୍କର ଉଦାହରଣ ମୂଳଗ୍ରନ୍ଥମାନଙ୍କରୁ କେବଳ ପଢ଼ିବା ଦରକାର । ତଥାପି ଏ ବିଷୟରେ

କାଳିଦାସଙ୍କର ଅସାଧାରଣ କୌଶଳ ଦେଖାଇବା ଉଦ୍ଦେଶ୍ୟରେ ଆମ୍ଭେ ଏଠାରେ ଦୁଇଟି ଉଦାହରଣ ଦେଉଅଛୁ —

नूनं तस्याः प्रबलरुदितोच्छूननेत्रं प्रियाया
निश्वासानामशिशिरतया भिन्नवर्णाधरोष्ठम् ।
हस्तन्यस्तं मुखमसकलव्यक्ति लम्बालकत्वा—
दिन्दोर्दैन्यं त्वदनुसरणक्लिष्टकान्तेर्बिभर्ति ॥

ମେଘ ୮[illegible],

ଏହି ଶ୍ଳୋକରେ ଯକ୍ଷ ନିଜ କଳ୍ପନାରେ ବିରହିଣୀ ପତ୍ନୀଙ୍କର ଚିତ୍ର ସୁନ୍ଦରଭାବେ ଅଙ୍କନ କରିଅଛନ୍ତି । ସବୁଦିନ ଅଶ୍ରୁ ଝରିବା ଫଳରେ ଫୁଲିଯାଇଥିବା ଆଖି, ଉଷ୍ଣ ନିଶ୍ୱାସ ବହିବାହେତୁ ବିବର୍ଣ୍ଣ ଅଧରୋଷ୍ଠ, ହସ୍ତ ଉପରେ ନ୍ୟସ୍ତ ଓ ଶିଥିଳ ଲମ୍ବ ଅଳକା-ଗୁଚ୍ଛ ଚତୁଃପାର୍ଶ୍ୱ ପଡ଼ିଥିବା ହେତୁ ଅର୍ଦ୍ଧ ପ୍ରକାଶିତ ମୁଖର ବର୍ଣ୍ଣନାରୁ ଯକ୍ଷପତ୍ନୀଙ୍କର ବିରହ, ଦୁଃଖ, ବିଷାଦ, ଚିନ୍ତା ପ୍ରଭୃତି ମାନସିକ ବିକାର ଅତି ଉତ୍କୃଷ୍ଟରୂପେ ପ୍ରତିଭାତ ହୁଏ । ଶେଷପାଦରେ ନିଦର୍ଶନା ଅଳଙ୍କାରସାହାଯ୍ୟରେ ମୁଖର ନିଷ୍ପ୍ରଭତା ସୂଚିତ ହୁଏ । ଏ ସମସ୍ତ ବର୍ଣ୍ଣନା ପଢ଼ିଲେମାତ୍ରେ ପାଠକମନରେ ଯକ୍ଷପତ୍ନୀଙ୍କପ୍ରତି ସହାନୁଭୂତି ଜାତ ନ ହୋଇ ରହିପାରେ ନାହିଁ ।

हरस्तु किञ्चित् परिलुप्तधैर्यश्चन्द्रोदयारम्भ इवाम्बुराशिः
उमामुखे बिम्बफलाधरोष्ठे व्यापारयामास विलोचनानि ॥

କୁମାର, ୩, ୬୭,

(ଚନ୍ଦ୍ର ଦର୍ଶନରେ ସମୁଦ୍ର ବଚଳିତ ହେଲା ପରି ଶିବଙ୍କର ଚିତ୍ତ କମ୍ପିତ ବିଚଳିତ ହେଲା । ସେ ବିମ୍ବଫଳସମାନ ଅଧରୋଷ୍ଠଯୁକ୍ତ ପାର୍ବତୀଙ୍କ ମୁଖ ଉପରେ ନେତ୍ରପାତ କଲେ ।)

ଏହି ଶ୍ଲୋକରେ ମହାଦେବଙ୍କ ମନରେ ଉଦ୍‌ବୋଧିତ ଭାବମାନ ରତିଭାବ ଉତ୍ତମରୂପେ ବର୍ଣ୍ଣିତ ହୋଇଅଛି ।

**୩ । ରୀତି**—ଅଷ୍ଟମଶତାବ୍ଦୀର ବାମନ ନିଜ 'କାବ୍ୟାଳଙ୍କାର-ସୂତ୍ରବୃତ୍ତି' ନାମକ ଗ୍ରନ୍ଥରେ ରୀତିକୁ କାବ୍ୟର ଆତ୍ମା ବୋଲି ସ୍ୱୀକାର କରିଅଛନ୍ତି । କିନ୍ତୁ ଧ୍ୱନ୍ୟାଲୋକକାରଙ୍କର 'ଧ୍ୱନିବାଦ' ରସିକ-ମାନଙ୍କଦ୍ୱାରା ବିଶେଷ ଆଦୃତ ହେବାରୁ ବାମନଙ୍କର ରୀତିବାଦ ପଛରେ ପଡ଼ିଗଲା । ତଥାପି କାବ୍ୟରେ ରୀତିର ପ୍ରଭାବ କମ ନୁହେଁ । ବିଶିଷ୍ଟ ପଦ ରଚନାକୁ 'ରୀତି' କୁହାଯାଏ । ବାମନ ବୈଦର୍ଭୀ, ଗୌଡ଼ୀ ଓ ପାଞ୍ଚାଳୀ—ଏହିପରି ତିନି ପ୍ରକାର ରୀତି ମାନି ଅଛନ୍ତି । ଏମାନଙ୍କ ମଧ୍ୟରେ ବୈଦର୍ଭୀ ରୀତି ପ୍ରଧାନ । କାରଣ ଏହି ରୀତିରେ ସମସ୍ତ ଗୁଣମାନଙ୍କର ସମାବେଶ ଦେଖାଯାଏ । ବାମନ ଶ୍ଳେଷ ପ୍ରଭୃତି ଦଶଟି ଶବ୍ଦଗୁଣ ଓ ଦଶଟି ଅର୍ଥଗୁଣ ସ୍ୱୀକାର କରିଅଛନ୍ତି । ମାତ୍ର ପରବର୍ତ୍ତୀ ମମ୍ମଟ ପ୍ରଭୃତି ଆଲଙ୍କାରିକମାନେ ସେ ସମସ୍ତ ଗୁଣ-ଭିନ୍ନ କରି କାଟି ଦେଇ ମାଧୁର୍ଯ୍ୟ, ଓଜ ଓ ପ୍ରସାଦରୂପ ତିନୋଟି ଗୁଣ କେବଳ ସ୍ୱୀକାର କରିଅଛନ୍ତି ।

କାଳିଦାସ ନିଜର ସମସ୍ତ ବାକ୍ୟ ସର୍ବୋତ୍କୃଷ୍ଟ ବୈଦର୍ଭୀ ରୀତିରେ ଲେଖିଅଛନ୍ତି । ବୈଦର୍ଭୀ ରୀତିର ବିଶେଷତ୍ୱ ହେଉଛି ମାଧୁର୍ଯ୍ୟବ୍ୟଞ୍ଜକ କୋମଳ ବର୍ଣ୍ଣଯୋଜନା ଓ ଦୀର୍ଘ ସମାସର ଅଭାବ । ପ୍ରଥମତଃ ସଂସ୍କୃତଭାଷା ଶ୍ରୁତିମଧୁର । ବିଶେଷତଃ କାଳିଦାସ

ନାଙ୍କର ସମସ୍ତ ଗ୍ରନ୍ଥମାନଙ୍କରେ ଟବର୍ଗୀୟ ପରୁଷବର୍ଣ୍ଣ, ସଂଯୁକ୍ତାକ୍ଷର ଓ ବଡ ବଡ ସମାସ ଜାଣିଶୁଣି ପରିହାର କରି ଅଛନ୍ତି । ଅତଏବ ତାଙ୍କର ଗ୍ରନ୍ଥ ଏକ ପଣ୍ଡିତଙ୍କର ଉକ୍ତିଅନୁଯାୟୀ ମଧୁ ସଦୃଶ ମଧୁର । କାଳିଦାସଙ୍କର ଗ୍ରନ୍ଥମାନଙ୍କରେ ଶୃଙ୍ଗାର ଓ କରୁଣ—ଏହି ଦୁଇଟି ରସ ପ୍ରଧାନ ହେବାହେତୁ ଭାଷାର ଶୈଳୀ ମଧ୍ୟ ତଦନୁରୂପ ହୋଇଅଛି । କାରଣ ଶୃଙ୍ଗାର ବିଶେଷତଃ ବିପ୍ରଲମ୍ଭଶୃଙ୍ଗାର ଓ କରୁଣରସରେ ପାଠକମାନଙ୍କର ମନ ଅତ୍ୟନ୍ତ ତରଳ ହୋଇଯାଏ । ଏ ହେତୁ ଏହି ରସମାନଙ୍କର ବର୍ଣ୍ଣନାରେ କୋମଳ ବର୍ଣ୍ଣ ଯୁକ୍ତ ରଚନା ନିତାନ୍ତ ଆବଶ୍ୟକ । କାଳିଦାସ ଟେନିସନଙ୍କ ପରି ନାଦ ମଧୁର ଶବ୍ଦ ଯୋଜନା ପ୍ରତି ବିଶେଷ ଦୃଷ୍ଟି ଦେଇଅଛନ୍ତି । ସମ୍ଭବତଃ ସେ ନିଜ କାବ୍ୟମାନଙ୍କରେ ବାରମ୍ବାର ଆଲୋଚନା କରି ଅନେକ କଳ୍ପନା ଓ ଶବ୍ଦର ପରିବର୍ତ୍ତନ କରିଅଛନ୍ତି । ଆମର ଧାରଣା—ରଘୁବଂଶର ୧୧ ଶ ସର୍ଗର ୦୭ ଓ ୦୮ ଏହି ସମାନାର୍ଥକ ଦୁଇଟି ଶ୍ଳୋକ ଯଦି କାଳିଦାସଙ୍କର ବୋଲି ଧରାଯାଏ, ତେବେ ଏହି ଦୁଇଟିରୁ ପ୍ରଥମଟି ତାଙ୍କର ମନୋନୀତ ନ ହେବାରୁ ଦ୍ୱିତୀୟଟି ରଚନା କରି ଅଛନ୍ତି ବୋଲି ଧରିବାକୁ ହେବ । ଏତେ ପରିଶ୍ରମ ସହକାରେ ରଚିତ ତାଙ୍କର କୌଣସି କାବ୍ୟରେ କ୍ଲିଷ୍ଟତା କି କୃତ୍ରିମତା ମୋଟେଃ ସ୍ଥାନ ପାଇନାହିଁ । ସମସ୍ତ ରଚନା ନବବିକଶିତ କୁସୁମ ସଦୃଶ ସତେଜ ଓ ସରସ ଦେଖାଯାଏ । ଏଥିରୁ କବିବରଙ୍କର କଳାବିନ୍ୟାସର ଚରମୋତ୍କର୍ଷର ପରିଚୟ ମିଳେ । ଲଳିତପଦଯୋଜନାରେ କାଳିଦାସଙ୍କର ବିଶେଷ ଆଗ୍ରହ ଥିଲା । ସଂସ୍କୃତ ଅନଭିଜ୍ଞ ପାଠକମାନେ ମଧ୍ୟ ତାଙ୍କର ଶ୍ରୁତିମନୋହର ଶବ୍ଦ ଶୁଣି ଆକୃଷ୍ଟ ହେଉଅଛନ୍ତି । ସେହି-ପରି କାଳିଦାସଙ୍କର ଗ୍ରନ୍ଥମାନଙ୍କର ସମାସମାନ ସନ୍ଦର୍ଭଅନୁଯାୟୀ

ଉପଯୁକ୍ତ ହେବା ଫଳରେ ତାଙ୍କର ସମସ୍ତ ରଚନାରେ ସରଳତା ସୁବୋଧତା ଓ ପ୍ରସାଦଗୁଣ ପୂର୍ଣ୍ଣମାତ୍ରାରେ ଦୃଷ୍ଟିଗୋଚର ହୁଏ । ଦୀର୍ଘଦୀର୍ଘ ସମାସଯୁକ୍ତ ରଚନା କେତେ କଠିନ ହୁଏ ଏବଂ ସେଥିରେ କବିପ୍ରତିଭା କପରି ସ୍ଥାନ ପାଏ—ତାହା ବାଣଭଟ୍ଟଙ୍କର 'ହର୍ଷଚରିତ' ଓ 'କାଦମ୍ବରୀ' ରୁ ସ୍ପଷ୍ଟ ହୁଏ । ତାଙ୍କର ଦୀର୍ଘ ଦୀର୍ଘ ସମାସମାନଙ୍କର ଅର୍ଥ କଲାବେଳେ ପାଠକମାନଙ୍କୁ ଏତେ କଠିନତାର ସମ୍ମୁଖୀନ ହେବାକୁ ହୁଏ ଯେ ସେମାନଙ୍କର ଦୃଷ୍ଟି ସୁନ୍ଦର ସୁନ୍ଦର କଳ୍ପନାମାନଙ୍କ ପ୍ରତି ସହଜରେ ଆକୃଷ୍ଟ ହୁଏ ନାହିଁ । ଦୀର୍ଘସମାସଯୋଜନା ନାଟକମାନଙ୍କର ମଧ୍ୟ ବିଶେଷ କ୍ଷତିକାରକ । ଉଦାହରଣ ସ୍ୱରୂପ ଭବଭୂତିଙ୍କର 'ମାଲତୀମାଧବ' କୁ ନିଅନ୍ତୁ । ଏହି ନାଟକରେ ସ୍ତ୍ରୀପାତ୍ରମାନଙ୍କର ମୁହଁରେ ମଧ୍ୟ ସମାସ ବହୁଳ କ୍ଲିଷ୍ଟ ଭାଷା ଦେଖି ରସିକମାନଙ୍କର ମନ ବିରସ ହୋଇଯାଏ । ଠିକ୍ ତାର ଓଲଟା ଗୁଣ କାଳିଦାସଙ୍କ ନାଟକରେ ଦେଖାଯାଏ । କାଳିଦାସଙ୍କର ନାଟକମାନଙ୍କରେ ଉକ୍ତି ପ୍ରତ୍ୟୁକ୍ତି ଅତି ସରଳ ଭାଷାରେ ହେବା ଫଳରେ ସେ ସମସ୍ତ ସ୍ୱାଭାବିକ ଓ ସହଜ ସୁନ୍ଦର ହୋଇପାରିଛି ।

**୪ । ଅଳଙ୍କାର** — ଉତ୍କୃଷ୍ଟ କାବ୍ୟରେ ପ୍ରାଧାନ୍ୟତଃ ଧ୍ୱନି ବା ରସ ପ୍ରତୀତ ହେଲେ ମଧ୍ୟ ତାକୁ ଅପେକ୍ଷା କରିବାକୁ ମନ ବଳେ ନାହିଁ । କାବ୍ୟର ଚରମ ଉଦ୍ଦେଶ୍ୟ ଆନନ୍ଦପ୍ରାପ୍ତି ଭାବନାର ଉଦ୍ରେକ ପରି କଳ୍ପନାରୁ ମଧ୍ୟ ହୋଇପାରେ । ଅତଏବ ଭାମହପ୍ରଭୃତି ଅଳଙ୍କାରିକମାନେ କଳ୍ପନାର ବିଳାସ—ଅଳଙ୍କାରମାନଙ୍କୁ ମଧ୍ୟ କାବ୍ୟନିମିତ୍ତରେ ମୁଖ୍ୟରୂପେ ସ୍ୱୀକାର କରି ସେମାନଙ୍କର ବିସ୍ତାର, ବର୍ଗୀକରଣ ଓ ଚର୍ଚ୍ଚା କରିଅଛନ୍ତି ।

ଅଳଙ୍କାରମାନଙ୍କର ସମୁଚିତ ସନ୍ନିବେଶ ରସୋତ୍କର୍ଷରେ ମଧ୍ୟ ସାହାଯ୍ୟ କରେ—ଏହା ଉପରଲିଖିତ ଉଦାହରଣରୁ ସ୍ପଷ୍ଟରୂପେ ଜଣାଯିବ । ଏହିହେତୁ ମହାକବିମାନେ ନିଜ ନିଜ କାବ୍ୟମାନଙ୍କରେ ଭଲରୂପେ ଅଳଙ୍କାରମାନଙ୍କୁ ବ୍ୟବହାର କରିଅଛନ୍ତି । ଅଳଙ୍କାର ଶବ୍ଦାଳଙ୍କାର, ଅର୍ଥାଳଙ୍କାର ଓ ଶବ୍ଦାର୍ଥାଳଙ୍କାର—ଏହିପରି ତିନି ପ୍ରକାର । ଅର୍ଥାଳଙ୍କାର ଅପେକ୍ଷା ଶବ୍ଦାଳଙ୍କାର ବିଶେଷ କୃତ୍ରିମ । ଅତଏବ ରସିକମାନଙ୍କର ସେତେଦୂର ଅଭିମତ ନୁହେଁ । କଳାଭିଜ୍ଞ କାଳିଦାସ ଏହି ଶବ୍ଦାଳଙ୍କାରକୁ କୌଣସିଠାରେ ବିଶେଷଭାବେ ଉପଯୋଗ କରିନାହାନ୍ତି । ରଚନା ପ୍ରବାହରେ ଯେଉଁଠାରେ ସହଜଗତିରେ ହୋଇପାରେ, ସେହିଠାରେ କେବଳ ସେମାନଙ୍କ ଉପଯୋଗ କରି ଅଛନ୍ତି । ଉଦାହରଣ ଯଥା— 'ଭୃଙ୍ଗେ ଭୃଙ୍ଗଶ୍ରେଣୀ ସମାନଯାତେ' 'ଭୂୟଃ ସ ଭୂମେର୍ଧୁରମାସସାଦ' (ରଘୁ, ୨, ୭୪) 'ସମ୍ବନ୍ଧନଃ ସଦ୍ମ, ସମାସସାଦ' (ରଘୁ, ୭, ୧୭), ପ୍ରଜାଃ 'ପ୍ରଜାନାଥ ପିତେବ ପାସି' (୨,୪୮) ଇତ୍ୟାଦି ସ୍ଥଳରେ ଅନୁପ୍ରାସ ଅତ୍ୟନ୍ତ ରମଣୀୟ । କେତେକ ସ୍ଥଳରେ ବିବକ୍ଷିତ ଅର୍ଥର ପ୍ରତିଧ୍ୱନି ମଧ୍ୟ ଏହିମାନଙ୍କରେ ଦେଖାଯାଏ ।

ଉଦାହରଣ— 'ମାତୃଶ୍ରୀ ମଦଧୃତ ମୂର୍ଚ୍ଛନା ମନୋ ମେ' ଏଠାରେ ମକାର ଅନୁବୃତ୍ତି ମୃଦଙ୍ଗଧ୍ୱନିର ଅନୁରୂପ ହୋଇଅଛି ।

**ଯମକ** — ଏହି ଅଳଙ୍କାର ପ୍ରକାଶେ କବିଙ୍କ ବିଶେଷ ପରିଶ୍ରମ ସହକାରେ ବିଶିଷ୍ଟ ଶବ୍ଦମାନ ଖୋଜି ଖୋଜି ରଚନା କରିବାକୁ ହୁଏ । ଫଳରେ ରଚନାରେ କୃତ୍ରିମତା ସ୍ଥାନ ପାଇଥାଏ । ରସଭଙ୍ଗ ମଧ୍ୟ ସମୟ ସମୟରେ ହୋଇଥାଏ । ଏହେତୁ ଶୃଙ୍ଗାର ରସରେ ବିଶେଷତଃ ବିପ୍ରଲମ୍ଭଶୃଙ୍ଗାରରେ ଯମକର

ଉପଯୋଗ କରିବା ବାଞ୍ଛନୀୟ ନୁହେଁ ବୋଲି ଧ୍ୱନିକାର ପ୍ରଭୃତି ଅଳଙ୍କାରିକମାନେ ନିଷେଧ କରିଅଛନ୍ତି । କାଳିଦାସ ମଧ୍ୟ ଶୃଙ୍ଗାର-ରସପ୍ରଧାନ ଯେ କୌଣସି କାବ୍ୟରେ ଯମକମାନଙ୍କର ବିଶେଷ ଉପଯୋଗ କରିନାହାନ୍ତି । ପାତ୍ରମାନଙ୍କର କଥୋପକଥନରେ ସେ ସତର୍କତା ସହକାରେ ରଚନା କରିଅଛନ୍ତି । ଅନ୍ୟତ୍ର ମଧ୍ୟ ଯେଉଁଠାରେ ଯମକର ଉପଯୋଗ ଦୋଷାବହ ହେବ ନାହିଁ, ସେହିପରି ସ୍ଥଳରେ କେବଳ ଉପଯୋଗ କରିଅଛନ୍ତି । ଉଦାହରଣ ଯଥା 'ବିଧାସ୍ତ୍ର ବଧ୍ୟସ୍ୟ ଶରଂ ଶରଣ୍ୟଃ ( ରଘୁ ' ୩୦) 'ମନୁଷ୍ୟ ବାଗ୍ଚ ମନୁବଂଶକେତୁମ୍' (ରଘୁ, ୨, ୩୩) ଇତ୍ୟାଦି ନବମ ସର୍ଗ ଆରମ୍ଭରେ ୫୪ ଟି ଶ୍ଳୋକରେ ଦଶରଥଙ୍କର ରାଜ୍ୟବ୍ୟବସ୍ଥା, ବସନ୍ତଋତୁ, ମୃଗୟା ପ୍ରଭୃତି ବର୍ଣ୍ଣନା କଲାବେଳେ କାଳିଦାସ ଚତୁର୍ଥପାଦ ଆରମ୍ଭରେ 'ଯମବତାମବତାଂ ଚ ଧୁରି ସ୍ଥିତଃ' ( ରଘୁ, ୯. ୧) 'ସ ନଗରଂ ନଗରନ୍ଧ୍ରକରୌଜସଃ' (ରଘୁ ୯, ୨ ) ଇତ୍ୟାଦି ରୂପେ ଯମକ ବ୍ୟବହାର କରିଅଛନ୍ତି । କିନ୍ତୁ ଏ ସମସ୍ତରେ ଶୃଙ୍ଗାରାଦି ରସର ସମ୍ପର୍କ ନ ଥିବାରୁ ରସଭଙ୍ଗ ଦୋଷର ଅବକାଶ ନାହିଁ । ଖାଲି ସେତିକି ନୁହେଁ, କବିଙ୍କ ଯମକମାନଙ୍କର ନାଦ ମାଧୁର୍ଯ୍ୟରେ ପାଠକମାନଙ୍କର ମନ ଆନନ୍ଦିତ ହେଉଅଛି ଏବଂ କବିଙ୍କର ଭାଷାର ସୌଷ୍ଠବ ଦେଖି ବିସ୍ମୟ ଜାତ ହେଉଅଛି ।

**ଶ୍ଳେଷ** :— ଦ୍ୱ୍ୟର୍ଥକ ଶବ୍ଦ ଯୋଜନାରେ ଏହି ଅଳଙ୍କାର ହୁଏ । ଏହେତୁ ଏହାର ମାଧୁରୀ ଉପଭୋଗ କରିବାକୁ ହେଲେ ରସିକତା ଅପେକ୍ଷା ବିଦ୍ୱତା ବହୁଳ ପରିମାଣରେ ଆବଶ୍ୟକ ।

ଏହାର ଉଦ୍ଦେଶ୍ୟ ହୃଦୟର ନୂତନ୍, ବୃଦ୍ଧିର ଆନନ୍ଦ । କାଳିଦାସଙ୍କର ପରବର୍ତ୍ତୀ ସାହିତ୍ୟରେ ରସିକତା ଅପେକ୍ଷା ବାହ୍ୟଶକ୍ତିକୁ ବେଶି ସମ୍ମାନ ମିଳୁଥିଲା । ସେ ସମୟରେ କବିମାନେ ଏହି ଅଳଙ୍କାରର ବିଶେଷ ଉପଯୋଗ କରୁଥିଲେ । ଫଳରେ ସେମାନଙ୍କର କାବ୍ୟ କ୍ଳିଷ୍ଟ ଓ ଦୁର୍ବୋଧ ହୋଇଅଛି । କାଳିଦାସ ଅତି ଅଳ୍ପ ସ୍ଥାନରେ—ଯେଉଁଠାରେ ଏହା ଫଳରେ ରମଣୀୟତା ଆସିବ ବା ସେପରି ବର୍ଣ୍ଣନାରେ ଏହା ଅବଶ୍ୟକ—ସେହିପରି ସ୍ଥଳରେ କେବଳ ଶ୍ଳେଷ ଅଳଙ୍କାରର ଉପଯୋଗ କରିଅଛନ୍ତି । 'ମାଳବିକାଗ୍ନିମିତ୍ର'ର ସ୍ୱଭାବ ବର୍ଣ୍ଣନା କଲାବେଳେ ମାଳବିକା-ମୁଖରୁ ରାଜାଙ୍କ ପ୍ରତି ତାଙ୍କର ଅନୁରାଗ ବ୍ୟକ୍ତ କରିବା ସକାଶେ କାଳିଦାସ ଶ୍ଳେଷାଳଙ୍କାରର କିପରି ଚତୁର ଉପଯୋଗ କରି ଅଛନ୍ତି, ତାହା ଦେଖାଇଅଛୁଁ । ବର୍ତ୍ତମାନ ସେହି ନାଟକର ପଞ୍ଚମ ଅଙ୍କର କେତେକ ଅଂଶ ଉଦ୍ଧୃତ କରୁଅଛୁଁ —

ବିଦୂଷକ— **भो विश्रब्धो भूत्वा स्वामिमां यौवनवतीं पश्य ।**

ଦେବୀ— **काम् ?**

ବିଦୂଷକ —**तपनीयाशोकस्य कुसुमशोभाम् ।**

ବିଦୂଷକ ଅଳଂକୃତା ଓ ଯୌବନପୂର୍ଣ୍ଣା ମାଳବିକାଙ୍କ ପ୍ରତି ରାଜାଙ୍କର ଦୃଷ୍ଟି ଆକର୍ଷଣ କରୁଥିଲେ । ମାତ୍ର ତାଙ୍କର ଶବ୍ଦ ରାଣୀ ଶୁଣିଗଲେ । ଅତଏବ ତାଙ୍କର ପ୍ରଶ୍ନର ଉତ୍ତର ଦେବାକୁ ଯାଇ **'यौवनवतम'** ଶବ୍ଦର ଶ୍ଳେଷବଶତଃ ଦ୍ୱିତୀୟ ଅର୍ଥ ନେଇ ଅଶୋକ ବୃକ୍ଷର ପୁଷ୍ପଶୋଭା ସହିତ ସମ୍ବନ୍ଧ କଳ୍ପନା କରି ନିଜକୁ ରକ୍ଷା କରିନେଲେ । ଏହି ସ୍ଥାନରେ ଛେକାପହ୍ନୁତି ନାମକ ସୁନ୍ଦର ଅଳଙ୍କାର ଶ୍ଳେଷଦ୍ୱାରା ସାଧିତ ହୋଇଅଛି ।

तस्मिन्‌ काले नयनसलिलं योषितां खण्डितानां
शान्तिं नेयं प्रणयिभिरतो वर्त्म भानोस्त्यजाशु ।
प्रालेयास्रं कमलवदनात्सोऽपि हर्तुं नलिन्याः
प्रत्यावृत्तस्त्वयि कररुधि स्यादनल्पाभ्यसूयः ।

ମେଘ ୪୧

ଏହି ଶ୍ଳୋକରେ 'ହେ ମେଘ, ପ୍ରାତଃକାଳରେ ନିଜ-କମଳିନୀ ରୂପୀ ଖଣ୍ଡିତା ପ୍ରଣୟିନୀର କମଳରୂପ ମୁଖରୁ ହିମରୂପ ଅଶ୍ରୁ ପୋଛିବା ସକାଶେ ସୂର୍ଯ୍ୟ ପ୍ରବୃତ୍ତ ଥିବେ ! ତୁମେ ସେ ସମୟରେ ତାଙ୍କର କର ରୁଦ୍ଧ କଲେ ସେ ତୁମ ଉପରେ ବିଶେଷ କ୍ରୁଦ୍ଧ ହେବେ' ଏହି ଅତ୍ୟନ୍ତ ରମଣୀୟ କଳ୍ପନାକୁ ପ୍ରକାଶିବାକୁ ଯାଇ କବି ଶବ୍ଦର ଶ୍ଳେଷ ଆବଶ୍ୟକ ମନେ କରି ଅତ୍ୟନ୍ତ ରମଣୀୟ-ଭାବେ ଶବ୍ଦ ଯୋଜନା କରିଅଛନ୍ତି । କାଳିଦାସୀୟ ଶ୍ଳେଷ-ମାନଙ୍କରେ ଚମତ୍କାରିତା ସାଧାରଣ ପାଠକମାନଙ୍କର ମଧ୍ୟ ହୃଦୟଙ୍ଗମ ହୋଇଥାଏ । କୌଣସି ଶ୍ଳେଷରେ କ୍ଳିଷ୍ଟତା କି ରସଭଙ୍ଗ ଦେଖାଯାଏ ନାହିଁ । ଏହି ପ୍ରସଙ୍ଗରେ କାଳିଦାସଙ୍କର ଅନ୍ୟ ଏକ ବିଶେଷତ୍ୱ ମଧ୍ୟ ଉଲ୍ଲେଖଯୋଗ୍ୟ । କାଳିଦାସଙ୍କର କଳ୍ପିତ ପାତ୍ରମାନଙ୍କର ନାମ ବିଶେଷ ଅର୍ଥଗର୍ଭକ ରଖାଗଲା ପରି ପ୍ରତୀତ ହୁଏ । 'ମାଳବିକାଗ୍ନିମିତ୍ର'ର ପଞ୍ଚମ ଅଙ୍କରେ ମାଳବିକାକୁ କାରାଗାରରୁ ମୁକ୍ତ କରି ଉଦ୍ୟାନକୁ ପଠାଇ ଦେଇ ବିଦୂଷକ ରାଜାଙ୍କ ପାଖରେ ଉପସ୍ଥିତ ହେଲେ । ପରେ ସେ ଦୁହେଁ ଉଦ୍ୟାନ-ଅଭିମୁଖେ ଯିବାବେଳେ ଇରାବତୀଙ୍କ ଦାସୀ ଚନ୍ଦ୍ରିକା ଆଗେ ଦେଖାଗଲା । ଏ ସମୟରେ ରାଜା ବିଦୂଷକଙ୍କୁ ଭିତ୍ତି ଆଡୁ ଆଳରେ ଲୁଚି ଯିବାକୁ କହିଲେ । ସେତେବେଳେ ବିଦୂଷକ

ଉତ୍ତର ଦେଲେ – 'ସତ୍‌କଥା ଶ୍ରେର ଓ କାମୁକ ବ୍ୟକ୍ତି ଚନ୍ଦ୍ରକାର ଦୂରରେ ରହିବା ଉଚିତ୍'। ଏଠାରେ ବିଦୁଷକ 'ଚନ୍ଦ୍ରିକା'ଶବ୍ଦର ଶ୍ଳେଷ କରିଅଛନ୍ତି । ସେହିପରି ବକୁଳାବଳିକା, ଧ୍ରୁବସିଦ୍ଧି, ପ୍ରିୟମ୍ବଦା ପ୍ରଭୃତି ପାତ୍ରମାନଙ୍କର ନାମ ଗୁଡ଼ିକ ମଧ୍ୟ ସାର୍ଥକ ହୋଇ କାଳିଦାସ ସେମାନଙ୍କରେ ସମ୍ଭାଷଣରେ ସ୍ପଷ୍ଟ କରିଅଛନ୍ତି। ଏହିମଳି ନିଜ କାବ୍ୟରେ ଉମା, ଅପର୍ଣ୍ଣା, ରଘୁ, ରାମ ଇତ୍ୟାଦି ବ୍ୟକ୍ତି-ମାନଙ୍କର ନାମମାନଙ୍କର ମନୋରଞ୍ଜକ ବ୍ୟୁତ୍ପତ୍ତି ଦେଇଅଛନ୍ତି ।

ବର୍ତ୍ତମାନ ଆମେ ଅର୍ଥାଲଙ୍କାରର ବିଚାର କରିବୁ । ଅର୍ଥାଲଙ୍କାର ସ୍ୱଭାବୋକ୍ତି ଓ ବକ୍ରୋକ୍ତିଭେଦରେ ଦୁଇ ପ୍ରକାର। ସ୍ୱଭାବୋକ୍ତିରେ କବି କାବ୍ୟଗୁଣ୍ଠା ବା କଳ୍ପିତ ପଦାର୍ଥ ବା ବ୍ୟକ୍ତି-ମାନଙ୍କର ଯଥାଯଥ ଯୁକ୍ତିଯୁକ୍ତ ଅଥଚ ଅତିରମଣୀୟ ଚିତ୍ର ଦିଅନ୍ତି, ମାତ୍ର ବକ୍ରୋକ୍ତିରେ ସେ ସମସ୍ତ ପଦାର୍ଥ ବା ବ୍ୟକ୍ତିମାନଙ୍କୁ ନିଜ କଳ୍ପନା ପ୍ରସୂତ ଅଳଙ୍କାରରେ ଅଳଙ୍କୃତ କରନ୍ତି। ଏହି ଦୁଇ ପ୍ରକାରଅଳଙ୍କାରସନ୍ନିବେଶରେ କାଳିଦାସଙ୍କର ଅନୁପମ ନୈପୁଣ୍ୟ ଦେଖାଯାଏ । ଏହାଙ୍କର ଗ୍ରନ୍ଥମାନଙ୍କରେ ଅନେକ ପ୍ରାଣୀ ଓ ବ୍ୟକ୍ତିମାନଙ୍କର ଚିତ୍ର ଏକଦାରେ ଅବିକଳ ଶବ୍ଦରେ ଯଥାଯଥ ଭାବେ ଚିତ୍ରିତ ହୋଇଅଛି । 'ଶାକୁନ୍ତଳ'ରେ ସାରଥିପରିଚାଳିତ ରଥ ଘୋଡ଼ା ଓ ତା ଆଗେ ପ୍ରାଣ ବିକଳରେ ଧାଉଁଥିବା ହରିଣ, କନ୍ୟା ଶକୁନ୍ତଳାର ଭାବୀ ବିରହରେ କାତର କଣ୍ୱ, 'ରଘୁବଂଶ'ରେ ଧାଈର ହାତ ଧରି ପିତାଙ୍କ ପାଖକୁ ଆସୁଥିବା ଶିଶୁ ରଘୁ ପ୍ରଭୃତିଙ୍କର ଚିତ୍ରିତ ଯୋଜନାରେ କାଳିଦାସଙ୍କର ସୂକ୍ଷ୍ମ ନିରୀକ୍ଷଣଶକ୍ତି ଓ ବର୍ଣ୍ଣନା-କୌଶଳର ପରିଚୟ ମିଳେ । ଏହି ପରି ଅନ୍ୟ ଏକ ଉଦାହରଣ ମଧ୍ୟ ଦେଖନ୍ତୁ –

स चापकोटिनिहितैकबाहुः शिरस्त्रनिष्कर्षणभिन्नमौलिः
ललाटबद्धश्रमवारिबिन्दुर्भीतां प्रियामेत्य वचो बभाषे ॥
ରଘୁ. ୭,୬୬

ଏହି ବର୍ଣ୍ଣନା ହେଉଛି ସେହି ସମୟର ଯେତେବେଳେ ଅଜ ନିଜ ମାର୍ଗ ଗତିରୋଧକାରୀ ପ୍ରତିପକ୍ଷ ରାଜାମାନଙ୍କୁ ଜୟ କରି ଭୟଭୀତ ପ୍ରିୟତମା ଇନ୍ଦୁମତୀଙ୍କ ସହିତ ଆଳାପ କରୁଅଛନ୍ତି । ଏଥିରେ ଧନୁ ଅଗରେ ଏକ ବାହୁ ରଖି ଛିଡା ହେବା ଅଜଙ୍କର କଣ୍ଠ ବାହାରିତ ବିଲୁଳିତ କେଶପାଶ ଓ ଲଲାଟସ୍ଥଳର ଶ୍ରମବିନ୍ଦୁମାନଙ୍କର ସୁନ୍ଦର ବର୍ଣ୍ଣନା କବିଙ୍କ ସଂକଳିତ ଗୁରୁଶବ୍ଦରେ ଚିତ୍ରପରି ଅଙ୍କିତ ହୋଇଅଛି । ସମ୍ଭବତଃ ଏହାଠାରୁ ଉତ୍ତମ କୌଣସି ଚିତ୍ରକାର-ପକ୍ଷରେ ମଧ୍ୟ ସମ୍ଭବପର ନୁହେଁ ।

ପରନ୍ତୁ ସ୍ୱଭାବୋକ୍ତି ଅପେକ୍ଷା ବକ୍ରୋକ୍ତିମୂଳକ ଉପମା, ଉତ୍ପ୍ରେକ୍ଷା, ଦୃଷ୍ଟାନ୍ତାଦି ଅଳଙ୍କାର ମାନଙ୍କରେ ରମଣୀୟ କଳ୍ପନାର ବିମଳ ବିକାଶ ଦେଖାଯାଏ । ଏ ସମସ୍ତରେ ପୃଥିବୀରୁ ଆରମ୍ଭ କରି ଆକାଶ ପର୍ଯ୍ୟନ୍ତ ସବୁର ସ୍ୱଚ୍ଛନ୍ଦଗତି ଓ ସାଧାରଣ ଦୃଷ୍ଟିରେ ନୀରସ ଓ ଅସୁନ୍ଦରରୂପେ ପ୍ରତିଭାତ ବସ୍ତୁମାନଙ୍କରେ ମଧ୍ୟ ସୌନ୍ଦର୍ଯ୍ୟ ଉପଲବ୍ଧ କରୁଥିବା ତାଙ୍କର ତୀବ୍ର ଦୃଷ୍ଟି, ବିବିଧଶାସ୍ତ୍ରମାନଙ୍କର ଚର୍ଚ୍ଚାରୁ ପ୍ରତୀୟମାନ ବହୁଶ୍ରୁତତା, ବିବିଧକଳାମାନଙ୍କର ପ୍ରୟୋଗରୁ ପ୍ରାପ୍ତ ନିପୁଣତା ଓ ବ୍ୟବହାରୋପଯୋଗୀ ଅନୁଭବର ଛାୟା ଦେଖିବାକୁ ମିଳେ । ଏହି ହେତୁ ଅମ୍ଭେମାନେ ପ୍ରଥମେ ଚରିତ୍ର-ବିଷୟକ ଅନୁମାନ ସକାଶେ ତାଙ୍କର ଅଳଙ୍କାରମାନଙ୍କର ଉପଯୋଗ କରିଅଛୁଁ । ଏକ ସୁଭାଷିତକାର **'उपमा कालिदासस्य'** କହି କାଳିଦାସୀୟ ଉପମାମାନଙ୍କର ଅଲୌକିକତା ପ୍ରତିପାଦନ କରିଅଛନ୍ତି । କାଳିଦାସଙ୍କର ଉପମାମାନଙ୍କର

ଶବ୍ଦଗତା, ମାର୍ମିକତା ଓ ରମ୍ୟତା ବିଗ୍ଚାର କଲେ ସେହି ଉକ୍ତିର ଯଥାର୍ଥତାରେ କୌଣସି ଶଙ୍କା ରହେ ନାହିଁ । ବରଂ ‘ଉପମା’ ଶବ୍ଦର ବ୍ୟାପକ ଅର୍ଥ ନେଇ ରୂପକ, ଉତ୍‌ପ୍ରେକ୍ଷା, ଅତିଶୟୋକ୍ତି, ଦୃଷ୍ଟାନ୍ତ, ଅର୍ଥାନ୍ତରନ୍ୟାସ ପ୍ରଭୃତି ଅନ୍ୟ ସାଦୃଶ୍ୟମୂଳକ ଅଳଙ୍କାର-ମାନଙ୍କ ବିଷୟରେ ମଧ୍ୟ ସେହି ଉକ୍ତି ପ୍ରୟୋଗ କଲେ ମଧ୍ୟ ଯଥାର୍ଥ ହେବ । ପ୍ରଥମେ କାଳିଦାସଙ୍କ ଉପମାମାନଙ୍କର ବିଶେଷତ୍ୱ ଦେଖାଇ ପରେ ଅନ୍ୟ ଅଳଙ୍କାରମାନଙ୍କର ବିଗ୍ଚାର କରିବୁଁ ।

୧ । **ରମ୍ୟତା**—କାଳିଦାସଙ୍କର ଉପମାମାନଙ୍କର ସୌନ୍ଦର୍ଯ୍ୟ ପ୍ରଥମେ ଦୃଷ୍ଟିଗୋଚର ହୁଏ, ଏହା ହେଉଛି ସେମାନଙ୍କର ବିଶେଷତ୍ୱ । ସାଧାରଣ ଲୋକଙ୍କର ଚର୍ମଚକ୍ଷୁର ଅଗୋଚର ବସ୍ତୁ-ମାନଙ୍କର ସୌନ୍ଦର୍ଯ୍ୟ କବିଙ୍କର ମନଶ୍ଚକ୍ଷୁ ଆଗରେ ଛପି ରହେ ନାହିଁ । ଉଦାହରଣ ସ୍ୱରୂପ ମେଘଦୂତରେ—

‘रेवां द्रक्ष्यस्युपलविषमां विन्ध्यपादे विशीर्णां ।
भक्तिच्छेदैरिव विरचितां भूतिमङ्गे गजस्य ॥
(ମେଘ ୧୯)

ଏହି ଉପମା ଦେଖନ୍ତୁ । ବିନ୍ଧ୍ୟପର୍ବତର ତଟ ପ୍ରଦେଶରେ ପ୍ରବାହିତ ନର୍ମଦାନଦୀର ପ୍ରବାହର ହାତୀର ଶୁଣ୍ଢରେ ଚିତ୍ରିତ ବିଚିତ୍ର ରଙ୍ଗର ରେଖା ସହିତ ଉପମା ଦେଇ କବି ତାହାର ରମଣୀୟତା ବ୍ୟକ୍ତ କରିଅଛନ୍ତି । କାଳିଦାସଙ୍କର ଉପମାମାନେ କୌଣସି ସ୍ଥଳରେ ଶ୍ଳେଷମୂଳକ ନୁହନ୍ତି । ସେ ସମସ୍ତ ସହଜ ରମଣୀୟ ସାମ୍ୟ ଉପରେ ପ୍ରତିଷ୍ଠିତ । ଠିକ୍ ଏହାର ଓଲଟା ବାଣ, ସୁବନ୍ଧୁ, ଶ୍ରୀହର୍ଷ ପ୍ରଭୃତିଙ୍କର ଉପମା । ସେ ସମସ୍ତ ଶ୍ଳେଷାଧିଷ୍ଠିତ ହେବା

ହେତୁ ଅତ୍ୟନ୍ତ କୃତ୍ରିମ ଦେଖାଯାନ୍ତି । ଉଦାହରଣ ସ୍ୱରୂପ ବାଣଙ୍କ କାଦମ୍ବରୀର ଉପମା ଦେଖନ୍ତୁ— **'सा (कादम्बरी) जानकीव पीतरक्तेभ्यो रजनीचरेभ्य इव चम्पकाशोकेभ्यो बिभेति ।'** ଏଥିରେ ରାକ୍ଷସ ଓ ଚମ୍ପକ ତଥା ଅଶୋକର ବାସ୍ତବିକ ସାମ୍ୟ ନ ଥିଲେ ମଧ୍ୟ ଦୁହିଙ୍କର ସାଧାରଣ 'ପୀତରକ୍ତ' ବିଶେଷଣର ଉପଯୋଗ କରାଯାଇଅଛି । ଏହେତୁ ଏହା ଶ୍ଳେଷମୂଳକ ଉପମା ହୋଇଅଛି । ଏହିସବୁ ଉପମାମାନଙ୍କରେ କବିଙ୍କର ଭାଷା ନିପୁଣତା ସ୍ପଷ୍ଟ ପ୍ରତୀତ ହୁଏ, କିନ୍ତୁ ସହୃଦୟ ରସିକମାନଙ୍କର ଚିତ୍ତାକର୍ଷକତା ନ ଥାଏ ।

୨ । **ଯଥାର୍ଥତା**— କାଳିଦାସଙ୍କର ଉପମା ଗୁଡିକ ଅତୀବ ଯଥାର୍ଥ ବୋଧ ହୁଏ । ଏମାନଙ୍କଦ୍ୱାରା ପାଠକମାନଙ୍କର ମନରେ ବର୍ଣ୍ଣନୀୟ ପଦାର୍ଥମାନଙ୍କର ଯଥାର୍ଥ କଳ୍ପନା ଉତ୍ପନ୍ନ ହୋଇଥାଏ । ଶାକୁନ୍ତଳରେ ଶାର୍ଙ୍ଗରବାଦି ତପସ୍ୱି ଜନଙ୍କ ଗହଣରେ ଅବଗତା ଶକୁନ୍ତଳାଙ୍କୁ ଦେଖି ରାଜା **'मध्ये तपोधनानां किशलयमिव पाण्डुपत्राणाम'** ଏତାଦୃଶ ଅତ୍ୟନ୍ତ ଯଥାର୍ଥ ଉପମା ଦେଇଅଛନ୍ତି । ଏହାଦ୍ୱାରା ବୃଦ୍ଧ ଋଷିମାନଙ୍କର ରୁକ୍ଷ ଆକୃତି ମଧ୍ୟରେ ଶକୁନ୍ତଳାଙ୍କର ଅସାଧାରଣ ରୂପରେ ଜାଜ୍ୱଲ୍ୟମାନ ଯୌବନ ସୂଚିତ ହୋଇଅଛି । 'ମେଘଦୂତରେ' (ଷଷ୍ଠ ଶ୍ଳୋକରେ) । ଯକ୍ଷ ସ୍ତ୍ରୀମାନଙ୍କର ହୃଦୟକୁ କୁସୁମ ସହିତ ତୁଳନା କରିଅଛନ୍ତି । ଦେଶୀୟ ପୁଷ୍ପ ମାନଙ୍କର ସୁଗନ୍ଧ, ରମଣୀୟତା ଏବଂ ସାମାନ୍ୟ ତାପରେ ତଳେ ପଡି ମଉଳି ଯାଉଥିବା ପ୍ରବୃତ୍ତି ଏ ସବୁ ଦେଖିଲେ ସ୍ତ୍ରୀମାନଙ୍କର ନିସର୍ଗମଧୁର, ପ୍ରେମମୟ ଅଥଚ ସାମାନ୍ୟ ବିରହରେ ବ୍ୟାକୁଳ ହୃଦୟର ପୁଷ୍ପସାଦୃଶ୍ୟ ସମୁଚିତ ବୋଧହୁଏ ।

ଇନ୍ଦୁମତୀଙ୍କର ମୃତ୍ୟୁପରେ ଅଜ ବଶିଷ୍ଠଙ୍କର ଉପଦେଶ ଗ୍ରହଣ କରି ପୁତ୍ର ଦଶରଥ ଅଳ୍ପବୟସ୍କ ଥିବା ଯୋଗୁଁ ରାଜ୍ୟଶାସନରେ କେତେ ଦିନ କଟାଇଲେ ମଧ୍ୟ, ତାଙ୍କର ହୃଦୟ ସେ ସମୟରେ ପତ୍ନୀ-ଶୋକରେ ଧୀରେ ଧୀରେ ବିଦୀର୍ଣ୍ଣ ହେଉଥିଲା । ଏହି ବିଷୟକୁ ବ୍ୟକ୍ତ କରିବାକୁ ଯାଇ କବି ଏକ ପ୍ରାନ୍ତରେ ଅଙ୍କୁରିତ ହୋଇ କ୍ରମେ କ୍ରମେ ନିଜ ମୂଳ ବିସ୍ତାର କରି ସମୟରେ ସମସ୍ତ ପ୍ରାନ୍ତରକୁ ଆକ୍ରାନ୍ତ କରୁଥିବା ପ୍ଲକ୍ଷବୃକ୍ଷର ଉପମା ଦେଇଅଛନ୍ତି ।

୩ । **ବିବିଧତା**—କାଳିଦାସଙ୍କର ଉପମାମାନଙ୍କୁ ସାମୂହିକ-ରୂପରେ ବିଚାର କଲେ ସେମାନଙ୍କର ବିବିଧତା ମନକୁ ଅଶ୍ଚର୍ଯ୍ୟା-ନ୍ୱିତ କରେ । ଆଗମଭେଦରେ ସେ ସମସ୍ତ ଏହିପରି ବିଭକ୍ତ କରାଯାଇପାରେ—

(କ) **ସୃଷ୍ଟ ପଦାର୍ଥୀୟ**—ଲତା, ବୃକ୍ଷ, ଫୁଲ, ଫଳ, ପୃଥିବୀର ବିଭିନ୍ନ ପ୍ରାଣୀ, ଆକାଶର ଗ୍ରହ, ନକ୍ଷତ୍ର, ସୂର୍ଯ୍ୟ, ଚନ୍ଦ୍ର, ଧୂମକେତୁ ପ୍ରଭୃତି ସୃଷ୍ଟିର ସକଳପଦାର୍ଥ ସହିତ ସେ ଉପମାମାନ ଦେଇଅଛନ୍ତି । ଏଥିରୁ ତାଙ୍କର ବିଶାଳ ଦୃଷ୍ଟିର ପରିଚୟ ମିଳେ । ଉଦାହରଣ ଯଥା -କଣ୍ୱଋଷିଙ୍କ ଆଶ୍ରମରେ ନବଯୌବନ ପ୍ରାପ୍ତ ବାଲ୍ୟାବସ୍ଥାରେ ରମଣୀୟାକୃତି ଶକୁନ୍ତଳାଙ୍କର ଅର୍କବୃକ୍ଷ ଉପରେ ଗଢିପଡ଼ିଥିବା ନବମାଳିକାଫୁଲର ଉପମା, ମଦନ ଦାହରେ ଦୁଃଖବିବଶା ରତିଙ୍କର ଜଳ ଶୁଖିଗଲାପରେ ବ୍ୟାକୁଳ ପୁଷ୍କରିଣୀର ମତ୍ସ୍ୟ ସହିତ ଉପମା, ତଥା ତ୍ରିଭୁବନକୁ ଉତ୍ପୀଡ଼ିତ କରୁଥିବା ତାରକାସୁରର ଧୂମକେତୁ ସହିତ ଉପମାମାନ ପରିଶୀଳନ କରନ୍ତୁ ।

(ଖ) ଶାସ୍ତ୍ରୀୟ—କାଳିଦାସ ବ୍ୟାକରଣ, ଦର୍ଶନ, ରାଜନୀତି, ବୈଦ୍ୟକ—ପ୍ରଭୃତି ଅନେକ ଶାସ୍ତ୍ରରୁ ଅନେକ ସୁନ୍ଦର ସୁନ୍ଦର ଉପମାମାନ ନିର୍ବାଚିତ କରିଅଛନ୍ତି । ଦେବତାମାନଙ୍କୁ ନିଜ ନିଜ ସ୍ଥାନରୁ ବଳପୂର୍ବକ ଚ୍ୟୁତ କରାଇବା ଶତ୍ରୁର, ସାମାନ୍ୟ ନିୟମକୁ ବାଧୁଥିବା ଅପବାଦ ସହିତ, ବାଲୀଙ୍କ ସିଂହାସନରେ ଆସୀନ ସୁଗ୍ରୀବଙ୍କର ଧାତୁସ୍ଥାନରେ ଆଗତ ଆଦେଶ ସହିତ, ନିଜଚକ୍ରରେ ସମର୍ଥ ଶତ୍ରୁ ସଂହାର ସମର୍ଥ ଶତ୍ରୁଘ୍ନଙ୍କର ପଛେ ପଛେ ରାମଚନ୍ଦ୍ରଙ୍କର ଆଦେଶରେ ଯାଉଥିବା ସେନାର ଅଧ୍ୟୟନାର୍ଥକ ଇ ଧାତୁର ପଛେ ଦିଆଯାଉଥିବା 'ଅଧି' ଉପସର୍ଗ ସହିତ ଉପମା—ଏ ସମସ୍ତ ଓ ଏତଦ୍ଭିନ୍ନ ଅନ୍ୟାନ୍ୟ ଉପମାମାନ ବ୍ୟାକରଣ ବିଷୟକ । ଏ ସମସ୍ତ ପଢ଼ିଲେ ସଂସ୍କୃତ ବ୍ୟାକରଣାଭିଜ୍ଞ ପାଠକମାନଙ୍କ ମନରେ ଅପୂର୍ବ ଆନନ୍ଦ ଜାତ ହୁଏ । ହିମାଳୟଙ୍କ ଔରସରେ ମେନକାଙ୍କର ଗର୍ଭରୁ ଉତ୍ପନ୍ନ ପାର୍ବତୀଙ୍କର ରାଜନୀତିରୁ ଉତ୍ସାହଗୁଣରେ ପ୍ରାପ୍ତ ସମ୍ପତ୍ତି ସହିତ ଉପମା ଅର୍ଥଶାସ୍ତ୍ରରୁ, ପ୍ରବଳ ତାରକାସୁରଙ୍କ ଆଗେ ବିଫଳ ଦେବତାମାନଙ୍କର ଉପାୟମାନଙ୍କର ଉଗ୍ର ଔଷଧରେ ମଧ୍ୟ ଅସାଧ୍ୟ ସାନ୍ନିପାତିକ ଜ୍ୱର ସହିତ ଉପମା ବୈଦ୍ୟଶାସ୍ତ୍ରରୁ ଏବଂ ବ୍ରାହ୍ମସରୋବରରୁ ଉଦ୍ଭୂତା ସରଯୂ ନଦୀର ଅବ୍ୟକ୍ତରୁ ଉଦ୍ଭୂତ ବୁଦ୍ଧି (ତତ୍ତ୍ୱ) ସହିତ ଉପମା ସାଂଖ୍ୟଦର୍ଶନରୁ ଗୃହୀତ ହୋଇଅଛି । ଏ ସମସ୍ତ ଉପମାବଳିରେ ପ୍ରକରଣଗତ ଭାବ ଭଲରୂପେ ବ୍ୟକ୍ତ ହୋଇଅଛି ଏବଂ ବହୁଶ୍ରୁତ ପାଠକମାନଙ୍କ ମନରେ ଅପୂର୍ବ ଆନନ୍ଦ ଜାତ ହେଉଅଛି ।

(ଗ) ଆଧ୍ୟାତ୍ମିକ—ସୃଷ୍ଟିର ବ୍ୟକ୍ତ ପଦାର୍ଥମାନଙ୍କରୁ ଉପମାନ ଦେଇ ବର୍ଣ୍ଣନୀୟ ବିଷୟକୁ ସୁଗମ କରିବା ସଙ୍ଗେ

ସାଧାରଣତଃ କବିମାନେ ଚେଷ୍ଟା କରିଥାନ୍ତି । କାଳିଦାସ ନିଜ 'ଋତୁସଂହାର'ରେ ଏହି ରୀତି ଅନୁସରଣ କରି ଅଛନ୍ତି । ପରନ୍ତୁ ପରେ ପରେ ଅଧିକ ଅନୁଭବ ଲାଭ କରି ଅମୂର୍ତ୍ତ କଳ୍ପନା ବା ମନୋବ୍ୟାପାରରୁ ମଧ୍ୟ ଉପମାନ ସଂଗ୍ରହ କରି ଅଛନ୍ତି । ଯେପରି ବଶିଷ୍ଠଙ୍କ ଧେନୁ ପଛେ ଯାଉଥିବା ଦିଲୀପଙ୍କର ଶ୍ରଦ୍ଧାଯୁକ୍ତ ବିଧି ସହିତ, ପାଅର ଶୋଭା ବଢ଼ାଉଥିବା ଭରତଙ୍କ ରି ସମନ୍ତର ଶୋଭା ବଢ଼ାଉଥିବା ବିନୟ ସହିତ ଉପମା ପଢ଼ିବାମାତ୍ରେ ଚମତ୍କାର ଅନୁଭୂତ ହୁଏ । କାଳିଦାସଙ୍କ ପୂର୍ବକାଳୀନ ଅଶ୍ୱଘୋଷ ମଧ୍ୟ ଏ ଜାତୀୟ ଅନେକ ଉପମା ଦେଇଅଛନ୍ତି । ସମ୍ଭବତଃ କାଳିଦାସ ସେ ସମସ୍ତ ଉପମାର ଆଦର୍ଶରେ ନିଜ ଉପମାମାନ ଦେଇ ଅଛନ୍ତି ।

**(ଘ) ବ୍ୟାବହାରିକ**—କବିଙ୍କର କେତେକ ଉପମା ବ୍ୟବହାର ଓ ଅନୁଭବରୁ ପ୍ରସୂତ । 'ସଚ୍ଛିଷ୍ୟକୁ ଦିଆଯାଇଥିବା ବିଦ୍ୟା ପରି, ଶକୁନ୍ତଳା, ତୁମେ ଦୁଷ୍ୟନ୍ତଙ୍କୁ ବରଣ କରି ଅଶୋଚନୀୟା ହୋଇଅଛ' । ଏ ଜାତୀୟ କଣ୍ୱଙ୍କର ଶିକ୍ଷଣଗତ ଉପମା, ଓ 'ଅଭ୍ୟାସ ଫଳେ ବିଦ୍ୟା ପ୍ରସନ୍ନ ହୁଏ, ସେହି ପରି ତୁମେ ସବୁବେଳେ ସେବା କଲେ ଏହି ଧେନୁ ପ୍ରସନ୍ନ ହେବେ ।' ଏ ଜାତୀୟ ବଶିଷ୍ଠ ଦିଲୀପଙ୍କୁ ଦେଇଥିବା ଉପଦେଶଗତ ଉପମା-ଗୁଡ଼ିକରେ କାଳିଦାସଙ୍କର ସ୍ୱକୀୟ ଅନୁଭବର ଛାୟା ପରିଲକ୍ଷିତ ହୁଏ ।

**୪ । ଅନୌଚିତ୍ୟ**—କାଳିଦାସ ନିଜ କାବ୍ୟ ଓ ନାଟକମାନଙ୍କର ପାତ୍ରମାନଙ୍କ ମୁଖରେ ଯେଉଁ ସବୁ ଉପମା ଦେଇ ଅଛନ୍ତି, ସେ ସମସ୍ତ ସେମାନଙ୍କ ନିଜ ନିଜ ପ୍ରସଙ୍ଗର ଅନୁରୂପ ଏବଂ ସଙ୍ଗେ ସଙ୍ଗେ ଅତ୍ୟନ୍ତ ସ୍ୱାଭାବିକ ଦେଖାଯାଏ ।

ଖାଦ୍ୟପ୍ରିୟ ବିଦୂଷକଙ୍କ ମୁଖରେ ଚନ୍ଦ୍ରଙ୍କର ମୋଦକ ସହିତ, ସମୁଦ୍ର ତଟ ପାଖରେ ଶିଳାଖଣ୍ଡ ଉପରେ ଶୋଇଥିବା ମାଳକାୟ ବିଦୂଷକଙ୍କର ନିପୁଣିକା ଦାସୀ ମୁଖରେ ବଜାରର ଷଣ୍ଢ ସହିତ ସଦା ଅଧ୍ୟାପନରତ କଣ୍ଵଙ୍କର ମୁଖରେ ଶକୁନ୍ତଳାଙ୍କର ସୁଶିଷ୍ୟକୁ ଦତ୍ତ ବିଦ୍ୟା ସହିତ ଉପମା ଏ ସମସ୍ତ ବିଶେଷ ଉପଯୋଗୀ । ଏ ସମସ୍ତରେ ସେହି ସେହି ବ୍ୟକ୍ତିମାନଙ୍କର ସ୍ୱଭାବ ପ୍ରତିଫଳିତ ।

**୪ । ପୂର୍ଣ୍ଣତା**—କାଳିଦାସଙ୍କର ପୂର୍ବବର୍ତ୍ତୀ ବ୍ୟାସ, ବାଲ୍ମୀକି ପ୍ରଭୃତି କବିମାନଙ୍କଦ୍ୱାରା ପ୍ରଯୁକ୍ତ ଉପମାଗୁଡ଼ିକ ଉପମାନ ଓ ଉପମେୟର ସାମ୍ୟ ଯେ କୌଣସି ଅଂଶରେ ଦେଖାଇଥାନ୍ତି । ଅନ୍ୟ ଅଂଶରେ ସାମ୍ୟ ପାଠକମାନଙ୍କୁ କଳ୍ପନା ବଳରେ ଠିକ୍ କରିବାକୁ ପଡ଼େ । ଉଦାହରଣସ୍ୱରୂପ ମହାଭାରତାନ୍ତର୍ଗତ ନଳଦମୟନ୍ତୀ ଉପାଖ୍ୟାନରୁ ଉଦ୍ଧୃତ ଉପମାଟିକୁ ଦେଖନ୍ତୁ ।

**तां राजसमितिं पुण्यां नागैर्भोगवतीमिव**
**सम्पूर्णां पुरुषव्याघ्रैः सिंहैर्गिरिगुहामिव ॥**

ଏଥିରେ ଦମୟନ୍ତୀସ୍ୱୟମ୍ବରାର୍ଥ ଏକତ୍ରିତ ରାଜସଭାର ଏକ ଶ୍ଳୋକରେ ଭୋଗବତୀ ନଗରୀ ଓ ଗିରିଗୁହା ଏପରି ଦୁଇଟି ସହିତ ଉପମା ଦିଆଯାଇଅଛି । କିନ୍ତୁ ଏ ମଧ୍ୟରୁ ଗୋଟିକରେ ପୂର୍ଣ୍ଣ ପୂର୍ଣ୍ଣ ବିକାଶ ଘଟି ନାହିଁ । ଠିକ୍ ଏହାର ଓଲଟା କାଳିଦାସଙ୍କର ଉପମାମାନଙ୍କରେ ଦେଖାଯାଏ । ସେ ସମସ୍ତରେ ସର୍ବାଙ୍ଗୀଣ ସାମ୍ୟ ଦିଆଯାଇଥାଏ, ଫଳରେ ଅଧିକ ଚମତ୍କାର ଜାତ ହୁଏ । ଉଦାହରଣ-ସ୍ୱରୂପ ଇନ୍ଦୁମତୀ ସ୍ୱୟମ୍ବର ସମୟରେ ନିଜସ୍ଥାନରେ ଯାଇ ବସୁଥିବା ଅଜଙ୍କର ବର୍ଣ୍ଣନା ଦେଖନ୍ତୁ — ।

**वैदर्भनिर्दिष्टमसौ कुमारः कॢप्तेन सोपानपथेन मञ्चम् ।**
**शिलाविभङ्गैर्मृगराजशावस्तुङ्गं नगोत्सङ्गमिवारुरोह ॥**

ରଘୁ ୬,୩

ଏଥିରେ ଅଜଙ୍କର ଉଚ୍ଚାସନର ପର୍ବତ ଶିଖର ସହିତ ଏବଂ ଅସମାନ ସୋପାନର ପର୍ବତ ନିକଟବର୍ତ୍ତୀ ଶିଳାତଳ ସହିତ ଉପମା ଦିଆଯାଇ ଥିବାରୁ ଅଜଙ୍କର ସିଂହ ସହିତ ସର୍ବାଙ୍ଗୀଣ ସାମ୍ୟ ହେଉଛି ସ୍ପଷ୍ଟ ହୁଏ । ଏହି ପରି ଉପମାନ ଓ ଉପମେୟ ଏକଲିଙ୍ଗ ଓ ଏକବଚନର ହେବା ବାଞ୍ଛନୀୟ ବୋଲି ଅଳଙ୍କାରିକମାନେ ନିୟମ କରି ଅଛନ୍ତି । କାଳିଦାସଙ୍କ ପୂର୍ବବର୍ତ୍ତୀ କବିମାନଙ୍କର ଉପମାଗୁଡ଼ିକ ଏହି ଦୋଷଗ୍ରସ୍ତ ହେବା ଦେଖାଯାଏ । କାଳିଦାସ ପ୍ରଥମେ ପ୍ରଥମେ ଏହି ନିୟମ ପାଳନ କରି ନାହାନ୍ତି । ଉଦାହରଣ ସ୍ୱରୂପ 'ମାଳବିକାଗ୍ନିମିତ୍ର'ର **सा तपस्विनी देव्याधिकतरं रक्ष्यमाणा नागरक्षितो निधिरिव न सुखं समासादयितव्या ।** ଉପମାକୁ ଦେଖନ୍ତୁ । ଏଥିରେ ଧାରିଣୀଙ୍କର ନାଗ ସହିତ ଓ ମାଳବିକାଙ୍କର ନିଧି ସହିତ ଉପମା ଦିଆ ଯାଇଅଛି । ଅର୍ଥ ଦୃଷ୍ଟିରୁ ଉପମା ଯଥାର୍ଥ ହେଲେ ମଧ୍ୟ ଉପମାନ ଓ ଉପମେୟର ଲିଙ୍ଗସାମ୍ୟ ନ ଥିବାରୁ ଦୋଷଯୁକ୍ତ ହୋଇଅଛି । ଠିକ୍ ଏହାର ଓଲଟା— 'ଶାକୁନ୍ତଳ'ରେ ଦେଖାଯାଏ । **कथमिदानीं तातस्याङ्कात् परिभ्रष्टा मलयतटोन्मूलिता चन्दनलतेव देशान्तरे जीवितं धारयिष्यामि ? ।** ଶକୁନ୍ତଳାଙ୍କର ଏହି ଉକ୍ତିରେ କବି ଜାଣିଶୁଣି କରି ଚନ୍ଦନଲତା ଶବ୍ଦ ପ୍ରୟୋଗ କରି ଲିଙ୍ଗସାମ୍ୟ ରଖିଛନ୍ତି । ଲିଙ୍ଗବଚନ ଭେଦ ଥିଲେ ମଧ୍ୟ ଯଦି ସହୃଦୟ ପାଠକମାନଙ୍କ ମନରେ ଉଦ୍‌ବେଗ ଜାତ ନ ହୁଏ, ତାହା ହେଲେ ଉପମା ସଦୋଷ ହେବ ନାହିଁ—ଏହି

କାବ୍ୟାଦର୍ଶକାରଙ୍କର ଉକ୍ତିକୁ ପ୍ରମାଣ ସ୍ୱରୂପ ସ୍ୱୀକାର କରି କାଳିଦାସଙ୍କର ତଥା ଅନ୍ୟମାନଙ୍କର ଅନେକ ଉପମାର ସମର୍ଥନ କରାଯାଇ ପାରେ ।

ଉପମାଳଙ୍କାର ପ୍ରତି କାଳିଦାସଙ୍କର ବିଶେଷ ମମତା ଥିଲେ ମଧ୍ୟ ସେ ଅନ୍ୟାନ୍ୟ ଅଳଙ୍କାରମାନଙ୍କୁ ମଧ୍ୟ ନିଜଗ୍ରନ୍ଥ-ମାନଙ୍କରେ ରମଣୀୟ ଭାବେ ସନ୍ନିବେଶିତ କରିଅଛନ୍ତି । 'ରଘୁବଂଶ'ର 'ରାମମନ୍ମଥଶରେଣ ତାଡିତା' (୧୧, ୨୦ ଇତ୍ୟାଦି ପ୍ରସିଦ୍ଧ ଶ୍ଳୋକରେ, 'अनाघ्रातं पुष्पं किशलयमलूनं करुहैः' (ଶାକୁ ୨—୧୦) ଇତ୍ୟାଦି ଦୁଷ୍ୟନ୍ତଙ୍କ ମନୋହର ଉକ୍ତିରେ ରୂପକ ଅଳଙ୍କାର ଦେଖାଯାଏ । ଏ ମଧ୍ୟରୁ ପ୍ରଥମ ଉଦାହରଣରେ କଳ୍ପନାବଳରେ ସାଙ୍ଗ ରୂପକ ଅଳଙ୍କାର ହୋଇଅଛି । ଦ୍ୱିତୀୟରେ ଏକପରେ ଏକ ଏହିପରି ଅନେକ ରୂପକ ଦେଇ ଶକୁନ୍ତଳାଙ୍କର ସୌନ୍ଦର୍ଯ୍ୟର କୋମଳତା, ଉନ୍ମାଦକତା ପ୍ରଭୃତି ଗୁଣମାନ ସୂଚିତ କରିଅଛନ୍ତି । ତଥାପି କାଳିଦାସଙ୍କର ମନ ରୂପକ ଅପେକ୍ଷା ଉତ୍ପ୍ରେକ୍ଷା, ଦୃଷ୍ଟାନ୍ତ, ଅର୍ଥାନ୍ତରନ୍ୟାସ ପ୍ରଭୃତି ଅଳଙ୍କାର-ମାନଙ୍କପ୍ରତି ବିଶେଷ ଆକୃଷ୍ଟ ଥିଲା ପରି ପ୍ରତୀତ ହୁଏ । ଏହାଙ୍କର ପ୍ରଥମ ଗ୍ରନ୍ଥ 'ଋତୁ ସଂହାର' 'ମାଳବିକାଗ୍ନିମିତ୍ର' ପ୍ରଭୃତିରେ କବିଙ୍କ ପ୍ରତିଭାବଳରେ ଉତ୍ପ୍ରେକ୍ଷା ଅଳଙ୍କାରର ଚମତ୍କାର ସ୍ଥାନେ ସ୍ଥାନେ ଦେଖାଯାଏ । କିନ୍ତୁ 'ମେଘଦୂତ'ରେ ଦେଖାଯାଏ—କବି ଯେପରି ଉତ୍ପ୍ରେକ୍ଷାଳଙ୍କାର ବର୍ଷି ଦେଇଛନ୍ତି । ଏହି ଖଣ୍ଡକାବ୍ୟର ବିଷୟ ମଧ୍ୟ ଏହି ଅଳଙ୍କାରର ଅତ୍ୟନ୍ତ ଅନୁକୂଳ । କାଳିଦାସ ଅଳଙ୍କାର-ମାନ ନିର୍ଦ୍ଦେଶ କଲାବେଳେ ମାର୍ଗ ମଧ୍ୟସ୍ଥ ପର୍ବତ, ନଦୀ ଉପରେ ମେଘ ରହିଲେ କିପରି ଦୃଶ୍ୟ ହେବ, ତାର ବର୍ଣ୍ଣନା, ଯକ୍ଷ ମୁଖରେ

ଅନେକ ଉତ୍ପ୍ରେକ୍ଷା ଦ୍ୱାରା କରିଅଛନ୍ତି । ପକ୍ୱଫଳଧାରୀ ଆମ୍ର ବୃକ୍ଷରେ ଆଚ୍ଛାଦିତ ଆମ୍ରକୂଟ ପର୍ବତର ପରେ ମେଘ ରହିଲେ ପୃଥିବୀର ଅନାବୃତ ସ୍ତନ ପରି ଦେଖାଯିବ, ଚର୍ମଣ୍ୱତୀ ନଦୀର ଜଳ ନେବା ସକାଶେ ମେଘ ଅବନତ ହେଲେ ଗଗନବିହାରୀ ବ୍ୟକ୍ତିମାନଙ୍କ ଦୃଷ୍ଟିରେ ପୃଥିବୀର କେନ୍ଦ୍ରରେ ସ୍ଥୂଳ ଇନ୍ଦ୍ରନୀଳ ମଣିଖଚିତ ଏକ ମୁକ୍ତାହାର ପରି ଦେଖାଯିବ । ଶୁକ୍ଲବର୍ଣ୍ଣ କୈଳାସ ପର୍ବତ ଭଗବାନ୍ ଶଙ୍କରଙ୍କର ପ୍ରତିଦିନ ସଞ୍ଚିତ ଓ ଏକୀକୃତ ଅଟ୍ଟହାସ ସଦୃଶ । ଏହିପରି 'ମେଘଦୂତ'ର ଉତ୍ପ୍ରେକ୍ଷା ଗୁଡ଼ିକ ଅତୀବ ହୃଦୟାବର୍ଜକ । ଉତ୍ପ୍ରେକ୍ଷା ପରି ଦୃଷ୍ଟାନ୍ତଅଳଙ୍କାର ମଧ୍ୟ କବିଙ୍କର ଅତ୍ୟନ୍ତ ପ୍ରିୟ ଥିଲାପରି ବୋଧ ହୁଏ । 'ରଘୁବଂଶ'ରେ ଇନ୍ଦୁମତୀଙ୍କର ଶରୀର ମୃତ୍ୟୁ ହେବା ସଙ୍ଗେ ସଙ୍ଗେ ଅଜଙ୍କର ଶରୀର ଉପରେ ପଡିଗଲା ଏବଂ ସେହିକ୍ଷଣି ଅଜଙ୍କର ମୂର୍ଚ୍ଛା ହୋଇଗଲା । ଏହି ଘଟଣାର ବର୍ଣ୍ଣନା କରିବାକୁ ଯାଇ କବି ଦୀପରୁ ତୈଳବିନ୍ଦୁ ସହିତ ନିର୍ଗତ ହେବା ଦୀପଜ୍ୟୋତି ସହିତ ରମଣୀୟ ଦୃଷ୍ଟାନ୍ତ ଦେଇଅଛନ୍ତି । ଶକୁନ୍ତଳା ଯେତେବେଳେ ଦୁଷ୍ୟନ୍ତଙ୍କ ପ୍ରତି ତାଙ୍କର ଅନୁରାଗ ପ୍ରକାଶ କଲେ, ସେତେବେଳେ ତାଙ୍କର ସଖୀମାନେ **'सागर-मुजझित्वा कुत्र वा महानद्यवतरति ?' 'क इदानीं सहकार-मुज्झित्वाऽतिमुक्तलतां पल्लवितां सहते'** ଏହିପରି ଦୃଷ୍ଟାନ୍ତ ଦେଇ ନିଜ ସମ୍ମତି ଜଣାଇଛନ୍ତି । 'ନିର୍ଦ୍ଦୟ ଦୁର୍ବାସାଙ୍କ ଛଡ଼ା ଆଉ କିଏ ନିରପରାଧା ଶକୁନ୍ତଳାଙ୍କୁ ଶାପ ଦେଇପାରେ' ଏହି ଭାବ **कोऽन्यो हुतवहाद् दग्धुं प्रभवति'** ଏହି ଦୃଷ୍ଟାନ୍ତରେ ସୁନ୍ଦର ରୂପେ ବ୍ୟକ୍ତ ହୋଇଅଛି । ଏହିପରି ଆହୁରି ଅନେକ ଉଦାହରଣ ଦିଆଯାଇ-ପାରେ । କାଳିଦାସଙ୍କର ଅର୍ଥାନ୍ତରନ୍ୟାସରେ ତାଙ୍କର ବ୍ୟାବହାରିକ ଅନୁଭବସାରସର୍ବସ୍ୱ ଅତ୍ୟନ୍ତ ରସମୟୀ ବାଣୀରେ

ଅଙ୍କିତ ହୋଇଅଛି ଏବଂ ସେ ମଧ୍ୟରୁ ଅନେକ ଅଳଙ୍କାର ବ୍ୟାବହାରିକ ଭାଷାରେ ଢଗଢ଼ମାଳି ପରି ବ୍ୟବହୃତ ହେଉଅଛି । ଉଦାହରଣ **'मरणं प्रकृतिः शरीरिणाम्' 'महदपि परदुःखं शीतलं सम्यगाहुः ।' 'भिन्नरुचिर्हि लोकः' । 'किमिव हि मधुराणां मंडनं नाकृतीनाम् ।'** ଇତ୍ୟାଦି ଉକ୍ତିମାନ ଦେଖନ୍ତୁ । ଏହା ଛଡ଼ା କବି ନିଦର୍ଶନା, ଅତିଶୟୋକ୍ତି, ସହୋକ୍ତି, ପର୍ଯ୍ୟାୟ, ସମୁଚ୍ଚୟ ସନ୍ଦେହ ବିଭାବନା ପ୍ରଭୃତି ଅନେକ ଅଳଙ୍କାରରେ ନିଜ କବିତା-ବଧୂକୁ ଅଳଂକୃତ କରି ଅଛନ୍ତି । ଏ ସମସ୍ତର ଉଦାହରଣ ଏଠାରେ ସ୍ଥାନାଭାବରୁ ଦିଆଯାଇ ପାରିଲା ନାହିଁ । ଜିଜ୍ଞାସୁ ପାଠକମାନେ ମମ୍ମଟ ପ୍ରଭୃତି ଅଳଂକାରିକମାନଙ୍କର ଗ୍ରନ୍ଥମାନଙ୍କର ସ୍ଥଳ ବିଶେଷରେ ଦେଖି ପାରିବେ ।

ବର୍ତ୍ତମାନ ପର୍ଯ୍ୟନ୍ତ ଆମ୍ଭେ ଧ୍ୱନି, ରସ, ରୀତି ଓ ଅଳଙ୍କାର — ଏହି ସଂସ୍କୃତ ଅଳଙ୍କାରିକମାନଙ୍କର ମତଚତୁଷ୍ଟୟ ଅନୁସାରେ କାଳି-ଦାସୀୟ ଗ୍ରନ୍ଥମାନଙ୍କର ସମାଲୋଚନା କରିଅଛୁଁ ଏବଂ କାବ୍ୟ କଷଟି ପଥରରେ ସେମାନଙ୍କର ରୂପରେଖ ମଧ୍ୟ ଦେଖାଇଅଛୁଁ । ବର୍ତ୍ତମାନ ତାଙ୍କର ଅନ୍ୟାନ୍ୟ ବିଶେଷତ୍ୱର ମଧ୍ୟ ଚର୍ଚ୍ଚା କରିବୁଁ ।

ଆଧୁନିକ ସମାଲୋଚକମାନେ ରସାଳଙ୍କାରାଦି ପରି କାବ୍ୟ ଓ ନାଟକମାନଙ୍କରେ ସଂବିଧାନରଚନା, ଚରିତ୍ରଚିତ୍ରଣ ପ୍ରଭୃତି ଅନ୍ୟାନ୍ୟ ବିଶେଷତ୍ୱ ପ୍ରତି ମଧ୍ୟ ଦୃଷ୍ଟି ଦେଇଥାନ୍ତି । ଏ ବିଷୟରେ କାଳିଦାସଙ୍କର ଗ୍ରନ୍ଥମାନଙ୍କର ତୁଳନା ଅନ୍ୟ କୌଣସି କବିଙ୍କର ଗ୍ରନ୍ଥମାନଙ୍କ ସହିତ ଯଦି ସମକକ୍ଷ କରାଯାଏ, ତେବେ କମ୍ ସରସ ବୋଧ ହେବ ନାହିଁ । 'ମାଳବିକାଗ୍ନିମିତ୍ରର' କଥାବସ୍ତୁରେ ବହୁତ ଜଟିଳତା ଥିଲେ ମଧ୍ୟ ପରିଶେଷରେ କବି ଅତ୍ୟନ୍ତ ଚତୁରତା-

ସନ୍ତକାରେ ସେ ସମସ୍ତର ସମାଧାନ କରିଅଛନ୍ତି । 'ଶାକୁନ୍ତଳ'ରେ ନାୟକ ନାୟିକାଙ୍କର ଚରିତ୍ରରେ ଭିନ୍ନ ଭିନ୍ନ ମନୋବିକାର-ମାନଙ୍କର ବିଶ୍ଳେଷଣ ଭଲରୂପେ କରିଅଛନ୍ତି । ଏହା ଛଡ଼ା କାଳିଦାସଙ୍କର ଗ୍ରନ୍ଥମାନଙ୍କର ବିଭିନ୍ନ ଚରିତ୍ର ଓ ଭିନ୍ନ ଭିନ୍ନ ବ୍ୟବସାୟୀଙ୍କର ଚିତ୍ର ଅତି ସୂକ୍ଷ୍ମଭାବେ ଅଙ୍କିତ କରାଯାଇଅଛି । ଏହାଙ୍କ ରଚିତ ରମଣୀୟ ସୃଷ୍ଟିରେ କାଶ୍ୟପ, କଣ୍ୱ, ଦୁର୍ବାସା ଏମାନେ ପରସ୍ପର ବିଭିନ୍ନ ପ୍ରକୃତିର ମହର୍ଷି, କୌତ୍ସଙ୍କ ପରି ନିସ୍ପୃହ ବ୍ରାହ୍ମଣ, ଦୁଷ୍ୟନ୍ତ, ଦିଲୀପ, ରଘୁ, ରାମ—ଅଦ୍ଭୁତ କର୍ତ୍ତବ୍ୟତତ୍ପର ରାଜର୍ଷି, ଅଜ ଓ ଉଦୟନ ପତ୍ନୀ ବିରହାଗ୍ନିରେ ମ୍ରିୟମାଣ ପ୍ରେମିକ, ଅଗ୍ନିମିତ୍ର ଓ ଅଗ୍ନିବର୍ଣ୍ଣ ସମାନ ବିଳାସୀ ରାଜା, ହରଦତ୍ତ ଓ ଗଣ-ଦାସଙ୍କ ପରି କଳାକୁଶଳ ଅଥଚ ପରସ୍ପରକୀର୍ତ୍ତିଅସହିଷ୍ଣୁ ନାଟ୍ୟାଚାର୍ଯ୍ୟ, ଗୌତମ, ମାଣବକ, ମାଧବ୍ୟ ସଦୃଶ ଉଦରମ୍ଭରି ବିଦୂଷକ, ଏବଂ ବାଲ୍ୟାବସ୍ଥାରେ ମଧ୍ୟ ସିଂହଶାବକର ଦାନ୍ତ ଗଣିବା ସର୍ବଦମନ, ସ୍ୱୟଂବରସଭାରେ ଯବନମାନଙ୍କୁ ପରାଜିତ କରି ଅଶ୍ୱମେଧ ଅଶ୍ୱ ପ୍ରତ୍ୟାବୃତ୍ତ କରି ଆଣିବା ବସୁମିତ୍ର ପର୍ଯ୍ୟନ୍ତ ସ୍ନେହ ବଡ଼ ରାଜକୁମାର ଦେଖାଯାନ୍ତି । ପରିସ୍ଥିତି ପରିବର୍ତ୍ତନରେ ଯଦି ସେହି ବ୍ୟକ୍ତି ଆଜି କାଲି ବ୍ୟବହାରରେ ଦେଖା ନ ଯାନ୍ତି, ତେବେ ମଧ୍ୟ ଏଥିରେ ସନ୍ଦେହ ନାହିଁ ଯେ ସେପରି ବ୍ୟକ୍ତି ଅବଶ୍ୟ ଦେଖା ଦେବେ । କାଳିଦାସକାଳୀନ ପରିସ୍ଥିତି ପରିଶୀଳନ କଲେ ଜଣାଯାଏ—ତାଙ୍କର ନିଜର ପାତ୍ର ସଚରାଚର ସୃଷ୍ଟିରୁ ପରିଗୃହୀତ । 'ବିକ୍ରମୋର୍ବଶୀୟ'ର ନାୟକଙ୍କ ସ୍ୱଭାବରେ ତାତ୍କାଳୀନ ନାଗରିକ ମାନଙ୍କରେ ବୃତ୍ତି କପଟ ପ୍ରତିଫଳିତ—ତାହା ଆମ୍ଭେ ଆଗରୁ ଦେଖାଇଅଛୁଁ ।

ପରନ୍ତୁ କାଳିଦାସଙ୍କର ପୁରୁଷପାତ୍ରମାନଙ୍କ ଅପେକ୍ଷା ସ୍ତ୍ରୀପାତ୍ର-ମାନେ ଅଧିକ ପରିମାଣରେ ରସିକମାନଙ୍କର ମନ ଆକର୍ଷଣ କରନ୍ତି । ସେ ନିଜଗ୍ରନ୍ଥମାନଙ୍କରେ ଧାରଣୀ, ଔଶୀନରୀ, ପାର୍ବତୀ ଉର୍ବଶୀ, ଇରାବତୀ, ମାଳବିକା, ଯକ୍ଷପତ୍ନୀ, ଶକୁନ୍ତଳା, ପ୍ରିୟମ୍ବଦା, ଅନସୂୟା, ସୁଦକ୍ଷିଣା, ଇନ୍ଦୁମତୀ ଓ ସୀତା—ଏହିପରି ଅନେକ ପ୍ରକାର ବିଶିଷ୍ଟ ସ୍ତ୍ରୀପାତ୍ରଙ୍କର ଚରିତ୍ର ଚିତ୍ରଣ କରିଅଛନ୍ତି । ଏମାନଙ୍କ ମଧ୍ୟରେ ଧାରଣୀ, ଔଶୀନରୀ ଓ ସୁଦକ୍ଷିଣା ମଧ୍ୟମବୟସ୍କର, ଏବଂ ଅବଶିଷ୍ଟ ସମସ୍ତେ ତରୁଣୀ । ଉର୍ବଶୀ ଅପ୍ସରା ହେବା ହେତୁ ତାଙ୍କର ଗଣନା ଯୁବତୀମାନଙ୍କ ମଧ୍ୟରେ ହିଁ କରାଯାଇପାରେ । କାଳିଦାସଙ୍କ ସ୍ତ୍ରୀ ସୃଷ୍ଟିରେ ତରୁଣ ସ୍ତ୍ରୀମାନଙ୍କର ସମଧିକ ସଂଖ୍ୟାର ଆଧିକ୍ୟ ବିଚାର କଲେ ଏହି ବିଳାସୀ ଓ ସୁକୁମାର କବିଙ୍କର ମନ ତରୁଣୀ ସ୍ତ୍ରୀମାନଙ୍କର ମୁଗ୍ଧମଧୁର ଲୀଳା ବିକାଶରେ ବିହାର କରୁଥିବା ପରି ପ୍ରତୀତ ହୁଏ । ଏ ସମସ୍ତ ସ୍ତ୍ରୀ ବିଭିନ୍ନ ପ୍ରକୃତିର । ଧାରଣୀ, ଔଶୀନରୀ ଓ ଅନୁସୂୟାଙ୍କର ଗମ୍ଭୀର ସ୍ୱଭାବ ଇରାବତୀଙ୍କର ବିଳାସିତା, ପାର୍ବତୀଙ୍କର କଠୋର ତପଃସାଧନା, ଶକୁନ୍ତଳା ଓ ସୀତାଙ୍କର ସ୍ୱାଭିମାନ, ପ୍ରିୟମ୍ବଦାର ବିନୋଦୀ ସ୍ୱଭାବ ଏବଂ ସୁଦକ୍ଷିଣାଙ୍କର କର୍ତ୍ତବ୍ୟପରାୟଣତା—ଏ ସମସ୍ତ ସ୍ୱଭାବର ଭିନ୍ନ ଭିନ୍ନ ବିଶେଷତ୍ୱ ପ୍ରଧାନରୂପେ ଦୃଷ୍ଟିଗୋଚର ହୁଏ । ତଥାପି ଅନେକାଂଶରେ ସମସ୍ତଙ୍କର ସାମ୍ୟ ମଧ୍ୟ ଦେଖାଯାଏ । ଏ ସମସ୍ତ ସ୍ତ୍ରୀ ଅତ୍ୟନ୍ତ ପ୍ରେମିକ । ଏମାନଙ୍କ ମଧ୍ୟରେ ବିବାହିତ ସ୍ତ୍ରୀ-ମାନଙ୍କର ପତିପ୍ରେମ, ପୁତ୍ରବତୀମାନଙ୍କର ସନ୍ତାନବାତ୍ସଲ୍ୟ, ପ୍ରିୟମ୍ବଦା ଓ ଅନୁସୂୟାଙ୍କର ସଖୀସ୍ନେହ ଅସୀମ । ଧାରଣୀ ଓ ଔଶୀନରୀ ଅତିରିକ୍ତ ପତିପ୍ରେମବଶତଃ ନିଜ ନିଜ ପତିଙ୍କର ଅନ୍ୟ ସ୍ତ୍ରୀ ପ୍ରତି ଅନୁରାଗ ଅସହ୍ୟ ହେଲେ ମଧ୍ୟ କେବଳ ପତି ସୁଖରେ ରହିବେ—

ଏହା ବଗୃରରେ ନୂତନ ପତ୍ନୀ ସ୍ୱୀକାର କରିବାକୁ ସମ୍ମତ ହୋଇ-ଅଛନ୍ତି । ଏମାନଙ୍କ ମଧ୍ୟରେ ଅନେକଙ୍କର ସ୍ୱଭାବରେ ବେଶୀ ପରିମାଣରେ ସ୍ତ୍ରୀ ସ୍ୱଭାବସୁଲଭ ଈର୍ଷ୍ୟା ଦେଖାଯାଏ । ଯକ୍ଷପତ୍ନୀ ଜାଣିଥିଲେ ତାଙ୍କପ୍ରତି ପତିଙ୍କର ଅସାଧାରଣ ପ୍ରେମ । ତଥାପି ସ୍ୱପ୍ନରେ ସୁଦ୍ଧା ନିଜପତିଙ୍କୁ ଅନ୍ୟ ସ୍ତ୍ରୀ ସହିତ ବିହାର କରିବା ଦେଖିଲେ, ଏକବାରେ ଦୁଃଖରେ ବିବଶ କ୍ରୋଧ ଚମକି ପଡୁଥିଲେ । (ମେଘ ୭୧) ଇରାବତୀ ଓ ଔଶୀନରୀ ନିଜ ନିଜ ପତି ପାଦତଳେ ପଡ଼ି ଅପରାଧ ସ୍ୱୀକାର କଲେ ମଧ୍ୟ ପ୍ରତ୍ୟାଖ୍ୟାନ କରିଯାଇଛନ୍ତି । କାଳିଦାସଙ୍କର ଅଧିକାଂଶ ମନଃକଳ୍ପିତ କନ୍ୟାମାନେ କଳାନିପୁଣା ଇରାବତୀ ଓ ମାଳବିକା ନୃତ୍ୟକଳାରେ ଅନସୂୟା ଓ ପ୍ରିୟମ୍ବଦା ଚିତ୍ରକଳାରେ ନିପୁଣ ଦେଖାଯାନ୍ତି । ଯକ୍ଷପତ୍ନୀ ବିରହାବସ୍ଥାରେ ଦୁଃଖିତ ନିଜ ମନକୁ ସାନ୍ତ୍ୱନା ଦେବା ସକାଶେ କେବେ କେବେ ଏପରି ପଦ ରଚନା କରୁଥିଲେ ଯହିଁରେ ପତିଙ୍କର ନାମଗୋତ୍ର ରହୁଥିଲା, ଏବଂ ବୀଣା ବଜାଇ ସେ ସମସ୍ତ ପଦ ଗାଇବାକୁ ଚେଷ୍ଟା କରୁଥିଲେ । କେତେବେଳେ ବିରହ କ୍ଷୀଣ ପତିଙ୍କର ଚିତ୍ର ଲେଖି ମନ ଭୁଲାଉଥିଲେ । ସାଧାରଣତଃ ସ୍ତ୍ରୀ ପାତ୍ରମାନଙ୍କ ମଧ୍ୟରେ ଅଧିକାଂଶ ଲତାବୃକ୍ଷମାନଙ୍କ ପ୍ରତି ସନ୍ତାନ ବାତ୍ସଲ୍ୟ ଦେଖାଇ ଅଛନ୍ତି । ପାର୍ବତୀ, ସୀତା, ଶକୁନ୍ତଳା ଓ ତାଙ୍କର ସଖୀମାନେ ଆଶ୍ରମବୃକ୍ଷ ମାନଙ୍କରେ ପାଣିଦେଇ ଅତ୍ୟନ୍ତ ପ୍ରେମରେ ସେମାନଙ୍କର ଶୁଶ୍ରୂଷା କରୁଥିଲେ । ଯକ୍ଷପତ୍ନୀ ମଧ୍ୟ ନିଜଘର ଅଗଣାରେ — ଏକ ଛୋଟ ମନ୍ଦାର ଗଛକୁ ଅଙ୍କପାଳିତ ଶିଶୁପରି ପାଳି ବଢ଼ାଇଥିଲେ । ନିଜର ଉଦ୍ୟାନର ସୁବର୍ଣ୍ଣାଶୋକ ପ୍ରତି ଧାରଣୀଙ୍କର ସ୍ନେହ ଏତେ ଅଧିକ ଥିଲା ଯେ ଯେତେବେଳେ ଅନ୍ୟ ବୃକ୍ଷପରି ତହିଁରେ କଳିକା ଦେଖାଗଲା ନାହିଁ, ସେତେବେଳେ ତାଙ୍କର ବିଶେଷ ଦୁଃଖ

ହୋଇଥିଲି । ମାଳବିକାଙ୍କର ଚରଣ ତାଡ଼ନରେ ଶୀଘ୍ର ପ୍ରସ୍ଫୁଟିତ ପୁଷ୍ପ ସମ୍ଭାର ଦେଖି ଆନନ୍ଦସ୍ରୋତରେ ସ୍ତ୍ରୀସ୍ୱଭାବସୁଲଭ ସପତ୍ନୀ ମାତ୍ସର୍ଯ୍ୟ ମଧ୍ୟ ଭୁଲିଯାଇ ନିଜେ ରାଜାଙ୍କ ସହିତ ମାଳବିକାଙ୍କର ବିବାହ କରିଦେଲେ । କାଳିଦାସଙ୍କର ନାୟିକାମାନେ ଲତାବୃକ୍ଷ ପରି ପଶୁପକ୍ଷୀମାନଙ୍କୁ ମଧ୍ୟ ବିଶେଷ ଆଦର କରୁଥିଲେ । ଯକ୍ଷ-ପତ୍ନୀ ସନ୍ଧ୍ୟାସମୟରେ ନିଜଭବନଅଗଣାରେ ରକ୍ଷିତ ସୁବର୍ଣ୍ଣ ଯଷ୍ଟି ଉପରେ ବସିବା ମୟୂରକୁ ନିଜେ ତାଳି ଦେଇ ନଚାଉଥିଲେ । ଶକୁନ୍ତଳା ମଧ୍ୟ ଜନ୍ମରୁ ମାତୃହୀନ ‘ଦୀର୍ଘାପାଙ୍ଗ’ ନାମକ ମୃଗଶାବକକୁ ଭଲରୂପେ ପ୍ରତିପାଳନ କରି ବଢ଼ାଇଥିଲେ କାଳିଦାସ ବର୍ଣ୍ଣନା କରି ଅଛନ୍ତି ଯେ ପାର୍ବତୀ ହରିଣମାନଙ୍କ ସହିତ ଏତେଦୂର ମିଶିଯାଉଥିଲେ ଯେ ସେ ସେମାନଙ୍କର ନେତ୍ରର ପକ୍ଷ୍ମମାଳକୁ ନିଜ ସଖୀମାନଙ୍କ ନେତ୍ର ସହିତ ତୁଳନା କରୁଥିଲେ । ଉପରଲିଖିତ ସ୍ତ୍ରୀ ପାତ୍ର ଛଡ଼ା ଅନ୍ୟ କେତେକ ଯୁବତୀମାନଙ୍କର ମଧ୍ୟ ଅସ୍ପୁଟ ଚିତ୍ର କବି ‘ମେଘଦୂତ’ରେ ଅଙ୍କିତ କରି ଅଛନ୍ତି । କବି ସଦାଗ୍ରତ ମାତ୍ର କଳ୍ପନାରେ ମୁକ୍ତମନା ହେବାହେତୁ ବନକୁଞ୍ଜରେ ଆନନ୍ଦ ଲାଭ କରୁଥିବା ବନଚରବଧୂ, ଉଦଶାବକଟ-ବର୍ତ୍ତୀ ମାର୍ଗରେ ଆନନ୍ଦ ଅନୁଭବ କରୁଥିବା ବାରବିଳାସିନୀ, ମହାକାଳେଶ୍ୱରଙ୍କ ଆଗରେ ନୃତ୍ୟପରାୟଣା ବେଶ୍ୟା, ଆକାଶରେ ଗମ୍ଭୀରଶ୍ୟାମଳ ତଥା ବିଶାଳ ମେଘ ଦେଖି ଏହା ପବନଦ୍ୱାରା ସମାହୃତ ପର୍ବତଶିଖର ବୋଲି ବିଶ୍ୱାସ କରୁଥିବା ସରଳସ୍ୱଭାବା ସିଦ୍ଧାଙ୍ଗନା, ଏବଂ କୃଷିକାର୍ଯ୍ୟସାଧକ ମେଘ ପ୍ରତି ସ୍ନିଗ୍ଧ ଦୃଷ୍ଟି ନିକ୍ଷେପ କରୁଥିବା, ଭ୍ରୂବିଳାସାନଭିଜ୍ଞା ଗ୍ରାମତରୁଣୀ—ଏ ସମସ୍ତଙ୍କର ସଂକ୍ଷିପ୍ତ ଅଥଚ ହୃଦୟଗ୍ରାହୀ ବର୍ଣ୍ଣନା କରିଅଛନ୍ତି । ତଥାପି ଏମାନଙ୍କ ଅପେକ୍ଷା ପୌର ସ୍ତ୍ରୀମାନଙ୍କର ବର୍ଣ୍ଣନା ଏହାଙ୍କର

ଗ୍ରନ୍ଥମାନଙ୍କରେ ବାରମ୍ବାର ଦେଖାଯାଏ । ଅନ୍ଧାର ରାତିରେ ରତ୍ନାଳଙ୍କାରବିଭୂଷିତା, ପ୍ରିୟତମଙ୍କର ଗୃହାଭିମୁଖରେ ପ୍ରସ୍ଥାନୋଦ୍ୟତା, ମେଘଗର୍ଜନରେ ଭୀତତ୍ରସ୍ତା ଅଭିସାରିକା, ନଗରୋପାନ୍ତ ଉଦ୍ୟାନରେ ଫୁଲ ତୋଳିବା ଫଳରେ ଶ୍ରମବିବଶା ସ୍ୱିନ୍ନଗଣ୍ଡସ୍ଥଳୀ ପୁଷ୍ପଲାବୀ ତରୁଣୀ କଟାକ୍ଷନିକ୍ଷେପଚତୁର ଚଞ୍ଚଳନେତ୍ରା ପୌରସ୍ତ୍ରୀ, ବିଦେଶଗତ ପ୍ରିୟତମ ବିରହରେ ବ୍ୟାକୁଳା, ଶରୀରସଂସ୍କାରବର୍ଜିତା ପଥିକବନିତାମାନଙ୍କର ବର୍ଣ୍ଣନା ଲଳିତ, ଯୋଜନାରେ ବିଶେଷ କୁଶଳତା ସହକାରେ କରିଯାଇ ଅଛନ୍ତି । ଯେତେବେଳେ ଭଗବାନ ଶିବ ଓ ରାଜକୁମାର ଅଜ ବିବାହପରେ ନଗରରେ ପ୍ରବେଶ କଲେ, ସେ ସମୟରେ ସ୍ତ୍ରୀ ମାନଙ୍କର ବିଭ୍ରମାବସ୍ଥା କବି ବର୍ଣ୍ଣନା କରି ଅଛନ୍ତି । ଏଥିରୁ ଏବଂ 'ମେଘଦୂତ'ର ଯକ୍ଷପତ୍ନୀଙ୍କର ବର୍ଣ୍ଣନାରୁ ସେ ସମୟର ପୌରସ୍ତ୍ରୀମାନଙ୍କର ବିଶେଷ ସରସ ଜୀବନର ପୂର୍ଣ୍ଣ ପରିଚୟ ମିଳେ ।

କାଳିଦାସଙ୍କର ସ୍ତ୍ରୀ ବିଷୟକ କଳ୍ପନା ଅତ୍ୟନ୍ତ ଉଦାର ଥିଲା — ଏହା **'ଗୃହିଣୀ ସଚିବଃ ସଖୀ ମିଥଃ ପ୍ରିୟଶିଷ୍ୟା ଲଳିତେ କଳାବିଧୌ'** ଅଜ ବିଳାପର ଏହି ଉକ୍ତିରୁ ପ୍ରତୀତ ହୁଏ । ତଥାପି ଗୃହିଣୀ ଓ ପତ୍ନୀ ଏହି ଦୁଇଟି ସମ୍ବନ୍ଧ ଏହାଙ୍କର ସ୍ତ୍ରୀପାତ୍ରମାନେ ନିଜ କର୍ତ୍ତବ୍ୟ ରୂପେ ପାଳନ କରିଥିବା ବିଷୟ ଏହାଙ୍କର କୌଣସି ଗ୍ରନ୍ଥରେ ଦେଖାଯାଏ ନାହିଁ । ଏହି ଦୃଷ୍ଟିରୁ 'ସ୍ୱପ୍ନ ବାସବଦତ୍ତା'ରେ ରାଜକାର୍ଯ୍ୟ ସକାଶେ ନିଜର ମିଥ୍ୟା ମୃତ୍ୟୁସମ୍ବାଦ ପ୍ରଚାର କରି ପତିଙ୍କର ବିରହଦୁଃଖ ସହନ କରୁଥିବା ଏବଂ ଈର୍ଷା ବିଷୟ ମନରେ ସ୍ଥାନ ନ ଦେଇ ନିଜ ସପତ୍ନୀକୁ ପୁଷ୍ପାଳଙ୍କାରରେ ବିଭୂଷିତ

କରିଥିବା ଭ୍ରସଙ୍କର ନାୟିକା ବାସବଦତ୍ତା ତଥା ବନାକାରଣରେ ପତିଙ୍କ ଦ୍ୱାରା ପରିତ୍ୟକ୍ତା, ପ୍ରଜାନୁରଞ୍ଜନ ସକାଶେ ସେପରି କରିଛନ୍ତି ବୋଲି ପତିଙ୍କୁ ପ୍ରଶଂସା କରୁଥିବା ଭବଭୂତିଙ୍କର ସୀତା କାଳିଦାସଙ୍କର ବିଳାସିନୀ ସ୍ତ୍ରୀପାତ୍ରମାନଙ୍କ ଅପେକ୍ଷା ଅଧିକ ଉଦାତ୍ତ ବୋଲି ବିବେଚିତ ହୁଅନ୍ତି । କାଳିଦାସକୃତ ତିନୋଟିଯାକ ନାଟକର ନାୟକ ବହୁପତ୍ନୀକ । ଏଥିରୁ ସମାଲୋଚକମାନେ କହନ୍ତି କାଳିଦାସ ଏକପତ୍ନୀବ୍ରତର ମହତ୍ତ୍ୱ ଜାଣି ନ ଥିଲେ । ଆମ୍ଭେ ଏହି ମତରେ ଏକମତ ହୋଇ ପାରିବୁ ନାହିଁ । କାରଣ 'ମେଘଦୂତ'ର ଯକ୍ଷ, 'ରଘୁବଂଶ'ର ଅଜ ଓ ରାମ ଏକପତ୍ନୀବ୍ରତ-ଧାରୀ । କାଳିଦାସଙ୍କର ନାଟକମାନଙ୍କର ନାୟକମାନେ ବହୁପତ୍ନୀକ ହେବାର କାରଣ ତାଙ୍କର ରାଜାଶ୍ରୟ । ରାଜଦରବାରରେ ପ୍ରଦର୍ଶନୀୟ ନାଟକୀୟ ବିଷୟ ରାଜାଙ୍କ ଚରିତ୍ରର ଅନୁରୂପ ହେବା ବାଞ୍ଛନୀୟ । ସେହି ନାଟକମାନଙ୍କରେ ବରଂ ବହୁପତ୍ନୀକତ୍ୱ ଯଦି ବର୍ଣ୍ଣିତ ହୋଇ ନଥାନ୍ତା ତେବେ ଆଶ୍ଚର୍ଯ୍ୟର ବିଷୟ ହୋଇଥାନ୍ତା । ଯେଉଁ ସମୟରେ ଭବଭୂତି ନାଟକ ରଚନା କରିଥିଲେ, ସେ ସମୟରେ ତାଙ୍କର ରାଜାଶ୍ରୟବନ୍ଧନ ନଥିଲା । ଅତଏବ ତାଙ୍କର 'ମାଳତୀ ମାଧବ' ଓ 'ଉତ୍ତର ରାମଚରିତ ନାଟକ'ରେ ବିଶୁଦ୍ଧ ପତି-ପତ୍ନୀଙ୍କର ଚିତ୍ର ରଞ୍ଜିତ ହୋଇଅଛି ।

**ସୃଷ୍ଟି ବର୍ଣ୍ଣନ**—ଆଧୁନିକ ପାଠକମାନେ କାଳିଦାସଙ୍କ ଗ୍ରନ୍ଥ ପ୍ରତି ଆକୃଷ୍ଟ ହେବାର ଅନ୍ୟ କାରଣ ହେଉଛି, ସେହି ଗ୍ରନ୍ଥରେ ବର୍ଣ୍ଣିତ ଅନୁପମ ସୃଷ୍ଟି ବର୍ଣ୍ଣନ । ସୃଷ୍ଟି ବର୍ଣ୍ଣନା କରିବାକୁ କାଳିଦାସଙ୍କର ସମଧିକ ଅଗ୍ରହ ଥିଲା । ଅମେ ଆଗରୁ କହିଛୁ ତାଙ୍କର ପ୍ରତ୍ୟେକ ଗ୍ରନ୍ଥରେ ଯେ କୌଣସି ଋତୁର ବର୍ଣ୍ଣନା ଅବଶ୍ୟ

ରହନ୍ତି । ମହାକାବ୍ୟରୁ ଆରମ୍ଭ କରି ରଘୁବଂଶ ପର୍ଯ୍ୟନ୍ତ ଏହାଙ୍କର ଗ୍ରନ୍ଥମାନ କ୍ରମ ଅନୁସାରେ ପାଠକଲେ ଜଣାଯାଏ ଯେ ତାଙ୍କର ପ୍ରକୃତିଗତଭାବ ଓ ସୃଷ୍ଟି ବର୍ଣ୍ଣନ ଭାବରେ କ୍ରମଶଃ ପରିବର୍ତ୍ତନ ଘଟିଅଛି । 'ରାମାୟଣ' ଓ 'ମହାଭାରତ'ର ଅଧିକାଂଶ ଭାଗରେ ଲତା ବୃକ୍ଷମାନଙ୍କରେ ଲମ୍ବା ଫର୍ଦ୍ଦ ସୂଚନା ଦେଇ ସୃଷ୍ଟି ବର୍ଣ୍ଣନା କରାଯିବା ଦେଖାଯାଏ । ଏଥିରେ ସନ୍ଦେହ ନାହିଁ ଯେ 'ଋତୁ-ସଂହାର'ରେ କାଳିଦାସ ଅନେକାଂଶରେ ଅଗ୍ରସରିଛନ୍ତି । ଜଣାଯାଏ କବିଙ୍କର ଦୃଷ୍ଟି ସୃଷ୍ଟିର ଉଜ୍ଜ୍ୱଳରୂପ ପ୍ରତି ପଡ଼ିଅଛି । (ଋତୁ, ୯.୨) ବିଭିନ୍ନ ଋତୁରେ କାମୁକ ବ୍ୟକ୍ତିମାନଙ୍କର ବିଭିନ୍ନ ପରିଣାମ ତଥା ସେମାନଙ୍କର ମାନସିକ ବିକାର ଓ ବିଶୃଙ୍ଖଳ ସେ ଉତ୍ତମରୂପେ ବର୍ଣ୍ଣନ କରିଅଛନ୍ତି । ଏଥିରେ ସନ୍ଦେହ ନାହିଁ ଯେ ପ୍ରକୃତିରେ ନଦୀବୃକ୍ଷାଦି ମାନଙ୍କରେ ଚୈତନ୍ୟଧର୍ମ ଆରୋପକରି ସେମାନଙ୍କର ଆଲଙ୍କାରିକ ବର୍ଣ୍ଣନା କେବଳ ତାଙ୍କ ରଚନାର ବିଶେଷତ୍ୱ । ତଥାପି ସମଗ୍ର ସୃଷ୍ଟିରେ ଏକରୂପ ଚୈତନ୍ୟ ପୂର୍ଣ୍ଣ ରହିଛି, ସ୍ତ୍ରୀ ପୁରୁଷପରି ଲତାବୃକ୍ଷପ୍ରକୃତି ମଧ୍ୟ ଭିନ୍ନ ଭିନ୍ନ ସ୍ୱରୂପର—ଏପରି କଳ୍ପନା ତାଙ୍କର ପ୍ରାଥମିକ ଗ୍ରନ୍ଥମାନଙ୍କରେ ଦେଖିବାକୁ ମିଳେ ନାହିଁ । ପରିଶେଷରେ ଗ୍ରନ୍ଥମାନଙ୍କରେ ଉପନିଷଦ ମାନଙ୍କରେ ବର୍ଣ୍ଣନା ଅନୁସାରେ କେତେକ ସ୍ଥାନରେ ସେ ଲତା ବୃକ୍ଷାଦିରେ ବନଦେବତାମାନଙ୍କର ଅସ୍ତିତ୍ୱ ସ୍ୱୀକାର କରି ଅଛନ୍ତି । 'ମେଘଦୂତ'ର ଏକ ସ୍ଥାନରେ ଲେଖାଅଛି ଯେ ସ୍ୱପ୍ନରେ ପତ୍ନୀଙ୍କ ଦର୍ଶନ ଲାଭ କରି ଅତ୍ୟନ୍ତ ଆନନ୍ଦରେ ଆଲିଙ୍ଗନ କରିବାକୁ ନିଜ ଭୁଜ ଉତ୍ତୋଳନ କରିବା ଦେଖି ବନଦେବତା-ମାନଙ୍କ ଆଖିରୁ ମୁକ୍ତାପରି ସ୍ଥୂଳ ଅଶ୍ରୁବିନ୍ଦୁ ବୃକ୍ଷମାନଙ୍କ ପତ୍ରରେ ପଡୁଅଛି । ଶାକୁନ୍ତଳରେ ବର୍ଣ୍ଣନା କରାଯାଇଛି ଯେ ଯେତେବେଳେ

ଶକୁନ୍ତଳା ବନରୁ ବିଦାୟ ନେଉଥିଲେ, ସେତେବେଳେ ଆଶ୍ରମ-ବୃକ୍ଷବାସୀ ବନଦେବତାମାନେ ନିଜ କୋମଳହସ୍ତ ପର୍ଯ୍ୟନ୍ତ ବିସ୍ତୃତ କରି, ତାଙ୍କୁ ଅଳଙ୍କାରମାନ ଦେଇଥିଲେ । ଅନ୍ୟାନ୍ୟ ସ୍ଥଳମାନଙ୍କରେ ମଧ୍ୟ ଲତାବୃକ୍ଷାଦିକୁ ସଚେତନ ମନେକରି ମନୁଷ୍ୟର ବିପଦରେ ପଶୁପକ୍ଷୀମାନଙ୍କର ମଧ୍ୟ ସହାନୁଭୂତି ହୋଇଥାଏ ବୋଲି ବର୍ଣ୍ଣନା କରାଯାଇଅଛି । ରାବଣ ସୀତାଙ୍କୁ ନେଇ ଯେଉଁ ମାର୍ଗରେ ଯାଇଥିଲା, ସେହି ମାର୍ଗର ଲତାମାନେ ନିଜ ନିଜ ଶାଖା ଓ ପଲ୍ଲବ ସେହି ଦିଗ ପ୍ରତି କମ୍ପନ କରି ରାମଙ୍କୁ ସୀତାଙ୍କର ମାର୍ଗର ସୂଚନା ଦେଇଥିଲେ । ହରିଣୀମାନେ ମଧ୍ୟ ନିଜ ତୃଣଭକ୍ଷଣ ଛାଡ଼ି ଦକ୍ଷିଣ ଦିଗକୁ ଦୃଷ୍ଟି ଦେଇ ସେହି କାର୍ଯ୍ୟ କରିଥିଲେ । (ରଘୁ ୧୨. ୧୫. ୧୬) ଏହି କାତୀୟ ବର୍ଣ୍ଣନାରେ କବି ପ୍ରକୃତିର ସୁଖ ଦୁଃଖ ସମ୍ବେଦନା ବ୍ୟକ୍ତ କରି-ଅଛନ୍ତି । କୁମାରସମ୍ଭବରେ ମନୁଷ୍ୟପରି ଅନ୍ୟପ୍ରାଣୀମାନଙ୍କ ଉପରେ ତଥା ଲତାବୃକ୍ଷାଦି ଅଚେତନ ବସ୍ତୁମାନଙ୍କ ଉପରେ ମଧ୍ୟ ବସନ୍ତାଦି ଋତୁମାନଙ୍କରେ ପ୍ରଭାବ କିପରି ପଡ଼େ, ତାର ବର୍ଣ୍ଣନା କରାଯାଇଅଛି । (କୁମାର ୬-୩୬-୩୯) କବିଙ୍କର ସମସ୍ତ ନାୟିକାଙ୍କର ଫୁଲ ପ୍ରତି ବେଶି ଲାଳସା ଦେଖାଯାଏ । କାଳିଦାସଙ୍କର ଗ୍ରନ୍ଥ-ମାନଙ୍କରେ ତତ୍କାଳୀନ ଲୋକମାନଙ୍କର ପୁଷ୍ପାନୁରାଗ ଦେଖାଯାଏ । ସହରର ବାହାରେ ବଡ଼ ବଡ ଫୁଲ ବଗିଚା ରହୁଥିଲା ଏବଂ ତରୁଣ ବାଳିକାମାନେ ସେଠାରେ ଫୁଲ ତୋଳୁଥିଲେ ଏବଂ ସହରକୁ ଯାଇ ଫୁଲ ବିକୁଥିଲେ । ବଡ଼ ବଡ଼ ସହରରେ ଫୁଲମାନଙ୍କର ସୁଗନ୍ଧ ପ୍ରବାହିତ ହେଉଥିଲା । ତତ୍କାଳୀନ ପୁଷ୍ପମୟ ବେଶଭୂଷାର ଆଦର୍ଶରେ କାଳିଦାସ ଅଳଙ୍କାର ରମଣୀ ମାନଙ୍କର ନିମ୍ନମତେ ବର୍ଣ୍ଣନା କରିଅଛନ୍ତି ।

हस्ते लीलाकमलमलके बालकुन्दानुविद्धं
नीता लोध्रप्रसवरजसा पाण्डुतामानने श्रीः ॥
चूडापाशे नवकुरुवकं चारु कर्णे शिरीषं
सीमन्ते च त्वदुपगमजं यत्र नीपं वधूनाम् ॥

ମେଘ, ୭୧

'ସେଠି ଅଳକାର ସ୍ତ୍ରୀମାନଙ୍କର ହାତରେ ଲୀଳାକମଳ, କେଶପାଶରେ ବାଳକୁନ୍ଦ, ମୁଖରେ ଲୋଧ୍ରପୁଷ୍ପର ପରାଗ, ଚୂଡ଼ାପାଶରେ କୁରୁବକ, କାନରେ ମନୋହର ଶିରୀଷ ଓ ସୀମନ୍ତରେ କଦମ୍ବଫୁଲ—ଏହି ପରି ସମସ୍ତ ଋତୁର ଫୁଲମାନଙ୍କୁ ସେଠାର ସ୍ତ୍ରୀମାନେ ଧାରଣ କରିଥାନ୍ତି ।

କାଳିଦାସଙ୍କର ପ୍ରକୃତି ବର୍ଣ୍ଣନା ଅତ୍ୟନ୍ତ ସୂକ୍ଷ୍ମ ଓ ହୃଦୟସ୍ପର୍ଶୀ । ତାଙ୍କର ମନ ରାଜ ଶିବିରରେ, ରାଜାମାନଙ୍କ ହର୍ମ୍ୟରେ, ଋଷିମାନଙ୍କର ତପୋବନରେ, ପର୍ବତର ଉଚ୍ଚ ଶିଖରରେ ଏବଂ ମୃଗୟାର ଅରଣ୍ୟରେ ସୁଦ୍ଧା ଏକପ୍ରକାର ଲୀନ ହୋଇଥାଏ । ତାଙ୍କଦ୍ୱାରା ଚିତ୍ରିତ ପ୍ରକୃତିରେ ମନ କେବଳ ସାମ୍ପ୍ରଦାୟିକ ରୀତି-ଅନୁଯାୟୀ ହୋଇ ନାହିଁ, ସେ ସମସ୍ତଙ୍କର ପ୍ରତ୍ୟକ୍ଷ ନିରୀକ୍ଷଣର ପରିଚୟ, ସହୃଦୟତାର ଭାବନା, ରସିକତା ଓ କଳ୍ପନାର ଦୀପ୍ତି ମଧ୍ୟ ଦେଖିବାକୁ ମିଳେ । ଗ୍ରନ୍ଥବାହୁଲ୍ୟ ଭୟରେ ସେ ସମସ୍ତର ଉଦାହରଣ ଦିଆଯାଇ ପାରୁ ନାହିଁ । କିନ୍ତୁ ପ୍ରଥମେ ଉଦ୍ଧୃତ ଶ୍ଳୋକମାନଙ୍କରୁ ସହୃଦୟ ପାଠକମାନେ ଉପର ଲିଖିତ ବିଷୟମାନଙ୍କର ସତ୍ୟତା ଉପଲବ୍ଧି କରି ପାରିବେ ଏଥିରେ ସନ୍ଦେହ ନାହିଁ । ଏହି ବିଷୟ, ସମାପ୍ତ କରିବା ପୂର୍ବରୁ କାଳିଦାସଙ୍କ

କଳ୍ପନାର ନିଦର୍ଶନସ୍ୱରୂପ ତାଙ୍କର ସୃଷ୍ଟି ବର୍ଣ୍ଣନାର ଏକ ବିଶେଷତ୍ୱର ଉଲ୍ଲେଖ ଏଠାରେ ଆବଶ୍ୟକ ବୋଧ ହେଉଅଛି । ଯେ ଅନେକ ସ୍ଥଳରେ ଆକାଶଗାମୀ ବ୍ୟକ୍ତିମାନଙ୍କୁ ଭୂଭାଗର ପଦାର୍ଥ କିପରି ଦେଖାଯାଏ—ଏହାର ରମଣୀୟ ବର୍ଣ୍ଣନା ନିଜ କଳ୍ପନାବଳରେ କରି ଅଛନ୍ତି । 'ମେଘଦୂତ'ର ନୀଳପର୍ବତ ଉପରେ ମେଘ ଅବସ୍ଥାନ କଲେ କିପରି ଦେଖାଯିବ ତାର ବର୍ଣ୍ଣନା ଯସ କରି ଅଛନ୍ତି । ଦୁଷ୍ୟନ୍ତଙ୍କ ସ୍ୱର୍ଗରୁ ହେମକୂଟ ପର୍ବତରେ ଅବତରଣ କଲାବେଳେ ପୃଥିବୀ କିପରି ଦେଖାଯାଉଥିଲା, ତାର ବର୍ଣ୍ଣନା ନିମ୍ନୋଦ୍ଧୃତ ଶ୍ଲୋକରେ କରାଯାଇଅଛି—

शैलानामवरोहतीव शिखरादुन्मज्जतां मेदिनी
पर्णाभ्यन्तरलीनतां विजहति स्कन्दोदयात् पादपाः
सन्तानात्तनुभावनष्टसलिला व्यक्तिं भजन्त्यापगाः
केनाप्युत्क्षिपतेव पश्य भुवनं मत्पार्श्वमानीयते

'ଅତି ବେଗରେ ପର୍ବତ ଉପରକୁ ଆସିବା ହେତୁ ମନେ ହେଉଛି, ଯେପରି ପୃଥିବୀ ପର୍ବତମାନଙ୍କର ଶିଖରରୁ ଅବତରଣ କରୁଅଛି, ଶାଖାମାନ କେବଳ ଦେଖାଯାଉଥିବାରୁ ବୃକ୍ଷଗୁଡ଼ିକ ପୂର୍ବପରି ପତ୍ରବେଷ୍ଟିତ ଦେଖାଯାଉ ନାହାନ୍ତି, ଅତି ସୂକ୍ଷ୍ମ ହେତୁ ଜଳ ଦେଖା ନ ଯିବାରୁ ନଦୀଗୁଡ଼ିକ କେବଳ ଦୀର୍ଘତାରୁ ଜଣାଯାଉଛନ୍ତି, ଏପରି ମନେ ହେଉଛି ଯେପରି କୌଣସି ଲୋକ ପୃଥିବୀକୁ ଟେକି କରି ଧରି ମୋ ପାଖକୁ ଆଣୁଅଛି ।' ଆଜିକାଲି ବ୍ୟୋମଯାନରେ ପ୍ରୟାଣ କରିଥିବା ଲୋକମାନଙ୍କୁ ପୃଥିବୀ ଠିକ୍ ଏହିପରି ଦେଖାଯାଏ । ଏ ସମସ୍ତ ପରିଶୀଳନ

ଲେ କାଳିଦାସଙ୍କର କଳ୍ପନାଶକ୍ତିର ପରିଚୟ ମିଳେ, ଆନନ୍ଦ ଓ ବିସ୍ମୟ ଜାତ ହୁଏ ।

**ବିନୋଦ**—କାଳିଦାସଙ୍କ ଗ୍ରନ୍ଥମାନଙ୍କ ବିଷୟରେ ବିଚାରଯୋଗ୍ୟ ଆଉ ଏକ ବିଶେଷତ୍ୱ ହେଉଅଛି, ତାଙ୍କର ବିନୋଦ । ଜୟଦେବ କବି ତାଙ୍କୁ କବିତାଦେବୀଙ୍କର ହାସ ବୋଲି କହିଅଛନ୍ତି । ଏ ପର୍ଯ୍ୟନ୍ତ ପ୍ରକାଶିତ ତାଙ୍କର ତେରଟି ନାଟକମଧ୍ୟରେ କେବଳ ଗୋଟିଏ ପାଞ୍ଚୋଟି ନାଟକରେ ବିନୋଦ ଦେଖାଯାଏ । ଏହେତୁ ଅନେକ ହୁଏ ଜୟଦେବ କେବଳ ଅନୁପ୍ରାସ ଲକ୍ଷ୍ୟମାତ୍ରେ ଏପରି କହି ନାହାନ୍ତି ? ମାତ୍ର ହେଉ ପଛେ ସେ ଉକ୍ତିର ଅର୍ଥ ଏହା ନୁହେ ଯେ ଅନ୍ୟ କବିମାନଙ୍କର ଗ୍ରନ୍ଥମାନଙ୍କରେ ଉତ୍କୃଷ୍ଟ ଧରଣର ବିନୋଦ ଦେଖାଯାଏ ନାହିଁ । କିନ୍ତୁ ବସ୍ତୁତଃ, କାଳିଦାସଙ୍କର ଗ୍ରନ୍ଥମାନଙ୍କରେ ମଧ୍ୟ ଅନେକ ସ୍ଥଳରେ ଉତ୍କୃଷ୍ଟ ଧରଣର ସୁରୁଚିପୂର୍ଣ୍ଣ ବିନୋଦ ଦେଖାଯାଏ । ମନ ଦେଇ ବିଚାର କଲେ ଏହି ଭାବନା ମନରେ ନ ଆସି ରହିପାରିବ ନାହିଁ ଯେ କାଳିଦାସଙ୍କୁ ମଧ୍ୟ 'କବିତାକାମିନୀର ହାସ' ବୋଲି ଉପାଧି ଦେବା ସମୁଚିତ ହେବ ।

ବିନୋଦର ଅର୍ଥ ଏହିପରି କରିଯାଇ ପାରେ ଅସମ୍ବଦ୍ଧତା, ଅନପେକ୍ଷିତତ୍ୱ, କୃତ୍ରିମତା ଓ ନିର୍ବୋଧତା ପ୍ରଭୃତି କାରଣ ବଶତଃ ହାସ୍ୟଜନକ ଯେଉଁ ଚମତ୍କାର ଜାତ ହୁଏ, ତାର ନାମ ବିନୋଦ । ବିନୋଦକୁ ସ୍ୱଭାବଜନ୍ୟ, ପ୍ରୟୋଗଜନ୍ୟ ଓ ଶବ୍ଦଜନ୍ୟ ଏହି ପରି ତିନି ଭାଗରେ ବିଭକ୍ତ କରାଯାଇପାରେ । ଏହି ତିନିପ୍ରକାର ବିନୋଦ । କାଳିଦାସଙ୍କର ଗ୍ରନ୍ଥମାନଙ୍କରେ ଦେଖିବାକୁ ମିଳେ । ଏହାଙ୍କର ନାଟକମାନଙ୍କରେ ବିଦୂଷକ ପ୍ରଧାନ ବିନୋଦ ପାତ୍ର ।

'ମାଳବିକାଗ୍ନିମିତ୍ର'ରେ ଗୌତମ, 'ବିକ୍ରମୋର୍ବଶୀୟ' ରେ ମାଣବକ ଓ 'ଶାକୁନ୍ତଳ'ରେ ମାଧବ୍ୟ—ଏମାନଙ୍କର ସ୍ୱଭାବରେ ସମାନତା ଦେଖାଯାଏ । ତିନୋଟିଯାକ ବ୍ରାହ୍ମଣ ଓ ନାୟକ-ମାନଙ୍କର ନର୍ମସଚିବ । ରାଜାମାନଙ୍କର ମନୋରଞ୍ଜନ ଏବଂ ସେମାନଙ୍କର ପ୍ରେମ ବ୍ୟାପାରରେ ଯଥାଶକ୍ତି ସାହାଯ୍ୟ କରିବା ଏମାନଙ୍କର କାର୍ଯ୍ୟ । ତିନୋଟିଯାକ ବ୍ରାହ୍ମଣ ହେଲେ ମଧ୍ୟ ନିରକ୍ଷର ଭଟ୍ଟାଚାର୍ଯ୍ୟ । ଏହେତୁ ଏମାନଙ୍କୁ ବ୍ୟଙ୍ଗରେ ମହା ବ୍ରାହ୍ମଣ କୁହାଯାଇଅଛି । ଦେଖିବାକୁ ତିନୋଟିଯାକ ନିତାନ୍ତ କୁରୂପ ।—'ମାଳବିକାଗ୍ନିମିତ୍ର' ରେ ହଠାତ୍ ଇରାବତୀ ଆସି ଉପସ୍ଥିତ ହେବାରେ ବିଦୂଷକ ମଧ୍ୟ ଅଡ଼ୁଆରେ ପଡ଼ିଗଲେ । ଏ ସମୟରେ ରାଜକୁମାରୀ ବସୁଲକ୍ଷ୍ମୀ ପିଙ୍ଗଳ ନାମକ ମାଙ୍କଡ଼କୁ ଦେଖି ଡରକୁ ପଡ଼ିଲେ; ଇରାବତୀ ତାଙ୍କୁ ସମ୍ଭାଳିବା ସକାଶେ ରାଜାଙ୍କୁ ପଠାଇଲେ ଯାହା ଫଳରେ ବିଦୂଷକ ମଧ୍ୟ ରକ୍ଷା ପାଇଲେ, ରାଜାଙ୍କ ସହିତ ପ୍ରସ୍ଥାନ କଲେ । ସେ ସମୟରେ ବିଦୂଷକ ପିଙ୍ଗଳ ବାନରକୁ ପ୍ରଶଂସା କରିଥିଲେ । ସେ କହିଅଛନ୍ତି—ତୁ ନିଜ ମିତ୍ରକୁ ରକ୍ଷା କରିବାକୁ ଠିକ୍ ସମୟରେ ଆସିଗଲୁ' । 'ବିକ୍ରମୋର୍ବଶୀୟ'ରେ ମନରେ କୌଣସି ଶଙ୍କା ନ ରଖି ମାଣବକଙ୍କୁ ପ୍ରଣାମ କରିବାକୁ ନିଜ ପୁତ୍ରକୁ କହିଲା ବେଳେ ମାଣବକ କହି ଉଠିଲେ—'କାହିଁକି ଡଙ୍କା କରିବ ? ସେ ତ ଆଶ୍ରମରେ ଅନେକ ମାଙ୍କଡ଼ ଦେଖିଥିବ ?' ଏ ସମସ୍ତ ସ୍ଥଳରେ ଶରୀରର କୁରୂପତା ବସ୍ତୁତଃ ବିନୋଦର କାରଣ ହୋଇଅଛି । ଏ ସ୍ଥଳରେ ପୁଣି କୁରୂପ ବ୍ୟକ୍ତି ନିଜେ ନିଜ ରୂପର ନିନ୍ଦା କରିବା ସେତେଦୂର ହୃଦୟଙ୍ଗମ ହେଉନାହିଁ । ଏହା ଛଡ଼ା ତିନୋଟି ଯାକ ବିଦୂଷକ ପେଟୁଆ ଓ ସ୍ଥୂଳ । 'ମାଳବିକାଗ୍ନିମିତ୍ର'ର ଗୌତମ ଅନ୍ତଃପୁରସ୍ତ୍ରୀମାନଙ୍କ ବ୍ରତଉପବାସାଦି ଉତ୍ସବରେ ଦାନ

ଦକ୍ଷିଣା ଯାଇ ଅତୀବ ମୋଟା ଦେଖାଯାନ୍ତି । 'ବିକ୍ରମୋର୍ବଶୀୟ'ରେ ରନ୍ଧା ଘରେ ପଞ୍ଚବିଧ ବ୍ୟଞ୍ଜନ ପ୍ରସ୍ତୁତ ହେବା ଦେଖିବା ଛଡ଼ା ଅନ୍ୟ-ବିନୋଦ ସାମଗ୍ରୀ ମାଣବକ ପାଇପାର ନାହାନ୍ତି । ଶାକୁନ୍ତଳର ମାଧବ୍ୟ ଅରଣ୍ୟରେ ଅନିୟମିତ ସମୟରେ କ୍ଲିଷ୍ଟ ରୁକ୍ଷ ମାଂସ-ଭୋଜନ ଓ ପତ୍ର କଳୁଷିତ ପାଣି ପିଇ ପିଇ ମୃତପ୍ରାଣ । ଉଦୋଷି-ଯାକ ବିଦୂଷକଙ୍କ ଆଖି ଆଗରେ ଖାଦ୍ୟ ପଦାର୍ଥ ସବୁବେଳେ ଦେଖା ଯାଉଥିଲା । ଏ ହେତୁ ଏମାନେ ଏହି ଖାଦ୍ୟ ପଦାର୍ଥ ମାନଙ୍କୁ କେବଳ ଉପମା, ଦୃଷ୍ଟାନ୍ତ ଅଳଙ୍କାରରେ ଉପଯୋଗ କରୁଥିଲେ; ତାଙ୍କର ଯାକ ନିତାନ୍ତ ଭଦ୍ରୋଚିତ । ଗୌତମ କେତକୀ ଫୁଲ କଣ୍ଟାରେ ନିଜ ଆଙ୍ଗୁଳି କ୍ଷତ କରି ସର୍ପଦଂଶନ ଅଭିନୟ କରିବାରେ ନିପୁଣ, ତଥାପି ନିଦ୍ରାବସ୍ଥାରେ ସର୍ପ ଭଳିଆ କୁଟିଳ ବାଡ଼ି ପଡ଼ିଲେ ବେଳେ ନିତାନ୍ତ ଉଦ୍ଭ୍ରାନ୍ତ ହୋଇଛନ୍ତି । ପ୍ରଥମେ ଶକୁନ୍ତଳାଙ୍କୁ ଦେଖିବାକୁ ମାଧବ୍ୟର ପ୍ରବଳ ସ୍ପୃହା ଥିଲା, କିନ୍ତୁ ପରେ 'ରାକ୍ଷସ' ଶବ୍ଦ ଶୁଣିଲାମାତ୍ରେ କୁଆଡ଼େ ଉଭେଇ ଗଲା । ଏହାପରି ଏମାନଙ୍କର ଚରିତ୍ରରେ ସାମ୍ୟ ଥିଲେ ମଧ୍ୟ ବୈଷମ୍ୟ ମଧ୍ୟ ବହୁ ପରିମାଣରେ ବିଦ୍ୟମାନ । ଏମାନଙ୍କ ମଧ୍ୟରେ ଗୌତମ ଚତୁର ବୃଦ୍ଧ ଓ ଧୂର୍ତ୍ତ, ମାଣବକ ନିତାନ୍ତ ନିର୍ବୋଧ ଏବଂ ମାଧବ୍ୟ ଯାହା କୁହାଯାଏ, ସେତିକିମାତ୍ର କରିବାରେ ତତ୍ପର । ଏମାନଙ୍କର ଚରିତ୍ରରେ ଯେଉଁ ସବୁ ବିଶେଷତ୍ୱ ଦେଖାଯାଉଛି କାଳିଦାସ ସେ ସମସ୍ତ କାର୍ଯ୍ୟରେ କରିଅଛନ୍ତି । 'ମାଳବିକାଗ୍ନିମିତ୍ର'ରେ ପାତ୍ରମାନଙ୍କର ଚରିତ୍ର-ଚିତ୍ରଣ କଲାବେଳେ ଗୌତମଙ୍କୁ ଚତୁରଚୂଡ଼ା ଚିତ୍ରଣ କରିବା-ଫଳରେ ନାୟକ କୌତୁକପ୍ରିୟ ଦେଖାଯାନ୍ତି ବୋଲି ଅନେ ଅନୁମାନ କରୁଅଛୁଁ । ନାୟକଙ୍କର ସ୍ୱଭାବର ପରିପୋଷ ସଙ୍କେତ ଏବଂ

ବିଦୂଷକ ସ୍ୱଭାବର ଅସଙ୍ଗତି ଦୂର କରିବା ସକାଶେ କାଳିଦାସ ଅନ୍ୟ ନାଟକମାନଙ୍କର ପ୍ରାଚୀନ ପରମ୍ପରା ଅନୁସରଣ କରି ବିଦୂଷକଙ୍କୁ ପେଟୁଆ ନିର୍ବୋଧ ଓ ସ୍ଥୂଳ ବର୍ଣ୍ଣନ କରି ଅଛନ୍ତି ।

ବିଦୂଷକଙ୍କର ଭାଷଣରେ ଘରୋଇ ଉପମା ଓ ଦୃଷ୍ଟାନ୍ତ-ପ୍ରଭୃତିରେ ଚମତ୍କାର କାର୍ଯ୍ୟ ହୁଏ ଓ ବିନୋଦ ମଧ୍ୟ ପ୍ରକାଶ ପାଏ । ହରଦତ୍ତ ଓ ଗଣଦାସଙ୍କର ଧାରଣୀଙ୍କର ଭୟ ଯେ କାଳେ ମାଳବିକା ରାଜାଙ୍କ ଦୃଷ୍ଟିରେ ପଡ଼ିଯିବ । ସେ ହେତୁ ସେ କହୁଛନ୍ତି ମୋତେ ଏମାନଙ୍କର ବିବାଦ ଭଲ ଲାଗୁନାହିଁ । ଯେତେବେଳେ ଗୌତମ କହୁଛନ୍ତି, 'ରାଣୀ ଏହି ମେଣ୍ଢାଯୁଦ୍ଧ ଦେଖନ୍ତୁ ନା, ଆମେ କଅଣ ବୃଥାରେ ଏମାନଙ୍କୁ ବେତନ ଦେଉଛେ ?' ଏଠାରେ କଳହ ପ୍ରବୃତ୍ତ ନାଟ୍ୟଗୁରୁ ଦୁହିଙ୍କୁ ମେଣ୍ଢା ସହିତ ତୁଳନା ଅନପେକ୍ଷିତ ହେଲେ ମଧ୍ୟ ବିନୋଦ-ଉତ୍ପାଦକ । ଯେତେବେଳେ ରାଣୀ ଔଶୀନରୀ ନିଜ ପତିଙ୍କୁ ଉର୍ବଶୀଙ୍କଠାରେ ଅନୁରକ୍ତ ଦେଖିଲେ ସେତେବେଳେ ସେ ପ୍ରିୟପ୍ରସାଦନ ନାମକ ବ୍ରତ ଛଳରେ ରୋହିଣୀ ଓ ଚନ୍ଦ୍ରଙ୍କୁ ସାକ୍ଷୀ ରଖି ଉର୍ବଶୀଙ୍କ ସହିତ ସାଧୁ ବ୍ୟବହାର କରିବେ ବୋଲି ନିଜ ଅଭିପ୍ରାୟ ବ୍ୟକ୍ତ କଲେ । ସେତେବେଳେ ବିଦୂଷକ କହିଲେ ହାତରୁ ମାଛ ଚୁଲିଗଲା ପରେ କେଉଟ କହୁଛି, ଭଲ ହେଲା, ପୁଣ୍ୟ ମିଳିବ । ଏଠାରେ କେଉଟର ଦୃଷ୍ଟାନ୍ତ ବିଶେଷ ଚମତ୍କାର-ଜନକ । ଦୁଷ୍ମନ୍ତଙ୍କ ଅନ୍ତଃପୁରର ସୁନ୍ଦରୀ ସ୍ତ୍ରୀମାନଙ୍କୁ ଛାଡ଼ି ଅରଣ୍ୟର ମୁନିକନ୍ୟାଠାରେ ଅନୁରକ୍ତ ହେବା ଦେଖି ବିଦୂଷକ 'ସବୁବେଳେ ମିଠା ଖାଇ ଖାଇ ମନୁଷ୍ୟ ହେଲେ ତେନ୍ତୁଳି ପ୍ରତି ଇଚ୍ଛା ହୋଇଥାଏ ।' ଏହି ଉପମା ଦେଇ ଅଛନ୍ତି । ଏହା ମଧ୍ୟ ଅତୀବ ବିନୋଦ ଜନକ ।

ବିଦୂଷକ ନିତାନ୍ତ ନିର୍ବୋଧ ଓ ମନ୍ଦବୁଦ୍ଧି ହେବା ଫଳରେ କାବ୍ୟ ବାକ୍ୟର ନିଗୂଢ଼ ଅର୍ଥ ବୁଝିପାରନ୍ତି ନାହିଁ । ତାତ୍ପର୍ଯ୍ୟ କେବଳ ପ୍ରଧାନ ଭାବ ଯେ ନିଜକୁ ହାସର କାରଣ କରିଥାନ୍ତି । ଦୃଷ୍ଟାନ୍ତ ବସନ୍ତ ଋତୁର ଚୂତମଞ୍ଜରୀକୁ କାମର ବାଣ ବୋଲି ବର୍ଣ୍ଣନା କଲାପରେ ମାଧବ୍ୟ ଠାଡ଼ି ଧରି ମଦନ ବାଣକୁ ମାରିବାକୁ ଦୌଡ଼ି ଯାଉଛନ୍ତି । ଏହା ଦେଖି ରାଜାଙ୍କ ମନରେ ବି ହାସ ଫୁଟି ଉଠୁଛି ।

କାଳିଦାସ ନାୟକମାନଙ୍କର ସହାୟକ ରୂପେ ବିଦୂଷକମାନଙ୍କୁ ଯେପରି ଚିତ୍ରିତ କରିଅଛନ୍ତି, ନାୟିକାମାନଙ୍କର ସହାୟିକାରୂପେ ସଖୀମାନଙ୍କୁ ମଧ୍ୟ ସେହିପରି ଚିତ୍ରିତ କରିଅଛନ୍ତି । 'ମାଳବିକାଗ୍ନିମିତ୍ର'ରେ ମାଳବିକାଙ୍କର ସମଦୁଃଖୀ, ବିପତ୍ତିରେ ମଧ୍ୟ ଅଟଳ, ବିମର୍ଦ୍ଦସୁରଭି ବକୁଳାବଳିକା, ଉର୍ବଶୀଙ୍କର ସହଚରୀ ଚିତ୍ରଲେଖା ଏବଂ ଶକୁନ୍ତଳାଙ୍କର ସ୍ନେହମୟୀ ବିନୋଦିନୀ ସଖୀ ପ୍ରିୟମ୍ବଦାଙ୍କର ଆଳାପରେ ବିନୋଦ ଉତ୍ତରୋତ୍ତର ବୃଦ୍ଧି ପାଉଥିବା ଦେଖାଯାଏ । ପାଠକମାନଙ୍କୁ ପ୍ରଥମରୁ ଦେଖାଇ ଦେଉଛୁଁ—ବକୁଳାବଳିକା ଶ୍ଳିଷ୍ଟପଦ ପ୍ରୟୋଗ କରି ମାଳବିକାଙ୍କ ମୁଖରୁ ରାଜାଙ୍କପ୍ରତି ଅନୁରାଗ କିପରି କୌଶଳରେ ପ୍ରକାଶ କରାଇଛି । ଉର୍ବଶୀ ଚିତ୍ରରଥ ଗନ୍ଧର୍ବ ସହିତ ସ୍ୱର୍ଗକୁ ଯିବାବେଳେ ରାଜାଙ୍କୁ ଆଉଥରେ ଦେଖିବା ଅଭିଳାଷରେ ମିଛେ ମିଛେ ମୁକ୍ତାମାଳା ଲତାରେ ଲାଗିଗଲା ବୋଲି ଅଭିନୟ କରି ମୁକୁଳାଇ ଦେବା-ସକାଶେ ଚିତ୍ରଲେଖାକୁ କହିଥିଲେ । ସେତେବେଳେ ଚିତ୍ରଲେଖା ହସିକରି କହିଲେ—ଏତ ଦୃଢ଼ଭାବରେ ଲାଗିଯାଇଛି ଯେ ମୁକୁଳାଇବା ବଡ଼ କଠିନ ହେଉଛି, ତୋତେ କିନ୍ତୁ ଏହା ଦୁହିଙ୍କ ଅପେକ୍ଷା

ପ୍ରିୟମ୍ବଦା ଅଧିକ ବିନୋଦିନୀ । ତାଙ୍କର ବିନୋଦରେ ତାଙ୍କର ମୁକ୍ତଛନ୍ଦତା ଓ ସଦାନନ୍ଦୀ ସ୍ୱଭାବ ସୁନ୍ଦରରୂପେ ଫୁଟି ଅଛି । ଯେତେବେଳେ ଶକୁନ୍ତଳା ନବପଲ୍ଲବିତ ଆମ୍ରବୃକ୍ଷ ଓ ସଦ୍ୟୋବିକଶିତା ବନଜ୍ୟୋତ୍ସ୍ନାର ରମଣୀୟ ସଂଯୋଗ ଅନେକ ସମୟ ପର୍ଯ୍ୟନ୍ତ ନିରୀକ୍ଷଣ କଲେ, ସେତେବେଳେ ପ୍ରିୟମ୍ବଦା କହିଲେ 'ଅନସୂୟା, ଶକୁନ୍ତଳା କାହିଁକି ବନଜ୍ୟୋତ୍ସ୍ନାକୁ ମନୋଯୋଗ କରି ଦେଖୁଅଛି-- କହି ପାରିବୁ ? ବନଜ୍ୟୋତ୍ସ୍ନା ଯେପରି ଅନୁରୂପ ସହକାର ସହିତ ମିଶିଅଛି, ମୁଁ ମଧ୍ୟ ସେହିପରି ନିଜ ଅନୁରୂପ ପତି ପାଇବି – ଏହି କଥା ତା ମନରେ ଆସିଅଛି । ଶକୁନ୍ତଳା ତାଙ୍କର ବିନୋଦକୁ ପସନ୍ଦ କରିଛନ୍ତି ମାତ୍ର ବାହାରକୁ କ୍ରୋଧ ପ୍ରକାଶ କରି ଅଛନ୍ତି । 'ଶାକୁନ୍ତଳ' ନାଟକର ପ୍ରଥମ ଅଙ୍କର ଏହି ଧରଣର ତିନୋଟି ପ୍ରସଙ୍ଗ ଦେଖାଯାଏ । ଏଥିରେ କବି ସମବୟସ୍କା, ସ୍ନେହମୟୀ ତରୁଣୀ ଅବିବାହିତା ବାଳିକାମାନଙ୍କର ସମ୍ଭାବନୀୟ ରମଣୀୟ ବିନୋଦର ସୁନ୍ଦରଚିତ୍ର ଅଙ୍କନ କରିଅଛନ୍ତି । ପାର୍ବତୀଙ୍କର ବିବାହ ସମୟରେ ସଖୀ ପାଦରେ ଅଳତା ଦେଇ ପରିହାସରେ କହିଲା ପାଦା-ନୁଗତପତିଙ୍କର ଶିରର ଚନ୍ଦ୍ରକଳାକୁ ଏହାଦ୍ୱାରା ତାଡ଼ନ କର । ପାର୍ବତୀ କୌଣସି କଥା ନ କହି ନିଜ ହାତରେ ଥିବା ମାଲ୍ୟରେ ତାକୁ ପ୍ରହାର କଲେ ବୋଲି କୁମାରସମ୍ଭବରେ ବର୍ଣ୍ଣିତ ହୋଇ ଅଛି । 'ରଘୁବଂଶ'ରେ ମଧ୍ୟ ସଖୀ ସୁନନ୍ଦା, ଇନ୍ଦୁମତୀଙ୍କ ଅନେକ ରାଜାଙ୍କ ପ୍ରତ୍ୟାଖ୍ୟାନ କରି କେବଳ ଅଜଙ୍କ ପ୍ରତି ଆସକ୍ତ ହେବା ଦେଖି ପରିହାସରେ କହିଲେ--'ସଖି, ଚାଲ ଅନ୍ୟରାଜାମାନଙ୍କ ପାଖକୁ ଯିବା' ସେତେବେଳେ ଇନ୍ଦୁମତୀ କିଛି ନ କହି ସୁନନ୍ଦାପ୍ରତି କୁଟିଳ କଟାକ୍ଷ ପାତ କରି କ୍ରୋଧରେ ଚାହିଁଲେ ବୋଲି ବର୍ଣ୍ଣିତ ହୋଇଅଛି ଏଠାରେ ମଧ୍ୟ ବିନୋଦର ରମଣୀୟ ଚିତ୍ର ଦେଖିବାକୁ ମିଳେ ।

ଏହା ଛଡ଼ା କାଳିଦାସ ଲୋକମାନେ କିପରି ନିଜ ଇଚ୍ଛା-ବିରୁଦ୍ଧରେ ମଧ୍ୟ କେବଳ ପ୍ରଭୁଙ୍କର ମନୋରଞ୍ଜନ କରିବା ସକାଶେ ଅସଦୃଶ ପ୍ରସଙ୍ଗ ଅବତାରଣ କରନ୍ତି ସେହି ପରି ମାନବ-ସ୍ୱଭାବର ଚିତ୍ର ମଧ୍ୟ ପ୍ରଦର୍ଶନ କରି ଅଛନ୍ତି । ସ୍ୱତଃ ମୃଗୟାରେ ଖିନ୍ନ ହେଲେ ମଧ୍ୟ କେବଳ ରାଜାଙ୍କୁ ତୃପ୍ତ କରିବା ସକାଶେ ମୃଗୟାର ପ୍ରଶଂସା କରିଥିବା 'ସେନାପତି, ତଥା ଶ୍ୟାଳରୂପେ ପରିଗୃହୀତ କୋଟଠର ବେକରେ ବଧମାଳା ଦେଇ ଶୂଳସ୍ତମ୍ଭରେ ବସାଇବାକୁ ଉତ୍ସୁକ ଏବଂ ଠିକ୍ ପରେ ପରେ ସେ ପାଇଥିବା ପୁରସ୍କାର ଦେଖି ମଦ୍ୟ ପିଇବା ଆଶାରେ ତାର ମିତ୍ର ପାଲଟିଥିବା ରାଜପୁରୁଷଙ୍କର ମଧ୍ୟ ବିନୋଦୀ ଦୃଶ୍ୟ 'ଶାକୁନ୍ତଳ'ରେ ଅଙ୍କିତ ହୋଇଅଛି ।

କାଳିଦାସକୃତ ଗ୍ରନ୍ଥମାନଙ୍କରେ ପ୍ରସଙ୍ଗ ନିଷ୍ଠ ବିନୋଦର ମଧ୍ୟ ଉଦାହରଣ ଦେଖିବାକୁ ମିଳେ । କୌଣସି ବ୍ୟକ୍ତି ସ୍ୱଭାବତଃ ବିନୋଦୀ ନ ହେଲେ ମଧ୍ୟ ସମୟ ବିଶେଷରେ ଏପରି ପରିସ୍ଥିତିର ସମ୍ମୁଖୀନ ହୁଅନ୍ତି, ଯେ ସେ ସମୟରେ ତାଙ୍କର ଆଚରଣ ଓ କଥାବାର୍ତ୍ତାରେ ତାଙ୍କର ଅଜ୍ଞାତସାରରେ ବିନୋଦ ଜାତ ହୋଇଥାଏ । 'ମାଳବିକାଗ୍ନିମିତ୍ର' ରେ ପ୍ରଥମାଙ୍କରେ ନାଟ୍ୟଗୁରୁ ଦୁହିଙ୍କର କଳହ ଏହି ଶ୍ରେଣୀର । ମାଳବିକାଙ୍କୁ ଦେଖିବାକୁ ଉତ୍ସୁକ କିନ୍ତୁ ବାହାରକୁ 'ମୁଁ କିଛି ନଜାଣିଲା ପରି ଅଭିନୟ କରୁଥିବା ଅଗ୍ନିମିତ୍ର, ନିଷ୍ପକ୍ଷପାତିତାର ଅଭିନୟ କରିଥିବା ରାଜାଙ୍କର ମନୋରଥ ପୂର୍ଣ୍ଣ କରିବା ଉଦ୍ଦେଶ୍ୟରେ, ସମସ୍ତଙ୍କ ଆଗରେ ମାଳବିକାଙ୍କ ଦ୍ୱାରା ନାଟ୍ୟ ପ୍ରଦର୍ଶନ କରାଇବା ପରିବ୍ରାଜିକା, ଏବଂ ବ୍ୟଙ୍ଗ ବଚନରେ ଗଣଦାସଙ୍କର କ୍ରୋଧ ବଢ଼ାଇବାରେ ବ୍ୟସ୍ତ ଗୌତମ ବିଶା

ଧାରିଣୀଙ୍କୁ ଏପରି ପରିସ୍ଥିତିରେ ପକାଇଲେ ଯେ ସେ ଅଗତ୍ୟା ନାଟ୍ୟ ପ୍ରୟୋଗ କରିବାକୁ ଅନୁମତି ନ ଦେଇ ରହି ପାରିଲେ ନାହିଁ । ସେହି ପ୍ରୟୋଗ ରଜାଙ୍କ ସମ୍ମୁଖରେ ଯେପରି ନ ହୁଏ, ସେଥି ନିମନ୍ତେ ସେ ଯେତେ ଚେଷ୍ଟା କଲେ ମଧ୍ୟ, ସବୁ ଆଶା ତାଙ୍କ ମୁଣ୍ଡ ଉପରେ ଭାଙ୍ଗିଅଛି । ଏହି ଦୃଶ୍ୟ ଅତ୍ୟନ୍ତ ଚତୁରତା ସହକାରେ ପ୍ରଦର୍ଶିତ ହୋଇଅଛି । ଏହା ଛଡ଼ା କାଳିଦାସ ଅନ୍ୟ ପ୍ରକାର ବିନୋଦୀ ପ୍ରସଙ୍ଗର ମଧ୍ୟ ଅବତାରଣା କେତେକ ସ୍ଥାନରେ କରିଅଛନ୍ତି । ଯେଉଁ ସମୟରେ ଦୁଇଟି ବ୍ୟକ୍ତିଙ୍କର ମିଳନ ହୁଏ, ସେ ସମୟରେ ଏକର ସତ୍ୟସ୍ୱରୂପ ଅନ୍ୟର ଅବିଦିତ ଥିଲେ, ସେମାନଙ୍କ କଥୋପକଥନରେ ବିନୋଦ ଜାତ ହୁଏ । ଏହାପରି ପ୍ରସଙ୍ଗ ଭାସଙ୍କର 'ମଧ୍ୟମବ୍ୟାୟୋଗ' ଓ 'ପଞ୍ଚରାତ୍ର'ରେ ଦେଖାଯାଏ । କାଳିଦାସଙ୍କର 'କୁମାରସମ୍ଭବ'ରେ ମଧ୍ୟ ଅଜିନଦଣ୍ଡଧାରୀ ବଟୁବେଶ-ଧାରଣ କରିଥିବା ଭଗବାନ୍ ଶିବ ଏବଂ ଦୃଢ଼ ନିଶ୍ଚୟରେ ତାଙ୍କୁ ପତି ରୂପେ ପାଇବା ନିମନ୍ତେ ତପଶ୍ଚର୍ଯ୍ୟାରତା ପାର୍ବତୀଙ୍କର କଥୋପ-କଥନରୁ ଏହି ପ୍ରକାର ବିନୋଦ ମିଳେ । ଏହାପରି ଆଉ ଏକ ପ୍ରସଙ୍ଗ 'ରଘୁବଂଶ'ର ସିଂହଦିଲୀପସଂବାଦ । କିନ୍ତୁ ଏହାର ପର୍ଯ୍ୟ-ବସାନ ଦିଲୀପଙ୍କର ଆତ୍ମୋତ୍ସର୍ଗରେ ହୋଇଥିବା ହେତୁ ଏଠାରେ ବିନୋଦ ଅପେକ୍ଷା ଗାମ୍ଭୀର୍ଯ୍ୟର ମାତ୍ରା ଅଧିକ ।

କାଳିଦାସଙ୍କର ନାଟକମାନ ରାଜଦରବାରର ପଣ୍ଡିତ ମଣ୍ଡଳୀ ସମ୍ମୁଖରେ ଅଭିନୀତ ହେଉଥିଲା । ଗ୍ରାମଲୋକଙ୍କର ବୋଧ୍ୟ ଓ ରୁଚିର ଅନୁକୂଳ ବିନୋଦ ଓ ଅଶ୍ଳୀଳତା ଏହି ନାଟକମାନଙ୍କରେ ଦେଖାଯାଏ ନାହିଁ । ଏହି ନାଟକମାନଙ୍କର ସ୍ଥାନେ ସ୍ଥାନେ ବୁଦ୍ଧିଗତ ବିନୋଦ ମଧ୍ୟ ରହିଅଛି । ସେ ସମସ୍ତ ମଧ୍ୟ ପଣ୍ଡିତମାନଙ୍କର

ଉପଚାଭ୍ରାମ୍ୟ । ଶକୁନ୍ତଳାଙ୍କ ପ୍ରତି ନିଜ ପ୍ରେମର ଅଭିବ୍ୟକ୍ତି ପ୍ରକାଶ କଲାପରେ ଦୁଷ୍ୟନ୍ତଙ୍କୁ ବିଦୂଷକ କହିଲେ—'**कृत त्वयोपवनं तपोवनमिति पश्यामि**' (ମୁଁ ମନେ କରେ, ତୁମେ ତପୋବନକୁ ଉପବନ କରି ସାରିଲଣି) ଏଠାରେ 'ଉପବନ' 'ତପୋବନ' ଏହି ଦୁଇଟି ଶବ୍ଦର ସାଦୃଶ୍ୟରୁ ବିନୋଦ ଜାତ ହେଉଅଛି । 'ମାଳ-ବିକାଗ୍ନିମିତ୍ର'ର ବକୁଳାବଳିକା ଓ ବିଦୂଷକଙ୍କର ଶ୍ଳେଷାକ୍ତିମୂଳକ ଛଳର ଉଦାହରଣ, ଅଗରୁ ଦେଖାଇ ଦିଆଯାଇଅଛି । 'ବିକ୍ରମୋ-ର୍ବଶୀୟ'ରେ ରାଜା ଉର୍ବଶୀଙ୍କର ସୌନ୍ଦର୍ଯ୍ୟ ବର୍ଣ୍ଣନା କଲାପରେ ବିଦୂଷକ କହି ଅଛନ୍ତି—'ଭବୁଛି, ଆପଣ ଏହି ହେତୁ ଦିବ୍ୟରସାଭିଳାଷୀ ହୋଇ ଗୃତକବ୍ରତ ଗ୍ରହଣ କରି ଅଛନ୍ତି ।' ଉର୍ବଶୀ ଦିବ୍ୟଲୋକର ଅପ୍ସରା ! ଏହି ହେତୁ ତାଙ୍କ ପ୍ରତି ରାଜାଙ୍କର ପ୍ରେମକୁ 'ଦିବ୍ୟରସା-ଭିଳାଷ' ବୋଲି କୁହାଯାଇଅଛି । ଗୃତକ ପକ୍ଷୀର ମେଘଠାରୁ ଦିବ୍ୟ ରସ ଅଭିଳାଷ ପ୍ରସିଦ୍ଧ ! ଏହି ସ୍ଥାନରେ ମଧ୍ୟ ଶବ୍ଦ ଓଷ୍ଠୁ ଷରେ ଛଳ କରାଯାଇଅଛି । ତଥାପି ଶବ୍ଦଶ୍ଳେଷ ପ୍ରତି କାଳିଦାସଙ୍କର ଅଧିକ ଆସକ୍ତି ନ ଥିବାରୁ ଏହିପରି ଶବ୍ଦଶ୍ଳେଷଗର୍ଭକ ଉକ୍ତି କାଳି-ଦାସଙ୍କର କାବ୍ୟମାନଙ୍କରେ ଅଧିକ ମାତ୍ରାରେ ଦେଖିବାକୁ ମିଳେ ନାହିଁ ।

**ପରିହାସ**—ପରିହାସ କରିବାରେ ମଧ୍ୟ କାଳିଦାସ ବଡ଼ ବିଚକ୍ଷଣ ଥିଲେ । ମାଳବିକାକୁ ରାଜାଙ୍କ ଦୃଷ୍ଟିପଥରୁ ଦୂରରେ ରଖିବା ଅଭିଳାଷରେ ରାଣୀ ଧାରିଣୀ ନିଜ ନାଟ୍ୟାଗ୍ରୁର୍ଯ୍ୟଙ୍କୁ କହିଲେ 'ତୁମେ ବୃଥା ଏ ଝଗଡ଼ା ଭିତରେ ପଶ ନାହିଁ ।' ତାହା ଶୁଣି ବିଦୂଷକ କହିଲେ—'ରାଣୀ, ଆପଣ ଠିକ୍ କହିଅଛନ୍ତି; ଅରେ ଗଣଦାସ, ତୁ ତ ସଙ୍ଗୀତ ବାହନାରେ ସରସ୍ୱତୀଙ୍କର ଆଗରେ

ନୈବେଦ୍ୟ ରୂପେ ପ୍ରସ୍ତୁତ ଲଡ଼ୁ ଖାଇବା ଲୋକ, ଏ କଙ୍କାଳରେ କାହିଁକି ପଡ଼ଲୁ, ଏଥିରେ ମୋ ଘୋର ପରାଜୟ ନିଶ୍ଚିତ'। ରାଜା ମାଳବିକାଙ୍କୁ ଦେଖିବା ସକାଶେ ବଶ୍ୟ ପ୍ରଯତ୍ନ କରୁଥିବା ଦେଖି ଧାରିଣୀ 'ରାଜକାର୍ଯ୍ୟ ନିର୍ବାହରେ ମଧ୍ୟ ଏହିପରି ନିପୁଣତା ଦେଖାଇଲେ ଭଲ ହୁଅନ୍ତା' ଏହିପରି ବ୍ୟଙ୍ଗ କରିଅଛନ୍ତି । ରାଜା ମାଳବିକାଙ୍କ ସହ ପ୍ରେମାଲାପ କଲାବେଳେ ଯେତେବେଳେ ଧରା ପଡ଼ଲେ ସେତେବେଳେ 'ତୁମେ ଆସିବାରେ ବିଳମ୍ବ କଲ, ଏହେତୁ ମୁଁ ସମୟ କଟାଇବାକୁ ଏହାଙ୍କ ସହିତ ଆଳାପ କରୁଥିଲି ।' ଏହିପରି କହି ଇରାବତୀଙ୍କୁ ସାନ୍ତ୍ୱନା ଦେବାକୁ ଚେଷ୍ଟା କଲେ । ତାହା ଶୁଣି ଇରାବତୀ କହିଲେ—'ମୋତେ ଆଗରୁ ଜଣାନଥିଲା ଯେ ଆପଣଙ୍କୁ ଏହିପରି ବିନୋଦସ୍ଥାନ ମିଳିଛି, ନ ହେଲେ ଏହି ମନ୍ଦ-ଭାଗିନୀ ମୋଟେ ଆସିନଥାନ୍ତା ।' ଏହାଙ୍କର ଅନ୍ୟାନ୍ୟ ନାଟକରେ ମଧ୍ୟ ଏହିପରିଭାବରେ ଉକ୍ତିମାନ ଦେଖାଯାଏ ।

ଏ ପର୍ଯ୍ୟନ୍ତ କାଳିଦାସଙ୍କର ଗ୍ରନ୍ଥମାନଙ୍କର ନାନାବିଧ ରମଣୀୟତାର ଉଲ୍ଲେଖ କରାଯାଇଛି । ଏହାପରେ ପାଠକମାନେ ବୁଝି ପାରିବେ—କାଳିଦାସଙ୍କର ଗ୍ରନ୍ଥମାନ ଦେଢ଼ ହଜାର ବର୍ଷ ଠାରୁ ଆଜି ପର୍ଯ୍ୟନ୍ତ କାହିଁକି ସଂସ୍କୃତ ପ୍ରେମିକମାନଙ୍କର ପ୍ରିୟ ହୋଇ ଆସୁଅଛି । ବିଶେଷତଃ ପ୍ରତ୍ୟେକ ମନୁଷ୍ୟଙ୍କର ଗ୍ରନ୍ଥରେ କିଛି ନା କିଛି ତ୍ରୁଟି ବା ଦୋଷ ରହିଥାଏ । ତଦନୁଯାୟୀ ସମାଲୋଚକମାନେ କାଳିଦାସଙ୍କ ଗ୍ରନ୍ଥ ମାନଙ୍କରେ ମଧ୍ୟ କେତେକ ଦୋଷ ଦେଖାଇ ଅଛନ୍ତି । ଏହି ପ୍ରକରଣ ଶେଷ ହେବା ପୂର୍ବରୁ ସେ ସମସ୍ତ ଦୋଷ ମଧ୍ୟ ସଂକ୍ଷେପରେ ଉଲ୍ଲେଖ କରିବା ବାଞ୍ଛନୀୟ ।

ଆଗରୁ କହିଥିବା ବିବେଚନାଅନୁଯାୟୀ କାଳିଦାସଙ୍କୃତ ଗ୍ରନ୍ଥମାନଙ୍କରେ ଶୃଙ୍ଗାର ଓ କରୁଣରସର ଉତ୍କୃଷ୍ଟ ପରିପାକ ଦେଖାଯାଏ । ଏଥିରେ ପୁଣି କରୁଣରସରେ ଭବଭୂତି କାଳିଦାସଙ୍କୁ ଜିଣି ଯାଇଅଛନ୍ତି । '**कारुण्यं भवभूतिरेव तनुते**' ଏହି ସୁଭାଷିତୋକ୍ତି ପ୍ରସିଦ୍ଧ ହୋଇ ରହିଅଛି । ଆମର ବିଳାସୀ, ରସିକ ଓ ସୌନ୍ଦର୍ଯ୍ୟାନ୍ୱେଷକ କାଳିଦାସ ରୌଦ୍ର, କରୁଣ, ତଥା ବୀରରସର ନିର୍ବାହ ଭଲ ରୂପରେ କରିପାରି ନାହାନ୍ତି । 'ରଘୁବଂଶ'ରେ ସପ୍ତମସର୍ଗରେ ଇନ୍ଦୁମତୀଙ୍କ ବିବାହ ପରେ ଇନ୍ଦୁମତୀଙ୍କୁ ନେଇ ବିଦେଶାଗତ ନିରାଶ ରାଜାମାନଙ୍କର ଯୁଦ୍ଧ ବର୍ଣ୍ଣିତ ହୋଇଅଛି । କିନ୍ତୁ ସେଥିରେ ଲଳିତ-ମଧୁର-ପଦଯୋଜନା ହେତୁ ବୀର ଓ ରୌଦ୍ରରସର ପରିପୁଷ୍ଟି ସାଧିତ ହୋଇ ପାରିନାହିଁ । ଭଟ୍ଟନାରାୟଣ କବିଙ୍କର 'ବେଣୀସଂହାର' ନାଟକ ବୀରରସଦୃଷ୍ଟିରେ ଅଧିକ ଉପାଦେୟ । କାଳିଦାସଙ୍କର ଗ୍ରନ୍ଥମାନଙ୍କର ଖଳାଧୂରୁଷମାନଙ୍କର ଚରିତ କୌଣସି ସ୍ଥଳରେ ଦେଖିବାକୁ ମିଳେନାହିଁ । ତାଙ୍କର ନାଟ୍ୟରେ ସୃଷ୍ଟିର ବେଶି ବୈଚିତ୍ର୍ୟ ଦେଖାଯାଏ ନାହିଁ 'ବିକ୍ରମୋର୍ବଶୀୟ' ଓ 'ଶାକୁନ୍ତଳ'ରେ ପ୍ରଥମ ଦୃଶ୍ୟରେ ନାୟକନାୟିକାଙ୍କର ପରସ୍ପର ଦର୍ଶନ-ସୂଚକ ପରସ୍ପର ପ୍ରେମ ହାବଭାବ, ନାୟକଙ୍କୁ ପୁନର୍ବାର ଦେଖିବା ଇଚ୍ଛାରେ କୌଣସି ଛଳରେ ସେହି ସ୍ଥାନରେ ସାମାନ୍ୟ ବିଳମ୍ବ କରି ପ୍ରସ୍ଥାନ :— ପ୍ରଭୃତି ବିଷୟରେ ପରସ୍ପର ସାଦୃଶ୍ୟ ରହିଅଛି । ସେଥିରୁ ଜଣାଯାଏ—କବି 'ଶାକୁନ୍ତଳ' ସଦୃଶ ସର୍ବୋତ୍କୃଷ୍ଟ ନାଟକର ରଚନା ଅତିବ ଉତ୍କୃଷ୍ଟ ହେବା ବାଞ୍ଛନୀୟ— ଏହା ଭାବି ପ୍ରଥମେ 'ବିକ୍ରମୋର୍ବଶୀୟ' ନାଟକ ଲେଖିବାକୁ ଚେଷ୍ଟା କରିଥିଲେ । 'ମାଳବିକାଗ୍ନିମିତ୍ର' ଓ 'ବିକ୍ରମୋର୍ବଶୀୟ'ରେ ମଧ୍ୟ ଏହି ଧରଣର ପ୍ରୟୋଗ ସାମ୍ୟ ଦେଖାଯାଏ । ଏହାଙ୍କର

ନାଟକମାନଙ୍କର ଅଧିକାଂଶ ପାତ୍ର ଏହିପରି ଚରିତ୍ର, ଯେପରି କି ରାଜ ସଭାରେ ଥିବା କବିଙ୍କ ଦୃଷ୍ଟି ସମ୍ମୁଖରେ ସବୁବେଳେ ପଡ଼ୁଥିଲେ । ଏମାନଙ୍କ ଠାରେ ଭାସ ଓ ଶୂଦ୍ରକ କବିଙ୍କର ସର୍ବତୋଗାମୀ ନିରୀକ୍ଷଣଶକ୍ତି ଓ ସହାନୁଭୂତି ଦେଖାଯାଏ ନାହିଁ । ଆମେ ଆଗରୁ କହିଛୁଁ—ଏହାଙ୍କର ନାଟ୍ୟସୃଷ୍ଟିରେ ଉଦାତ୍ତତାର ଅଂଶ ଅଳ୍ପ । ଏହା ଛଡ଼ା ଆହୁରି ମଧ୍ୟ ଜଣାଯାଉଛି ଯେ କବିଙ୍କର ଲକ୍ଷ୍ୟ ପ୍ରକୃତିର ଭବ୍ୟ ଓ ଭୀଷଣ ସ୍ୱରୂପ ପ୍ରତି ଏକାବେଳେ ଯାଇନାହିଁ । ଯଦି କୌଣସି ସ୍ଥଳରେ ଯାଇଛି ତ ନିଜ ସୌମ୍ୟସ୍ୱଭାବ ହେତୁ ମନୋମତ ହୋଇପାରି ନାହିଁ । ଗମ୍ଭୀର ପ୍ରକୃତି ଭବଭୂତିଙ୍କର ନାଟକମାନଙ୍କରେ ଏହି ସ୍ୱରୂପର ଯଥାର୍ଥ ବର୍ଣ୍ଣନା ଦେଖାଯାଏ ।

ଅଧ୍ୟାପକ କୀଥ୍ ସାହେବ ନିଜ Sanskrit Drama (ସଂସ୍କୃତ ନାଟକ) ନାମକ ଗ୍ରନ୍ଥରେ (ପୃ ୧୬୦) କାଳିଦାସଙ୍କ ବିଷୟରେ ନିମ୍ନଲିଖିତ ମନ୍ତବ୍ୟ ଦେଇ ଅଛନ୍ତି—"କାଳିଦାସଙ୍କର ଚିତ୍ର ପ୍ରଶଂସାର୍ହ । ତଥାପି ଏହିକଥା ଛପାଇବା ଉଚିତ ହେବ ନାହିଁ ଯେ ସେ କାବ୍ୟ ଓ ନାଟକରେ ଜୀବନ ଏବଂ ଭାଗ୍ୟ—ଏହି ଦୁଇଟି ମହାନ୍ ପ୍ରଶ୍ନ ପ୍ରତି ଏକବାରେ ଧ୍ୟାନ ଦେଇ ନାହାନ୍ତି । ଜର୍ମାନ୍ କବି ଗେଟେଙ୍କର ପ୍ରଶଂସା ଓ ସାର ୱିଲିୟମ୍ ଜୋନ୍ସ ଦେଇଥିବା 'ଭାରତବର୍ଷର ସେକସ୍‌ପୀୟର' ଉପାଧି—ଏ ସମସ୍ତ ଯଥାର୍ଥ । ତଥାପି ଏତିକି ନିଶ୍ଚିତ ଯେ କାଳିଦାସ ତାତ୍କାଳିକ ବ୍ରାହ୍ମଣ୍ୟ ଧର୍ମଉପରେ ବିଶେଷ ଆସ୍ଥା ରଖିଥିବାରୁ ତାଙ୍କ ପ୍ରତି ସହାନୁଭୂତି ଅନ୍ୟାନ୍ୟ କବିମାନଙ୍କ ଅପେକ୍ଷା କମିଯାଉଅଛି । ତାଙ୍କର ବିଶ୍ୱାସ ଥିଲା ଯେ ମନୁଷ୍ୟ ନିଜ କର୍ମ ବଳରେ ଦୈବ ସୃଷ୍ଟି କରୁଥିଲା ।

ଏବଂ ସେହି ଦୈବର କେବଳ ସର୍ବନ ନ୍ୟାଯ୍ୟ ଅଧିକାର ଚଳୁଥିଲା । ଏହି ହେତୁ 'ସଂସାର ଏକ ଦୁଃଖ ପୂର୍ଣ୍ଣ ସ୍ଥାନ, ଏଠାରେ ଅନ୍ୟାୟର ରାଜ୍ୟ ମଧ୍ୟ ଚଳୁଅଛି' ଏହିପରି ଭାବନା ଏବଂ ବନ୍ଧୁଜନ ସମାଜର କଷ୍ଟମୟ ଜୀବନ ପ୍ରତି ସହାନୁଭୂତି ତାଙ୍କ ପକ୍ଷରେ ସମ୍ଭବପର ହୋଇ ନ ଥିଲା । ସେ ତାଙ୍କର ସଙ୍କୀର୍ଣ୍ଣ ସୀମା-ମଧ୍ୟରୁ ବାହାରକୁ ଯାଇପାରି ନାହାନ୍ତି ।' ଅଧ୍ୟାପକ କୀଥ୍‌ଙ୍କର ସେହି ମନ୍ତବ୍ୟ ଅଧିକାଂଶରେ ସଂଗତ । ଅମେ ଅଗରୁ କହିଛୁ— କାଳିଦାସଙ୍କର ନାଟ୍ୟ ସୃଷ୍ଟିରେ ବିଚାରତା ଅଳ୍ପ । କିନ୍ତୁ ତାର କାରଣ ସେ ବାହ୍ମଣ ଧର୍ମାବଲମ୍ବୀ ଥିଲେ ଏହା ନୁହେଁ କିମ୍ବା ସେ ରାଜକବି ଥିଲେ ଏହା କେବଳ । ପରନ୍ତୁ କୀଥ୍‌ଙ୍କର ମନ୍ତବ୍ୟରେ ଯେଉଁ ମୁଖ୍ୟ ଆକ୍ଷେପ ରହିଛି, ତାହା ଅଲଗା । ବୋଧ ହୁଏ, ଉପରଲିଖିତ ମନ୍ତବ୍ୟ ପ୍ରକାଶ କଲବେଳେ ତାଙ୍କ ଆଖି ଆଗରେ ପ୍ରାଚୀନଗ୍ରୀକ୍ ସାହିତ୍ୟ ନାଚୁଥିଲା । ଗ୍ରୀକନାଟକମାନ ସୁଖାନ୍ତ ଓ ଦୁଃଖାନ୍ତ, ଏହିପରି ଦୁଇ ପ୍ରକାର । ଗ୍ରୀକ୍‌ମାନେ ନିଜେ ବଡ଼ ସଦାନନ୍ଦୀ, ବିଳାସୀ ଓ କଳାଭିଜ୍ଞ ଥିଲେ । ଋଗ୍‌ବେଦକାଳୀନ ଆର୍ଯ୍ୟମାନଙ୍କ ପରି ସେମାନେ ମଧ୍ୟ ସୃଷ୍ଟିର ବିଭିନ୍ନ ସ୍ୱରୂପ ଓ ବ୍ୟାପାରରେ ଚେତନ ଧର୍ମ ଆରୋପ କରି ଅନେକ ପ୍ରକାର ଦେବ ଓ ଦେବୀଙ୍କର କଳ୍ପନା କରିଅଛନ୍ତି । ତଥାପି ସେମାନଙ୍କର ଶୋକପର୍ଯ୍ୟବସାୟୀ ନାଟକମାନଙ୍କ ଉପରେ ଦୈବବାଦର ଭୀଷଣ ଛାୟା ପଡ଼ିଥିବା ଦେଖାଯାଏ । ସୃଷ୍ଟିର ନିଗୂଢ଼ ରହସ୍ୟମାନଙ୍କ ଭିତରେ ଦୈବ ବୋଲି କୌଣସି ବଳିଷ୍ଠ, ସର୍ବବ୍ୟାପୀ ଓ ନିଷ୍ଠୁର ଶକ୍ତି ଅଛି, ମନୁଷ୍ୟ ପରି ଦେବତା ପ୍ରଭୃତିଙ୍କ ଉପରେ ମଧ୍ୟ ତାର ଅଧିକାର, ତା ଆଗରେ ସମସ୍ତଙ୍କୁ ମୁଣ୍ଡ ନୁଆଇଁବାକୁ ପଡ଼େ, ଯଦି କେହି ତାର ପ୍ରତୀକାର କରିବାକୁ ବସେ, ତେବେ ସେ ଅଧିକ ନିଷ୍ଠୁରତା ସହକାରେ ନିଜ

ବନ୍ଧ ମୂର୍ତ୍ତିରେ - ଏହିପରି ଗ୍ରୀକ୍‌ଜନସାଧାରଣଙ୍କର ବିଶ୍ୱାସ ଥିଲା । ଏହି ଦୈବର କାର୍ଯ୍ୟ କଳାପରେ କୌଣସି ବିଶିଷ୍ଟ କାରଣ ଅଛି ନା ନାହିଁ, ଏହାର ମାନବକୃତ କର୍ମ ସହିତ କୌଣସି ନୈତିକ ସମ୍ବନ୍ଧ ଅଛି, କି ନାହିଁ ନଦି ଥାଏ, ତାହା କି ପ୍ରକାର—ଏହିପରି ପ୍ରଶ୍ନମାନଙ୍କର ବିଚାର ଗ୍ରୀକ୍ ଦୁଃଖାନ୍ତ ନାଟକମାନଙ୍କରେ ଦେଖି ବାକୁ ମିଳେ ଏବଂ ତଦ୍ୱାରା ଜୀବନର ସୁଖ ଓ ଦୁଃଖର ନିଗୂଢ଼ ପ୍ରଶ୍ନର ସମାଧାନ କରିଥିଲା ପରି ଜଣାଯାଏ । କେତେକ ନାଟକରେ ମାନବଜୀବନର ବିବିଧ କର୍ତ୍ତବ୍ୟମାନଙ୍କର ବିରୋଧ ମଧ୍ୟ ପ୍ରତିବିମ୍ବିତ ହୋଇଅଛି । କେତେକ ସ୍ଥଳରେ ନାଗରିକତା ହେତୁ ଅଥବା ସମାଜ ସଂସ୍ଥାର ଅଙ୍ଗ ହେବାହେତୁ ପ୍ରାପ୍ତ କର୍ତ୍ତବ୍ୟ-ପରିବାରିକ କର୍ତ୍ତବ୍ୟ ସହିତ ବିରୋଧ କରୁଅଛି ।' ଏହିପରି ପରିସ୍ଥିତିରେ ସମ୍ଭାବନୀୟ କର୍ତ୍ତବ୍ୟକଳହ ଆଧାର କରି କେତେକ ନାଟକ ରଚିତ ହୋଇଅଛି । ଏହି ପ୍ରଶ୍ନମାନଙ୍କର ବିଚାର କାଳି-ଦାସଙ୍କର ଗ୍ରନ୍ଥମାନଙ୍କର ଦେଖାଯାଏ ନାହିଁ । ଏହା ହେଉଛି କୀଥଙ୍କର ମନ୍ତବ୍ୟର ତାତ୍ପର୍ଯ୍ୟ । *

ଏହି ବିଷୟରେ ପ୍ରଥମେ ମନେ ରଖିବାକୁ ହେବ ଯେ ଯେ କୌଣସି କବିଙ୍କର ଗ୍ରନ୍ଥ ତାହାଙ୍କ ପରିସ୍ଥିତିର ନିରପେକ୍ଷ ହୋଇ ନ ପାରେ । ପ୍ରତ୍ୟେକ ଗ୍ରନ୍ଥକାରଙ୍କର କୃତିମାନଙ୍କରେ ତାହାଙ୍କ ଚଳଚଳଣି ଓ ଆଚାର ବିଚାରର ଅଳ୍ପ ବହୁତ ପ୍ରଭାବ ଅବଶ୍ୟ ପଡ଼ିଥାଏ । ସେମାନଙ୍କ କୃତିର ସୌନ୍ଦର୍ଯ୍ୟ ଅନୁଭବ କରିବାକୁ ହେଲେ ପାଠକ ମାନେ ନିଜ ନିଜକୁ ତାହାଙ୍କ

* CF: Keith—The Sanskrit Drama PP. 230-81

ପରିସ୍ଥିତିରେ ରଖିବାକୁ ହେବ । କ୍ରମବର୍ଦ୍ଧମାନ ବିଜୟୀ ସମୃଦ୍ଧ ଗୁପ୍ତସାମ୍ରାଜ୍ୟରେ ବର୍ଦ୍ଧମାନ କବିଙ୍କର କଳାକୃତିରେ ସ୍ୱଚ୍ଛ ଉତ୍ସାହ, ଆନନ୍ଦ ଓ ଆଶାବାଦିତା ଯଦି ଦେଖାଯାଏ, ତେବେ ଏଥିରେ ଆଶ୍ଚର୍ଯ୍ୟ କଅଣ ? ତାଙ୍କର ଗ୍ରନ୍ଥମାନଙ୍କରେ ଦୁଃଖବାଦର କି ନୈରାଶ୍ୟର କଳା ଛାଇ ପଡ଼ିବା ଦେଖାଯାଏ ନାହିଁ ବୋଲି ନାକ ଟେକିବା ସମୁଚିତ ନୁହେଁ । ଏହା ଛଡ଼ା ଗ୍ରୀକ୍ ନାଟକ-କାରମାନେ ଯେଉଁ ପ୍ରଶ୍ନମାନଙ୍କୁ ନିଜ ନିଜ ଗ୍ରନ୍ଥରେ ବିଚାରାର୍ଥ ନେଇ ଅଛନ୍ତି, ସେ ସବୁର ସମାଧାନ କାଳିଦାସଙ୍କର ପୂର୍ବବର୍ତ୍ତୀ ଋଷିମାନେ ଶହଶହ ବର୍ଷ ଧରି ପରିଶୀଳନ କରି ଉପନିଷଦାଦି ଗ୍ରନ୍ଥମାନଙ୍କରେ ଲେଖିଯାଇ ଅଛନ୍ତି । ସୃଷ୍ଟିର ମୂଳ ଆଧାରଶକ୍ତି କୌଣସି ଭୟଙ୍କର, ନିର୍ଦ୍ଦୟ ଓ ଦୈତ୍ୟସ୍ୱରୂପ ଶକ୍ତି ନୁହେଁ, କିନ୍ତୁ ସର୍ବବ୍ୟାପକ, ସର୍ବଶକ୍ତିମାନ୍, ସର୍ବଜ୍ଞ ତଥା ଦୟାଳୁ ଭଗବାନଙ୍କର ନ୍ୟାୟପୂର୍ଣ୍ଣ ରାଜ୍ୟ । ଆମ୍ଭମାନଙ୍କୁ ସଂସାରର ବାହ୍ୟ ପ୍ରକୃତି ଅନ୍ୟାୟ ଦେଖାଯାଉଅଛି, କିନ୍ତୁ ତା'ତଳେ ନ୍ୟାୟ ଅନ୍ତର୍ନିହିତ ରହିଅଛି । ମନୁଷ୍ୟ ଇହଲୋକ ତଥା ପରଲୋକରେ ସ୍ୱକୃତ କର୍ମର ଫଳ ଅନୁଭବ କରିଥାଏ । ଏହି ହେତୁ ଜୀବନର ବିଧି ତାପରେ ନିରାଶ ନ ହୋଇ 'ଜଙ୍ଘଦେଦାମ୍ନାମ୍ନାନମ୍' ଏହି ଶିକ୍ଷା ପ୍ରାଚୀନ ଗ୍ରନ୍ଥମାନଙ୍କର ଦିଆ ଯାଇଅଛି । ପ୍ରତ୍ୟେକ ବ୍ୟକ୍ତି ନିଜ ନିଜ ଚେଷ୍ଟାରେ ନିଜ ନିଜ ଧ୍ୟେୟ ଲାଭ କରିବେ । ଆମ୍ଭେ ଆଗରେ ଦେଖାଇବୁ ଯେ କାଳିଦାସଙ୍କର ଉପନିଷଦ ଓ ଭଗବଦ୍‌ଗୀତାରେ ଅସୀମ ଶ୍ରଦ୍ଧା ଥିଲା, ସେ ଏହି ଦୁଇଟି ଗ୍ରନ୍ଥରୁ ଧାର୍ମିକ ଓ ଦାର୍ଶନିକ ବିଚାର ସଂଗ୍ରହ କରି ନିଜ ଗ୍ରନ୍ଥ-ମାନଙ୍କରେ ସନ୍ନିବେଶିତ କରି ଅଛନ୍ତି । ଏହା ଛଡ଼ା ସମସ୍ତ ଭାରତ-ବାସୀ ଦାର୍ଶନିକମାନେ କର୍ମବାଦର ପଥିକ । ଏହେତୁ କାଳିଦାସ

ବ୍ରାହ୍ମଣଧର୍ମାବଲମ୍ବୀ ନ ହୋଇ ବୌଦ୍ଧ କିମ୍ବା ଜୈନଧର୍ମାନୁଯାୟୀ ହୋଇଥିଲେ ମଧ୍ୟ, ତାଙ୍କର ନାଟକମାନଙ୍କରେ ଉତ୍ଥାପିତ ପ୍ରଶ୍ନମାନଙ୍କର ଉତ୍ତର ମିଳିବା ଆଦୌ ସମ୍ଭବପର ନୁହେଁ ।

ଏହା କହିବାର ଉଦ୍ଦେଶ୍ୟ ନୁହେଁ ଯେ ତାଙ୍କ ଗ୍ରନ୍ଥମାନଙ୍କରେ ଦୈବବାଦ ଦେଖାଯାଏ ନାହିଁ । ସେ ଅନେକ ସ୍ଥାନରେ ଦେଖାଇଛନ୍ତି ଯେ ଦୈବ କିମ୍ବା ଭବିତବ୍ୟତା ପ୍ରତ୍ୟେକ ପ୍ରାଣୀର ଜୀବନ ନିୟନ୍ତ୍ରିତ କରୁଅଛି । ଲୋକମାନେ ଭବିତବ୍ୟତାର ଅନୁସରଣ କରନ୍ତି । ଏହିହେତୁ 'ଲକ୍ଷ୍ମୀସ୍ୱୟମ୍ବର' ନାଟକ ପ୍ରସଙ୍ଗରେ ଉର୍ବଶୀ ମୁହଁରୁ 'ପୁରୁଷୋତ୍ତମ' ବଦଳରେ 'ପୁରୁରବା' ବୋଲି ହଠାତ୍ ବାହାରି ପଡ଼ିଥିଲା । ମାଳବିକାଙ୍କୁ ବିନା କାରଣରେ ବର୍ଷେ ପର୍ଯ୍ୟନ୍ତ ଅଜ୍ଞାତବାସର କଷ୍ଟ ସହିବାକୁ ହେଲା । ଅନ୍ୟର ହିଁ ପୀଡ଼ାରେ ଶକୁନ୍ତଳା ପତିବିୟୋଗର ଦାରୁଣ ଦୁଃଖ ଅନୁଭବ କରିବ ବୋଲି ଜାଣି କଣ୍ୱମହର୍ଷି ପ୍ରତିକୂଳ ଦୈବର ଶାନ୍ତି ସକାଶେ ସୋମତୀର୍ଥ ପରି ସୁଦୂର ତୀର୍ଥକୁ ଯାଇଥିଲେ । ଏହି ସ୍ଥାନମାନଙ୍କରେ କାଳିଦାସ ଦୈବ କିମ୍ବା ଭବିତବ୍ୟତାର ଅପ୍ରତିକାର୍ଯ୍ୟ ଅକ୍ରମଣର ସୂଚନା ଦେଇଅଛନ୍ତି । ତଥାପି ସେ ଅନେକ ସ୍ଥାନରେ ଦେଖାଇ ଦେଇଛନ୍ତି ଯେ ଦୈବ କହିଲେ କୌଣସି ଅନ୍ଧ ବା ନିଷ୍ଠୁର ଶକ୍ତି ନୁହେଁ, କିନ୍ତୁ ପୂର୍ବଜନ୍ମକୃତ କର୍ମର ପରିଣାମ । 'ମୁଁ ନିର୍ଦ୍ଦୋଷୀ ବିନା କାରଣରେ ସ୍ୱାମୀ ମୋତେ ନିର୍ବାସିତ କରିଅଛନ୍ତି ।' ବୋଲି ଜାଣି ସୁଦ୍ଧା ସୀତା ପତିଙ୍କୁ ଦୋଷ ଦେଇନାହାନ୍ତି କିନ୍ତୁ କହିଛନ୍ତି — **'ममैव जन्मान्तरपातकानां विपाकविस्फूर्जथुरप्रसह्यः'** (ଏହା ମୋର ଜନ୍ମାନ୍ତରକୃତ ପାତକମାନଙ୍କର ପରିଣାମଦାରୁଣ ବଜ୍ରାଘାତ ।) ଉଦ୍ୟାନବିହାର କାଳସମୟରେ ହଠାତ୍

ଇନ୍ଦୁମତୀଙ୍କର ମୃତ୍ୟୁ ଘଟିଅଛି । କାଳିଦାସ ତାର କାରଣ ତାଙ୍କର ପୂର୍ବ ଜନ୍ମକୃତ ଅଭିଶାପ ବୋଲି ନିର୍ଦ୍ଦିଷ୍ଟ କରିଛନ୍ତି । କର୍ମ-ବାଦକୁ ଭାରତୀୟ ତତ୍ତ୍ୱଜ୍ଞାନରେ ପୂର୍ବଜନ୍ମ କଳ୍ପନା ସହିତ ଯୋଗ କଲେ ଅତ୍ୟନ୍ତ ଦୁଃଖୀ, ହୀନ ଓ ଦୀନ ମନୁଷ୍ୟ ମଧ୍ୟ ଆଶାବାଦୀ ହୋଇଥାଏ । ତାର କାରଣ ଉକ୍ତ ଯେ ଇହଲୋକର ଅନ୍ୟାୟ ଓ ଦୁଃଖ ସବୁବେଳେ ରହିବ ନାହିଁ କିନ୍ତୁ 'ଚକ୍ରନେମିକ୍ରମ'ରେ ଏହି ଜନ୍ମରେ ନ ହେଲେ ମଧ୍ୟ ଆଗାମୀ ଜନ୍ମରେ ଅବଶ୍ୟ ସୁଖ ରୂପରେ ପରିଣତ ହେବ । କାଳିଦାସଙ୍କର କାବ୍ୟମାନଙ୍କରେ ଶୋକମୟ ପ୍ରସଙ୍ଗର ଅଭାବ ନାହିଁ । ମଦନଦହନ, ଇନ୍ଦୁମତୀ-ମରଣ, ଉର୍ବଶୀଙ୍କର ରୂପାନ୍ତରପରିଗ୍ରହଣ ଓ ଶକୁନ୍ତଳାଙ୍କର ପ୍ରତ୍ୟାଖ୍ୟାନ ପ୍ରଭୃତି ପ୍ରସଙ୍ଗମାନଙ୍କର ବର୍ଣ୍ଣନା ଦେଖିଲେ 'ମାନବ ଜୀବନକୁ କବି କେବଳ ଗୋଲାପ ଫୁଲର ଶେଜ' ବୋଲି ଭାବୁଥିଲେ ବୋଲି ଜଣାପଡ଼େ ନାହିଁ । ତଥାପି ଏ ସମସ୍ତ ଦୁଃଖପୂର୍ଣ୍ଣ ପ୍ରସଙ୍ଗମାନଙ୍କୁ ଚରମ ପରିଣତି ବୋଲି ନ ଭାବି ସେ ସମସ୍ତଙ୍କର ପର୍ଯ୍ୟବସାନ ସୁଖ ଓ ଆନନ୍ଦରେ ସମାହିତ କରିଅଛନ୍ତି । ଏହି ହେତୁ ଏହାଙ୍କର କାବ୍ୟ ନାଟକ ପାଠ କଲେ ମନକୁ ଆନନ୍ଦ ସହିତ ଶାନ୍ତି ଓ ସାନ୍ତ୍ୱନା ମଧ୍ୟ ମିଳିଥାଏ । ଏ ସମ୍ବନ୍ଧରେ ଅଧ୍ୟାପକ ଉଇଲସନ ଯେଉଁ ମନ୍ତବ୍ୟ ପ୍ରକାଶ କରି ଅଛନ୍ତି, ତାହା ଉଲ୍ଲେଖ-ଯୋଗ୍ୟ —

ଭାରତବର୍ଷରେ ସୁଖାନ୍ତ ଓ ଦୁଃଖାନ୍ତ ବୋଲି ନାଟକମାନଙ୍କୁ ବିଭକ୍ତ କରାଯାଇନାହିଁ । ତଥାପି ସମସ୍ତ ହିନ୍ଦୁ ନାଟକମାନଙ୍କର ପଟ ବିବିଧ ରଙ୍ଗର ସୂତାରେ ବୁଣା ହେଲା ପରି ଦେଖାଯାଏ । ଏହିମାନଙ୍କରେ ଗାମ୍ଭୀର୍ଯ୍ୟ ଓ ଦୁଃଖର ସମାବେଶ ରସିକତା ଓ ହାସ୍ୟ ବିନୋଦ ସହିତ କରାଯାଇଅଛି । ଯଦ୍ୟପି ଏହିମାନଙ୍କର

ଉଦ୍ଦେଶ୍ୟ ମାନବହୃଦୟକୁ ଭୟ, ଅନୁକମ୍ପା ପ୍ରଭୃତ ସମସ୍ତ ଭାବନାରେ ଉଦ୍‌ବୁଦ୍ଧ କରିବା, ତଥାପି ଦର୍ଶକମାନଙ୍କ ମନରେ ଦୁଃଖମୟ ପରିଣାମ ଉତ୍ପନ୍ନ କରି ସେହି ଉଦ୍ଦେଶ୍ୟ ପୂର୍ଣ୍ଣ କରାଯାଇ ନାହିଁ ।

କାଳିଦାସୀୟ ଗ୍ରନ୍ଥମାନଙ୍କର ତ୍ରୁଟି ଗୁଡ଼ିକର ବିଚାର ଏ ପର୍ଯ୍ୟନ୍ତ କରାଗଲା । ଜଗତରେ କୌଣସି ମନୁଷ୍ୟ ସର୍ବଗୁଣ ସମ୍ପନ୍ନ ହୋଇ ନ ପାରେ । ଏହି ହେତୁ କାହାର ସ୍ୱଭାବ ବା କୃତରେ ତ୍ରୁଟି ଅଛି ବୋଲି ତାଙ୍କୁ ଦୋଷ ଦେବା ଠିକ୍ ନୁହେଁ । କିନ୍ତୁ ଆମ୍ଭ ଗୃହୀଁ ଛୁ—ତାଙ୍କର ଉକ୍ତି ବା କୃତ ନିର୍ଦ୍ଦୋଷ ହେଉ । ଏହା ଛଡ଼ା କାବ୍ୟରେ ଯଦି କୌଣସି ଦୋଷ ରହେ, ତେବେ କାବ୍ୟର ରସରେ ଅପକର୍ଷ ଘଟେ, ଏହି ହେତୁ ସମସ୍ତ ଆଲଙ୍କାରିକମାନେ କାବ୍ୟଗତ ଦୋଷମାନଙ୍କର ସବିସ୍ତର ବିଚାର ଓ ବର୍ଗୀକରଣ କରିଅଛନ୍ତି । ଆନନ୍ଦବର୍ଦ୍ଧନଙ୍କ ଭଳିଆ ରସିକ ସାହିତ୍ୟମହାରଥୀ ମଧ୍ୟ ଦୋଷପୂର୍ଣ୍ଣ ଉଦାହରଣମାନ ଉପେକ୍ଷା କରି କହିଅଛନ୍ତି—**'तत्तु सूक्तिसहस्रद्योतितात्मनां महात्मनां दोषोद्घोषणमात्मन एव दूषणं भवति'** (ଯେଉଁମାନେ ହଜାର ହଜାର ରମଣୀୟ ସୁଭାଷିତଦ୍ୱାରା ନିଜକୁ ଉଦ୍ଭାସିତ କରି ଅଛନ୍ତି, ସେହିପରି ମହାତ୍ମା-ମାନଙ୍କର ଦୋଷ ଉଦ୍‌ଘାଟନ କରିବା ସମାଲୋଚକଙ୍କ ପକ୍ଷରେ ଦୋଷାବହ) କିନ୍ତୁ ଅନ୍ୟାନ୍ୟ ଆଲଙ୍କାରିକମାନେ ଏହିପରି ବିଚାର ନ କରି ପ୍ରତ୍ୟେକ ଦୋଷର ଉଦାହରଣ ମହାକବିମାନଙ୍କ ଗ୍ରନ୍ଥ-ମାନଙ୍କରୁ ଖୋଜି ଖୋଜି ବାହାର କରିଅଛନ୍ତି । ସେ ମଧ୍ୟରେ ଅନ୍ୟ କବିମାନଙ୍କ ଅପେକ୍ଷା କାଳିଦାସଙ୍କ ଗ୍ରନ୍ଥମାନଙ୍କରୁ ବହୁତ ଉଦାହରଣ ଦେଇ ଅଛନ୍ତି । ଏହାଦ୍ୱାରା କେତେକ ଅବିବେକୀ ପାଠକମାନଙ୍କ ମନରେ ଅନ୍ୟାନ୍ୟ କବିମାନଙ୍କର ଗ୍ରନ୍ଥ ଅପେକ୍ଷା କାଳିଦାସଙ୍କର ଗ୍ରନ୍ଥ ଅଧିକଦୋଷପୂର୍ଣ୍ଣ ବୋଲି ଧାରଣା

ହୋଇପାରେ । କିନ୍ତୁ ପ୍ରକୃତରେ ତାହା ନୁହେଁ, ଏହାଙ୍କର ଗ୍ରନ୍ଥମାନଙ୍କରୁ ବହୁଳ ପରିମାଣରେ ଉଦାହରଣମାନ ନିଆଯାଇ-ଅଛି, ତାର କାରଣ ଏହାଙ୍କ ଗ୍ରନ୍ଥମାନଙ୍କର ଲୋକପ୍ରିୟତା । ଯଦି ବିଦ୍ୟାର୍ଥୀମାନଙ୍କୁ ଏପରି ଶ୍ଳୋକରେ ଦୋଷ ଦେଖାଇ ଦିଆଯାଏ, ଯାହା ସେମାନେ ଜାଣନ୍ତି, ତାହା ହେଲେ ସେମାନେ ସହଜରେ ଦୋଷର ସ୍ୱରୂପ ଗ୍ରହଣ କରି ପାରିବେ । ଅନ୍ୟାନ୍ୟ କବି-ମାନଙ୍କର ଗ୍ରନ୍ଥମାନ କ୍ଲିଷ୍ଟ ହେବା ହେତୁ, ସେମାନଙ୍କର ପ୍ରଚାର କମ୍ । ଏଣୁହେତୁ ଅଳଙ୍କାରିକମାନେ ନିଜ ଉଦାହରଣମାନଙ୍କ କାଳିଦାସଙ୍କର ରଚନାରୁ ସଂଗ୍ରହ କରି ଅଛନ୍ତି । ଅନ୍ୟ ଏକ କଥା—କାଳିଦାସ 'କବିକୁଳ ଗୁରୁ' ରୂପେ ବିଖ୍ୟାତ । ପରମ୍ପରା କ୍ରମେ ଲୋକମାନଙ୍କ ଧାରଣା ରହିଛି ଯେ ଦେବଙ୍କ ଅନୁଗ୍ରହ-ବଳରେ ତାଙ୍କର ପ୍ରତିଭା ପ୍ରୋତ୍ସାହିତ ହୋଇଥିଲା । ଯେବେ ଏହିପରି କବିଙ୍କର ମଧ୍ୟ ଏହିପରି ଦୋଷମାନ ଦେଖାଯାଏ, ତେବେ ଅନ୍ୟାନ୍ୟ କବିମାନଙ୍କର ବିଷୟରେ କଅଣ କୁହାଯିବ ? ଏହା ଧ୍ୱନିତ କରି ସକଳ ଦୋଷନିରୂପଣ ଓ ଦୋଷବର୍ଜନର ମହତ୍ତ୍ୱ ବିଦ୍ୟାର୍ଥୀମାନଙ୍କୁ ଓ ଉଦୀୟମାନ କବିମାନଙ୍କୁ ଭଲରୂପେ ବୁଝାଇବା ମଧ୍ୟ ଅଳଙ୍କାରିକମାନଙ୍କର ଉଦ୍ଦେଶ୍ୟ ହୋଇଥାଇ-ପାରେ । ଆମେ ଏଠାରେ କାଳିଦାସଙ୍କର ଶ୍ଳୋକ ଶ୍ଳୋକ ଦୋଷମାନଙ୍କର ବିସ୍ତାର ନ କରି କେତେକ ପ୍ରଧାନ ଦୋଷର ବିବେଚନ କରିବୁଁ ।

(୧) **ଅଶ୍ଳୀଳତା**— କାଳିଦାସଙ୍କ ଦୋଷମାନଙ୍କ ମଧ୍ୟରେ ପ୍ରଧାନ ଦୋଷ ହେଉଛି ସୁରୁଚିପୂର୍ଣ୍ଣ ପାଠକମାନଙ୍କ ମନରେ ଉଦ୍ବେଗ ଜାତ କରିବା ଅଶ୍ଳୀଳତା । ଆମର ବିଳାସୀ କବି ନିଜ

ସରସ ପ୍ରକୃତିବର୍ଣ୍ଣନ ସ୍ତୋତ୍ରରେ ହସିପାରି ଏହି ଦୋଷକୁ ପ୍ରତି ଦୃଷ୍ଟି ରଖିପାରି ନାହାନ୍ତି 'ଜ୍ଞାତାସ୍ୱାଦୋ ବିବୃତଜଘନାଂ କୋ ବିହାତୁଂ ସମର୍ଥଃ' (ମେଘ ୪୩) 'ନିତମ୍ବମିବ ମେଖଳୟା ଗ୍ରନ୍ଥାଂଶୁକମଲଂଘୟୁତ୍' (ରଘୁ ୦, ୪୬) ପ୍ରଭୃତି ଉକ୍ତିମାନଙ୍କରେ ଏବଂ ଅଗ୍ନିବର୍ଣ୍ଣଙ୍କର ସ୍ତ୍ରୀ ସମ୍ଭୋଗ ବର୍ଣ୍ଣନାରେ ଏହି ଦୋଷ ଦେଖାଯାଏ । କାଳିଦାସଙ୍କର ଗ୍ରନ୍ଥମାନଙ୍କର କେତେକ ଭାଗ ଉଦ୍ଦାମଶୃଙ୍ଗାର ପୂର୍ଣ୍ଣ ହେବା ହେତୁ ପାଠଶାଳାମାନଙ୍କର ଅଧ୍ୟାପନାର ଅଯୋଗ୍ୟ ବୋଲି ପ୍ରମାଣିତ ହୋଇଅଛି । ଏହି ଦୋଷର ଚରମସୀମା 'କୁମାର-ସମ୍ଭବ' ଦେବୀସମ୍ଭୋଗବର୍ଣ୍ଣନାରେ ଦେଖିବାକୁ ମିଳେ । ପ୍ରଥମରେ ଦେବପ୍ରକୃତି ପାତ୍ରମାନଙ୍କର ସମ୍ଭୋଗଶୃଙ୍ଗାର ବର୍ଣ୍ଣନା ପଢ଼ିଲାମାତ୍ରେ ପାଠକମାନଙ୍କ ମନରେ ଲଜ୍ଜା ଜାତ ହୁଏ । ପୁଣି ସେହି ପାତ୍ରମାନଙ୍କ ମଧ୍ୟରେ ଅତ୍ୟନ୍ତ ପୂଜ୍ୟ ଏବଂ ତ୍ରିଭୁବନର ଜନକଜନନୀ ଶିବପାର୍ବତୀଙ୍କର ସମ୍ଭୋଗ ବର୍ଣ୍ଣନ ନିତାନ୍ତ ଅନୁଚିତ ବୋଧ ହୁଏ । ପ୍ରାୟ ସମସ୍ତ ଆଲଙ୍କାରିକମାନେ କହିଅଛନ୍ତି ଏହି ଶୃଙ୍ଗାରର ବର୍ଣ୍ଣନା ପଢ଼ିଲେ ପ୍ରତ୍ୟେକ ସହୃଦୟ ପାଠକଙ୍କର ମନରେ ମାତାପିତାଙ୍କର ସମ୍ଭୋଗବର୍ଣ୍ଣନା ପଢ଼ିଲା ପରି ଘୃଣା ଜାତ ହୁଏ । ଆନନ୍ଦବର୍ଦ୍ଧନ ମଧ୍ୟ କହିଅଛନ୍ତି କାଳିଦାସଙ୍କ ପରି ମହାକବିଙ୍କ ଗ୍ରନ୍ଥରେ ଏହି ଦୋଷ ଏତେ ତୀବ୍ର ବୋଧ ହୁଏ ନାହିଁ, ତାର କାରଣ ତାଙ୍କର ଅଲୌକିକ ପ୍ରତିଭା, ଯାହାଦ୍ୱାରା ସେ ସମସ୍ତ ଦୋଷ ଲୁଚିଯାଏ । ତଥାପି ଆମେ ଆଗରୁ କହୁଅଛୁଁ ଯେ ତାତ୍କାଳିକ ପଣ୍ଡିତମାନେ ସେହି ବର୍ଣ୍ଣନାକୁ ନିନ୍ଦନୀୟ ମନେ କଲେ, ଏହିହେତୁ କାଳିଦାସ କୁମାରସମ୍ଭବକୁ ପୂର୍ଣ୍ଣ ନ କରି ଛାଡ଼ିଦେଲେ । କେବଳ ଯେ କାଳିଦାସଙ୍କ ଗ୍ରନ୍ଥରେ ଏହି ଦୋଷ ଅଛି, ତାହା ନୁହେଁ । ସଂସ୍କୃତସାହିତ୍ୟରେ ଶୃଙ୍ଗାରରସର

ପ୍ରାଧାନ୍ୟ ଥିବା ହେତୁ ପ୍ରତ୍ୟେକ ସଂସ୍କୃତ କାବ୍ୟରେ ଏହି ଦୋଷ ଅଳ୍ପ ବହୁତ ଦେଖାଯାଏ । ନାଟକ ଦୃଶ୍ୟ କାବ୍ୟ ହେବା ହେତୁ, ସ୍ତ୍ରୀ ପୁରୁଷ ମିଳିଲେ ଏକାଠି ବସି, ତାର ରସାସ୍ୱାଦ କରନ୍ତି । ଅତଏବ ନାଟକମାନଙ୍କରେ ମଧ୍ୟ ଅଶ୍ଳୀଳତା ଦୋଷ ଅଧିକ ଦୂଷଣୀୟ । ଏଥିରୁ ଭବଭୂତିଙ୍କ ପରି ଚରିତ୍ର ପ୍ରକୃତିର ନାଟକକାରଙ୍କର ମଧ୍ୟ 'ମାଲତୀମାଧବ' ନାଟକରେ ଏହି ଦୋଷ ଉତ୍କଟରୂପରେ ଦେଖାଯାଏ । ଏହା ମଧ୍ୟ ମନେ ରଖିବାକୁ ହେବ ଯେ କାଳିଦାସଙ୍କର ନାଟକମାନଙ୍କର ଏହି ଦୋଷ ଅଧିକମାତ୍ରାରେ ଦେଖାଯାଏ ନାହିଁ । 'ଅଧିକମାତ୍ରାରେ' କହିବାର ଉଦ୍ଦେଶ୍ୟ—ଏହାଙ୍କର ପ୍ରଥମ ନାଟ୍ୟକୃତି 'ମାଳବିକାଗ୍ନିମିତ୍ର'ରେ ଇରାବତୀଙ୍କ ସନ୍ଦେଶରେ ଅଶ୍ଳୀଳତା ସୂଚିତ ହୋଇଅଛି । 'ଅଶୋକ ମୋ ପୋଡରେ ମଧ୍ୟ ପାଦରେ ପ୍ରହାର କରି ମୋର ମନୋରଥ ପୂର୍ଣ୍ଣ କର ।' ଏହାପରି ରାଜା ମାଳବିକାଙ୍କୁ ମିନତି କରୁଅଛନ୍ତି । ଏହି ସମୟରେ ଇରାବତୀ ହଠାତ୍ ପ୍ରବେଶ କରି କହିଲେ 'ପୂର୍ଣ୍ଣ କର ଏହାଙ୍କର ମନୋରଥ, ପୂର୍ଣ୍ଣ କର. ଅଶୋକ କେବଳ ଫୁଲ ଦେବ. କିନ୍ତୁ ଏ ଫୁଲ ଓ ଫଳ ଦେବେ ।'

(୨) **ଚ୍ୟୁତ ସଂସ୍କୃତ** :—କାବ୍ୟରେ ଅଶୁଦ୍ଧ ବ୍ୟାକରଣ-ପ୍ରୟୋଗକୁ 'ଚ୍ୟୁତ ସଂସ୍କୃତ' ଦୋଷ କୁହାଯାଏ । ପ୍ରାଚୀନ ଆଲଙ୍କାରିକମାନେ ଭାଷାର ବିଶୁଦ୍ଧତା ଅକ୍ଷୁଣ୍ଣ ରଖିବାଉଦ୍ଦେଶ୍ୟରେ ନିଜ ନିଜ ଗ୍ରନ୍ଥମାନଙ୍କରେ ଏକ ସ୍ୱତନ୍ତ୍ର ପ୍ରକରଣ ସଂସ୍କୃତକବିମାନଙ୍କର ବିବାଦାସ୍ପଦ ପ୍ରୟୋଗଗୁଡ଼ିକର ସମାଲୋଚନା ସକାଶେ ଲେଖି ଯାଇଛନ୍ତି । କାଳିଦାସଙ୍କର ପୂର୍ବକାଳୀନ ଅଶ୍ୱଘୋଷ ଓ ଭାସକବିଙ୍କର ବ୍ୟାକରଣଶୈଥିଳ୍ୟତା ପ୍ରତି ବିଶେଷ

ଦୃଷ୍ଟି ନ ଥିଲା । ବ୍ୟାସବାଲ୍ମୀକି ପ୍ରଭୃତି ଋଷିମାନଙ୍କର କାବ୍ୟ-ମାନଙ୍କରେ ମଧ୍ୟ ଏହି ଦୋଷ ଦେଖାଯାଏ । ମାତ୍ର ସେମାନଙ୍କର ଅଲୌକିକ ତପସ୍ୟା ବଳରେ ସେମାନଙ୍କ ଗ୍ରନ୍ଥମାନଙ୍କର ଆଦର ହେଉଥିଲା । ଏହିହେତୁ ସେହି ଗ୍ରନ୍ଥମାନଙ୍କରେ ଯେଉଁ ସବୁ ବ୍ୟାକରଣଦୁଷ୍ଟ ପ୍ରୟୋଗ ଦେଖାଯାଉଅଛି, ସେ ସମସ୍ତ 'ଆର୍ଷ' ବୋଲି ପରମ୍ପରା ରହିଛି । ତଥାପି ଅଶ୍ୱଘୋଷ ପ୍ରଭୃତିଙ୍କର କାବ୍ୟମାନଙ୍କର ଅଶୁଦ୍ଧ ପ୍ରୟୋଗମାନଙ୍କୁ ସମାଲୋଚକମାନେ ଦୋଷପୂର୍ଣ୍ଣ ବୋଲି ସ୍ୱୀକାର କରିଅଛନ୍ତି । କାଳିଦାସଙ୍କର ଭାଷାର ବିଶୁଦ୍ଧତା ପ୍ରତି ବିଶେଷ ଲକ୍ଷ୍ୟ ଥିଲା । 'ସଂସ୍କାରବତେବ ଗିରା ମନୀଷୀ' (କୁମାର ୧,୨୮) ଏହି ଉପମାରେ ସେ ସ୍ୱୟଂ କହି-ଅଛନ୍ତି ଯେ 'ସୁସଂସ୍କୃତ ଭାଷାଦ୍ୱାରା ପଣ୍ଡିତ ପବିତ୍ର ଓ ଶୋଭିତ ହୁଏ ।' ସାଧାରଣତଃ ଏହାଙ୍କର ଗ୍ରନ୍ଥମାନଙ୍କରେ ବ୍ୟାକରଣଦୁଷ୍ଟ ପ୍ରୟୋଗ ଅତି ଅଳ୍ପ ଦେଖିବାକୁ ମିଳେ । ତଥାପି ଆଳଙ୍କାରିକ ଓ ଟୀକାକାରମାନେ ପ୍ରମାଦ ବଶତଃ କୃତ କେତେକ ତ୍ରୁଟି ନିର୍ଦ୍ଦିଷ୍ଟ କରିଅଛନ୍ତି । ଉଦାହରଣ—

(୧) लावण्य उत्पाद्य इवास यत्नः (କୁମାର ୧, ୩୫)
तेनास लोकः पितृमान् विनेत्रा (ରଘୁ ୧୪, ୨୩)

ଏହି ପଂକ୍ତିମାନଙ୍କରେ କବି 'ଅସ' ଧାତୁର ପରୋକ୍ଷ ଲିଟ ପ୍ରଥମ ପୁରୁଷ ଏକ ବଚନରେ 'ଅସ' ବୋଲି ରୂପ ପ୍ରୟୋଗ କରିଅଛନ୍ତି । 'ଅସ୍ତେର୍ଭୂଃ' (୨-୪-୫୨) ଏହି ପାଣିନିସୂତ୍ରାନୁସାରେ 'ଅସ୍' ଧାତୁର ପରୋକ୍ଷାର୍ଥକ ଲିଟ୍‌ଲକାରର ପ୍ରଥମ ପୁରୁଷ ଏକ ବଚନରେ ସ୍ୱତନ୍ତ୍ରରୂପ ହୁଏ ନାହିଁ । 'ଅଳଙ୍କାରସୂତ୍ରବୃତ୍ତି' କର୍ତ୍ତା ବାମନ କହିଛନ୍ତି—'ଅସ ଗତିଦୀପ୍ତ୍ୟାଦାନେଷୁ' ଏହି ଧାତୁପାଠପଠିତ ଦୀପ୍ତ୍ୟର୍ଥକ 'ଅସ' ଧାତୁର ଏହି ରୂପ ବୋଲି ଧରିବାକୁ ହେବ ।

ଟୀକାକାରମାନେ ଏହାକୁ ଜାତମାତ୍ରରୂପକ ବନ୍ତ୍ୟନ୍ତ ଶବ୍ଦରୂପଦଙ୍କ ଏକ ଅବ୍ୟୟ ବୋଲି କହିଅଛନ୍ତି । ତଥାପି ଏହା କବିଙ୍କର ଅମନୋଯୋଗିତା ବଶତଃ ସ୍ଖଳିତ ପ୍ରମାଦପୂର୍ଣ୍ଣ ପ୍ରୟୋଗ ବୋଲି ମନେ ହୁଏ । *

(୨) राजयक्ष्मपरिहानिरायर्यौ कामयानसमवस्थया तुलाम्

(ରଘୁ ୧୯, ୫୦)

ଏହି ପଂକ୍ତିରେ 'କାମଯାନ' ଏହିରୂପ 'କାମୟମାନ' ଶବ୍ଦ ରୂପ-ବଦଳରେ ଦିଆଯାଇଅଛି । ଏ ହେତୁ ଏହା ଦୁଷ୍ଟ ପ୍ରୟୋଗ ।

ଯେ କୌଣସି ଠାରେ ପାଣିନିଙ୍କ ବ୍ୟାକରଣ ଅନୁସାରେ କୌଣସି ରୂପ ଅଶୁଦ୍ଧ ବୋଧ ହେଲେ ମଧ୍ୟ ଶ୍ରେଷ୍ଠ କବିମାନେ ତାକୁ ଅନେକବାର ପ୍ରୟୋଗ କରିବା ଫଳରେ ତାହା 'ଶିଷ୍ଟ ସମ୍ମତ' ଅତଏବ ଅଦୁଷ୍ଟ ବୋଲି ଧରାଯାଏ । କାଳିଦାସଙ୍କର ପୂର୍ବବର୍ତ୍ତୀ ମାନନୀୟ କବିମାନେ ଏହିପରି କେତେକ ପ୍ରୟୋଗ କରିଅଛନ୍ତି । ଏହିହେତୁ ସମ୍ଭବତଃ କାଳିଦାସ ମଧ୍ୟ ସେହିପରି ପ୍ରୟୋଗ କରିଅଛନ୍ତି । ଉଦାହରଣ—ପାଣିନି, କାତ୍ୟାୟନ ଓ ପତଞ୍ଜଳି ଏହି ତିନି ବ୍ୟାକରଣାଚାର୍ଯ୍ୟ ମାନଙ୍କର ମତରେ ଦ୍ୱିତୀୟ ଭୂତକାଳ (ପରୋକ୍ଷ) ବାଚକ ଧାତୁ ସାଧିତ କୃଦନ୍ତ ରୂପର ପ୍ରୟୋଗ କେବଳ ବୈଦିକ ଭାଷାରେ ହୋଇଥାଏ, ଲୌକିକ ସଂସ୍କୃତରେ ନୁହେଁ ।

---

* କାଳିଦାସଙ୍କ ଠାରୁ ପ୍ରାୟ ଏକ ଶହ ବର୍ଷ ପୂର୍ବବର୍ତ୍ତୀ ଆର୍ଯ୍ୟଶୂରଙ୍କର 'ଜାତକମାଳା'ରେ ଏହିପରି ପ୍ରୟୋଗ ଦେଖାଯାଏ । (ମନ୍ତ୍ରୀବଳଜାତକର 'ନରେନ୍ଦ୍ରଚୂଡାମଣିଶାସନସ୍ୟ ତସ୍ୟ ତୁଳକୀଳବଦଦାସ ଶାସ୍ତ୍ରମ୍' ଦେଖନ୍ତୁ)

ପରନ୍ତୁ ତାହାଙ୍କ ଶିଷ୍ଟପରମ୍ପରାଦ୍ୱାରା ଅନୁକରଣରେ **'तं तस्थिवांसं नगरोपकण्ठे'** (ରଘୁ, ୫, ୬୧) **'श्रेयांसि सर्वाण्यधिजग्मुषस्ते'** (ରଘୁ, ୫, ୩୪) ଇତ୍ୟାଦି ସ୍ଥଳରେ କାଳିଦାସ ଧାତୁ ସାଧିତ କୃଦନ୍ତ ରୂପ ପ୍ରୟୋଗ କରିଅଛନ୍ତି * ଏହିପରି 'ବାଂପାରଯାମାସ' 'ହାସଯାମାସ' ପ୍ରଭୃତି ଦ୍ୱିତୀୟ ଭୂତ (ପରୋକ୍ଷ) କାଳିକ ରୂପ ଅଖଣ୍ଡ ହେବା ବାଞ୍ଛନୀୟ ବୋଲି କାତ୍ୟାୟନ ବାର୍ତ୍ତିକରେ କହିଅଛନ୍ତି। ତଥାପି ଅଶ୍ୱଘୋଷ ନିଜ 'ବୁଦ୍ଧଚରିତ'ରେ **'यथावदेनं दिवि देवसंघा दिव्यैर्विशेषैर्महयाञ्च चक्रुः ।'** (୬, ୪୮) ଏହି ପଂକ୍ତିରେ 'ମହୟାଂ' ତଥା 'ଚକ୍ରୁଃ' ଏହି ପରି ଦୁଇଗୋଟି ଭାଗ ମଧ୍ୟରେ 'ଚ' ଅବ୍ୟୟର ସମାବେଶ କରିଅଛନ୍ତି। କାଳିଦାସ ମଧ୍ୟ ଏହିପରି ତିନୋଟି ରୂପ ପ୍ରୟୋଗ କରିଅଛନ୍ତି **'तं पातयां प्रथममास पपात पश्चात्'** (୯,୬୧)

**प्रभ्रंशयां यो नहुषं चकार'** (ରଘୁ, ୧୩,୬୩)

**'संयोजयां विधिवदास समेतबन्धुः** (ରଘୁ, ୧୬, ୮୬)

ଏ ସମସ୍ତ ରୂପ ତାଙ୍କ ସମୟରେ ଶିଷ୍ଟ ସମ୍ମତ † ଥିଲା। ଏହିହେତୁ ଖ୍ରୀଷ୍ଟୀୟ ୪୫୭ ସାଲର ଏକ ଶିଳାଲେଖରେ ଏହିପରି ରୂପର ପ୍ରୟୋଗ ଦେଖାଯାଏ। *

**୩ ଅନୌଚିତ୍ୟ :**—ଔଚିତ୍ୟ ରସର ଆତ୍ମା। କ୍ଷେମେନ୍ଦ୍ର କହିଅଛନ୍ତି—କାବ୍ୟରେ ଅନେକ ଗୁଣ ଓ ଅଳଙ୍କାର ଥିଲେ ମଧ୍ୟ

---

† ଉଚିବାନ୍ (ବୁଦ୍ଧ ଚରିତ, ୫, ୦୫) ଉପଜଗ୍ମିବାନ୍ (୧୨,୨) ଇତ୍ୟାଦି

* ବୁଦ୍ଧ ଚରିତ (୨,୧୯ ଓ ୮, ୯) ଦେଖନ୍ତୁ।

* Gupta Inscriptions, No 14

ଯଦ୍ଧ ଔଚିତ୍ୟ ନ ଥାଏ, ତେବେ ତାହା ରସିକମାନଙ୍କୁ ନୀରସ ମନେ ହୁଏ । କାଳିଦାସୀୟ ଗ୍ରନ୍ଥମାନଙ୍କର ରଚନାରେ ସମାଲୋଚକମାନେ ଉଦାହରଣ ସହକାରେ ଅଳଙ୍କାର, ପଦ, ବାକ୍ୟ ଆଦି ପ୍ରୟୋଗରେ ଔଚିତ୍ୟ ବିଦ୍ୟମାନ ବୋଲି ଦେଖାଇ ଥିଲେ ମଧ୍ୟ କେତେକ ସ୍ଥଳରେ ଔଚିତ୍ୟର ଭଙ୍ଗ ଘଟିଛି । ଉଦାହରଣ—'କୁମାର ସମ୍ଭବ'ରେ କାଳିଦାସ ଭଗବାନ୍ ଶିବଙ୍କର ସମ୍ମୋହନ ସକାଶେ ଅବତୀର୍ଣ୍ଣ ବସନ୍ତ ଋତୁର ବର୍ଣ୍ଣନା ନିମ୍ନ ଶ୍ଳୋକରେ କରିଅଛନ୍ତି—

वर्णप्रकर्षे सति कर्णिकारं धुनोति निर्गन्धतया स्म चेतः ।
प्रायेण सामग्र्यविधौ गुणानां पराङ्मुखी विश्वसृजः प्रवृत्तिः ॥

କୁମାର ୩, ୨୯

ଏଠାରେ କବି କର୍ଣ୍ଣିକାର ଫୁଲକୁ ସୁବାସିତ ନ କରିଥିବାରୁ ବିଧାତାଙ୍କୁ ଦୋଷ ଦେଇଅଛନ୍ତି । କିନ୍ତୁ ଏହାଦ୍ୱାରା ଶୃଙ୍ଗାର-ରସୋଦ୍ଦୀପନ ଏକବାରେ ହେଉ ନାହିଁ । ଏହି ହେତୁ ଏହିଠାରେ ଔଚିତ୍ୟ ଭଙ୍ଗ ଦୋଷ ଘଟିଅଛି ।

क्रोधं प्रभो संहर संहरेति यावद् गिरः खे मरुतां चरन्ति ।
तावत् स वह्निर्भवनेत्रजन्मा भस्मावशेषं मदनं चकार ॥

କୁମାର ୩, ୭୨

ଏହି ପଦ୍ୟରେ ମହାଦେବଙ୍କର ତୃତୀୟନେତ୍ରର ଅଗ୍ନିରେ ମଦନଦାହ ବର୍ଣ୍ଣିତ ହୋଇଅଛି । ଏହେତୁ ଏଠାରେ ମହା-ଦେବଙ୍କର ସ୍ୱଭାବାର୍ଥକ କୌଣସି ପର୍ଯ୍ୟାୟପଦ ନ ଦେଇ ଜଗତ୍ୟାର୍ଥକ 'ଭବ' ଶବ୍ଦର ପ୍ରୟୋଗ କରିଥିବାରୁ ଔଚିତ୍ୟଭଙ୍ଗ

ହୋଇଅଛି । ଏହିପରି ମାଳବିକାଗ୍ନିମିତ୍ର'ର ପ୍ରଥମ ଅଙ୍କରେ ପରିବ୍ରାଜିକାମୁଖରୁ **'अनिमित्तमिन्दुवदने किमत्रभवतः पराङ्मुखी भवती'** ଏହିପରି ଶବ୍ଦ ଶୁଣାଯାଇଅଛି । ଏକ ସ୍ତ୍ରୀ ଅନ୍ୟ ସ୍ତ୍ରୀକୁ 'ଇନ୍ଦୁବଦନା' କହିବା ଅସଙ୍ଗତ ଦେଖାଯାଉଅଛି । ଏହିହେତୁ ଏହିଠାରେ ମଧ୍ୟ ଔଚିତ୍ୟଭଙ୍ଗ ଦୋଷ ଘଟିଅଛି ।

**୪ ରସଦୋଷ :**—କବି କୌଣସି ରସର ବର୍ଣ୍ଣନା କଲେ ତାକୁ ପ୍ରବାହ ରୂପରେ ଅଖଣ୍ଡ କରି ବର୍ଣ୍ଣନା କରିବା ଉଚିତ । ମଧ୍ୟ ମଧ୍ୟରେ ଅନ୍ତରାୟ ଘଟିଲେ ସହୃଦୟ ପାଠକ ବିରସ ହୋଇଯାଏ । 'କୁମାରସମ୍ଭବ'ର ଚତୁର୍ଥ ସର୍ଗରେ ପତି କନ୍ଦର୍ପ ଭସ୍ମାବଶେଷ ହେବା ଦେଖି ରତି ଯେଉଁ କରୁଣ ବିଳାପ କରିଥିଲେ, ତାର ବର୍ଣ୍ଣନା ଦେଖାଯାଏ । 'ସାହିତ୍ୟ ଦର୍ପଣ'ରେ କୁହାଯାଇ ଅଛି—ସେ ମଧ୍ୟରେ ବସନ୍ତର ଆଗମନ ବର୍ଣ୍ଣନା କରିବାଦ୍ୱାରା ରସ ହାନି ଘଟିଅଛି । ସେହିପରି ରଘୁବଂଶର ତାଡ଼କାବଧବର୍ଣ୍ଣନରେ

**'राममन्मथशरेण ताड़िता दुस्सहेन हृदये निशाचरी ।**
**गन्धवद्रुधिरचन्दनोक्षिता जीवितेशवसतिं जगाम सा ॥'**

(୧୧, ୧୦) ଏହି ଶ୍ଳୋକ ଦିଆହୋଇଅଛି । ଏଠାରେ ପରସ୍ପର ବିରୋଧୀ ଶୃଙ୍ଗାର ଓ ବୀଭତ୍ସ ରସର ସାହଚର୍ଯ୍ୟ ବର୍ଣ୍ଣନାରେ ରସଭଙ୍ଗ ଘଟିଅଛି ।

ଏହା ଛଡ଼ା ଆଲଙ୍କାରିକମାନେ ନିଜ ନିଜ ଗ୍ରନ୍ଥରେ ଅବିମୃଷ୍ଟ-ବିଧେୟାଂଶତ୍ୱ, ଭଗ୍ନପ୍ରକ୍ରମତ୍ୱ, ଅକ୍ରମତ୍ୱ, ଶ୍ରୁତିକଟୁତ୍ୱ, ନିହତାର୍ଥତ୍ୱ, ଅନୁଚିତାର୍ଥତ୍ୱ ପ୍ରଭୃତି ଦୋଷମାନଙ୍କର ମଧ୍ୟ ଗୋଟିଏ ଗୋଟିଏ ବା ଦୁଇଟି ଲେଖାରେ ଉଦାହରଣ ଦେଇଅଛନ୍ତି । ଗ୍ରନ୍ଥ-ବିସ୍ତାର ଭୟରେ ସେ ସମସ୍ତର ବିଚାର ଏହିଠାରେ କରାଯାଇ ପାରିବ ନାହିଁ । କେତେକ ସ୍ଥଳରେ ସମାଲୋଚକମାନେ ଦୋଷ

ପ୍ରଦର୍ଶନ କରିବାକୁ ଯାଇ କବିଙ୍କ ପ୍ରତି ଅନ୍ୟାୟ ମଧ୍ୟ କରି ଅଛନ୍ତି ।

ଉଦାହରଣ—

**काप्यभिख्या तयोरासीद् व्रजतोः शुद्धवेषयोः ।**
**हिमनिर्मुक्तयोर्योगे चित्राचन्द्रमसोरिव ॥**

ରଘୁ ୧, ୪୬

ଏହି ପଦ୍ୟରେ ବଶିଷ୍ଠାଶ୍ରମ ଅଭିମୁଖରେ ସ୍ୱଚ୍ଛ ଶୁକ୍ଳବସ୍ତ୍ର ଧାରଣ କରି ପ୍ରସ୍ଥାନ କରୁଥିବା ରାଜା ଓ ରାଣୀଙ୍କର ହିମ ନିର୍ମୁକ୍ତ ହେବା ହେତୁ ଉଜ୍ଜ୍ୱଳ ଚନ୍ଦ୍ର ଓ ଚିତ୍ରାନକ୍ଷତ୍ର ସହିତ ଉପମା କରି ଦେଇଅଛନ୍ତି । ଏହି ଉପମାରେ ଲିଙ୍ଗ ଭେଦ ଓ ବଚନଭେଦ ଦୋଷ ନାହିଁ, ତଥାପି ଚନ୍ଦ୍ର ଓ ତାରା ଯେପରି ସୁନ୍ଦର ଦେଖାଯାନ୍ତି, ସେହିପରି ରାଜା ଓ ରାଣୀ ସୁନ୍ଦର ଦେଖାଯାଉଥିଲେ । ଏଥିପାଇଁ କାଳଭେଦ ଥିବାରୁ ବିଶ୍ୱନାଥ ଭଗ୍ନପ୍ରକ୍ରମ ଦୋଷ ଦେଖାଇଅଛନ୍ତି । ଏହିପରି ସୂକ୍ଷ୍ମ ଦୃଷ୍ଟିରେ ସମସ୍ତ ଦେଖିବାକୁ ଗଲେ କାଳିଦାସଙ୍କ ପରି ଅନ୍ୟାନ୍ୟ କବିମାନଙ୍କର ଶତଶତ ଉପମା ଦୁଷ୍ଟ ବୋଲି ମାନିବାକୁ ହେବ । ଅତଏବ କାଳ ବାଧ୍ୟାଦି ଭେଦ ଥିଲେ ମଧ୍ୟ ସହୃଦୟ-ମାନଙ୍କର ଯଦି ଉଦ୍‌ବେଗ ଜାତ ହୁଏ ନାହିଁ, ତେବେ ସେଠାରେ ଦୋଷ ହେବ ନାହିଁ ବୋଲି 'କାବ୍ୟାଦର୍ଶ'ର ନିୟମ ଗ୍ରହଣୀୟ ବୋଲି ମନେ ହୁଏ । ଏହିପରି **'पदं सहेत भ्रमरस्य पेलवं शिरीषपुष्पं न पुनः पतत्रिणः'** ( କୁମାର, ୫, ୦ ) **सा संन्यस्ता-भरणमबला पेलवं धारयन्ती** (ମେଘ ୭୮) **'नवमालिकाकुसुमपेलवा'** (ଶାକୁନ୍ତଳ ୧) ଇତ୍ୟାଦି ସ୍ଥାନରେ କୋମଳ ଅର୍ଥରେ ପେଲବ

ଶବ୍ଦର ପ୍ରୟୋଗ କାଳିଦାସ କରି ଅଛନ୍ତି । ଏହି ଶବ୍ଦ କାଳିଦାସଙ୍କର ବିଶେଷ ପ୍ରିୟ ଥିଲା । ତଥାପି 'ପେଲ' ଅଂଶରେ ତାତ୍କାଳିକ କାଟୀ (ଗୁଜରାଟୀ) ଅପଭ୍ରଂଶରେ ଅଶ୍ଳୀଳ ଅର୍ଥ ପ୍ରକାଶ ପାଉଥିବାରୁ କାଳିଦାସଙ୍କର ଶତଶତ ବର୍ଷ ପରେ ଉତ୍ପନ୍ନ ମମ୍ମଟ, ବିଶ୍ୱନାଥ ପ୍ରଭୃତି ଆଳଙ୍କାରିକମାନେ ଏହି ଶବ୍ଦର ପ୍ରୟୋଗ ଦୋଷାବହ ବୋଲି ସ୍ଥିର କରିଅଛନ୍ତି । ଆମ୍ଭମାନଙ୍କୁ ଏ ସମସ୍ତ ଅସୂୟାପରବଶତାର ଉଦ୍ରେକ ବୋଲି ମନେ ହୁଏ । କବି ସ୍ୱପ୍ନରେ ସୁଦ୍ଧା ଭାବି ନ ଥିବେ ଯେ 'ତାଙ୍କର ଶବ୍ଦ ସେହିପରି ଘୃଣୋତ୍ପାଦକ ଅର୍ଥ ପ୍ରକାଶ କରିବ ।' ଭବିଷ୍ୟତରେ କୌଣସି ଭାଷାରେ କୌଣସି ସମୟରେ ଏହାର ଅଶ୍ଳୀଳ ଅର୍ଥ ହେବ ବୋଲି କବି ଅଭିଜ୍ଞ ନ ଥିଲେ, ସୁତରାଂ ଜାଣିପାରି ନ ଥିଲେ । ଅତଏବ ଏପରି ସ୍ଥଳରେ ଏହି ଅଶ୍ଳୀଳତା ଦୋଷ ଦେବା ଉଚିତ ନୁହେଁ ।

ଆଳଙ୍କାରିକମାନେ ଯେତେ ଯେତେ ଦୋଷ ଦେଖାଇ ଅଛନ୍ତି, ସେ ସମସ୍ତ କାଳିଦାସଙ୍କର ବିଶାଳ ଗ୍ରନ୍ଥମାନଙ୍କର ତୁଳନାରେ ନିତାନ୍ତ ନଗଣ୍ୟ । ଏହାଙ୍କ ଗ୍ରନ୍ଥମାନଙ୍କର ଗୁଣ-ସନ୍ନିପାତରେ ଏକବାରେ ଲୁଚିଯାନ୍ତି । ଏହିହେତୁ କାଳିଦାସଙ୍କ ବାଣୀର ବର୍ଣ୍ଣନା କରିବାକୁ ଯାଇ ଏକ ସହୃଦୟ ଗ୍ରନ୍ଥକାର 'ନିର୍ଦୋଷ' ବିଶେଷଣ ଦେଇଅଛନ୍ତି । ଶ୍ରୀକୃଷ୍ଣ କବି ନିଜ 'ଭରତ ଚରିତ' କାବ୍ୟର ଆରମ୍ଭରେ କାଳିଦାସଙ୍କର ଭାଷାକୁ ଏହିପରି ବର୍ଣ୍ଣନା କରିଅଛନ୍ତି —

**अस्पृष्टदोषा नलिनीव दृष्टा हारावलीव ग्रथिता गुणौघैः ।**
**प्रियाङ्कपालीव विमर्दहृद्या न कालिदासादपरस्य वाणी ॥**

କମଳିନୀ ପରି ଦୋଷ ବରହିତା, (ରାତ୍ରରେ ଅବିକଶିତା ଅନ୍ୟ ପକ୍ଷରେ ଦୋଷରହିତା) ମୁକ୍ତାମାଳା ପରି ଗୁଣସମୂହଯୁକ୍ତା (ଅନେକସୂତ୍ରଯୁକ୍ତା ଅନ୍ୟ ପକ୍ଷରେ ଅନେକଗୁଣଯୁକ୍ତା) ପ୍ରିୟତମାର ଅଙ୍ଗ ପରି ବିମର୍ଦ୍ଦରେ (ସଂବାଦନ ବା ସମାଲୋଚନାରେ) ଆହ୍ଲାଦ-ଦାୟିନୀ ଭାଷା କାଳିଦାସଙ୍କ ଛଡ଼ା ଅନ୍ୟ କୌଣସି କବିଙ୍କର ଦେଖାଯାଏ ନାହିଁ । ✳

—o—

✳ ଏହି ଶ୍ଳୋକରେ ଶ୍ଳିଷ୍ଟବିଶେଷଣମାନଙ୍କର ପ୍ରଥମ ଅର୍ଥ କମଳିନୀ, ମୁକ୍ତାହାର ଓ ଅଙ୍ଗ ଉପମାନ ପ୍ରତି ଓ ଦ୍ୱିତୀୟ ଅର୍ଥ କାଳିଦାସଙ୍କର ବାଣୀ ପ୍ରତି ପ୍ରଯୋଜ୍ୟ ।

# ୮ କାଳିଦାସବିଷୟକ ବିଚାର

**स्वादुकाव्यरसोन्मिश्रं शास्त्रमप्युपभुञ्जते ।**
**प्रथमालीढ़मधवः पिबन्ति कटु भेषजम् ॥**

ଭାମହକୃତ 'କାବ୍ୟାଳଙ୍କାର' ୫.୩

'ଯେପରି ରୋଗୀମାନେ ପ୍ରଥମେ ମଧୁର ମଧୁ ଆସ୍ୱାଦନ କରି ପରେ ସହଜରେ କଟୁ ଔଷଧ ସେବନ କରନ୍ତି, ସେହିପରି ସହୃଦୟମାନେ ପ୍ରଥମେ ସ୍ୱାଦୁ କାବ୍ୟରସ ଆସ୍ୱାଦନ କରି ପରେ ନିବୋଧ ଶାସ୍ତ୍ରର ନିଗୂଢ଼ ଅର୍ଥ ବୁଝିପାରନ୍ତି ।'

କାଳିଦାସଙ୍କ ଚରିତ୍ର ବର୍ଣ୍ଣନା କଲା ସମୟରେ ଚତୁର୍ଥ ପରିଚ୍ଛେଦରେ ଆମେ ଦେଖାଇଅଛୁଁ ଯେ ସେ ଅନେକ ଗ୍ରନ୍ଥର ପରିଶୀଳନ ତଥା ବିବିଧ ବିଷୟରେ ସୂକ୍ଷ୍ମ ଅଭ୍ୟାସ କରିଥିଲେ । ଧର୍ମ, ଦର୍ଶନ, ସମାଜସ୍ଥିତି, ରାଜତନ୍ତ୍ର, ଶିକ୍ଷା ପ୍ରଭୃତି ଅନେକ ବିଷୟରେ ସେ ମନନପୂର୍ବକ ନିଜ ମତ ନିଶ୍ଚିତ କରି, ସ୍ୱଗ୍ରନ୍ଥରେ ସେ ସମସ୍ତ ବିଷୟ ନିବଦ୍ଧ କରିଅଛନ୍ତି । ପ୍ରଥମରେ ଆମ୍ଭେ କହିଅଛୁଁ ଯେ ସେ ସମସ୍ତ ବିଷୟରେ ଜ୍ୱଳନ୍ତ ଉଦାହରଣ ଦେଖିବାକୁ ମିଳେ । ବର୍ତ୍ତମାନ ସେ ସମସ୍ତ ଆଧାର କରି କାଳିଦାସଙ୍କର ସେ ସମସ୍ତ ବିଷୟରେ ମତ କଅଣ ଥିଲା, ତାହା ଅନୁମାନ କରାଯାଇପାରେ । ସେ ମଧ୍ୟରୁ କେତେକ ବିଶିଷ୍ଟ ବିଷୟର ଏହି ପ୍ରକରଣରେ ଚର୍ଚ୍ଚା କରାଯିବ ।

**ଧର୍ମ ଓ ତତ୍ତ୍ୱଜ୍ଞାନ** :— ଏହି ଦୁଇଟି ବିଷୟ ଅତ୍ୟନ୍ତ ଗୁରୁତର । ସମାଜର ରକ୍ଷା ଅଭ୍ୟୁଦୟ ଓ କଲ୍ୟାଣ ସକାଶେ ଧର୍ମର

ଅତ୍ୟନ୍ତ ଆବଶ୍ୟକତା ରହିଛି । 'ଧାରଣାଦ୍ଧର୍ମମିତ୍ୟାହୁଃ' 'ଯତୋଽଭ୍ୟୁଦୟ ନିଃଶ୍ରେୟସସିଦ୍ଧିଃ ସ ଧର୍ମଃ' ଇତ୍ୟାଦି ଧର୍ମର ବ୍ୟାଖ୍ୟା ପ୍ରସିଦ୍ଧ ହୋଇ ରହିଛି । ଭାରତ ବର୍ଷରେ ଧର୍ମର ବିଶେଷ ପ୍ରାଧାନ୍ୟ ରହିଅଛି । ଏହି ପୁଣ୍ୟ ଭୂମିରେ କେବଳ ବୈଦିକ, ବୌଦ୍ଧ ଓ ଜୈନ—ଏହି ତିନି ପ୍ରକାର ପୃଥିବୀବିଖ୍ୟାତ ଉଦାର ଧର୍ମର ଉଦୟ ଓ ବିକାଶ ଘଟିଅଛି । ମନୁଷ୍ୟର ମନ ଉପରେ ଧାର୍ମିକ କଳ୍ପନାର ବିଶେଷ ପ୍ରଭାବ ପଡ଼ିଥାଏ ଏବଂ ତାହା ମନୁଷ୍ୟର ବ୍ୟାବହାରିକ ଜୀବନ ସଂଯମିତ କରିବାରେ ବିଶେଷ ସାହାଯ୍ୟ କରେ—ଏହି ବିଷୟ ମନେ ରଖି ଆମର ପ୍ରାଚୀନ ଋଷିମାନେ ଧର୍ମର ବ୍ୟାବହାରିକ ଜୀବନ ସହିତ ସମ୍ବନ୍ଧ କଳ୍ପନା କରି ଅଛନ୍ତି । ଧର୍ମରେ ଯଦି ତତ୍ତ୍ୱଜ୍ଞାନର ଆଧାର ନ ଥାଆନ୍ତା, ତେବେ ସେ ଅନ୍ଧ ବିଶ୍ୱାସରେ ପରିଣତ ହୋଇ ଥାଆନ୍ତା ଏବଂ କେତେକ ସମୟ ପରିସ୍ଥିତିର ଅନୁକୂଳ୍ୟବଶତଃ ଅଥବା ଧର୍ମସ୍ଥାପକଙ୍କର ଆକର୍ଷକ ବ୍ୟକ୍ତିଗତ ପ୍ରଭାବବଶତଃ ବିକାଶ ଲାଭ କଲେ ମଧ୍ୟ ଚିରସ୍ଥାୟୀ ହୋଇପାରନ୍ତା ନାହିଁ । ଏହି ଭାବ ମନେ ରଖି ବୌଦ୍ଧ ଓ ଜୈନ ଦାର୍ଶନିକମାନେ ନିଜ ନିଜ ଧର୍ମ ସହିତ ତତ୍ତ୍ୱଜ୍ଞାନର ସମ୍ବନ୍ଧ କଳ୍ପନା କରି ଅଛନ୍ତି । ହିନ୍ଦୁ ଧର୍ମର ତ ଆରମ୍ଭ-କାଳରୁ ତତ୍ତ୍ୱଜ୍ଞାନ ଏକ ଅଙ୍ଗ ହୋଇ ରହିଛି – ଏହା ଋଗ୍‌ବେଦର ତତ୍ତ୍ୱଜ୍ଞାନ ବିଷୟକ ସୂକ୍ତରୁ ପ୍ରମାଣିତ ହୁଏ ।

କାଳିଦାସଙ୍କ ସମୟ ହିନ୍ଦୁ ଧର୍ମର ଉତ୍ଥାନ କାଳ । ଜୈନ ବିଶେଷତଃ ବୌଦ୍ଧଧର୍ମର ପ୍ରବଳ ଆଘାତରେ ହିନ୍ଦୁ ଧର୍ମର ବିଚାରଶୀଳ ଉପଦେଷ୍ଟାମାନେ ସଚେତ ହୋଇ ଉଠୁଥିଲେ ଏବଂ ସେମାନେ ନିଜ ନିଜ ଧର୍ମଗ୍ରନ୍ଥମାନଙ୍କରୁ ଅନାବଶ୍ୟକ ଅଂଶମାନ ବାଦ୍ ଦେଇ

ଏବଂ ଅବଶିଷ୍ଟ ଅଂଶମାନଙ୍କୁ ସୁବଳ୍ପିତ ରୂପରେଖ ଦେଇ ପ୍ରଥମେ ସୂତ୍ରଗ୍ରନ୍ଥମାନଙ୍କର ଏବଂ ପରେ ସୁବିଧା ସ୍ମୃତିଗ୍ରନ୍ଥମାନଙ୍କର ରଚନା କରିଛନ୍ତି । ସଙ୍ଗେ ସଙ୍ଗେ ପ୍ରତିପକ୍ଷମାନଙ୍କଦ୍ୱାରା ଉପସ୍ଥାପିତ ତତ୍ତ୍ୱଜ୍ଞାନବନ୍ଧପୂର୍ଣ୍ଣ ଆକ୍ଷେପମାନଙ୍କୁ ବେଦାନ୍ତ ପ୍ରଭୃତି ଦର୍ଶନ-ସୂତ୍ରମାନଙ୍କରେ ଖଣ୍ଡନ କରିଅଛନ୍ତି ଏବଂ ତାଙ୍କର ବହୁବିଧ ପରିହାର କରିଅଛନ୍ତି । ସ୍ୱୟଂ ହିନ୍ଦୁଧର୍ମ ଏହି ସମୟରେ ବିବିଧ ପାରିପାର୍ଶ୍ୱିକ ପରିସ୍ଥିତିର ସମ୍ମୁଖୀନ ହୋଇଥିଲା । ବୌଦ୍ଧ ଧର୍ମକୁ ରାଜାଶ୍ରୟ ମିଳିବା ଫଳରେ ଅହିଂସାତତ୍ତ୍ୱର ପ୍ରଭାବ ଜନସାଧାରଣଙ୍କ ଉପରେ ପଡ଼ିଥିଲା, ଏବଂ ଲୋକମାନଙ୍କ ମନରେ ଯାଗଯଜ୍ଞାଦି ବୈଦିକ ଅନୁଷ୍ଠାନମାନଙ୍କ ପ୍ରତି ଅଶ୍ରଦ୍ଧା ଜାଗି ଉଠିଥିଲା । ବୌଦ୍ଧମାନଙ୍କଦ୍ୱାରା ପ୍ରଚାରିତ ଉପଦେଶାତ୍ମକ ନୀତିକାହାଣୀ-ବ୍ୟାଖ୍ୟାବଳୀରେ ଲୋକମାନଙ୍କର ମନରୁ ବର୍ଣ୍ଣାଶ୍ରମ ପ୍ରତି ଆସ୍ଥା ତୁଟି ଯାଉଥିଲା । ପ୍ରାଚୀନ ଗୁରୁବର୍ଣ୍ଣ୍ୟବ୍ୟବସ୍ଥା ବିକୃତ ହୋଇ ଯାଇଥିଲା । ସମସ୍ତ ଲୋକଙ୍କୁ ବୌଦ୍ଧଧର୍ମସ୍ୱୀକାରପୂର୍ବକ ବୌଦ୍ଧ ସଂଘରେ ପ୍ରବେଶ କରିବା ସକାଶେ ସୁବିଧା କରାଯାଇଥିବାରୁ ଭେକ୍ଷୁଅ ଓ ଭିକ୍ଷୁଣୀମାନଙ୍କର ସଂଖ୍ୟା ବଢ଼ି ଚାଲିଥିଲା । ଏହିପରି ବିଷମ ପରିସ୍ଥିତିରେ ରାଷ୍ଟ୍ରର ବିବେକୀ ସନାତନଧର୍ମାବଲମ୍ବୀ ମନୀଷିଗଣ ତାତ୍କାଳିକ ପରିସ୍ଥିତି ଦୃଷ୍ଟି ଆଗରେ ରଖି ହିନ୍ଦୁଧର୍ମର ପୁନଃସଂଗଠନ କରିବାସକାଶେ ଯାଜ୍ଞବଲ୍‌କ୍ୟ, ନାରଦ, କାତ୍ୟାୟନ ପ୍ରଭୃତି ସ୍ମୃତିଗ୍ରନ୍ଥମାନ ରଚନା କରିଥିଲେ । ତଥାପି ରାଜାଶ୍ରୟ ମିଳିନଥିବାରୁ କେତେକ ସମୟପର୍ଯ୍ୟନ୍ତ ସେ ସମସ୍ତ ଧାର୍ମିକ ତତ୍ତ୍ୱମାନ ଲୋକ ସମାଜରେ ପ୍ରସାର ଲାଭ କରିପାରି ନଥିଲା । ଖ୍ରୀଷ୍ଟାବ୍ଦ ଚତୁର୍ଥ ଶତାବ୍ଦୀର ପ୍ରାରମ୍ଭରେ ଗୁପ୍ତବଂଶର ଉଦୟ ହେଲା ଏବଂ ହିନ୍ଦୁମାନଙ୍କୁ ରାଜାଶ୍ରୟ ମିଳିଲା । ଗୁପ୍ତ-

ବଂଶୀୟ ସମ୍ରାଟମାନେ ହିନ୍ଦୁଧର୍ମର ପରମପୃଷ୍ଠପୋଷକ ଥିଲେ । ସେମାନେ ନିଜେ ଯାଗ ଯଜ୍ଞାଦି ଅନୁଷ୍ଠାନ କରୁଥିଲେ । ହିନ୍ଦୁ-ଦେବତାମାନଙ୍କ ସକାଶେ ମନ୍ଦିରମାନ ତୋଳାଉଥିଲେ ଏବଂ ହିନ୍ଦୁ-ଧର୍ମାବଲମ୍ବୀ ପଣ୍ଡିତମାନଙ୍କୁ ରାଜ୍ୟର ପ୍ରଧାନ ପ୍ରଧାନ ଅଧିକାରି-ପଦରେ ନିଯୁକ୍ତ କରୁଥିଲେ । ଏହିପରି ସେମାନେ ନିଜ ଧର୍ମର ପୁନରୁଦ୍ଧାର କରିବାକୁ ଚେଷ୍ଟା କରୁଥିଲେ । ଏହି ସମୟରେ ପ୍ରାଚୀନ ହିନ୍ଦୁ ସଂସ୍କୃତିର ଉଦାତ୍ତତତ୍ତ୍ୱ ଓ ଉଚ୍ଚ ଆଦର୍ଶମାନଙ୍କୁ ମନୋହର ରୂପରେଖ ଦେଇ ଜନସାଧାରଣଙ୍କ ସମ୍ମୁଖରେ ଉପସ୍ଥାପିତ କରି ସେମାନଙ୍କର ମନ ଆକର୍ଷଣ କରିବା ଦରକାର ପଡ଼ୁଥିଲା । ଏହି କାର୍ଯ୍ୟ କାବ୍ୟନାଟକ ପରି ମନୋରଞ୍ଜକଗ୍ରନ୍ଥରେ ଉପଦେଶାମୃତ ପିଆଇବାକୁ ସମର୍ଥ ଗ୍ରନ୍ଥମାନଙ୍କ ଦ୍ୱାରା କେବଳ ସମ୍ଭବପର ହେଉଥିଲା । ମମ୍ମଟ ନିଜ 'କାବ୍ୟ ପ୍ରକାଶ'ରେ 'କାନ୍ତା-ସମ୍ମିତତୟୋପଦେଶଯୁଜେ' ଏହା କାବ୍ୟର ପ୍ରଧାନ ପ୍ରୟୋଜନ ବୋଲି ନିରୂପଣ କରିଅଛନ୍ତି । ଯେପରି ସୁନ୍ଦରୀ ସ୍ତ୍ରୀ ନିଜ ରମଣୀୟ ହାବଭାବରେ ପ୍ରିୟତମର ମନ ଆକୃଷ୍ଟ କରି, ତାଙ୍କଦ୍ୱାରା ନିଜର ଅଭୀଷ୍ଟ ସାଧିତ କରିଥାଏ, ସେହିପରି କବି ମଧ୍ୟ ନିଜର ମନୋରମ କାବ୍ୟନାଟକାଦିଗ୍ରନ୍ଥଦ୍ୱାରା ପାଠକ ଓ ଦର୍ଶକ-ମାନଙ୍କ ମନରେ ନିଜ ସଦୁପଦେଶମାନ ପ୍ରତିବିମ୍ବିତ କରିଥାଏ । ଏହି ହେତୁ ମହାପଣ୍ଡିତ ଅଶ୍ୱଘୋଷ ସ୍ୱରଚିତ ନୀରସତତ୍ତ୍ୱଜ୍ଞାନ-ସମ୍ବଳିତ ଗ୍ରନ୍ଥମାନଙ୍କଦ୍ୱାରା ସାଧାରଣ ଲୋକମାନଙ୍କର ଦୃଷ୍ଟି ଆକର୍ଷଣ କରିହେବ ନାହିଁ ଭାବି, ବୌଦ୍ଧଧର୍ମର ପ୍ରଚାର ସକାଶେ 'ସୌନ୍ଦରନନ୍ଦ' ପ୍ରଭୃତି କାବ୍ୟ ଏବଂ 'ସାରିପୁତ୍ରପ୍ରକରଣ' ପ୍ରଭୃତି ନାଟକ ଲେଖିଅଛନ୍ତି । ଲଳିତ ବାଙ୍ମୟ ସମାଜସଂସ୍କାରରେ କିପରି ସାହାଯ୍ୟ କରେ—ଏହା ସ୍ୱର୍ଗୀୟ ପ୍ରେମଚନ୍ଦ ନିଜ ଅବାନ୍ତ-

ବୁଦ୍ଧମନୋରଞ୍ଜକ ଉପନ୍ୟାସମାନଙ୍କଦ୍ୱାରା ଭଲରୂପେ ପ୍ରମାଣିତ କରି ଅଛନ୍ତି । କାଳିଦାସ ନିଜ ଗ୍ରନ୍ଥମାନଙ୍କର କୌଣସି ସ୍ଥାନରେ ସ୍ୱୟଂ ଅଶ୍ୱଘୋଷଙ୍କ ପରି 'ମୁଁ ହିନ୍ଦୁଧର୍ମର ପ୍ରସାର ସକାଶେ କାବ୍ୟ ଓ ନାଟକ ଲେଖୁଅଛି' ବୋଲି ପ୍ରକାଶ କରି ନାହାନ୍ତି । ତଥାପି ତାତ୍କାଳିକ ପରିସ୍ଥିତି ଏବଂ ତାଙ୍କର ଗ୍ରନ୍ଥମାନଙ୍କର ଉଚ୍ଚ ଆଦର୍ଶରେ ଅନୁପ୍ରାଣିତ ବ୍ୟକ୍ତିମାନଙ୍କର ମନୋହର ଚିତ୍ର ଦେଖିଲେ ତାଙ୍କର ଧର୍ମ ପ୍ରଚାର ମଧ୍ୟ ଅପ୍ରତ୍ୟକ୍ଷ ଉଦ୍ଦେଶ୍ୟ ଥିଲା ବୋଲି ଜଣାଯାଏ ।

କାଳିଦାସଙ୍କ ସମୟରେ ଅଶ୍ୱିନୀକୁମାର, ଧର୍ମ, ଇନ୍ଦ୍ର, ବରୁଣ, କୁବେର ପ୍ରଭୃତି ପ୍ରାଚୀନ ଦେବତାମାନଙ୍କର ପୂଜା-ପ୍ରଚାର ଉଠିଯାଇଥିଲା ଏବଂ ସେମାନଙ୍କ ସ୍ଥାନ ବ୍ରହ୍ମା, ବିଷ୍ଣୁ ଓ ଶିବ ଗ୍ରହଣ କରିଥିଲେ । ଆଜିକାଲି ଦେବତାମାନଙ୍କ ଉପାସକମାନଙ୍କ-ମଧ୍ୟରେ ପରସ୍ପର ବିରୋଧ ଦେଖାଯାଏ । ଏହାର ନାମ ଗନ୍ଧ ସୁଦ୍ଧା ସେ ସମୟରେ ନ ଥିଲା । ସମ୍ଭବତଃ ବୌଦ୍ଧମାନଙ୍କର ଆକ୍ରମଣ-ଫଳରେ ବିଭିନ୍ନ ଦେବତାମାନଙ୍କର ଉପାସକମାନେ ନିଜ ନିଜ ଭେଦଭାବ ଭୁଲିଯାଇ ଏକ ହୋଇଯାଇ ଥିଲେ ଓ ସେ ସମୟର ଦାର୍ଶନିକମାନଙ୍କର ଶିକ୍ଷା ମଧ୍ୟ ତଦନୁରୂପ ଥିଲା । କାରଣ ଯାହା ହେଉ ପଛେ, ସେ ସମୟରେ ହିନ୍ଦୁମାନଙ୍କ ମଧ୍ୟରେ ଏକତା ଓ ମିତ୍ରଭାବ ଥିଲା—ଏଥିରେ ସନ୍ଦେହ ନାହିଁ। ଖାଲି ତାହା ନୁହେଁ, ଏକ ପରିବାରରେ ମଧ୍ୟ ମାତା ପିତା ଏକ ଦେବତାର ଉପାସକ ଥିଲେତ ପୁତ୍ର ଅନ୍ୟଦେବତାର ଉପାସକ ଥିଲେ—ଏହା ବ୍ୟକାଟକ ରାଜା ଦ୍ୱିତୀୟ ପ୍ରବରସେନଙ୍କ ଉଦାହରଣଦ୍ୱାରା ଆମେ ଆଗରୁ ପ୍ରମାଣିତ କରିଅଛୁଁ । କାଳିଦାସ ଶିବଙ୍କର ଉପାସକ ଥିଲେ । ଏହାଙ୍କର ସମସ୍ତ ନାଟକର ନାନ୍ଦୀ-ଶ୍ଳୋକରେ ଶିବଙ୍କର ସ୍ତୁତି ଦେଖାଯାଏ । 'ମାଳବିକାଗ୍ନିମିତ୍ର'ର

ଆରମ୍ଭରେ କାଳିଦାସ ନିମ୍ନଲିଖିତ ଶ୍ଳୋକରେ ନିଜ ଇଷ୍ଟ ଦେବତାଙ୍କର ସ୍ମରଣ କରି ଅଛନ୍ତି—

**एकैश्वर्य्ये स्थितोऽपि प्रणतबहुफले यः स्वयं कृत्तिवासाः**
**कान्तासम्मिश्रदेहोऽप्यविषयमनसां यः परस्ताद् यतीनाम् ।**
**अष्टाभिर्यस्य कृत्स्नं जगदपि तनुभिर्बिभ्रतो नाभिमानः**
**सन्मार्गालोकनाय व्यपनयतु स वस्तामसीं वृत्तिमीशः ।**

'ଭଗବାନ୍ ମହାଦେବ ସମସ୍ତ ଜଗତର ପ୍ରଭୁ ଏବଂ ଭକ୍ତମାନଙ୍କର ବହୁବିଧ ମନୋବାଞ୍ଛା ପୂର୍ଣ୍ଣ କରନ୍ତି କିନ୍ତୁ ନିଜେ ଗଜଚର୍ମ ଧାରଣ କରନ୍ତି, ନିଜେ ଅର୍ଦ୍ଧାଙ୍ଗରେ ପ୍ରେୟସୀଙ୍କୁ ଧାରଣ କରିଥିଲେ ମଧ୍ୟ, ଏହାଙ୍କର ସ୍ୱରୂପ ବିଷୟୋପଭୋଗବିରତ ଯତିମାନଙ୍କ ଧ୍ୟାନର ମଧ୍ୟ ଗୋଚର ନୁହେଁ, ଆଠଟି ରୂପ ଧାରଣ କରି ସମଗ୍ର ଜଗତ ଧାରଣ କଲେ ମଧ୍ୟ ଯାହାଙ୍କର ତିଳେମାତ୍ର ଅଭିମାନ ନାହିଁ', ଇତ୍ୟାଦି ରୂପରେ କବି ବିରୋଧାଭାସରେ ମହାଦେବଙ୍କର ସ୍ୱରୂପ ବର୍ଣ୍ଣନ କରିଅଛନ୍ତି । ଏହି କଳ୍ପନାର ବିକାଶ ମଧ୍ୟ ଅନ୍ୟାନ୍ୟ ନାଟକମାନଙ୍କର ନାନ୍ଦୀପଦ୍ୟରେ କରି ଅଛନ୍ତି । 'ଶାକୁନ୍ତଳ'ର ଭରତ ବାକ୍ୟରେ —

**ममापि स क्षपयतु नीललोहितः**
**पुनर्भवं परिगतशक्तिरात्मभूः ॥**

ଏହାପରେ ନିଜକୁ ପୁନର୍ଜନ୍ମରୁ ମୁକ୍ତ କରିବା ପାଇଁ ମହାଦେବଙ୍କୁ ପ୍ରାର୍ଥନା କରି ଅଛନ୍ତି । କବି 'କୁମାର ସମ୍ଭବ'ରେ ମହାଦେବଙ୍କ ଚରିତର ଏକ ରମଣୀୟ ଅଂଶ ବର୍ଣ୍ଣନା କରିଅଛନ୍ତି ।

ଏହି କାବ୍ୟର ଷଷ୍ଠ ସର୍ଗରେ ଋଷିମାନଙ୍କଦ୍ୱାରା ମହାଦେବଙ୍କର ସ୍ତୁତି କରାଇଅଛନ୍ତି । ତହିଁରେ ମହାଦେବ ଜଗତର ଉତ୍ପତ୍ତି, ସ୍ଥିତି ଓ ପ୍ରଳୟକର୍ତ୍ତା ଓ ପ୍ରାଣିମାନର ଅନ୍ତର୍ଯାମୀ ବୋଲି ବର୍ଣ୍ଣନା କରି ଅଛନ୍ତି । ସେହିପରି ଦ୍ୱିତୀୟ ସର୍ଗରେ ମଧ୍ୟ ଦେବତାମାନଙ୍କର ପ୍ରାର୍ଥନାର ଉତ୍ତର ଦେଇ ସମୟରେ ବ୍ରହ୍ମା ନିମ୍ନଲିଖିତ ଶ୍ଳୋକରେ 'ସ୍ୱୟଂ ନିଜେ ଅଥବା ବିଷ୍ଣୁ ମଧ୍ୟ ମହାଦେବଙ୍କର ପ୍ରଭାବ ଭଲ କରି ଜାଣି ନାହାନ୍ତି' ବୋଲି ଉଲ୍ଲେଖ କରିଛନ୍ତି —

**स हि देवः परं ज्योतिस्तमःपारे व्यवस्थितम्**
**परिच्छिन्नप्रभावर्द्धिर्न मया न च विष्णुना ॥**

କୁମାର ୨, ୫୮

ଏହି ହେତୁ କାଳିଦାସ ଶିବୋପାସକ ଥିଲେ—ଏଥିରେ କୌଣସି ଶଙ୍କା ନାହିଁ । ତାହା ବୋଲି ସେ କୌଣସି ସଙ୍କୀର୍ଣ୍ଣ ଶୈବ-ସମ୍ପ୍ରଦାୟର ଅନୁଯାୟୀ ଥିଲେ ବୋଲି କହିହେବ ନାହିଁ । କାରଣ, ନିଜ ଗ୍ରନ୍ଥମାନଙ୍କର କୌଣସି ସ୍ଥଳରେ ମଧ୍ୟ ସାମ୍ପ୍ରଦାୟିକ ପାରିଭାଷିକ ଶବ୍ଦ ବା ବିଶିଷ୍ଟ ଅର୍ଥରେ ଉଲ୍ଲେଖ କରି ନାହାନ୍ତି । ଆଗରୁ ଆମେ କହିଅଛୁଁ ଯେ ସେ ଉପନିଷଦ୍ ତଥା ଭଗବଦ୍‌ଗୀତା ଭଲ ରୂପେ ପରିଶୀଳନ କରିଥିଲେ । ତାହାର ଫଳରେ ତାଙ୍କର ଦୃଷ୍ଟି ବିଶାଳ ଓ ଧାର୍ମିକ ବିଚାର ବହୁତ ଉଦାର ହୋଇପାଇଥିଲା । 'କୁମାର ସମ୍ଭବ'ର ଦ୍ୱିତୀୟ ସର୍ଗରେ ବ୍ରହ୍ମା-ଦେବଙ୍କର ତଥା 'ରଘୁବଂଶ'ର ଦଶମ ସର୍ଗରେ ବିଷ୍ଣୁଙ୍କର ବର୍ଣ୍ଣନା ପରମେଶ୍ୱର ରୂପରେ କରିଅଛନ୍ତି —

तिसृभिस्त्वमवस्थाभिर्महिमानमुदीरयन् ।
प्रलयस्थितिसर्गाणामेकः कारणतां गतः ॥

କୁମାର ୨, ୬

नमो विश्वसृजे पूर्वं विश्वं तदनु बिभ्रते ।
अथ विश्वस्य संहर्त्रे तुभ्यं त्रेधास्थितात्मने ॥

ରଘୁ ୧୦, ୧୬

ବ୍ରହ୍ମା, ବିଷ୍ଣୁ ଓ ମହାଦେବ ଏକମାତ୍ର ପରମେଶ୍ୱରଙ୍କର କାର୍ଯ୍ୟ ବିଶେଷ ବିଭିନ୍ନରୂପ ବୋଲି ଜଣାଯାଏ । ଆଉ ବିଶେଷ କେତେବେଳେ ବ୍ରହ୍ମାଙ୍କର, କେତେବେଳେ ବିଷ୍ଣୁଙ୍କର ଏବଂ କେତେବେଳେ ମହାଦେବଙ୍କର ଶ୍ରେଷ୍ଠତା ଦେଖାଯାଉଥାଏ । ଏହିହେତୁ ଶ୍ରେଷ୍ଠକନିଷ୍ଠଭାବ ସେମାନଙ୍କ ମଧ୍ୟରେ ସମାନ ଦେଖାଯାଏ । ଏହି ଉଦାର ତତ୍ତ୍ୱଭାବ ନିମ୍ନଲିଖିତ ଶ୍ଳୋକରୁ ସ୍ପଷ୍ଟ ହୁଏ—

एकैव मूर्त्तिर्बिभिदे त्रिधा सा सामान्यमेषां प्रथमावरत्वम् ।
विष्णोर्हरस्तस्य हरिः कदाचिद्वेधास्तयोस्तावपि धातुराद्यौ ॥

କୁମାର ୭, ୪୦

ଏହା ମଧ୍ୟ ସନାତନ ଧର୍ମର ମର୍ମ । ଭଗବଦ୍‌ଗୀତାରେ କୁହାଯାଇଅଛି (୭, ୨୧) ଯେ ମନୁଷ୍ୟ ଯେ କୌଣସି ଦେବତାଙ୍କୁ ପୂଜା କଲେ ମଧ୍ୟ, ସେ ସମସ୍ତ ଏକ ପରମେଶ୍ୱରଙ୍କ ପାଖରେ ପହଞ୍ଚେ, ଏବଂ ତାହାଦ୍ୱାରା ତାର ଇଚ୍ଛା ପୂର୍ଣ୍ଣ ହୁଏ । 'କୁମାର ସମ୍ଭବ' ତଥା 'ରଘୁବଂଶ'ର ବିଭିନ୍ନ ପ୍ରସଙ୍ଗରେ ବ୍ରହ୍ମା, ବିଷ୍ଣୁ ଓ ମହା-

ଦେବଙ୍କର ସ୍ତୁତିମାନଙ୍କରେ କାଳିଦାସ ପରମେଶ୍ୱରଙ୍କର କିପରି ବର୍ଣ୍ଣନା କରିଅଛନ୍ତି—ଦେଖନ୍ତୁ—

ପରମେଶ୍ୱରଙ୍କର ସ୍ୱରୂପ ଯଥାର୍ଥରୂପେ ବର୍ଣ୍ଣନା କରିବା ଅସମ୍ଭବ। କାରଣ, ତାହା ମନ ଓ ବଚନର ଅଗୋଚର—ଏହିପରି କାଳିଦାସ ଅନେକ ସ୍ଥଳରେ ବର୍ଣ୍ଣନା କରିଅଛନ୍ତି। ପ୍ରତ୍ୟକ୍ଷ, ଅନୁମାନ, ଆପ୍ତବଚନ କିମ୍ବା ବେଦ ଜ୍ଞାନର ପ୍ରଧାନ ସାଧନ। ବସ୍ତୁ ଇନ୍ଦ୍ରିୟଗୋଚର ହେଲେ, ତାର ଜ୍ଞାନ ସୁଲଭ ହୋଇଥାଏ—ଏହା ସର୍ବସାଧାରଣ ଅନୁଭବ। ଈଶ୍ୱର ନିଜେ ସାଧାରଣ ଜନ ସମାଜର ପ୍ରତ୍ୟକ୍ଷ ହୁଅନ୍ତି ନାହିଁ, ପୁଣି ତାଙ୍କର ଐଶ୍ୱର୍ଯ୍ୟଜ୍ଞାନ ଯେଉଁ ମହତ୍ତ୍ୱମାନଙ୍କରେ ନିହିତ (ଯଥା ପୃଥିବୀ ପ୍ରଭୃତି) ସେମାନଙ୍କର ଜ୍ଞାନ ମଧ୍ୟ ଯେତେବେଳେ ଭଲ ରୂପରେ ହୋଇପାରୁ ନାହିଁ, କେବଳ ଅନୁମାନ ଓ ବେଦବାକ୍ୟ କେବଳ ଯାହାଙ୍କୁ ଜାଣିବା ସକାଶେ ଏକମାତ୍ର ଆଧାର, ସେହି ଈଶ୍ୱରଙ୍କ ଯଥାର୍ଥ ସ୍ୱରୂପ କଳ୍ପନା ଆମର ହେଉନାହିଁ ବୋଲି ଆଶ୍ଚର୍ଯ୍ୟ ହେବାର କାରଣ ନାହିଁ। ଏହି ଭାବ କବି ନିମ୍ନଲିଖିତ ଶ୍ଳୋକରେ ବ୍ୟକ୍ତ କରି ଅଛନ୍ତି—

प्रत्यक्षोऽप्यपरिच्छेद्यो मह्यादिर्महिमा तव ।
आप्तवागनुमानाभ्यां साध्यं त्वां प्रति का कथा ॥

ରଘୁ ୧୦, ୧୨,

ଈଶ୍ୱରଙ୍କଠାରେ ଅନେକ ବିରୁଦ୍ଧ ଗୁଣମାନଙ୍କର ସମାବେଶ ଦେଖାଯାଏ। ଏହିହେତୁ କେହିହେଲେ ତାଙ୍କର ସ୍ୱରୂପ ଯଥାର୍ଥ-ରୂପରେ ଜାଣିପାରୁ ନାହାନ୍ତି। ସେ ସ୍ୱୟଂ ଅଜ (ଜନ୍ମରହିତ)

ତଥାପି ପୃଥିବୀରେ ଅବତୀର୍ଣ୍ଣ ହୁଅନ୍ତି । ନିଜେ ଅପ୍ରକାମ ହେଲେ ମଧ୍ୟ ଦେବମାନଙ୍କ ନାଶ କରନ୍ତି । ସମସ୍ତ ପ୍ରାଣୀମାନଙ୍କ ରକ୍ଷା କଲେ ମଧ୍ୟ ନିଜେ ଉଦାସୀନ ରହନ୍ତି । (ରଘୁ, ୧୦, ୨୫) ସେ ସମସ୍ତଙ୍କ ହୃଦୟରେ ନିବାସ କରୁଥିଲେ ମଧ୍ୟ ତାଙ୍କ ପାଖରେ କେହି ନାହାନ୍ତି । ସେ ଇଚ୍ଛାବିରହିତ ହେଲେ ମଧ୍ୟ ସବୁବେଳେ ତପସ୍ୟା କରନ୍ତି । ସେ ଦୟାଳୁ, ତଥାପି କେବେହେଲେ ତାଙ୍କର ଦୁଃଖ ହୁଏ ନାହିଁ । ସେ ପୁରାଣପୁରୁଷ ହେଲେ ମଧ୍ୟ ବୃଦ୍ଧ ହୁଅନ୍ତି. (ରଘୁ, ୧୦, ୧୬,) ସେ ଯେପରି ଦ୍ରବ ସେହିପରି ଘନ, ସେ ଯେପରି ସ୍ଥୂଳ ସେହିପରି ସୂକ୍ଷ୍ମ, ଯେପରି ଲଘୁ ସେହିପରି ଗୁରୁ ଏବଂ ଯେପରି ବ୍ୟକ୍ତ ସେହିପରି ଅବ୍ୟକ୍ତ ଅଟନ୍ତି । (କୁମାର ୨, ୧୧) * ପରମେଶ୍ୱର କେବଳ ଚରାଚରସୃଷ୍ଟିର ଉତ୍ପତ୍ତି, ସ୍ଥିତି ଓ ପ୍ରଳୟର କାରଣ । ସାଂଖ୍ୟଦର୍ଶନକାରଙ୍କର ମତଅନୁଯାୟୀ ପୁରୁଷ ଓ ପ୍ରକୃତି ଦୁଇଟି ପରସ୍ପର ସ୍ୱତନ୍ତ୍ର ନ ହୋଇ ଏକ ମାତ୍ର ପରମେଶ୍ୱରଙ୍କ ଦୁଇଟି ରୂପ ମାତ୍ର । (କୁମାର. ୧, ୧୩) ଏ ସୃଷ୍ଟିର ଉତ୍ପତ୍ତି ଓ ବିଳୟ ସମ୍ପାଦନରେ କୌଣସି ସାଧନ ନ ଥାନ୍ତି, (କୁମାର, ୨, ୧୦) ଏ ଚରାଚର ସୃଷ୍ଟିକୁ ବ୍ୟାପିକରି ରହିଅଛନ୍ତି । ଯେପରି ଆକାଶରୁ ନିଃସୃତ ମେଘ ଜଳ ଏକ ରୂପ

---

* ଏହିପରି ପରସ୍ପରବିରୋଧୀ ବିଶେଷଣମାନଙ୍କରେ ବ୍ରହ୍ମଙ୍କର ବର୍ଣ୍ଣନା ମଧ୍ୟ ଉପନିଷଦମାନଙ୍କରେ ବିଦ୍ୟମାନ । ଉଦାହରଣ ଦେଖନ୍ତୁ—ଏତଦ୍‌ବୈ ତଦକ୍ଷରଂ ଗାର୍ଗି ବ୍ରାହ୍ମଣା ଅଭିବଦନ୍ତ୍ୟସ୍ଥୂଳମନଣ୍ୱହ୍ରସ୍ୱମଦୀର୍ଘମଲୋହିତମସ୍ନେହମଚ୍ଛାୟମତମଃ' (ବୃହଦାରଣ୍ୟକ ୩, ୮, ୮,) 'ଅପାଣିପାଦୋ ଜବନୋ ଗ୍ରହୀତା ପଶ୍ୟତ୍ୟଚକ୍ଷୁଃ ସ ଶୃଣୋତ୍ୟକର୍ଣ୍ଣଃ ।' (ଶ୍ୱେତାଶ୍ୱତର ୩, ୧୭)

ହେଲେ ମଧ୍ୟ ବିଭିନ୍ନ ସ୍ଥଳରେ ବିଭିନ୍ନ ରୂପ ଧାରଣ କରେ, ସେହିପରି ପରମେଶ୍ୱର ଯଥାର୍ଥରେ ଏକରୂପ ହେଲେ ମଧ୍ୟ ସତ୍ତ୍ୱ, ରଜ ଓ ତମ—ତିନି ଗୁଣରୁ ବିଭିନ୍ନ ରୂପ ଧାରଣ କରନ୍ତି । ହବ୍ୟ ଓ ହୋତା, ଭକ୍ଷ୍ୟ ଓ ଭୋକ୍ତା, ଜ୍ଞେୟ ଓ ଜ୍ଞାତା, ଧ୍ୟେୟ ଓ ଧ୍ୟାତା—ଏହିପରି ଏହି ସୃଷ୍ଟିରେ ପରିଦୃଶ୍ୟମାନ ଦ୍ୱନ୍ଦ୍ୱ ମୂଳରେ ଏକମାତ୍ର ତତ୍ତ୍ୱ ବିଦ୍ୟମାନ (କୁମାର, ୨, ୧୫) ସେହିପରି ସେ କେବଳ ପ୍ରାଣୀମାନଙ୍କ ହୃଦୟରେ ଅନ୍ତର୍ଯ୍ୟାମୀରୂପରେ ବାସ କରନ୍ତି— ଇତ୍ୟାଦି ଉପନିଷଦ୍, ବ୍ରହ୍ମସୂତ୍ର ଓ ଭଗବଦ୍‌ଗୀତାର ସିଦ୍ଧାନ୍ତମାନ କାଳିଦାସଙ୍କର ଗ୍ରନ୍ଥମାନଙ୍କରେ ସର୍ବତ୍ର ଦେଖାଯାଏ । ଉପନିଷଦ-ମାନଙ୍କରେ ଏହି ତତ୍ତ୍ୱକୁ 'ବ୍ରହ୍ମ' ବୋଲି ନାମ ଦିଆଯାଇଅଛି ଏବଂ କାଳିଦାସ ମଧ୍ୟ ଏକ ସ୍ଥାନରେ ସେହି ନାମ ପ୍ରୟୋଗ କରିଅଛନ୍ତି । (କୁମାର ୩, ୧୫) ତଥାପି ନିର୍ଗୁଣ ବ୍ରହ୍ମର ଜ୍ଞାନ ଓ ବର୍ଣ୍ଣନ ଅଶକ୍ୟ ଏହିହେତୁ ସେ ସର୍ବତ୍ର ବ୍ରହ୍ମା, ବିଷ୍ଣୁ ଓ ଶିବ—ଏହି ସଗୁଣ ମୂର୍ତ୍ତିଙ୍କର ମନୋହର ବର୍ଣ୍ଣନା କରିଅଛନ୍ତି ।

ପରମେଶ୍ୱର ନିଜେ ଆପ୍ତକାମ, ତଥାପି ସଜ୍ଜନମାନଙ୍କର ରକ୍ଷା, ଏବଂ ଦୁର୍ଜନମାନଙ୍କର ବିନାଶ କରିବା ନିମନ୍ତେ ବାରମ୍ବାର ଅବତାର ଗ୍ରହଣ କରନ୍ତି ଏବଂ ଲୋକାନୁଗ୍ରହ-ନିମନ୍ତେ ବିବିଧ କର୍ମରେ ଲିପ୍ତ ଦେଖାଯାଆନ୍ତି— ଭଗବଦ୍‌ଗୀତାର ଏହି ତତ୍ତ୍ୱ କାଳିଦାସ ନିମ୍ନଲିଖିତ ଶ୍ଳୋକରେ ବ୍ୟକ୍ତ କରିଅଛନ୍ତି—

**अनवाप्तमवाप्तव्यं न ते किञ्चन विद्यते ।**
**लोकानुग्रह एवैको हेतुस्ते जन्मकर्मणोः ।**

ଏହି ଶେଷ ଯୋଜନା ଭଗବଦ୍‌ଗୀତାରୁ ନିଆଯାଇଥିଲା ପରି ବୋଧ ହୁଏ । ଏହି ହେତୁ ମହାଦେବ ମଧ୍ୟ ବିବାହବେଳେ ଅଗ୍ନି-ପ୍ରଦକ୍ଷିଣ, ଲଜାହୋମ, ଧ୍ରୁବଦର୍ଶନ, ପ୍ରଭୃତି ସ୍ମାର୍ତ୍ତ କର୍ମମାନ ମଧ୍ୟ କରିଅଛନ୍ତି । କାଳିଦାସଙ୍କ ସମୟରେ କେବଳାଦ୍ୱୈତ, ବିଶିଷ୍ଟାଦ୍ୱୈତ, ଦ୍ୱୈତାଦ୍ୱୈତ, ଶୁଦ୍ଧାଦ୍ୱୈତ ପ୍ରଭୃତି ବେଦାନ୍ତ-ସମ୍ପ୍ରଦାୟର ପ୍ରଚଳନ ନଥିଲା । ସେ କେଉଁ ବେଦାନ୍ତସମ୍ପ୍ରଦାୟର ଉପାସକ ଥିଲେ, ଠିକ୍ କରି କହିହେବ ନାହିଁ । ଶଙ୍କରାଚାର୍ଯ୍ୟଙ୍କର ମାୟାବାଦର ବୀଜ ଉପନିଷଦମାନଙ୍କରେ ବିଦ୍ୟମାନ । ତଥାପି ତାଙ୍କ ପୂର୍ବରୁ କେହି ହେଲେ ମାୟାବାଦର ଚର୍ଚ୍ଚା କରି ନ ଥିଲେ । ଏହିହେତୁ କାଳିଦାସଙ୍କ ଗ୍ରନ୍ଥରେ ମାୟାବାଦର ଉଲ୍ଲେଖ ଦେଖାଯାଏ ନାହିଁ—ଏଥିରେ ଆଶ୍ଚର୍ଯ୍ୟ ହେବାର କୌଣସି କାରଣ ନାହିଁ । କାଳିଦାସଙ୍କର ପୂର୍ବକାଳୀନ ବ୍ରହ୍ମସୂତ୍ର, ଭଗବଦ୍‌ଗୀତା-ପ୍ରଭୃତି ଗ୍ରନ୍ଥମାନଙ୍କରେ 'ମାୟାବାଦ'ର ପୋଷକ କୌଣସି ଉଲ୍ଲେଖ ନାହିଁ । କାଳିଦାସ ସ୍ୱୟଂ ଶିବୋପାସକ ଥିଲେ ତଥାପି ତତ୍ତ୍ୱଜ୍ଞାନ-ସମ୍ବନ୍ଧରେ ଭଗବଦ୍‌ଗୀତାର ଉପାସକ ଥିଲେ—ଏହା ପ୍ରମାଣିତ କରିଅଛୁଁ । ଏହାଙ୍କର ତତ୍ତ୍ୱଜ୍ଞାନବିଷୟକ ସିଦ୍ଧାନ୍ତ ଶଙ୍କର, ରାମାନୁଜ, ମାଧ୍ୱ, ବଲ୍ଲଭ ପ୍ରଭୃତି ଆଚାର୍ଯ୍ୟମାନଙ୍କର ବେଦାନ୍ତ ସିଦ୍ଧାନ୍ତ ସହିତ ଅକ୍ଷରିକଭାବେ ଖାପ ଖାଉ ନାହିଁ, ଏହି ହେତୁ ସେ କାଶ୍ମୀରୀ ଶୈବ ସମ୍ପ୍ରଦାୟର ଉପାସକ ଥିଲେ ବୋଲି କେତେକ ପଣ୍ଡିତ ପ୍ରତିପାଦନ କରି ଅଛନ୍ତି ।

କାଶ୍ମୀରୀ ଶୈବସମ୍ପ୍ରଦାୟର ଦୁଇଟି ଶାଖା 'ସ୍ପନ୍ଦଶାସ୍ତ୍ର' ଓ 'ପ୍ରତ୍ୟଭିଜ୍ଞାଶାସ୍ତ୍ର' ରୂପେ ବିଖ୍ୟାତ । ଏଥିରୁ ପ୍ରଥମଶାଖାର ସ୍ଥାପନ ନବମଶତାବ୍ଦୀର ପ୍ରାରମ୍ଭରେ ବସୁଗୁପ୍ତ ଏବଂ ତାଙ୍କର ଶିଷ୍ୟ କଲ୍ଲଟ

କରିଅଛନ୍ତି । ତ୍ରିପୁର ଶାଖାର ସ୍ଥାପନା ଦଶମଶତାବ୍ଦୀରେ ସୋମାନନ୍ଦ କରିଅଛନ୍ତି ବୋଲି ପଣ୍ଡିତମାନଙ୍କର ସିଦ୍ଧାନ୍ତ । ପ୍ରଥମ ସମ୍ପ୍ରଦାୟର ଧାରଣା ଯେ ସେହି ମତର ପ୍ରଧାନ ଗ୍ରନ୍ଥ 'ଶିବସୂତ୍ର' ମହାଦେବପର୍ବତ ଉପରେ ଖୋଦିତ ହୋଇଥିଲା ଏବଂ ଶଙ୍କରଙ୍କ ସାକ୍ଷାତ୍ କଲାପରେ ବସୁଗୁପ୍ତ ସେଠାରୁ ତାକୁ, ତାହା ଉଦ୍ଧାର କରି ଅଣି ପ୍ରଚାର କରିଅଛନ୍ତି । ସେହି ମତ ବସୁଗୁପ୍ତଙ୍କ ଠାରୁ ମଧ୍ୟ ପ୍ରାଚୀନ—ଏହା ଦେଖାଇବା ଉଦ୍ଦେଶ୍ୟରେ ସେହି ମତ ଧାରଣା ସମ୍ଭବତଃ ପ୍ରଥମ ପ୍ରଥମରେ ପ୍ରଚଳିତ କରାଯାଇଥିଲା ବୋଲି ଡା. ଭଣ୍ଡାରକାର ପ୍ରକାଶ କରିଅଛନ୍ତି । ଏହି ଗ୍ରନ୍ଥର ପୂର୍ବବର୍ତ୍ତୀ କୌଣସି ଗ୍ରନ୍ଥ ଦୃଷ୍ଟି ଗୋଚର ହୁଏ ନାହିଁ । ଏହିହେତୁ ତାଙ୍କର ଅନୁମାନ ଯୁକ୍ତିଯୁକ୍ତ ବୋଧ ହୁଏ । ଏହିହେତୁ ସେହି ମତ କାଳିଦାସଙ୍କ ସମୟରେ ପ୍ରଚଳିତ ଥିଲା--ଏହାର କୌଣସି ପ୍ରମାଣ ନାହିଁ । ତାହା ଛଡ଼ା ଏହି ମତ ଓ କାଳିଦାସଙ୍କର ତତ୍ତ୍ୱଙ୍କର ବିଶେଷ ସାମ୍ୟ ଥିଲା ପରି ଜଣାଯାଏ ନାହିଁ ଏବଂ ଯେଉଁ ଟିକିକ ଦେଖାଯାଉଅଛି, ସେତିକ ଉପନିଷତ୍ ପ୍ରଭୃତି ପରିଶୀଳନ କରିବାର ଫଳ ପରି ବୋଧ ହୁଏ । କାଶ୍ମୀର ଶୈବସମ୍ପ୍ରଦାୟରେ ଈଶ୍ୱର ନିଜ ଇଚ୍ଛାରେ ଜଗତ୍ ଉତ୍ପନ୍ନ କରନ୍ତି, ସେ କୌଣସି ଉପାଦାନ ଅପେକ୍ଷା କରନ୍ତି ନାହିଁ କି ନିଜେ ଉପାଦାନ କାରଣ ନୁହନ୍ତି ବୋଲି ବର୍ଣ୍ଣିତ ହୋଇଅଛି, ଯେପରି ଜଣେ ଯୋଗୀ ନିଜ ଯୋଗବଳରେ ବିଭିନ୍ନ ପଦାର୍ଥ ଉତ୍ପନ୍ନ କରି ପାରନ୍ତି ସେହିପରି ଈଶ୍ୱର ମଧ୍ୟ ନିଜ ଶକ୍ତିରେ ଜୀବ ତଥା ଜଗତର ସୃଷ୍ଟି କରିଥାନ୍ତି ବୋଲି ସେହି ସମ୍ପ୍ରଦାୟବାଦୀମାନଙ୍କର ମତ । 'ନିରୁପାଦାନସମ୍ଭାର ମଭିତ୍ତାବେବ ତନ୍ୱତେ, ଜଗଚ୍ଚିତ୍ରଂ ନମସ୍ତସ୍ମୈ କଳାଶ୍ଳାଘ୍ୟାୟ ଶୂଳିନେ ।' ଏହି ଶ୍ଳୋକର ଭାବ ବସୁଗୁପ୍ତଙ୍କର ସିଦ୍ଧାନ୍ତରେ

ଦେଖାଯାଏ । ଈଶ୍ୱର ସୃଷ୍ଟି ସକାଶେ ଅନ୍ୟ ସାଧନର ଅପେକ୍ଷା କରନ୍ତି ନାହିଁ । ଏହି ଭାବ ଉପନିଷଦମାନଙ୍କରେ ଦେଖିବାକୁ ମିଳେ । 'ଉପସଂହାରଦର୍ଶନାନ୍ନେତି ଚେନ୍ନ, କ୍ଷୀରବଦ୍ଧି' ଏହି ବ୍ରହ୍ମସୂତ୍ରରେ ମଧ୍ୟ ସେହି ଭାବର ଉଲ୍ଲେଖ ଅଛି । କାଳିଦାସ ମଧ୍ୟ ନିଜ ଗ୍ରନ୍ଥମାନଙ୍କରେ ସେହି ଭାବ ନିବଦ୍ଧ କରିଅଛନ୍ତି ! ତଥାପି ପରମେଶ୍ୱର ନିଜେ ଉପାଦାନ କାରଣ ନୁହନ୍ତି—ଏହାହିଁ କଳ୍ପନା କାଳିଦାସଙ୍କର ଥିଲା ପରି ବୋଧ ହୁଏ ନାହିଁ । 'କୁମାରସମ୍ଭବ'ର ଦ୍ୱିତୀୟ ସର୍ଗରେ ଦେବତାମାନଙ୍କର ବ୍ରହ୍ମସ୍ତୁତିରେ 'ଆତ୍ମାନମାତ୍ମନା ବେତ୍ସି ସୃଜସ୍ୟାତ୍ମାନମାତ୍ମନା, ଆତ୍ମନା କୃତିନା ଚ ତ୍ୱମାତ୍ମନ୍ୟେବ ପ୍ରଲୀୟସେ' ଏହି ଶ୍ଳୋକ ଦେଖାଯାଏ । ଏଥିରେ ପରମେଶ୍ୱର ନିଜେ ଜଗତର ଉତ୍ପତ୍ତି କରନ୍ତି ଏବଂ ନିଜଠାରେ ତାର ବିଲୟ କରନ୍ତି ବୋଲି ସ୍ପଷ୍ଟଭାବରେ ଉଲ୍ଲିଖିତ ହୋଇଅଛି । ଅନ୍ୟ ଏକ ବିଷୟରେ କାଳିଦାସଙ୍କର ମତ କାଶ୍ମୀରୀ ସମ୍ପ୍ରଦାୟର ମତଠାରୁ ପୃଥକ୍ । ଜୀବ ପରମେଶ୍ୱରଙ୍କର କେବଳ ରୂପ ମାତ୍ର । ସତ୍ତ୍ୱ, ରଜ ଓ ତମ—ଏହି ତ୍ରିଗୁଣ ହେତୁ ସେ ନିଜସ୍ୱରୂପ ଜାଣିପାରେ ନାହିଁ କିନ୍ତୁ ଧ୍ୟାନଦ୍ୱାରା ସେହି ମଳ ନଷ୍ଟ ହେଲେ ବାସ୍ତବଜ୍ଞାନ ହୋଇଥାଏ । ଜୀବ ପରମେଶ୍ୱରଙ୍କଠାରୁ ମୂଳରୁ ଭିନ୍ନ ନ ହେଲେ ମଧ୍ୟ ଯେଉଁ ପର୍ଯ୍ୟନ୍ତ ସେ ସଦ୍‌ଗୁରୁଙ୍କର ଅନୁଗ୍ରହ ଲାଭ କରେ ନାହିଁ, ସେ ପର୍ଯ୍ୟନ୍ତ ଆତ୍ମସ୍ୱରୂପର ଜ୍ଞାନ ହୋଇପାରେ ନାହିଁ' ବୋଲି ପ୍ରତ୍ୟଭିଜ୍ଞାବଲମ୍ବୀମାନେ ସ୍ୱୀକାର କରନ୍ତି । ପୂର୍ବବର୍ତ୍ତୀ ଏକ ପ୍ରକରଣରେ 'କାଶ୍ମୀର କେବଳ କାଳିଦାସଙ୍କର ଜନ୍ମଭୂମି ଥିଲା' ଏହି ବିଷୟ ବିଚାର କଲାବେଳେ 'ତାଙ୍କର ନାଟକମାନଙ୍କର ପ୍ରତ୍ୟଭିଜ୍ଞାଶାସ୍ତ୍ରର ପ୍ରଭାବ ପ୍ରତିଫଳିତ' ଏହି ମତର ଖଣ୍ଡନ ବିସ୍ତୃତଭାବେ କରାଯାଇଅଛି । କାଳିଦାସ ନିଜଗ୍ରନ୍ଥମାନଙ୍କରେ

କୌଣସି ସ୍ଥଳରେ ସୁଦ୍ଧା କେବଳ ଭ୍ରୂମଧ୍ୟଦେଶ ତଳରେ ଜୀବର ସ୍ୱରୂପଜ୍ଞାନ ଘଟେ ବୋଲି କହୁନାହାନ୍ତି । ସ୍ମୃତିଶାସ୍ତ୍ର ଅନୁଯାୟୀ 'ଯୋଗ ମୋକ୍ଷର ସାଧନ' ବୋଲି କାଳିଦାସ ସ୍ୱୀକାର କରିଅଛନ୍ତି । ଭଗବଦ୍‌ଗୀତାର ଷଷ୍ଠ ଅଧ୍ୟାୟରେ ମୋକ୍ଷସାଧନରୂପରେ ଏହି ଯୋଗର ବର୍ଣ୍ଣନା କରାଯାଇ ଅଛି । କାଳିଦାସ ନିଜ ଗ୍ରନ୍ଥମାନଙ୍କରେ ମନୁଷ୍ୟଙ୍କୁ ନିଜ ମୁକ୍ତି ସକାଶେ ଯୋଗର ଆଶ୍ରୟ ନେବାକୁ ହେବବୋଲି ବର୍ଣ୍ଣନା କରି ଅଛନ୍ତି । ଯେତେବେଳେ କନ୍ଦର୍ପ ହିମାଳୟରେ ଉପସ୍ଥିତ ହେଲେ, ସେତେବେଳେ ଭଗବାନ୍ ମହାଦେବ 'ପର୍ଯ୍ୟଙ୍କବନ୍ଧ' ଆସନ ଉପରେ ପ୍ରାଣାୟାମର ନିରୋଧରେ ନିବାତ ସ୍ଥଳରେ ଦୀପ ପରି ନିଷ୍କମ୍ପ ରହି ଯୋଗ-ବଳରେ ଅନ୍ତରାତ୍ମଦର୍ଶନରେ ନିମଗ୍ନ ଥିଲେ ବୋଲି 'କୁମାର—ସମ୍ଭବ'ରେ ବର୍ଣ୍ଣିତ ହୋଇଅଛି । 'ରଘୁବଂଶ'ରେ ମଧ୍ୟ 'ତମଃ ପରମାପଦବ୍ୟୟଂ ପୁରୁଷଂ ଯୋଗସମାଧିନା ରଘୁଃ' (ରଘୁ ଯୋଗ-ସମାଧିଦ୍ୱାରା ଅଜ୍ଞାନର ଦୂରବର୍ତ୍ତୀ ଅବିନାଶୀ ପରମାତ୍ମାଙ୍କର ପଦ ଲାଭ କଲେ) ବୋଲି ବର୍ଣ୍ଣିତ । ତଥାପି ଏହା ଦ୍ୱାରା ସେ କାଶ୍ମୀରୀ ଶୈବସିଦ୍ଧାନ୍ତସମ୍ମତ ପ୍ରତ୍ୟଭିଜ୍ଞାଦର୍ଶନର ଉପାସକ ଥିଲେ ବୋଲି ପ୍ରମାଣିତ ହେଉନାହିଁ ।

'ରଘୁବଂଶ'ରେ କାଳିଦାସ ଅନେକ ରାଜାମାନଙ୍କର ମରଣ—ପରବର୍ତ୍ତୀ ଅବସ୍ଥା ବର୍ଣ୍ଣନ କରି ଅଛନ୍ତି । ତହିଁରୁ 'ତାଙ୍କ ଦୃଷ୍ଟିରେ ମନୁଷ୍ୟର ଅନ୍ତ୍ୟଗତି ଧ୍ୟେୟ କଣ ହୋଇପାରେ' ତାହା ଜଣାଯାଏ । ଦିଲୀପ ୯୯ ଟି ଅଶ୍ୱମେଧଯାଗ କରି ମୃତ୍ୟୁପରେ ସ୍ୱର୍ଗାରୋହଣ—ସକାଶେ ଯେପରି ୯୯ ଟି ସୋପାନ ପ୍ରସ୍ତୁତ କରିଥିଲେ । ଅଜ ଗଙ୍ଗା ଓ ସରଯୂ ସଙ୍ଗମସ୍ଥାନରୂପ ତୀର୍ଥରେ ଶରୀର ତ୍ୟାଗ କରି

ସ୍ୱର୍ଗର ନନ୍ଦନବନରେ ଇନ୍ଦୁମତୀଙ୍କ ସହିତ ବିହାର କରିଥିଲେ । ଏହିପରି 'ମେଘଦୂତ'ରେ ଅଳକାପୁରୀର ଯକ୍ଷମାନଙ୍କର ବିବିଧ ବିଳାସର ରମଣୀୟ ବର୍ଣ୍ଣନା ଦେଖାଯାଏ । ମାତ୍ର ସ୍ୱର୍ଗପ୍ରାପ୍ତି ଏବଂ ସେଠାରେ ସୁଖରେ ବିହାର କରିବା କାଳିଦାସଙ୍କ ଦୃଷ୍ଟିରେ ଅତ୍ୟୁଚ୍ଚ ଧ୍ୟେୟ ବା ପରମ ଲକ୍ଷ୍ୟ ହୋଇନାହିଁ । **'ତଦ୍ୟଥେହ କର୍ମଜିତୋ ଲୋକଃ କ୍ଷୀୟତେ ଏବମେବାମୁତ୍ର ପୁଣ୍ୟଜିତୋ ଲୋକଃ କ୍ଷୀୟତେ'** ଏହି ଛାନ୍ଦୋଗ୍ୟୋପନିଷଦର (୮,୧,୬) ଉକ୍ତି ଅନୁଯାୟୀ ସ୍ୱର୍ଗର ସମସ୍ତ ସୁଖ ନଶ୍ୱର । ଭଗବଦ୍‌ଗୀତାରେ ମଧ୍ୟ କୁହାଯାଇଅଛି—**'ତେ ତଂ ଭୁକ୍ତ୍ୱା ସ୍ୱର୍ଗଲୋକଂ ବିଶାଳଂ କ୍ଷୀଣେ ପୁଣ୍ୟେ ମର୍ତ୍ତ୍ୟଲୋକଂ ବିଶନ୍ତି'** (୯, ୨୧) ସ୍ୱର୍ଗରେ ସୁଖଭୋଗ କଲେ ସଞ୍ଚିତ ପୁଣ୍ୟର କ୍ଷୟ ହୁଏ ବୋଲି କାଳିଦାସ ମନେ କରୁଥିଲେ । ଏହିହେତୁ ସେ ନିଜ 'ମେଘଦୂତ'ରେ 'ସଞ୍ଚିତ ପୁଣ୍ୟ କ୍ଷୀଣ ହେଲେ ପୃଥିବୀରୁ ସ୍ୱର୍ଗକୁ ଯାଇଥିବା ସ୍ୱର୍ଗବାସୀମାନେ ଅବଶିଷ୍ଟ ପୁଣ୍ୟରେ କିଣି ଆଣିଥିବା ସ୍ୱର୍ଗର ରମଣୀୟ ଅଂଶ ପରି ଉଜ୍ଜୟିନୀ ଅବସ୍ଥିତ' ବୋଲି ଉତ୍ପ୍ରେକ୍ଷା ଦେଇଅଛନ୍ତି । 'ଶାକୁନ୍ତଳ'ରେ ମଧ୍ୟ 'ସ୍ୱର୍ଗସୁଖ ଅକ୍ଷୟ ନ ହେବାରୁ ମାରୀଚଙ୍କ ଆଶ୍ରମବାସୀ ଋଷିମାନେ ସେହି ସୁଖର ମୋହ ପରିତ୍ୟାଗ କରି ଉଚ୍ଚତର ପଦପ୍ରାପ୍ତି ସକାଶେ ସ୍ୱର୍ଗବେଳେ ତପସ୍ୟା କରନ୍ତି' ବୋଲି ବର୍ଣ୍ଣିତ ହୋଇଅଛି । ସ୍ୱର୍ଗପ୍ରାପ୍ତି ହେଲେ ମଧ୍ୟ ମନୁଷ୍ୟ ଜନ୍ମଜରାମୃତ୍ୟୁ ଚକ୍ରରୁ ଖସି ପାଏ ନାହିଁ ବୋଲି 'ଶାକୁନ୍ତଳ'ର ଭରତ ବାକ୍ୟରେ ସ୍ୱର୍ଗପ୍ରାପ୍ତି ନ ମାଗି ପୁନର୍ଜନ୍ମରୁ ମୁକ୍ତ କରିବାକୁ କବି ମହାଦେବଙ୍କୁ ପ୍ରାର୍ଥନା କରିଅଛନ୍ତି । 'ସଂସାରରୁ ମୁକ୍ତ ହେବାକୁ ହେଲେ ଯଜ୍ଞାଦି ସାଧନ ଉପଯୋଗୀ ନୁହେଁ, ଯୋଗାଭ୍ୟାସରେ ପରମେଶ୍ୱରଙ୍କର ସ୍ୱରୂପ-ଜ୍ଞାନ ପ୍ରାପ୍ତ ହେଲେ କେବଳ ମୋକ୍ଷ ପ୍ରାପ୍ତି ହୁଏ'—ଏହା କବିଙ୍କର

ମତ ବୋଲି କିସ୍ ସନ୍ଦେହରେ କୁହାଯାଇପାରେ । ଏହି ଭାବ ସେ **'तमस: परमापदव्यय' पुरुष' योगसमाधिना रघु:'** ଏହି ଶ୍ଳୋକରେ ବ୍ୟକ୍ତ କରିଅଛନ୍ତି । ରଘୁ ଅତ୍ୟନ୍ତ ସୁଶୀଳ, ଦାନବୀର ଓ କର୍ତ୍ତବ୍ୟପରାୟଣ ରାଜା ଥିଲେ । ଧର୍ମଶାସ୍ତ୍ର ପ୍ରତିପାଦିତ ବିଧି-ଅନୁଯାୟୀ ସେ ପ୍ରଜାମାନଙ୍କୁ ବର୍ଣ୍ଣାଶ୍ରମଧର୍ମ ପାଳନ କରାଉ-ଥିଲେ, ଗୃହସ୍ଥାଶ୍ରମର ସମସ୍ତ କର୍ତ୍ତବ୍ୟ ପୂର୍ଣ୍ଣ କରିଥିଲେ, ପରିଶେଷରେ ଯୋଗାଭ୍ୟାସରେ ପରମାତ୍ମା ଦର୍ଶନ କରି ମୃତ୍ୟୁପରେ ଅବିଦ୍ୟାର ଦୂରରେ ଅବସ୍ଥିତ ପରମାତ୍ମାଙ୍କୁ ଲାଭ କଲେ ବୋଲି ବର୍ଣ୍ଣିତ ହୋଇଅଛି । ପ୍ରତ୍ୟଭିଜ୍ଞାଦର୍ଶନର ସମାନ ଅନୁଯାୟୀ ତାଙ୍କର ସ୍ୱତଃ ଶିବସ୍ୱରୂପଜ୍ଞାନ ହେଲା ବୋଲି କୌଣସିଠାରେ ଉଲ୍ଲିଖିତ ହୋଇନାହିଁ—ଏତକ ମନେ ରଖିବାକୁ ହେବ । କାଳିଦାସଙ୍କର ଉପରଲିଖିତ ପଂକ୍ତିରୁ ଏହି ଭ୍ରମ ହୋଇପାରେ ଯେ ମୋକ୍ଷାବସ୍ଥାରେ ଜୀବ-ଈଶ୍ୱର ଏହି ଦୁହିଙ୍କର ଭେଦ ରହେ—ଏହା ତାଙ୍କର ମତ ଥିଲା । ପୁଣି ଅନ୍ୟତ୍ର (ରଘୁ ୮, ୨୮) ଲିଖିତ 'ସ ବହୁଭୂୟଂ ଗତମାଜଗାମ' ବର୍ଣ୍ଣନାରୁ ନିଃସନ୍ଦେହରେ କୁହା-ଯାଇପାରେ ଯେ ପର ବ୍ରହ୍ମରୂପ ହେବାହିଁ ତାଙ୍କ ଦୃଷ୍ଟିରେ ଉଚ୍ଚ ଧ୍ୟେୟ ଥିଲା ।

ପରମାତ୍ମ ପ୍ରାପ୍ତି ସକାଶେ ଯୋଗାଭ୍ୟାସ ପର ଆନ୍ତର ଦୁଇଟି ସାଧନ କାଳିଦାସ ପ୍ରସଙ୍ଗକ୍ରମେ ବର୍ଣ୍ଣନା କରିଅଛନ୍ତି । 'ବିକ୍ରମୋ-ର୍ବଶୀୟ'ର

**अन्तर्यश्च मुमुक्षुभिर्नियमितप्राणादिभिर्मृग्यते**
**स स्थाणु: स्थिरभक्तियोगसुलभो नि:श्रेयसायास्तु व: ॥**

ଏହି ମଙ୍ଗଳାଚରଣ ଶ୍ଳୋକାର୍ଦ୍ଧରେ କୁହାଯାଇଛି ଯେ 'ମୁମୁକ୍ଷୁ ବ୍ୟକ୍ତି ପ୍ରାଣାୟାମାଦି ସାଧନଦ୍ୱାରା ଯେଉଁ ହୃଦୟସ୍ଥ ମହାଦେବଙ୍କର

ଦର୍ଶନ କରିବାକୁ ଚେଷ୍ଟା କରେ, ସେ ଏକନିଷ୍ଠ ଭକ୍ତିଦ୍ୱାରା ଶୀଘ୍ର ପ୍ରସନ୍ନ ହୁଅନ୍ତି' । ଏହାପରେ ଫଳାଭିଳାଷ୍ଟା ପରିହାର କରି ଭଗବତ୍‌ସ୍ୱରୂପ ସ୍ୱକର୍ତ୍ତବ୍ୟ ପାଳନ କଲେ ମନୁଷ୍ୟ ମୁକ୍ତ ହୁଏ—ଏହା ଭାବ 'ମାରୁତେଃ ସାଗରଂ ତୀର୍ଣ୍ଣଂ ସଙ୍ଖାରମିବ ନିର୍ମମଃ' (ରଘୁ ୧୦,୬୦) ଏହି ଉପମାଦ୍ୱାରା ସୂଚିତ କରିଅଛନ୍ତି କାଳିଦାସଙ୍କର ମତ ଥିଲା ଯେ ଯୋଗସାଧନ, ନିଷ୍କାମକର୍ମଯୋଗ, ଭକ୍ତିଯୋଗ—ଏ ସମସ୍ତ ଏକ ମାତ୍ର ପରମାତ୍ମାଙ୍କର ସମୀପରେ ପହଞ୍ଚିବା ସକାଶେ ଭିନ୍ନ ଭିନ୍ନ ମାର୍ଗ, ପ୍ରତ୍ୟେକ ମନୁଷ୍ୟ ନିଜ ଶକ୍ତି ଅନୁଯାୟୀ ଏହି ମାର୍ଗର ଉପଯୋଗ କରିବା ଉଚିତ । ଏହି କଥା ସେ ନିମ୍ନଲିଖିତ ଶ୍ଲୋକରେ ସ୍ପଷ୍ଟ କରିଅଛନ୍ତି—

> बहुधाप्यागमैर्भिन्नाः पन्थानः सिद्धिहेतवः ।
> त्वय्येव निपतन्त्योघा जाह्नवीया इवार्णवे ॥
>
> ରଘୁ ୧୦, ୨୬

ଶ୍ରୀମଦ୍ ଭଗବଦଗୀତାରେ ଜ୍ଞାନ, ପାତଞ୍ଜଳ ଯୋଗ, ଭକ୍ତି, ନିଷ୍କାମ କର୍ମ ପ୍ରଭୃତି ପରମେଶ୍ୱର ପ୍ରାପ୍ତିର ବିବିଧ ସାଧନ ବୋଲି ବର୍ଣ୍ଣନା କରି ସେ ସମସ୍ତର ସମନ୍ୱୟ କରାଯାଇଅଛି । ଏହା ମଧ୍ୟ କାଳିଦାସଙ୍କର ମତ ଥିଲା ବୋଲି ଉପରୋକ୍ତ ବିବେଚନାରୁ ସ୍ପଷ୍ଟ ହୁଏ ।

କର୍ମବାଦ ଓ ପୁନର୍ଜନ୍ମରେ କାଳିଦାସଙ୍କର ବିଶ୍ୱାସ ଥିଲା ବୋଲି ଆମେ ପୂର୍ବବର୍ତ୍ତୀ ପରିଚ୍ଛେଦରେ ଦେଖାଇଅଛୁଁ । ନିଜ କର୍ମଫଳରେ ଉର୍ବଶୀ ଓ ହରିଣୀ—ଏହି ଦୁଇ ଅପ୍ସରା ମର୍ତ୍ତ୍ୟଲୋକକୁ ଆସିଥିଲେ । ବଶିଷ୍ଠ ଅଜଙ୍କୁ ପତ୍ନୀ ଶୋକରୁ ମୁକ୍ତ ହେବା ସକାଶେ

ସାନ୍ତ୍ୱନା ଦେବାକୁ ଯାଇ କହି ଥିଲେ—ଆତ୍ମା ମୃତ୍ୟୁ ପରେ ନିଜ କର୍ମ ଅନୁଯାୟୀ ଗତି ଲାଭ କରେ । ତୁମେ ଦେହ ତ୍ୟାଗ କଲାପରେ ପରଲୋକରେ ନିଜ ପତ୍ନୀଙ୍କ ସହବାସ ଲାଭ କରିବ ବୋଲି ଭାବ ନାହିଁ । ମନୁଷ୍ୟ ସ୍ୱକୃତ କର୍ମର ଫଳ ଅବଶ୍ୟ ଭୋଗ କରେ, ମାତ୍ର ଜ୍ଞାନଦ୍ୱାରା କର୍ମ ଦଗ୍ଧ ହୋଇଥାଏ—ଏହି ଭଗବଦ୍-ଗୀତାର ତତ୍ତ୍ୱ କବି 'ଇତରୋ ଦହନେ ସ୍ୱକର୍ମଣାଂ ବବୃତେ ଜ୍ଞାନ-ମୟେନ ବହ୍ନିନା' (ଇତର ଅର୍ଥାତ୍ ରଘୁ ଜ୍ଞାନାଗ୍ନି ଦ୍ୱାରା ସ୍ୱକର୍ମ ଦଗ୍ଧ କରିବାକୁ ପ୍ରବୃତ୍ତ ହେଲେ) ଏହି ଶ୍ଳୋକାର୍ଦ୍ଧରେ ପ୍ରକାଶ କରିଅଛନ୍ତି । ମୋକ୍ଷପ୍ରାପ୍ତି ସକାଶେ ଇନ୍ଦ୍ରିୟନିଗ୍ରହର ଆବଶ୍ୟକତା ମଧ୍ୟ ସେ 'ରଘୁବଂଶ'ର ୮, ୨୩ ଶ୍ଳୋକରେ ପ୍ରତିପାଦିତ କରି ଅଛନ୍ତି ।

ସେ କେତେକ ସ୍ଥାନରେ ଲେଖିଅଛନ୍ତି ଯେ ଜୀବ ଜୀବନ-ମରଣ ଚକ୍ରରେ ପଡ଼ି ସମୟ ସମୟରେ ପୂର୍ବଜନ୍ମର ଅଜ୍ଞାତ ବସ୍ତୁ ମନେ ପକାଇ ଦୁଃଖ ଅନୁଭବ କରିଥାଏ । ରାମ ବିଶ୍ୱାମିତ୍ରଙ୍କ ସହିତ ବାମନ ଆଶ୍ରମରେ ପହଞ୍ଚିଲେ । ସେହି ସମୟରେ ତାଙ୍କର ପୂର୍ବାବତାରର କୌଣସି କାର୍ଯ୍ୟର ସ୍ମୃତି ନଥିଲା, ତଥାପି ତାଙ୍କର ଅନ୍ତଃକରଣରେ କିଛି ଚମତ୍କାର ଭାବନା ଜାତ ହୋଇଥିଲା ବୋଲି କବି 'ରଘୁବଂଶ'ରେ ୧୧, ୨୨) ବର୍ଣ୍ଣନା କରିଅଛନ୍ତି । 'ଶାକୁନ୍ତଳ'ର ନିମ୍ନଲିଖିତ ଶ୍ଳୋକରେ ମଧ୍ୟ ସେହି ଭାବ ପ୍ରଦର୍ଶନ କରି ଅଛନ୍ତି—

**रम्याणि वीक्ष्य मधुरांश्च निशम्य शब्दान्**
**पर्य्युत्सुकीभवति यत् सुखितोऽपि जन्तुः ।**

तच्चेतसा स्मरति नूनमबोधपूर्वं
भावस्थिराणि जननान्तरसौहृदानि ।

ଶାକୁ ୫, ୨,

ବର୍ତ୍ତମାନ ସୁଦ୍ଧା ଆମେରିକାରେ ପରଲୋକ ବିଦ୍ୟାର ଅନୁସନ୍ଧାନ କରାଯାଉଅଛି । ସେଠାର ଅନୁସନ୍ଧାନକାରୀମାନେ ଏହି ଧରଣର ଅନୁଭବଶାଳୀ ବ୍ୟକ୍ତିମାନଙ୍କର ପରିଚୟ ପାଉଛନ୍ତି ଏବଂ ତଦ୍ୱାରା ସେମାନଙ୍କର ପୂର୍ବଜନ୍ମକଳ୍ପନା ପ୍ରମାଣିତ ହୋଇ ଅଛି । ଏହା ଦେଖିଲେ କାଳିଦାସଙ୍କର ସୂକ୍ଷ୍ମ ମନୋବିଜ୍ଞାନ-ଦୃଷ୍ଟିରେ ବିସ୍ମୟ ଜାତ ହୁଏ ।

ବର୍ତ୍ତମାନ ଆମେ କାଳିଦାସଙ୍କର ସାମାଜିକ ବିଚାର ପ୍ରତି ଦୃଷ୍ଟି ଦେବୁଁ । ବୌଦ୍ଧଧର୍ମ ଜାତିଭେଦପ୍ରଥା ଉଠାଇଦେଇଥିଲା ଏବଂ ସଂସାର ଦୁଃଖମୟ ବୋଲି ବୁଝାଇ ଆବାଳବୃଦ୍ଧ ଜନ-ସମାଜକୁ ସନ୍ନ୍ୟାସମାର୍ଗ ଅବଲମ୍ବନ କରିବାକୁ ଉପଦେଶ ଦେବା ଆରମ୍ଭ କରିଥିଲା । ଏହି ଉପଦେଶରେ ଅସ୍ୱାଭାବିକତା ଓ ମନୁଷ୍ୟର ନୈସର୍ଗିକ ମନୋବୃତ୍ତି ସହିତ ବିରୋଧଭାବ ଦେଖି, ସନାତନ ଧର୍ମର ପୁନରୁଜ୍ଜୀବନ ସକାଶେ ଲିଖିତ ସ୍ମୃତିମାନଙ୍କରେ ବର୍ଣ୍ଣାଶ୍ରମ-ଧର୍ମର ଶ୍ରେଷ୍ଠତା ପ୍ରତିପାଦିତ ହୋଇଅଛି । କାଳିଦାସ ନିଜ ଗ୍ରନ୍ଥ-ମାନଙ୍କରେ ଏହାର ଶ୍ରେଷ୍ଠତା ଦେଖାଇଅଛନ୍ତି । 'ରଘୁବଂଶ'ରେ ବର୍ଣ୍ଣିତ ଅଛି ଯେ ପ୍ରକୃତ ରାଜା ରାଜ୍ୟର ପ୍ରତ୍ୟେକ ଜାତି ନିଜ ନିଜ କର୍ତ୍ତବ୍ୟ ପାଳନ କରୁଅଛି କି ନାହିଁ—ଏଥି ପ୍ରତି ଦୃଷ୍ଟି ଦେଇଥାନ୍ତି । ଦୁଷ୍ୟନ୍ତଙ୍କର ରାଜ୍ୟରେ ନୀଚଜାତିର ଲୋକ ମଧ୍ୟ ଅସନ୍ମାର୍ଗରେ ପ୍ରବୃତ୍ତ ହେଉ ନଥିଲେ ବୋଲି 'ଶକୁନ୍ତଳା'ରେ

ବର୍ଣ୍ଣିତ ହୋଇଅଛି । ବ୍ରାହ୍ମଣାଦି ବର୍ଣ୍ଣମାନେ ନିଜ ନିଜ ସ୍ୱଧର୍ମ୍ମୋକ୍ତ କର୍ମ କଲେ ରାଜ୍ୟର ସବୁଠାରେ ସୁଖ ସମୃଦ୍ଧି ମିଳେ. ଲୋକମାନେ ଦୀର୍ଘାୟୁ ହୁଅନ୍ତି, ତାଙ୍କ ଉପରେ ଦୈବୀ କି ମାନବୀ ଆପତ୍ତି ପଡ଼େନାହିଁ — ଏହି ଭଳି ଦିଲୀପାଦି ରାଜାମାନଙ୍କର ରାଜ୍ୟବ୍ୟବସ୍ଥା-ବର୍ଣ୍ଣନ ପ୍ରସଙ୍ଗରେ କବି ପ୍ରତିପାଦନ କରିଛନ୍ତି । ବର୍ଣ୍ଣଧର୍ମ ପରି ଆଶ୍ରମ-ଧର୍ମକୁ ମଧ୍ୟ କାଳିଦାସ ପ୍ରାଧାନ୍ୟ ଦେଇଅଛନ୍ତି । 'शैशवेऽभ्यस्त-विद्यानां यौवने विषयैषिणाम्, वार्द्धके मुनिवृत्तीनां योगेनान्ते तनुत्यजाम् ॥' (ରଘୁବଂଶୀୟ ରାଜାମାନେ ବାଲ୍ୟକାଳରେ ବିଦ୍ୟାଭ୍ୟାସ କରୁଥିଲେ. ଯୌବନାବସ୍ଥାରେ ବିଷୟୋପଭୋଗ କରୁଥିଲେ, ବୃଦ୍ଧାବସ୍ଥାରେ ଋଷିପରି ତପୋବନରେ ତପସ୍ୟା କରୁଥିଲେ ଏବଂ ପରିଶେଷରେ ଯୋଗଦ୍ୱାରା ଶରୀର ତ୍ୟାଗ କରି ମୁକ୍ତ ହେଉଥିଲେ) ଏହି ଶ୍ଳୋକରେ କାଳିଦାସ ଆଶ୍ରମ ଧର୍ମର କର୍ତ୍ତବ୍ୟ ସଂକ୍ଷେପରେ ବର୍ଣ୍ଣନ କରି ଅଛନ୍ତି । ତାଙ୍କର ଗ୍ରନ୍ଥମାନଙ୍କରେ ମଧ୍ୟ ଲୋକମାନଙ୍କର ଜୀବନଚର୍ଯ୍ୟା ସେହି ଧରଣରେ ବିସ୍ତୃତ-ଭାବରେ ବର୍ଣ୍ଣନ କରିଅଛନ୍ତି । ତାଙ୍କର ନାୟକମାନଙ୍କର ରାଜ-କୁମାରମାନଙ୍କର ବାଲ୍ୟାବସ୍ଥା କୌଣସି ଋଷିଙ୍କର ଆଶ୍ରମରେ ଅତୀତ ହେଲାପରି ଦେଖାଇ ଅଛନ୍ତି । ବାଲ୍ୟକାଳରେ ବ୍ରହ୍ମଚର୍ଯ୍ୟ-ବ୍ରତ ପାଳନ କରି ବିଦ୍ୟାଭ୍ୟାସ କରି, ଯୌବନରେ ବିଷୟୋ-ପଭୋଗଦ୍ୱାରା ସଂସାରସୁଖ ଅନୁଭବ କରି ଏବଂ ଆନନ୍ଦ ଲାଭ କରି—ଏହିପରି ଭାବ କାଳିଦାସ ଅନେକ ବ୍ୟକ୍ତ କରିଅଛନ୍ତି । ପରନ୍ତୁ ଏହା ସଙ୍ଗେ ରାଜା ଅଗ୍ନିବର୍ଣ୍ଣଙ୍କର ବର୍ଣ୍ଣନାରେ ଏହା ମଧ୍ୟ କୁହା ଯାଇଛି ଯେ 'ନ ପୁନରେତି ଗତଂ ଚତୁରଂ ବୟଃ' (ରଘୁ ୯, ୪୭) ଉପଭୋଗକ୍ଷମ ବୟସ ଅର୍ଥାତ୍ ଯୁବାବସ୍ଥା ଚାଲିଗଲେ ଆଉ ଫେରି ଆସେ ନାହିଁ) ଏହା ଭାବି ସବୁବେଳେ ବିଷୟାସକ୍ତିରେ ଶରୀର ହାନି

କରନାହିଁ. ଥରେ ଇନ୍ଦ୍ରିୟମାନଙ୍କ ବିଷୟୋପଭୋଗଧ୍ୟା ଲାଗିଗଲେ ତହିଁରୁ ନିବୃତ୍ତ ହେବା କଠିନ । ଇନ୍ଦ୍ରିୟତୃପ୍ତି ଅପେକ୍ଷା ଇନ୍ଦ୍ରିୟନିଗ୍ରହ ଶ୍ରେଷ୍ଠ—ଏହି ଭାବ 'ରଘୁବଂଶ'ର ତ୍ରୟୋଦଶ ସର୍ଗରେ ଶାତକର୍ଣ୍ଣୀ ଓ ସୁତୀକ୍ଷ୍ଣଙ୍କର ପରସ୍ପର ବିରୁଦ୍ଧ ଜୀବନକାହାଣୀର ଲୋକ ସମ୍ମୁଖରେ ରଖି ବ୍ୟକ୍ତ କରିଅଛନ୍ତି । ସେ ଦୁଇ ଋଷି ମହାତପସ୍ୱୀ ଥିଲେ । ତାଙ୍କର ଉଗ୍ର ତପସ୍ୟାରେ ଭୀତଚିତ୍ତ ଇନ୍ଦ୍ର ତାଙ୍କୁ ମୋହପାଶରେ ପକାଇବାକୁ ଦୁଇ ଜଣ ଅପ୍‌ସରାଙ୍କୁ ପଠାଇଲେ । ଶାତକର୍ଣ୍ଣୀ ଋଷି ତାଙ୍କ ଜାଲରେ ପଡ଼ି 'ପଞ୍ଚାପ୍ସର' ନାମକ ସରୋବରରେ ଅନ୍ତର୍ଜଳହର୍ମ୍ୟରେ ସେମାନଙ୍କର ନୃତ୍ୟ-ଗୀତାଦି ବିଳାସରେ ମଗ୍ନ ହୋଇ ସମୟ ଅତିବାହିତ କଲେ । ସୁତୀକ୍ଷ୍ଣ ଠିକ୍ ତାଙ୍କର ବିପରୀତ ଉଦାହରଣ । ତାଙ୍କ ଆଗରେ ମଧ୍ୟ ଅପ୍‌ସରାମାନେ ଉପସ୍ଥିତ ହୋଇ ସ୍ମିତ କଟାକ୍ଷପାତ କଲେ । କୌଣସି ବାହାନାରେ ନିଜ ଶରୀରର ମେଖଳାଙ୍କିତ ଭାଗ ଅର୍ଦ୍ଧ-ଉନ୍ମୁକ୍ତ କରି ତାଙ୍କୁ ଆକୃଷ୍ଟ କରିବାକୁ ଚେଷ୍ଟା କଲେ । ମାତ୍ର ସେ ସେମାନଙ୍କ ଜାଲରେ ନ ପଡ଼ି ପଞ୍ଚାଗ୍ନି ମଧ୍ୟରେ ତପସ୍ୟା ସାଧନ କରିବାକୁ ଲାଗିଲେ ଏହାପରି କାଳିଦାସ ବର୍ଣ୍ଣନା କରିଅଛନ୍ତି । 'ପ୍ରଜାୟୈ ଗୃହମେଧିନାମ୍' (ସନ୍ତାନୋତ୍ପତ୍ତି ସକାଶେ ଗୃହସ୍ଥାଶ୍ରମ) ଏହି ଆଦର୍ଶ କାଳିଦାସ ପାଠକମାନଙ୍କ ସମ୍ମୁଖରେ ରଖିଅଛନ୍ତି । ସମସ୍ତ ଆଶ୍ରମମାନଙ୍କ ମଧ୍ୟରେ ଗୃହସ୍ଥାଶ୍ରମ ଶ୍ରେଷ୍ଠ, କାରଣ ତାହା ସର୍ବୋପକାରକ୍ଷମ ଅର୍ଥାତ୍ ଏହି ଆଶ୍ରମରେ ମନୁଷ୍ୟ ସକଳ ପ୍ରାଣୀଙ୍କର ଉପକାର କରିବାକୁ ଅବକାଶ ପାଇଥାଏ । ଗୃହସ୍ଥାଶ୍ରମରେ ନିଜ ଜାତି ସମ୍ମତ କାର୍ଯ୍ୟ କରି ବୃଦ୍ଧାବସ୍ଥାରେ କୌଣସି ତପୋବନକୁ ଯାଇ ଋଷିମାନଙ୍କର ସହବାସରେ ଆତ୍ମତତ୍ତ୍ୱ ବିଚାର କରିବା ବାଞ୍ଛନୀୟ, ଯୋଗାଭ୍ୟାସ କରିବା ଉଚିତ, ପରିଶେଷରେ ଯୋଗଦ୍ୱାରା

ଶେଷର ତ୍ୟାଗ କରି ଜୀବନ ସାର୍ଥକ କରିବା ବାଞ୍ଛନୀୟ—ଏହା ଥିଲା କାଳିଦାସଙ୍କର ଆଦର୍ଶ ।

କାଳିଦାସ ପ୍ରସଙ୍ଗକ୍ରମେ ଅନେକ ପାରିବାରିକ ଓ ସାମାଜିକ ସଦ୍‌ଗୁଣ ଉଲ୍ଲେଖ କରିଅଛନ୍ତି । ମାତା ପିତାଙ୍କ ପ୍ରତି ଭକ୍ତି, ପତି-ପତ୍ନୀଙ୍କର ପ୍ରେମ, ବନ୍ଧୁ ସ୍ନେହ, ସନ୍ତାନ ବାତ୍ସଲ୍ୟ ପ୍ରଭୃତି ପାରିବାରିକ ସମ୍ପର୍କର ପ୍ରେମମୟ ମନୋହର ଚିତ୍ର, ସେ ନିଜ ଗ୍ରନ୍ଥମାନଙ୍କରେ ଅଙ୍କିତ କରିଅଛନ୍ତି ଚଉଦ ବର୍ଷ ପାଇଁ ବନବାସ କରିବାକୁ ପଠାଇଥିବା କୈକେୟୀଙ୍କ ପ୍ରତି ରାମଚନ୍ଦ୍ରଙ୍କର ଅପାର ଭକ୍ତି ଥିଲା ! 'ମା ! ମୋର ପିତା ସ୍ୱର୍ଗସାଧନାଭୂତ ସତ୍ୟରୁ ବିଚ୍ୟୁତ ହୋଇନାହାନ୍ତି—ଏହି ପ୍ରକାରର କାରଣ ତୁମେ' ଏହିପରି କହି ସେ ତାଙ୍କର ଲଜ୍ଜା କପଟ ଦୂର କରିଥିଲେ--ତାହା କବି ଅତିସୁନ୍ଦର-ଭାବରେ ପ୍ରତିପାଦନ କରିଅଛନ୍ତି । ଏହା ଛଡ଼ା ଗୁରୁଜନଙ୍କର ଆଜ୍ଞା ଯୁକ୍ତ କି ଅଯୁକ୍ତ ବିଚାର ନ କରି ପାଳନ କରିବାକୁ ହେବ । (ଆଜ୍ଞା ଗୁରୂଣାମବିଚାରଣୀୟା) ପୂଜ୍ୟବର୍ଗଙ୍କର ପୂଜା କରିବାକୁ ହେବ । (ପ୍ରତିବଧ୍ନାତି ହି ଶ୍ରେୟଃ ପୂଜ୍ୟପୂଜାବ୍ୟତିକ୍ରମଃ) ଅତିଥି-ମାନଙ୍କର ସତ୍କାର କରିବାକୁ ହେବ, ପଣ୍ଡିତମାନଙ୍କର ସମ୍ମାନ କରିବାକୁ ହେବ--ଏହିପରି ଉପଦେଶମାନ ମଧ୍ୟ ପ୍ରସଙ୍ଗକ୍ରମେ ଦେଖିବାକୁ ମିଳେ ।

କାଳିଦାସଙ୍କ ଗ୍ରନ୍ଥମାନ ପର୍ଯ୍ୟାଲୋଚନା କଲେ ଜଣାଯାଏ--ପ୍ରୌଢ଼ାବିବାହ ତାଙ୍କର ସମ୍ମତ ଥିଲା । ମାଳବିକା, ପାର୍ବତୀ, ଶକୁନ୍ତଳା, ଇନ୍ଦୁମତୀ ଏମାନେ କାଳିଦାସଙ୍କର ଗ୍ରନ୍ଥମାନଙ୍କର ପ୍ରଧାନ ନାୟିକା । କବି ଏମାନଙ୍କୁ ବିବାହ ସମୟରେ ବିବିଧ କଳାକୁଶଳା ଓ ପ୍ରୌଢ଼ାରୂପେ ଚିତ୍ରିତ କରିଅଛନ୍ତି । ଏମାନେ

ନଜେ ନଜେ ସ୍ୱ ସ୍ୱ ପତି ବରଣ କରିଅଛନ୍ତି ଏହେତୁ କାଳିଦାସ ପ୍ରୀତିବିବାହର ପକ୍ଷପାତୀ ବୋଲି କେତେକ କହନ୍ତି । କିନ୍ତୁ ଅନ୍ୟମାନେ କହନ୍ତି—କାଳିଦାସ ପ୍ରୀତିବିବାହର ଦୁଷ୍ପରିଣାମତା ଦେଖାଇଅଛନ୍ତି । 'ଶାକୁନ୍ତଳ'ର ପଞ୍ଚମାଙ୍କରେ ରାଜା ଶକୁନ୍ତଳାଙ୍କୁ ପ୍ରତ୍ୟାଖ୍ୟାନ କଲାବେଳେ **'अतः परीक्ष्य कर्त्तव्यं विशेषात् संगतं रहः, अज्ञातहृदयेष्वेवं वैरीभवति सौहृदम् ।'** (ବିଶେଷ ବିଚାର କରି ଏକାନ୍ତରେ ପ୍ରେମ କରିବ, ପରସ୍ପର ହୃଦୟ ପରୀକ୍ଷା ନ କରି ପ୍ରେମ କଲେ ସେହି ପ୍ରେମ ପରିଣାମରେ ଶତ୍ରୁତାରେ ପରିଣତ ହୋଇଥାଏ । ) ଏହି ପ୍ରକାର ଶାର୍ଙ୍ଗରବଙ୍କର ଉକ୍ତିଚ୍ଛଳରେ ପ୍ରୀତିବିବାହର ଆକ୍ଷେପ କରିଅଛନ୍ତି । କିନ୍ତୁ ଆମ ମତରେ ଦୁଇଟିଯାକ ମତରେ ସତ୍ୟତା ନିହିତ ଅଛି । କାଳିଦାସ 'ରଘୁବଂଶ'ରେ ସବୁ ରାଜାମାନଙ୍କର କେବଳ ପ୍ରୀତିବିବାହ ବର୍ଣ୍ଣନା କରିନାହାନ୍ତି କିନ୍ତୁ ରଘୁ, ଦିଲୀପ ପ୍ରଭୃତି ରାଜାମାନଙ୍କର ବର୍ତ୍ତମାନ ପ୍ରଚଳିତ ରୀତିରେ ବ୍ରାହ୍ମବିଧିରେ ବିବାହସଂସ୍କାର ବର୍ଣ୍ଣନ କରିଅଛନ୍ତି । ଅବଶ୍ୟ ରାମ, କୁଶ ପ୍ରଭୃତି କେତେକ ରାଜାଙ୍କୁ ପରୀକ୍ଷାମଧ୍ୟରେ ଉତ୍ତମ ସ୍ତ୍ରୀ ମିଳିଥିଲେ ବୋଲି ଦେଖାଇଅଛନ୍ତି । ତଥାପି ସେମାନଙ୍କର ମଧ୍ୟରେ ପ୍ରେମ ବନ୍ଧନ ନ ଥିଲା, ଦୈ ସମସ୍ତ ସମ୍ବନ୍ଧ ଦୁଃଖପର୍ଯ୍ୟବସାୟୀ ହୋଇଥିଲା ବୋଲି କୌଣସିଠାରେ ବର୍ଣ୍ଣନା କରି ନାହାନ୍ତି । ଏହିହେତୁ ପ୍ରୀତିବିବାହ ପାରିବାରିକ ସୁଖ ସକାଶେ ଅତ୍ୟାବଶ୍ୟକ ବୋଲି କାଳିଦାସଙ୍କର ମତ ଥିଲାପରି ଜଣାଯାଏ ନାହିଁ । ପୁଣି ପ୍ରୀତିବିବାହ ପ୍ରତି ତାଙ୍କର ଉଦାସୀନତା ମଧ୍ୟ ନ ଥିଲା । ନ ହେଲେ ସେ ତାଙ୍କର ସମସ୍ତ ନାଟକରେ ପ୍ରୀତିବିବାହର ରମଣୀୟ ଚିତ୍ର ଅଙ୍କନ କରି ନ ଥାନ୍ତେ । ଉର୍ବଶୀ ଓ ଶକୁନ୍ତଳାଙ୍କର ବିବାହପରେ ଅବଶ୍ୟ ବିପତ୍ତି ଘଟିଛି—ଏହା ସତ୍ୟ, କିନ୍ତୁ ପ୍ରୀତି

ବିବାହ ତାର କାରଣ ନୁହେଁ, ତାର କାରଣ କେବଳ ଭବିତବ୍ୟତା--ଏହା ଆମେ ଆଗରୁ ଦେଖାଇଅଛୁଁ । ନାଟକମାନଙ୍କର ଯେ କୌଣସି ପାତ୍ର ମୁଖରୁ କୌଣସି ବାକ୍ୟ ଶୁଣି କବିଙ୍କର ତାହାହିଁ ସମ୍ମତ ବୋଲି ଭାବିବା ସମୁଚିତ ହେବ ନାହିଁ । କବିଙ୍କର ରଚନା କୌଶଳର ପରିପାଟୀରେ କୌଣସି ବିଶିଷ୍ଟ ପରିସ୍ଥିତିରେ ପାତ୍ରମାନଙ୍କର ହୃଦୟରେ ଯେଉଁ ଭାବ ଜାତ ହୋଇଥିଲା, ତାକୁ ସେହି ଭାବରେ ଚିତ୍ରିତ କରିବା ଦେଖାଯାଏ । ତଥାପି କେବଳ ବାହ୍ୟ ସୌନ୍ଦର୍ଯ୍ୟର ଆଧାରରେ ସଞ୍ଜାତ ପ୍ରେମ ସ୍ଥାୟୀ ହୋଇ ନ ଥାଏ । ଏହିହେତୁ ପ୍ରେମିକ ପ୍ରେମିକାମାନଙ୍କର ବିବାହ ପୂର୍ବରୁ ନିଜ ନିଜ ପିତାମାତାଙ୍କର ସମ୍ମତି ନେବା ଆବଶ୍ୟକ ଏବଂ ସେମାନେ ମଧ୍ୟ ସବୁଆଡ଼ୁ ବିଚାର କରି ପୁତ୍ର କନ୍ୟାଙ୍କୁ ସମୁଚିତ ଉପଦେଶ ଦେବା ସମୁଚିତ—ଏହି ଭାବ ସେ **'श्रीः साभिलाषापि गुरोरनुज्ञां धीरेव कन्या पितुराचकाङ्क्ष'** (ରଘୁ ୫, ୬୮ ) ଏହି ପଂକ୍ତିରେ ଲକ୍ଷ୍ମୀଙ୍କୁ ଗମ୍ଭୀର ପ୍ରକୃତ କନ୍ୟାସହ ଉପମା ଦେଇ ବ୍ୟକ୍ତ କରିଅଛନ୍ତି । ଏହାଙ୍କର ସମସ୍ତ ନାୟିକାମାନଙ୍କ ମଧ୍ୟରେ ପାର୍ବତୀ ଶ୍ରେଷ୍ଠ । ନିଜ ତପସ୍ୟା ଓ ଏକନିଷ୍ଠ ପ୍ରେମଦ୍ୱାରା ମହାଦେବଙ୍କୁ ଆୟତ୍ତ କରି ମଧ୍ୟ ସେ ଗାନ୍ଧର୍ବ ବିବାହ କରି ନ ଥିଲେ ଏବଂ ସ୍ୱାମୀମାନଙ୍କ ଦ୍ୱାରା ପିତାଙ୍କର ସମ୍ମତି ନେବା ସକାଶେ ଅନୁରୋଧ କରିଥିଲେ ବୋଲି 'କୁମାର ସମ୍ଭବ'ରେ ବର୍ଣ୍ଣିତ ହୋଇଅଛି । ଏଥିରୁ ମଧ୍ୟ ଉପର୍ଯ୍ୟୁକ୍ତ ଅନୁମାନ ପ୍ରମାଣିତ ହେଉଅଛି ।

**ରାଜ୍ୟତନ୍ତ୍ର** :—କାଳିଦାସଙ୍କର ତିନୋଟି ନାଟକ ଓ ରଘୁବଂଶର ପ୍ରଧାନ ପ୍ରତିପାଦ୍ୟ ବିଷୟ ରାଜଚରିତ ବର୍ଣ୍ଣନା । ଏହିହେତୁ ସେ ନିଜ ରାଜନୈତିକ ବିଚାର ସ୍ଥାନେ ସ୍ଥାନେ ବ୍ୟକ୍ତ

କରିଅଛନ୍ତି । ରାଜ୍ୟଶାସ୍ତ୍ର ଉପରେ ହେବା ଉଚିତ, ରାଜାଙ୍କଠାରେ କ କ ଗୁଣ ରହିବା ବାଞ୍ଛନୀୟ, ଇତ୍ୟାଦିବିଷୟରେ ତାଙ୍କର ନିର୍ଦ୍ଦିଷ୍ଟ ମତ ସେ ପ୍ରତିପାଦନ କରିଅଛନ୍ତି । ବର୍ତ୍ତମାନ ଏଠାରେ ସେ ସମସ୍ତ ବିଚାର କରିବା ପ୍ରାସଙ୍ଗିକ ଓ ମନୋରଞ୍ଜକ ହେବ ।

କାଳିଦାସଙ୍କ ସମୟରେ ହିନ୍ଦୁସ୍ଥାନରେ କେତେକ ଗଣ-ରାଜ୍ୟର ଅସ୍ତିତ୍ୱ ଥିଲା, ତଥାପି ସେମାନଙ୍କର ବର୍ଣ୍ଣନା କୌଣସିଠାରେ କରାଯାଇନାହିଁ । ସେ ସମସ୍ତ ବର୍ଣ୍ଣନା କରିବା ସକାଶେ କବି ନିଜ ଗ୍ରନ୍ଥମାନଙ୍କର କୌଣସି ପ୍ରସଙ୍ଗ ପାଇପାରି ନାହାନ୍ତି ବା ସେହି ପ୍ରକାର ରାଜ୍ୟ ପଦ୍ଧତି ସେ ପସନ୍ଦ ନ ଥିଲେ । ହିମାଳୟରେ ଅବସ୍ଥିତ ପାର୍ବତୀୟ ଗଣରାଜ୍ୟ 'ଉତ୍ସବ ସଙ୍କେତ' ରଘୁଙ୍କର ଦିଗ୍‌ବିଜୟ ପ୍ରସଙ୍ଗରେ କବିଙ୍କଦ୍ୱାରା ଉଲ୍ଲିଖିତ ହୋଇଅଛି । ମାତ୍ର ତାହାଠାରୁ ଯୁଦ୍ଧପ୍ରସଙ୍ଗ ଛଡ଼ା ଅନ୍ୟ କୌଣସି ବିଷୟରେ ପରିଚୟ ମିଳୁନାହିଁ । ସାଧାରଣ ପ୍ରଜାହିତତତ୍ପର ଏକତନ୍ତ୍ର-ରାଜ୍ୟ ପଦ୍ଧତି କାଳିଦାସଙ୍କର ସମ୍ମତ ଥିଲା । 'ମାଳବିକାଗ୍ନିମିତ୍ର' ରେ ମନ୍ତ୍ରିପରିଷଦର ଉଲ୍ଲେଖ ଦେଖାଯାଏ କିନ୍ତୁ ସେହି ପରିଷଦ୍ ପ୍ରଜାମାନଙ୍କଦ୍ୱାରା ନିର୍ବାଚିତ ହେବାର ପ୍ରମାଣ ମିଳେନାହିଁ । ତାହା ଛଡ଼ା ମନ୍ତ୍ରିପରିଷଦର ମତ ଅବଶ୍ୟ ରାଜା ପାଳନ କରିବେ— ଏହିପରି ଜଣାଯାଏ ନାହିଁ । କୌଟିଲ୍ୟଙ୍କର 'ଅର୍ଥଶାସ୍ତ୍ର'ରେ ସହାୟକ ମନ୍ତ୍ରୀ ଓ କାର୍ଯ୍ୟକାରୀ ଅମାତ୍ୟ—ଏହି ଦୁହିଙ୍କ ମଧ୍ୟରେ ଯେଉଁ ଭେଦ ଦେଖାଯାଏ, ତାହା କାଳିଦାସ ଦେଖାଇ ନାହାନ୍ତି । କାରଣ, ଉପର ଉଲ୍ଲିଖିତ ମନ୍ତ୍ରିପରିଷଦ୍ କେବଳ 'ଅମାତ୍ୟପରିଷଦ୍' ବୋଲି ଉଲ୍ଲିଖିତ ହୋଇ ଅଛି । କାଳିଦାସ ଅମାତ୍ୟ, ମନ୍ତ୍ରୀ, ସଚିବ—ଏହି ତିନୋଟି ଶବ୍ଦକୁ ଏକାର୍ଥ ମନେ କରୁଥିଲେ ।

ସେମାନଙ୍କର ପରାମର୍ଶ ନେଇ ରାଜା ଯାହା ସମୁଚିତ ମନେ କରୁଥିଲେ, ତାହା କରୁଥିଲେ । ରାଜା କୌଣସି କାରଣରୁ ରାଜ୍ୟର ବାହାରକୁ ଯାଉଥିଲେତ. ରାଜ୍ୟଭାର ମନ୍ତ୍ରୀଙ୍କୁ ସମର୍ପଣ କରି ଯାଉଥିଲେ । ଦଳୀପ ବଶିଷ୍ଠଙ୍କର ଆଶ୍ରମକୁ ଯିବାବେଳେ, ପୁରୁରବା ଉର୍ବଶୀଙ୍କ ସହିତ ଗନ୍ଧମାଦନ ପର୍ବତକୁ ବିହାରାର୍ଥ ଗଲାବେଳେ, ଏବଂ ରାଜଧାନୀରେ ଥିଲେ ମଧ୍ୟ ବିଷୟୋପଭୋଗାସକ୍ତ ଅଗ୍ନିବର୍ଣ୍ଣ ରାଜ୍ୟଭାର ମନ୍ତ୍ରୀଙ୍କ ହସ୍ତରେ ଅର୍ପଣ କରିଥିଲେ । ରାଜାଙ୍କର ଆକସ୍ମିକ ମୃତ୍ୟୁହେଲେ ତାଙ୍କ ପୁତ୍ରଙ୍କୁ ସିଂହାସନରେ ବସାଇବା ଏବଂ ସେ ନାବାଳକ ଥିବା ପର୍ଯ୍ୟନ୍ତ ତାଙ୍କର ମାତାଙ୍କର ପରାମର୍ଶ-ଅନୁଯାୟୀ ତାଙ୍କଦ୍ୱାରା ଉତ୍ତମ ରୂପେ ପ୍ରଜାପାଳନ କରିବା ଦାୟିତ୍ୱ ମନ୍ତ୍ରୀଙ୍କ ଉପରେ ନ୍ୟସ୍ତ ହେଉଥିଲା । କେବେକେବେ ସମସ୍ତ ଶାସନ ଭାର କେବଳ ମନ୍ତ୍ରୀଙ୍କ ହାତରେ ରହୁଥିଲା । ତଥା କେତେକ ରାଜା କେବଳ ମନ୍ତ୍ରୀମାନଙ୍କର ପରାମର୍ଶରେ ଚାଲୁଥିଲେ । ଉଦାହରଣ—ମୃଗୟା ଏକ ବ୍ୟସନରୂପେ ପରି-ଗୃହୀତ ହେଉଥିଲା । ଏହିହେତୁ ଦଶରଥ ମନ୍ତ୍ରୀମାନଙ୍କର ସମ୍ମତି ନେଇ ମୃଗୟାର୍ଥ ଅରଣ୍ୟକୁ ଯାଇଥିଲେ । ରାଜ୍ୟର ଭିନ୍ନ ଭିନ୍ନ ବିଭାଗର ଅଧିକାରୀମାନଙ୍କର ଉପାଧି ଥିଲା 'ତୀର୍ଥ' । ଏହା ମଧ୍ୟ କାଳିଦାସ ଉଲ୍ଲେଖ କରି ଅଛନ୍ତି । (ରଘୁ, ୧୭, ୬୮)

ଏକତନ୍ତ୍ରରାଜ୍ୟପଦ୍ଧତିବିଷୟରେ ପ୍ରଧାନ ଆକ୍ଷେପ କରାଯାଇଥାଏ ଯେ ସମଗ୍ର ରାଜ୍ୟମାନଙ୍କର ବ୍ୟବସ୍ଥା ଏକମାତ୍ର ବ୍ୟକ୍ତିଙ୍କର ଇଚ୍ଛା ଅନୁଯାୟୀ ନିୟନ୍ତ୍ରିତ ହୋଇଥାଏ । ଏଥିରେ ଯଦି ସେ କେତେବେଳେ ଅତ୍ୟାଚାରୀ ହୋଇ ଉଠିବେ, ତେବେ ପ୍ରଜାଙ୍କ ଉପରେ ଅନ୍ୟାୟ, ଅତ୍ୟାଚାର, ଜୋର ଜବରଦସ୍ତି ହେବା ବେଶି

ସମ୍ଭବ । ସେପରି ନ ହେବା ସକାଶେ ଅପର ପ୍ରାଚୀନ ନୀତି-ଶାସ୍ତ୍ରଜ୍ଞମାନେ ଦୁଇଟି ସଂରକ୍ଷକ ଉପାୟର (Safeguards) ଯୋଜନା କରି ଅଛନ୍ତି । ପ୍ରଥମ ଯୋଜନା ହେଉଛି—ନିୟମ ବିଧି ବିଧାନ କରିବା ଅଧିକାର ରାଜାଙ୍କ ହାତରେ ନ ରଖି ଅଭିଜ୍ଞ ଓ ନିଃସ୍ପୃହ ଋଷିମାନଙ୍କ ହସ୍ତରେ ଶନ୍ୟସ୍ତ କରାଯାଇଅଛି । ରାଜ୍ୟଶାସନ ଉପଯୋଗୀ ପ୍ରାୟ ସମସ୍ତ ନିୟମ ସ୍ମୃତିମାନଙ୍କରେ ଉପନିବଦ୍ଧ ହୋଇଅଛି । ରାଜାଙ୍କର ସେ ସମସ୍ତ ପରିବର୍ତ୍ତନ କରିବା ଅଧିକାର ନାହିଁ । ସମୟର ପରିସ୍ଥିତିବଶତଃ ନିୟମମାନଙ୍କର ପରିବର୍ତ୍ତନ ଆବଶ୍ୟକ ବୋଧ ହେଲେ ନୂଆ ନୂଆ ସ୍ମୃତି ଲେଖା-ଯାଉଥିଲା ଅଥବା ପ୍ରାଚୀନ ସ୍ମୃତିବାକ୍ୟମାନଙ୍କର ସମୟାନୁକୂଳ ଅର୍ଥ ବାହାର କରାଯାଉଥିଲା । ନିୟମ ବଦଳିଲେ ମଧ୍ୟ ତାହା ବଦଳିନାହିଁ ବୋଲି ଦେଖାଇ ହେବାରୀତି (fiction) ପ୍ରତ୍ୟେକ ଦେଶର ପ୍ରାଚୀନ ନୀତିଶାସ୍ତ୍ରରେ ଦେଖାଯାଏ । ରାଜା ମନୁପ୍ରଭୃତି ନୀତି ଅନୁଯାୟୀ କାର୍ଯ୍ୟ କରିବେ—ଏହି ଲକ୍ଷ୍ୟ କାଳିଦାସ **'नृपस्य वर्णाश्रमपालनं यत स एव धर्मो मनुना प्रणीतः'** (ରଘୁ ୧୪. ୬୭) **'रेखामात्रमपि क्षुण्णादामनोर्वर्त्मनः परम्, न व्यतीयुः प्रजास्तस्य विनेतुर्नेमिवृत्तयः'** (ରଘୁ, ୧, ୧୭) ଇତ୍ୟାଦି ଶ୍ଲୋକମାନଙ୍କରେ ବ୍ୟକ୍ତ କରିଅଛନ୍ତି । ସେହିପରି ନ୍ୟାୟ ବିଚାର କଲାବେଳେ ରାଜା ଅତିଥି ଧର୍ମବିଦମାନଙ୍କର ସାହାଯ୍ୟ ନେଉଥିଲେ ବୋଲି ବର୍ଣ୍ଣନା କରିଅଛନ୍ତି । (ରଘୁ, ୧୭. ୩୮) ଦ୍ୱିତୀୟ ସଂରକ୍ଷକ ଉପାୟ ହେଉଛି ରାଜକୁମାରମାନଙ୍କୁ ଉତ୍ତମ ଶିକ୍ଷା ଦେଇ, ଏବଂ ଇନ୍ଦ୍ରିୟ-ନିଗ୍ରହର ଉପାଦେୟତା ଭଲରୂପେ ବୁଝାଇ ଉପଯୁକ୍ତ ମନେ କଲେ ଯୁବରାଜ ପଦରେ ଅଭିଷିକ୍ତ କରାଯାଉଥିଲା । କୌଟିଲ୍ୟଙ୍କ ଅର୍ଥ-ଶାସ୍ତ୍ରରେ ରାଜକୁମାରମାନଙ୍କର ଶିକ୍ଷା ବିଷୟରେ ବିସ୍ତୃତ ବିଚାର

କରାଯାଇଅଛି ତଥା କାମକ୍ରୋଧାଦିଦୁର୍ଗୁଣ ପ୍ରଭାବରେ ଗନାଶପ୍ରାପ୍ତ ଅନେକ ରାଜାମାନଙ୍କ ଉଦାହରଣ ଦେଇ 'ତସ୍ମାଦରି ଷଡ଼୍‌ବର୍ଗ-ତ୍ୟାଗେନ ଇନ୍ଦ୍ରିୟଜୟଂ କୁର୍ବୀତ । (ଶରୀରର ଅନ୍ତଃସ୍ଥକାରୀ ଛଅଟି ଶତ୍ରୁଙ୍କ ନାଶ କରି ଇନ୍ଦ୍ରିୟମାନଙ୍କୁ ଆୟତ୍ତ କରିବ) ଏହିପରି ଉପଦେଶ ଦିଆଯାଇଅଛି । କାଳିଦାସଙ୍କର ସମସାମୟିକ ସମୁଦ୍ର-ଗୁପ୍ତ, ଚନ୍ଦ୍ରଗୁପ୍ତ ପ୍ରଭୃତି ରାଜାମାନଙ୍କର ପାଣ୍ଡିତ୍ୟ, କଳାକୁଶଳତା-ପ୍ରଭୃତିର ଯେଉଁ ଉଲ୍ଲେଖ ଉତ୍କୀର୍ଣ୍ଣ ଲେଖମାନଙ୍କରୁ ମିଳୁଅଛି, ତହିଁରୁ ଜଣାଯାଏ ଯେ ସେମାନଙ୍କର ଶିକ୍ଷାବିଷୟରେ ବିଶେଷ ସତର୍କତା ଅବଲମ୍ବନ କରାଯାଉଥିଲା । ପୂର୍ବବର୍ତ୍ତୀ ଏକ ପରିଚ୍ଛେଦରେ ପ୍ରୟାଗର ସ୍ତମ୍ଭରେ ଉତ୍କୀର୍ଣ୍ଣ ହରିଷେଣକୃତ ପ୍ରଶସ୍ତିରୁ ଏକ ଶ୍ଳୋକ ଉଦ୍ଧୃତ କରାଯାଇଅଛି । ତହିଁରୁ ସ୍ପଷ୍ଟ ଜଣାଯାଏ ଯେ ପ୍ରଥମ ଚନ୍ଦ୍ରଗୁପ୍ତ ଅନ୍ୟାନ୍ୟ ରାଜକୁମାରମାନଙ୍କୁ ଦୂରରେ ରଖି ସମୁଦ୍ରଗୁପ୍ତଙ୍କୁ କେବଳ ତାଙ୍କର ଯୋଗ୍ୟତା ହେତୁ ଉତ୍ତରାଧିକାରୀ କରିଥିଲେ । ଏହି ବିଷୟର ଉଲ୍ଲେଖ ଗୁପ୍ତବଂଶୀୟ ଦ୍ୱିତୀୟ ଶିଳାଲେଖରେ ମଧ୍ୟ ଦେଖାଯାଏ । କାଳିଦାସ ମଧ୍ୟ ରଘୁବଂଶରେ ବର୍ଣ୍ଣନା କରିଅଛନ୍ତି ଯେ ଦିଲୀପ କୁମାର ରଘୁଙ୍କର ଶିକ୍ଷାବିଷୟରେ କିପରି ଯତ୍ନଶୀଳ ଥିଲେ । ପୁଣି କୁହାଯାଇଅଛି ଯେ **'निसर्ग-संस्कारविनीत इत्यसौ नृपेण चक्रे युवराजशब्दभाक्'** (ରାଜା ଦିଲୀପ ସ୍ୱଭାବତଃ ଏବଂ ଉତ୍ତମଶିକ୍ଷା ବଶତଃ ବିନୟୀସମ୍ପନ୍ନ ହେବା ହେତୁ ରଘୁଙ୍କୁ ଯୁବରାଜରୂପେ ଅଭିଷିକ୍ତ କଲେ) । ରାଜସିଂହାସନ ଆରୋହଣ କାଳମାନେ ରାଜା ଅତିଥି ବାହ୍ୟଶତ୍ରୁମାନଙ୍କୁ ଜିଣିବା ପୂର୍ବରୁ ଅନ୍ତଃଶତ୍ରୁମାନଙ୍କୁ ଜୟ କରିଥିଲେ । ଦଶରଥଙ୍କର ମୃଗୟା, ଦ୍ୟୂତ, ମଦ୍ୟ ଓ ସ୍ତ୍ରୀ—ଏ ମଧ୍ୟରୁ କୌଣସି ବ୍ୟସନ ନ ଥିଲା (ରଘୁ ୯, ୭) ଦିଲୀପ ଜ୍ଞାନୀ ଥିଲେ କିନ୍ତୁ ବାଚାଳ ନଥିଲେ,

ବଳବାନ୍ ଥିଲେ ମଧ୍ୟ କ୍ଷମାଶୀଳ ଥିଲେ, ଦାତା ହେଲେ ମଧ୍ୟ ଆତ୍ମଶ୍ଳାଘୀ ନ ଥିଲେ--ଇତ୍ୟାଦି ବର୍ଣ୍ଣନାରେ ରାଜାଙ୍କଠାରେ କି କି ସ୍ୱଗୁଣ ଥିବା ଆବଶ୍ୟକ, ସେ କେଉଁ କେଉଁ ଦୁର୍ଗୁଣରୁ ଦୂରରେ ରହିବେ—ଏ ସମସ୍ତ ବିଷୟର ଦିଗଦର୍ଶନ କରାଯାଇଅଛି । ରାଜା ନିଜ ଜୀବନକ୍ରମ କିପରି ରଖିବେ, ଏହି ବିଷୟର ବିସ୍ତୃତ ବର୍ଣ୍ଣନା କୌଟିଲ୍ୟ କରିଅଛନ୍ତି ଏବଂ ଦିନ ଓ ରାତିର ୨୦ ଘଣ୍ଟାକୁ ୧୬ ଭାଗରେ ବିଭକ୍ତ କରି ପ୍ରତ୍ୟେକ ଭାଗ ସକାଶେ ସ୍ୱତନ୍ତ୍ର କର୍ତ୍ତବ୍ୟ ନିରୂପଣ କରିଅଛନ୍ତି । ନିରୂପଣ ଅନୁଯାୟୀ କାଳିଦାସଙ୍କର ନାୟକ ନିଜ ଜୀବନଚର୍ଯ୍ୟା ରଖୁଥିଲେ (**रात्रिंदिवविभागेषु यदादिष्टं महीभृताम्, तत् सिषेवे नियोगेन स विकल्पपराङ्मुखः ॥**) (ରଘୁ ୧୭, ୪୯) ବିକ୍ରମୋର୍ବଶୀୟ'ରେ ଦେଖାଯାଏ ଯେ ରାଜା ପ୍ରାତଃକାଳ ରାଜକାର୍ଯ୍ୟ ଶେଷ କରି (କାର୍ଯ୍ୟାସନାଦୁତ୍ଥିତଃ) ବିହାର କଲାବେଳେ ଉର୍ବଶୀଙ୍କ ବିଷୟ ଭାବୁଥିଲେ । 'ଶାକୁନ୍ତଳ' ରେ କଣ୍ୱ ଶିଷ୍ୟମାନେ ଶକୁନ୍ତଳାଙ୍କୁ ନେଇ ରାଜାଙ୍କ ସମୀପରେ ପହଞ୍ଚିଲା ବେଳକୁ ରାଜା ରାଜସଭାରେ ଲୋକମାନଙ୍କର ନ୍ୟାୟ-ବିଚାର କରି ଧର୍ମାସନରୁ ଉଠୁଥିଲେ, ଏହାର ସମୟରେ କଣ୍ୱଶିଷ୍ୟ-ମାନଙ୍କର ଆଗମନ ରାଜାଙ୍କୁ ଜଣାଇବାକୁ କଞ୍ଚୁକୀ କଷ୍ଟବୋଧ କରୁଥିଲେ । ଏ ସମସ୍ତ ଉଲ୍ଲେଖ କରି ରାଜା ସବୁବେଳେ ପ୍ରଜାହିତତତ୍ପର ହେବା ବାଞ୍ଛନୀୟ ବୋଲି କାଳିଦାସ ଉପଦେଶ ଦେଇଅଛନ୍ତି । ବେଶୀ କହିବା ଦରକାର ନାହିଁ । କାଳିଦାସ ରାଜନ୍ ଶବ୍ଦ 'ରାଜ ଶୋଭନେ' ଧାତୁରୁ ଉତ୍ପନ୍ନ ବୋଲି ନ କହି 'ରଞ୍ଜ୍ ଅନୁରଞ୍ଜନେ' ଧାତୁରୁ ଉତ୍ପନ୍ନ ବୋଲି ନିର୍ଦ୍ଦେଶ କରି (ତଥୈବ ସୋଽଭୂଦନ୍ୱର୍ଥୋ ରାଜା ପ୍ରକୃତିରଞ୍ଜନାତ୍) ପ୍ରକୃତିରଞ୍ଜନ ରାଜାଙ୍କର ପ୍ରଥମଧ୍ୟେୟ ହେବା ଉଚିତ ବୋଲି ସୂଚିତ କରି ଅଛନ୍ତି ।

**କର**— ରାଜାଙ୍କୁ ପ୍ରଜାମାନଙ୍କ ଆୟରୁ ଷଷ୍ଠାଂଶ (ଛଅ ଭାଗରୁ ଏକ ଭାଗ) କର ରୂପେ ମିଳୁଥିଲା । ଏହି କର ସକଳ ବର୍ଣ୍ଣ ଓ ଆଶ୍ରମ ଉପରେ ବସିଥିଲା । **(यथास्वमाश्रमैश्चक्रे वर्णैरपि षडंशभाक् )** (ରଘୁ ୧୭, ୬୫) ଅରଣ୍ୟବାସୀ ବାନପ୍ରସ୍ଥ ତଥା ତପସ୍ୱୀ ବନଜାତ ନୀବାରଧାନ୍ୟର ଷଷ୍ଠାଂଶ ମଧ୍ୟ ରାଜଅଧିକାରୀ-ମାନଙ୍କୁ ଦେବା ସକାଶେ ନଦୀ ତଟରେ ଜମା କରି ରଖୁଥିଲେ । **(तान्युञ्छषाष्ठाङ्कितसैकतानि शिवानि वस्तीर्थजलानि कच्चित् ?)** (ରଘୁ ୫) ତଥାପି ଦୁଷ୍ୟନ୍ତ ଭଳିଆ ମହାନୁଭାବ ରାଜାମାନେ ଏହି ଷଷ୍ଠାଂଶ ଗ୍ରହଣ ନ ଥିଲେ । ଯେ ତପସ୍ୱୀମାନେ ତାଙ୍କ ତପସ୍ୟାର ଯେଉଁ ଭାଗ ଦାଅନ୍ତି, ତାହା ଅଧିକ ମୂଲ୍ୟବାନ ମନେ କରୁଥିଲେ । **(तपः षड्भागमक्षय्यं ददत्यारण्यका हि नः)** (ଶାକୁନ୍ତଳ) ରାଜା ସମ୍ପତ୍ତି କେଉଁଭଳେ କର ଗ୍ରହଣ କରୁ ନ ଥିଲେ ବୋଲି କାଳିଦାସ କେତେକ ସ୍ଥଳରେ ଉଲ୍ଲେଖ କରିଅଛନ୍ତି । **(प्रजानामेव भूत्यर्थं स ताभ्यो बलिमग्रहीत्, सहस्रगुणमुत्स्रष्टुमादत्ते हि रसं रविः ॥)** (ରଘୁ ୧, ୧୮) ଦିଗ୍‌ବିଜୟରେ ରଘୁ ଯେଉଁ ସମସ୍ତ ଅମିତ ସମ୍ପତ୍ତି ପାଇଥିଲେ, ସେ ସମସ୍ତ ସେ ଦାନ କରିଦେଇଥିଲେ । ତାପରେ ଗୁରୁ ଦକ୍ଷିଣା ସକାଶେ ଯେତେବେଳେ ଜଣେ କୃତବିଦ୍ୟ ବ୍ରାହ୍ମଣ ତାଙ୍କ ସମ୍ମୁଖରେ ଉପସ୍ଥିତ ହେଲେ, ସେତେବେଳେ ସେ ନିଜ ସମ୍ମାନ ରକ୍ଷା ସକାଶେ ପ୍ରଜାମାନଙ୍କ ଉପରେ ଅଧିକ କର ନ ବସାଇ କୁବେରଙ୍କୁ ଆକ୍ରମଣ କରିବାକୁ ସ୍ଥିର କଲେ ଏବଂ ତାଙ୍କଠାରୁ ସମସ୍ତ ଧନ ବ୍ରାହ୍ମଣଙ୍କୁ ଦେଇଦେଲେ । ରାଜ୍ୟରେ ଯେତେବେଳେ ଅପୁତ୍ରକ ଧନୀ ବ୍ୟବସାୟୀ ମଲା, ସେତେବେଳେ ତାର ସମସ୍ତ ସମ୍ପତ୍ତି ତାଙ୍କାଳିକ ରାଜ୍ୟନିୟମ ଅନୁସାରେ ରାଜଗାମୀ ହେଉଥିଲେ ମଧ୍ୟ ଦୁଷ୍ୟନ୍ତ ସେହି ସମ୍ପତ୍ତି ପ୍ରତି ଲୋଭ ନ କରି,

ସେହି ବ୍ୟାପାରର, ଗର୍ଭବତୀ ସ୍ତ୍ରୀଙ୍କ ନାମରେ ଜମା ରଖିବାକୁ ଆଦେଶ ଦେଇଥିଲେ । ଏଥିରୁ ରାଜାମାନେ କେତେଦୂର ନିର୍ଲୋଭ ହେବା ଉଚିତ — ସେ ବିଷୟରେ କାଳିଦାସ ଇଙ୍ଗିତ ଦେଇଅଛନ୍ତି ।

**ରାଜ କର୍ତ୍ତବ୍ୟ :—** ଲୋକମାନଙ୍କଠାରୁ କର ନେଉଥିବା ହେତୁ ରାଜାଙ୍କୁ ଅନେକ କର୍ତ୍ତବ୍ୟ ପାଳନ କରିବାକୁ ପଡୁଥିଲା । ସେ ମଧ୍ୟରୁ କେତେକ ପ୍ରଧାନ କର୍ତ୍ତବ୍ୟର ନିର୍ଦ୍ଦେଶ (**प्रजानां विनयाधाना द्रक्षणाद्भरणादपि, स पिता, पितरस्तासां केवलं जन्महेतवः ॥**) (ରଘୁ ୧, ୨୦) ଏହି ଶ୍ଳୋକରେ କରାଯାଇଅଛି । ଲୋକମାନଙ୍କୁ ରକ୍ଷା କରିବା, ଶିକ୍ଷା ଦେବା ଏବଂ ସେମାନଙ୍କର ଜୀବିକା ସାଧନ ପ୍ରସ୍ତୁତ କରିବା ଏ ସମସ୍ତ ରାଜାଙ୍କର ମୁଖ୍ୟ କର୍ତ୍ତବ୍ୟ 'ରଘୁବଂଶ'ର ରାଜାମାନେ ଭଲରୂପେ ପାଳନ କରୁଥିଲେ ବୋଲି କାଳିଦାସ ବର୍ଣ୍ଣନା କରିଅଛନ୍ତି । ସେମାନଙ୍କର ରଜ୍ୟପାଳନ ସମୟରେ ପ୍ରଜାମାନଙ୍କର ଶତ୍ରୁ ଆକ୍ରମଣଭୟ ନ ଥିଲା, ଦଣ୍ଡଦାତାଙ୍କର କଠୋର ଶାସନ ଫଳରେ ଲୋକମାନେ କେବଳ ଚୋରମାନଙ୍କର ଚୋରର ପରିଚୟ ପାଉଥିଲେ, ପୁତ୍ରଜନ୍ମ ମହୋତ୍ସବରେ ମୁକ୍ତ କରିବା ସକାଶେ କାରାଗାରରେ କୌଣସି ବନ୍ଦୀ ନ ଥିଲେ, ତାଙ୍କ ରାଜ୍ୟରେ ଏତେଦୂର ଶାନ୍ତି ଓ ସୁବ୍ୟବସ୍ଥା ଥିଲା ଯେ ରାତିରେ ବାହାରଚ୍ଛଳକୁ ଯିବାବେଳେ ଅଭିସାରିକାମାନେ ଶ୍ରମବଶତଃ ମାର୍ଗରେ ନିଦ୍ରାବଶ ହୋଇଯାଉଥିଲେ, ସେ ସମୟରେ ସେମାନଙ୍କ ପରିହିତ ବସ୍ତ୍ର ଅନ୍ଦୋଳିତ କରିବାକୁ ବାୟୁର ମଧ୍ୟ ସାହାସ ହେଉ ନ ଥିଲା । ଦଶରଥଙ୍କ ରାଜ୍ୟରେ ରୋଗର ଚିହ୍ନ ମଧ୍ୟ ନଥିଲା, ତେବେ ଶତ୍ରୁ ଆକ୍ରମଣ କିପରି ହେବ ? (ରଘୁ ୯, ୪) ରାଜା ଅତିଥିଙ୍କ ଶାସନରେ ନଦୀମାନ ନାଳ ପରି ଓ ଗହନବନ ଉଦ୍ୟାନ ପରି ବ୍ୟବସାୟୀମାନଙ୍କୁ ବୋଧ ହେଉଥିଲା ଏବଂ ବ୍ୟବସାୟୀମାନେ

ହିମାଳୟ ପର୍ବତ ଉପରେ ନିଜ ଘର ପରି ବିନା ଶଙ୍କାରେ ଭ୍ରମଣ କରୁଥିଲେ (ରଘୁ ୧୨, ୨୪)—ଏହିପରି ବର୍ଣ୍ଣନା ରଘୁବଂଶରେ ଦେଖିବାକୁ ମିଳେ । ବ୍ୟବସାୟୀ ପରି ତପସ୍ୟା କରୁଥିବା ଅରଣ୍ୟବାସୀ ଋଷିମାନଙ୍କୁ ରାକ୍ଷସାଦିଙ୍କ ଉପଦ୍ରବରୁ ରକ୍ଷା କରିବା ରାଜାଙ୍କର ପ୍ରଧାନ କର୍ତ୍ତବ୍ୟରୂପେ ଧରାଯାଉଥିଲା । ଏହିହେତୁ ଯେତେବେଳେ ତପସ୍ୱୀମାନେ ଦୁଷ୍ୟନ୍ତଙ୍କ ସମୀପରେ ଉପସ୍ଥିତ ହେଲେ, ସେତେବେଳେ 'ଋଷିମାନଙ୍କର ତପସ୍ୟାରେ କୌଣସି ବିଘ୍ନ ହୋଇନାହିଁତ ? ତପୋବନର ପ୍ରାଣୀମାନଙ୍କୁ କେହି ହତ୍ୟା କରି ନାହିଁତ ? ଅଥବା ମୋର ଦୁଷ୍କୃତ ବଶତଃ ଅରଣ୍ୟର ଲତା-ବୃକ୍ଷ ପ୍ରଭୃତିଙ୍କର ଫୁଲ ଫୁଟିବା ଓ ଫଳ ଫଳିବା ବନ୍ଦ ହୋଇଯାଇ ନାହିଁତ ? ବୋଲି ନାନା ପ୍ରକାର ସଂକଳ୍ପ ବିକଳ୍ପ ଦୁଷ୍ୟନ୍ତଙ୍କ ମନରେ ଉଠିଥିଲା । ଏହିପରି ପ୍ରଶ୍ନ ରଘୁ ମଧ୍ୟ କୌତ୍ସଙ୍କୁ କରିଥିଲେ । (ରଘୁ ୫, ୪-୯) ଏଥିରୁ ରାଜ୍ୟର ଶାନ୍ତି ଓ ସୁବ୍ୟବସ୍ଥା-ବିଷୟରେ କାଳିଦାସଙ୍କର କିପରି ଧାରଣା ଥିଲା, ତାର ପରିଚୟ ମିଳେ ।

**ଶିକ୍ଷା** :— ଲୋକମାନଙ୍କୁ ଶିକ୍ଷିତ କରିବା ରାଜାଙ୍କର ପ୍ରଧାନ କର୍ତ୍ତବ୍ୟ' ବୋଲି ଧରାଯାଉଥିଲା । ଏଥିସକାଶେ ରାଜ୍ୟର ସ୍ଥାନେ ସ୍ଥାନେ ନଦୀମାନଙ୍କର ତଟ ପ୍ରଦେଶରେ ଋଷିମାନଙ୍କର ଆଶ୍ରମ ରହୁଥିଲା ଏବଂ ସେମାନଙ୍କର ଜୀବିକାଯନ୍ତ୍ରପୋଷଣସକାଶେ ଆଖପାଖ କ୍ଷେତ ଛାଡ଼ି ଦିଆଯାଉଥିଲା । ଏହି ଆଶ୍ରମମାନଙ୍କର ଶିକ୍ଷାର କ୍ରମ ବିନା ବିଘ୍ନରେ ଚଳାଇବା ସକାଶେ ରାଜା ଏକଜଣଙ୍କୁ ଅଧିକାରୀରୂପେ ନିଯୁକ୍ତ କରୁଥିଲେ 'ଆଶ୍ରମର ସମସ୍ତ କାର୍ଯ୍ୟ ନିର୍ବିଘ୍ନରେ ଚାଲୁଅଛି—ଏହା ଦେଖିବା ସକାଶେ ମୁଁ ଏଠାକୁ ଅଧିକାରୀ ରୂପରେ ଆସିଅଛି' ଏହିପରି ଦୁଷ୍ୟନ୍ତ 'ଶାକୁନ୍ତଳ'ରେ

ନାଚର ପ୍ରଥମ ପରିଚୟ ଦେଇଅଛନ୍ତି । ଶିକ୍ଷା ସମାପ୍ତି ପରେ ଶିଷ୍ୟଙ୍କୁ ଯେଉଁ ଗୁରୁଦକ୍ଷିଣା ଦେବାକୁ ପଡ଼ୁଥିଲା, ତାହା ସେ ରାଜାଙ୍କ ପାଖରୁ ଅନାୟାସରେ ପାଇପାରୁଥିଲା । ଏହିପରି ଅପ୍ରତ୍ୟକ୍ଷ ଭାବରେ ରାଜା ଶିକ୍ଷା ସକାଶେ ଧନସାହାଯ୍ୟ କରୁଥିଲେ । ବ୍ରହ୍ମଚାରୀ କୌତ୍ସଙ୍କୁ ଚଉଦହଜାର ସ୍ୱର୍ଣ୍ଣମୁଦ୍ରା ଗୁରୁଦକ୍ଷିଣା ରୂପରେ ଦେବାକୁ ପଡ଼ିଥିଲା, ଏବଂ ରଘୁ କୁବେରଙ୍କ ଠାରୁ ସେ ସମସ୍ତ ପାଇ କୌତ୍ସଙ୍କୁ ଦେଇଥିଲେ ବୋଲି ରଘୁବଂଶରେ ବର୍ଣ୍ଣିତ ହୋଇଅଛି ।

**ପୋଷଣ**:— ରାଜାମାନେ ରାସ୍ତାଘାଟପ୍ରଭୃତି ଗମନାଗମନୋପଯୋଗୀ ସାଧନମାନ ପ୍ରସ୍ତୁତ କରି, ଶାନ୍ତି ଓ ଶୃଙ୍ଖଳାର ବ୍ୟବସ୍ଥା କରି ବ୍ୟବସାୟୀମାନଙ୍କୁ ପ୍ରୋତ୍ସାହିତ କରୁଥିଲେ । ଏହା ଛଡ଼ା ରାଜ୍ୟପକ୍ଷରୁ କେତେକ ଛୋଟ ବଡ଼ କାରଖାନା ସ୍ଥାପନ କରାଯାଉଥିଲା, ଯାହାଦ୍ୱାରା ଲୋକମାନଙ୍କର ଜୀବିକାନିର୍ବାହର ପଥ ଉନ୍ମୁକ୍ତ ହେଉଥିଲା । କାଳିଦାସଙ୍କର ଗ୍ରନ୍ଥମାନଙ୍କରେ ଏ ସମସ୍ତର ବିସ୍ତୃତ ବର୍ଣ୍ଣନା ଦେଖାଯାଏ ନାହିଁ, ତଥାପି ଏକ କ ଦୁଇ ସ୍ଥାନରେ ସେତୁ ଅର୍ଥାତ୍ ନଦୀ ଉପରେ ବଡ଼ ବଡ଼ ପଥର ବନ୍ଧ ବାନ୍ଧିବା, କୂପ କରିବା, ବଣୁଆହାତୀ ଧରିବା, ଏବଂ ଖଣିମାନଙ୍କରୁ ରତ୍ନ ଆହରଣ କରିବା ପ୍ରଭୃତି କାର୍ଯ୍ୟମାନ ନିର୍ଦ୍ଦିଷ୍ଟ ହୋଇଅଛି । ସେଥିରୁ ତାଙ୍କର ସମ୍ବନ୍ଧରେ ପୂର୍ବର ସେହିପରି କଳ୍ପନା କରାଯାଇପାରେ (ରଘୁ ୧୬,୫୨, ୧୭,୬୬)

**ଯଜ୍ଞକର୍ମ**:—କାଳିଦାସଙ୍କ ସମୟରେ ଦେବତାମାନେ ଯଜ୍ଞଦ୍ୱାରା ସନ୍ତୁଷ୍ଟ ହୁଅନ୍ତି । (ରଘୁ ୧,୬୨) ଏହିପରି ଲୋକମାନଙ୍କର ଧର୍ମବିଶ୍ୱାସ ହେତୁ ରାଜାମାନେ ସମୟ ସମୟରେ ନାନାପ୍ରକାର ଯଜ୍ଞ

ଅନୁଷ୍ଠାନ କରୁଥିଲେ । ଦକ୍ଷିଣରେ ଆନ୍ଧ୍ର ଓ ବାକାଟକମାନେ ଅପ୍ତୋର୍ଯାମ, ଅଗ୍ନିଷ୍ଟୋମ ପ୍ରଭୃତି ଅନେକ ଯାଗ କରିଥିଲେ ବୋଲି ସେମାନଙ୍କ ଦ୍ୱାରା ଉତ୍କୀର୍ଣ୍ଣ ଲେଖମାନଙ୍କରେ ଉଲ୍ଲିଖିତ ହୋଇଅଛି ! କାଳିଦାସ ମଧ୍ୟ ନିଜ କାବ୍ୟମାନଙ୍କରେ ଦିଲୀପ, ରଘୁ ପ୍ରଭୃତି ରାଜାମାନଙ୍କର ଯଜ୍ଞ ବର୍ଣ୍ଣନା କରିଅଛନ୍ତି । ରାଜା ଦିଲୀପ ଯଜ୍ଞଦ୍ୱାରା ସ୍ୱର୍ଗର ଇନ୍ଦ୍ର, ବୃଷ୍ଟିଦ୍ୱାରା ମର୍ତ୍ତ୍ୟଲୋକ ପାଳନ କରୁଥିଲେ । (ରଘୁବଂଶ) ବଶିଷ୍ଠଙ୍କ ଆଶ୍ରମକୁ ଯିବାବେଳେ ଯାଜ୍ଞିକମାନଙ୍କୁ ଦିଆଯାଇଥିବା ଗ୍ରାମମାନଙ୍କରେ ଅନେକ ଯଜ୍ଞସ୍ତମ୍ଭ ଦେଖିଥିଲେ ବୋଲି କାଳିଦାସ ବର୍ଣ୍ଣନ କରିଅଛନ୍ତି । ତହିଁରୁ ରାଜାମାନେ ଯଜ୍ଞକର୍ମ ସକାଶେ ବିଦ୍ୱାନ୍ ଓ ଧାର୍ମିକ ବ୍ରାହ୍ମଣମାନଙ୍କୁ ଅଗ୍ରହାର ବା ଶାସନ ଦାନ କରୁଥିଲେ ବୋଲି ସୂଚନା ମିଳେ ।

ଏହା ଛଡ଼ା ରାଜାଙ୍କୁ ଧର୍ମସଂରକ୍ଷଣ, ନ୍ୟାୟଦାନ ପ୍ରଭୃତି କର୍ତ୍ତବ୍ୟ ପାଳନ କରିବାକୁ ପଡ଼ୁଥିଲା । ଲୋକମାନଙ୍କ ଦ୍ୱାରା ସ୍ମୃତି ଅନୁମୋଦିତ ବର୍ଣ୍ଣାଶ୍ରମଧର୍ମ ପାଳନ କରାଇବା ରାଜାଙ୍କର କର୍ତ୍ତବ୍ୟ ଥିଲା । ସେ କୌଣସି ଲୋକକୁ ସ୍ୱଜାତିବିହିତ କର୍ମ ତ୍ୟାଗ କରି ଅନ୍ୟ ଜାତିର କର୍ମ କରିବାକୁ ଦେଉନଥିଲେ । ରାଜ-କର୍ମଚାରୀମାନେ ଅଭିଯୋଗ ଶୁଣି ନିଷ୍ପକ୍ଷପାତ ରୀତିରେ ବାଦ-ପ୍ରତିବାଦମାନଙ୍କର ଯେପରି ସମାଧାନ ହେବ, ସେହିପରି ନ୍ୟାୟ ବିଚାର କରିବା ଉଚିତ ବୋଲି କାଳିଦାସ କେତେକ ସ୍ଥଳରେ ସୂଚନା ଦେଇଛନ୍ତି । ଦିଲୀପ ସବୁବେଳେ ଗୁଣର ଆଦର କରୁଥିଲେ । ସଜ୍ଜନ ଲୋକ ତାଙ୍କର ଶତ୍ରୁ ହେଲେ ମଧ୍ୟ, ସେ ତାଙ୍କୁ ସମ୍ମାନ ଦେଉଥିଲେ, ନିଜ ନିକଟ ସମ୍ବନ୍ଧୀ ହେଲେ ମଧ୍ୟ ଯଦି ସେ ଦୁର୍ଜ୍ଜନ ହୋଇଥାଏ, ତାକୁ ତ୍ୟାଗ କରୁଥିଲେ । ଅପରାଧୀର

ଅନୁରୂପ ଦଣ୍ଡ ଦେଇ ରଘୁ ସର୍ବପ୍ରକାର ଲୋକଙ୍କର ମନ ଆକର୍ଷଣ କରିପାରୁଥିଲେ । ଏହିପରି ବର୍ଣ୍ଣନାରୁ ତାତ୍କାଳିକ ରାଜାମାନଙ୍କର ନ୍ୟାୟପ୍ରିୟତା ଓ ନିରପେକ୍ଷତାର ମହତ୍ତ୍ୱ କାଳିଦାସ ଦେଖାଇ ଅଛନ୍ତି ।

ରଘୁବଂଶର ରାଜାମାନେ ସଂରକ୍ଷଣ, ଶିକ୍ଷଣ, ପୋଷଣ-ପ୍ରଭୃତି ନାନାବିଧ ଉପାୟରେ ପ୍ରଜାମାନଙ୍କୁ ପାଳନ କରୁଥିଲେ ଏବଂ ସେମାନେ ପ୍ରଜାମାନଙ୍କର ପ୍ରକୃତ ପିତା ଥିଲେ ବୋଲି କାଳିଦାସ ସ୍ଥାନେ ସ୍ଥାନେ ବର୍ଣ୍ଣନା କରିଅଛନ୍ତି । ପ୍ରଜାମାନଙ୍କର ଦୁଃଖ ଅନୁସନ୍ଧାନ କରି, ତାହା ଦୂର କରିବାକୁ ସର୍ବଦା ଚେଷ୍ଟା କରୁଥିବାରୁ ସେ ପ୍ରଜାମାନଙ୍କର ପୁତ୍ର ପରି ପ୍ରିୟ ହୋଇ ପାରିଥିଲେ (तेनास लोकः पितृमान् विनेत्रा तेनैव शोकापनुदेन पुत्री) (ରଘୁ, ୧୫, ୨୩) 'ଯେତେବେଳେ ମନୁଷ୍ୟ ପାଖରେ ଅମିତ ସମ୍ପତ୍ତି ଥାଏ, ସେତେବେଳେ ଭିକାରିମାନେ ମନୁଷ୍ୟକୁ ଘେରି ରହନ୍ତି, କିନ୍ତୁ ଯେତେବେଳେ ସମ୍ପତ୍ତି ନଷ୍ଟ ହୋଇଯାଏ, ସେତେବେଳେ ସେମାନେ ଅନ୍ତର୍ହିତ ହୋଇଯାଆନ୍ତି, ମାତ୍ର ହେ ରାଜନ୍, ତୁମେ ସର୍ବଦା ଲୋକମାନଙ୍କର ଉପକାର କର, ଏହିହେତୁ ତୁମ୍ଭପାଖରେ କେବଳ ବନ୍ଧୁତ୍ୱଭାବ ଚରମସୀମାରେ ଉପସ୍ଥିତ ହେଉଅଛି ।' ବୈତାଳିକର ଏହି ଉକ୍ତି ଦିଲୀପଙ୍କ ଚରିତ୍ରରେ ଅକ୍ଷରେ ଅକ୍ଷରେ ସତ୍ୟ ପ୍ରମାଣିତ ହୋଇଅଛି । ଏହିପରି ଅଠିଯାକ ପ୍ରହର ପ୍ରଜାମାନଙ୍କର କଲ୍ୟାଣ ଚିନ୍ତା କରି ରାଜା ଏକପ୍ରକାର ତପସ୍ୟା କରିଥାନ୍ତି । ଏହିହେତୁ ତାଙ୍କୁ 'ରାଜର୍ଷି' ବୋଲି ଉପାଧିରେ ଭୂଷିତ କରାଯାଉଥିଲା । ଏହି ବିଷୟ ନିମ୍ନଲିଖିତ ଶ୍ଳୋକରେ ବ୍ୟକ୍ତ ହୋଇଅଛି ।

अध्याक्रान्ता वसतिरमुनाप्याश्रमे सर्वभोग्ये
रक्षायोगादयमपि तपः प्रत्यहं संचिनोति ।
अस्यापि द्युं स्पृशति वशिनश्चारणद्वन्द्वगीतः
पुण्यः शब्दो मुनिरिति मुहुः केवलं राजपूर्वः ॥

(ଶାକୁ, ୨-୧୪)

ପୂର୍ବକାଳରେ ଅନ୍ୟାନ୍ୟ ରାଜାମାନଙ୍କୁ ଜୟ କରି ନିଜେ ଚକ୍ରବର୍ତ୍ତୀ ହେବା ଉଚ୍ଚ ଆକାଂକ୍ଷା ପ୍ରତ୍ୟେକ ରାଜାଙ୍କର ଥିଲା । ଅନ୍ୟାନ୍ୟ ରାଜାମାନେ ନିଜ ସାର୍ବଭୌମତ୍ୱ ସ୍ୱୀକାର କରନ୍ତୁ— ଏହି ଉଦ୍ଦେଶ୍ୟରେ ଦିଲୀପ ୧୦ ଅଶ୍ୱମେଧ ଯାଗ ଏବଂ ରଘୁ ଦିଗ୍‌ବିଜୟ କରିଥିଲେ । ଏହି ଦିଗ୍‌ବିଜୟରେ ରଘୁ ଅନେକ ରାଜାଙ୍କୁ ପରାସ୍ତ କରିଥିଲେ । କେତେକ ରାଜା ଯୁଦ୍ଧ କରି ପ୍ରାଣ-ତ୍ୟାଗ କରିଥିଲେ । ତଥାପି ରଘୁ ସେମାନଙ୍କର ରାଜ୍ୟ ନ ନେଇ କେବଳ କର ମାତ୍ର ଗ୍ରହଣ କରିଥିଲେ ଏବଂ ମୃତରାଜାମାନଙ୍କର ଉତ୍ତରାଧିକାରୀମାନଙ୍କୁ ସିଂହାସନରେ ବସାଇଥିଲେ । ଶତ୍ରୁ ଜୟ କରିବା କ୍ଷତ୍ରିୟର ଧର୍ମ ବୋଲି 'ଗୌତମ ଧର୍ମ ସୂତ୍ର'ରେ ଉଲ୍ଲିଖିତ ଅଛି । କିନ୍ତୁ ଏହି ଦିଗ୍‌ବିଜୟ ପରରାଜ୍ୟ ଆତ୍ମସାତ୍ କରିବା-ଉଦ୍ଦେଶ୍ୟରେ କରାଯାଉ ନଥିଲା କିନ୍ତୁ ଦୁର୍ବଳ ରକ୍ଷା ଏବଂ ଦୁର୍ଜନ-ସଂହାର କରି ପୃଥିବୀରେ ଧର୍ମ ରାଜ୍ୟ ସ୍ଥାପନ କରିବା ଉଦ୍ଦେଶ୍ୟରେ ଏବଂ ଅଶ୍ୱମେଧ, ରାଜସୂୟ, ବିଶ୍ୱଜିତ୍-ପ୍ରଭୃତି ବଡ଼ ବଡ଼ ଯଜ୍ଞଦ୍ୱାରା ଦେବତାମାନଙ୍କୁ ସନ୍ତୁଷ୍ଟ କରିବା ଉଦ୍ଦେଶ୍ୟରେ କରାଯାଉ ଥିଲା । ଏହି ହେତୁ ଜଗଦ୍‌ବିଜୟୀ ରଘୁଙ୍କୁ 'ଧର୍ମବିଜୟୀ' ବୋଲି ସାର୍ଥକ ବିଶେଷଣ ଦିଆଯାଇଅଛି । (ରଘୁ ୪ ୪୩) ଖ୍ରୀଷ୍ଟୀୟ ପ୍ରଥମ ତିନି ଶତାବ୍ଦୀରେ ଶକ ଓ କୁଶାନବଂଶୀୟ ବିଦେଶୀ ରାଜାମାନଙ୍କୁ ପରାସ୍ତ

କରି ହିନ୍ଦୁଧର୍ମକୁ ପୁନରୁଜ୍ଜୀବିତ କରିବାଶକ୍ତି ଭାରତବର୍ଷର ଶ୍ରେଷ୍ଠ ଶ୍ରେଷ୍ଠ ରାଜାମାନଙ୍କର ନଥିଲା । ଏହି କାର୍ଯ୍ୟ ଦିଗ୍‌ବିଜୟୀ ସମୁଦ୍ରଗୁପ୍ତ ଏବଂ ଦ୍ୱିତୀୟ ଚନ୍ଦ୍ରଗୁପ୍ତ କରିଥିଲେ । କବି ଚକ୍ରବର୍ତ୍ତୀଙ୍କର ଆଦର୍ଶ ଭଲରୂପେ ଜାଣିଥିଲେ । ଏହି ହେତୁ ତାଙ୍କ ଗ୍ରନ୍ଥମାନଙ୍କରେ ସେହି ଆଦର୍ଶର ଗଭୀର ପ୍ରଭାବ ପଡ଼ିଅଛି ।

**ଶିକ୍ଷା**—କାଳିଦାସଙ୍କର 'ବିକ୍ରମୋର୍ବଶୀୟ' 'ଶାକୁନ୍ତଳ' ଓ 'ରଘୁବଂଶ'ରେ ଆଶ୍ରମମାନଙ୍କରେ ପରିସ୍ଥିତି ବର୍ଣ୍ଣିତ ହୋଇଅଛି ଏବଂ 'ମାଳବିକାଗ୍ନିମିତ୍ର'ରେ ମଧ୍ୟ ଶିକ୍ଷା ବିଷୟରେ କବିଙ୍କର ସିଦ୍ଧାନ୍ତ ବୁଝିହେଉଛି । 'ମାଳବିକାଗ୍ନିମିତ୍ର'ରେ ମାଳବିକାଙ୍କର ନାଟ୍ୟପ୍ରୟୋଗ ରାଜାଙ୍କ ସମ୍ମୁଖରେ ହେବା ବାଞ୍ଛନୀୟ—ଏହି ଉଦ୍ଦେଶ୍ୟରେ ବିଦୂଷକ ଯେଉଁ ପ୍ରସଙ୍ଗ ଉପସ୍ଥାପିତ କରିଥିଲେ । ଏହି ପ୍ରସଙ୍ଗରେ ପରିବ୍ରାଜିକା ପ୍ରଭୃତିଙ୍କର ଭାଷଣରୁ ଶିକ୍ଷାବିଷୟକ ବିଚାର ଆପାତତଃ ଏକପକ୍ଷୀୟ ହେବା ଦୃଷ୍ଟିରୁ ଏହା କାଳିଦାସଙ୍କର ନିଜର ହୋଇ ନଥିବ ବୋଲି ଆଶଙ୍କା ହେବା ସ୍ୱାଭାବିକ ତଥାପି ଯଦି ତାହା ପ୍ରକୃତରେ ସେହିପରି ହୋଇଥାନ୍ତା, ତାହାହେଲେ ଧାରିଣୀ ନିଶ୍ଚୟ ତାହା ବିରୋଧରେ ଆକ୍ଷେପ କରିଥାନ୍ତେ । ଯେଉଁ ଏକ ବା ଦୁଇ ସ୍ଥଳରେ ମତଭେଦର ଅବକାଶ ଥିଲା, ସେଠାରେ ସେ ଆପତ୍ତି କରିଅଛନ୍ତି । ଏଥିରୁ ଆମେ ଅନୁମାନ କରୁଅଛୁଁ ଯେ ସେହି ପ୍ରବେଶକରେ କାଳିଦାସ ନିଜର ସର୍ବସମ୍ମତ ଶିକ୍ଷାବିଷୟକ ବିଚାର ଉଲ୍ଲିଖିତ କରିଅଛନ୍ତି ।

କାଳିଦାସଙ୍କର ଗ୍ରନ୍ଥମାନଙ୍କରେ ତପୋବନର ଋଷିମାନଙ୍କର ଆଶ୍ରମ କେବଳ ଶିକ୍ଷାର କେନ୍ଦ୍ରରୂପେ ବର୍ଣ୍ଣିତ ହୋଇଅଛି । ସେ ସବୁ ଆଶ୍ରମ ବଡ଼ ବଡ଼ ସହରରୁ ବହୁ ଦୂରରେ

କୌଣସି ନଦୀର ତଟରେ ରହୁଥିଲା । ଶାକୁନ୍ତଳରେ କଣ୍ୱଙ୍କର ଆଶ୍ରମ ଦୁଷ୍ୟନ୍ତଙ୍କ ରାଜଧାନୀର ଏତେ ଦୂରରେ ଥିଲା ଯେ ସେଠାକୁ ଯିବାକୁ କେତେଦିନ ଲାଗୁଥିଲା ଏବଂ ତାହା ହିମାଳୟର ଉପତ୍ୟକାରେ ମାଲିନୀନଦୀ ତୀରରେ ଥିଲା । 'ରଘୁବଂଶ'ରେ ବଶିଷ୍ଠାଶ୍ରମରେ ପହଞ୍ଚିବାକୁ ଦିଲୀପଙ୍କୁ ପ୍ରାୟ ଏକଦିନ ରଥରେ ପ୍ରୟାଣ କରିବାକୁ ପଡ଼ିଥିଲା । 'ବିକ୍ରମୋର୍ବଶୀୟ'ରେ ଚ୍ୟବନଋଷିଙ୍କର ଆଶ୍ରମ ରାଜଧାନୀର ବେଶୀ ଦୂରରେ ନଥିଲା । କାରଣ ସେଠାରୁ ତାପସୀ ଓ ରାଜକୁମାର ଆୟୁ ଆସିବାକୁ ବେଶି ବିଳମ୍ବ ହୋଇନଥିଲା । ଏହା ଛଡ଼ା ସଙ୍ଗତିସମ୍ପନ୍ନ ଲୋକ ନିଜଘରେ ଶିକ୍ଷକ ନିଯୁକ୍ତ କରି ମଧ୍ୟ ନିଜ ପିଲାମାନଙ୍କୁ ବିବିଧ ବିଦ୍ୟା କଳାର ଶିକ୍ଷା ଦେଉଥିଲେ । ରଘୁ, ପାର୍ବତୀ ପ୍ରଭୃତିଙ୍କୁ ସ୍ୱଗୃହରେ କେବଳ ଶିକ୍ଷକ ନିଯୁକ୍ତ କରି ଶିକ୍ଷା ଦିଆଯାଉଥିଲା । ମାଳବିକା ଓ ଇରାବତୀଙ୍କୁ ନୃତ୍ୟ-ଗୀତ ପ୍ରଭୃତିର ଶିକ୍ଷା ଦେବାନିମିତ୍ତେ ରାଜବାଟୀରେ ନାଟ୍ୟାଚାର୍ଯ୍ୟ ନିଯୁକ୍ତ ହୋଇଥିଲେ । ସମୟସମୟରେ ପିତା ପୁତ୍ରକୁ ଓ ପତି ପତ୍ନୀକୁ ମଧ୍ୟ କେତେକ ବିଷୟରେ ଶିକ୍ଷା ଦେଉଥିଲେ । ରଘୁ ନିଜପିତାଙ୍କଠାରୁ ଧନୁର୍ବିଦ୍ୟା ଶିକ୍ଷା କରିଥିଲେ । ଇନ୍ଦୁମତୀ ନିଜସ୍ୱାମୀ ଅଜଙ୍କଠାରୁ ଲଳିତ କଳା ଶିକ୍ଷା କରି, ତାଙ୍କର ପ୍ରିୟ ଶିଷ୍ୟା ହୋଇଥିଲେ ।

ଆଶ୍ରମରେ ବାଳକମାନଙ୍କ ପରି ବାଳିକାମାନଙ୍କୁ ମଧ୍ୟ ଶିକ୍ଷା ଦିଆଯାଉଥିଲା । ପ୍ରାଚୀନକାଳରେ ଗୃହସ୍ଥାଶ୍ରମର କର୍ତ୍ତବ୍ୟ ପୂର୍ଣ୍ଣ କରି ଲୋକମାନେ ବାନପ୍ରସ୍ଥ ଅବଲମ୍ବନ କରି ତପସ୍ୟା କରିବା ସକାଶେ ଆଶ୍ରମକୁ ଯାଉଥିଲେ ଏବଂ ଯିବା ସମୟରେ ନିଜ ଛୋଟ ଛୋଟ ପିଲାମାନଙ୍କୁ ସଙ୍ଗରେ ନେଇଯାଉଥିଲେ । ମାରୀଚ ଆଶ୍ରମରେ

ଦୁଷ୍ୟନ୍ତ ସର୍ବଦମନଙ୍କୁ ଦେଖି ଏବଂ ସେ ପୁରୁବଂଶୀୟ ସନ୍ତାନ ବୋଲି ଜାଣିପାରି କୌଣସି ବାନପ୍ରସ୍ଥୀ ପୁରୁବଂଶୀୟ ରାଜାଙ୍କର ପୁତ୍ର ବୋଲି ମନେ କରିଥିଲେ । 'ଫୁଲଫଳ ତଥା ଦେବତା-ମାନଙ୍କର ନୈବେଦ୍ୟ ସକାଶେ ଉପଯୁକ୍ତ ନୀବାର ଧାନ୍ୟ ଦେଇ ଏବଂ ମଧୁର ମଧୁର କଥା କହି ମୁନିକନ୍ୟାମାନେ ତୁମ ଦୁଃଖ ନିବାରଣ କରିବେ' ବୋଲି ବାଲ୍ମୀକି ପରିତ୍ୟକ୍ତା ସୀତାଙ୍କୁ ସାନ୍ତ୍ୱନା ଦେଇ ଥିଲେ । 'ଶାକୁନ୍ତଳ'ର ପ୍ରିୟମ୍ବଦା, ଅନସୂୟା ଓ ଶକୁନ୍ତଳା ଆଶ୍ରମରେ ରହି ବଢ଼ିଥିଲେ ଏବଂ ଶିକ୍ଷା ପାଇଥିଲେ । ବାଳକ ବାଳିକାମାନଙ୍କ ଏକ ରକମ ଶିକ୍ଷା ଦିଆଯାଉଥିଲା କି ଭିନ୍ନ ଭିନ୍ନ ଶିକ୍ଷା ଦିଆଯାଉଥିଲା ଏ ବିଷୟରେ କାଳିଦାସଙ୍କ ଗ୍ରନ୍ଥମାନଙ୍କରେ କୌଣସି ଉଲ୍ଲେଖ ନାହିଁ । ପୁଣି ଏହାଙ୍କଠାରେ ୧୦୦ ବର୍ଷ ପରେ ଉତ୍ପନ୍ନ ଭବଭୂତି 'ଉତ୍ତରରାମଚରିତ'ରେ କେତେକ ସମୟ ଆତ୍ରେୟୀ, ଲବ ଓ କୁଶଙ୍କର ସହଶିକ୍ଷା ବର୍ଣ୍ଣନା କରି ଅଛନ୍ତି । ଏଥିରୁ କାଳିଦାସଙ୍କ ସମୟରେ ମଧ୍ୟ ସେହି ଧରଣର ଶିକ୍ଷା ଥିଲା ପରି ବୋଧ ହୁଏ ।

ଏହି ଆଶ୍ରମମାନଙ୍କରେ ସାଧାରଣତଃ ଉପନୟନ ସଂସ୍କାର ହେଲାପରେ ଆଠବର୍ଷର ବାଳକମାନଙ୍କୁ ନିଆଯାଉଥିଲା ଏବଂ ସେମାନଙ୍କର ଷୋଳ ବା କୋଡ଼ିଏ ବର୍ଷ ପର୍ଯ୍ୟନ୍ତ ଶିକ୍ଷା ଦିଆଯାଉଥିଲା । 'ରଘୁବଂଶୀୟ'ରେ ରାଜକୁମାର ଅଜ ଆଶ୍ରମଶିକ୍ଷା ସମାପ୍ତ କରି କବଚଧାରଣ କରିବାକୁ ଯୋଗ୍ୟ ହୋଇଥିଲେ ବୋଲି ବର୍ଣ୍ଣିତ ହୋଇଅଛି । ଏଥିରୁ ଜଣାଯାଏ – ସେ ସମୟରେ ତାଙ୍କର ବୟସ ଷୋଳ କି ସତର ହୋଇଥିବ । ବ୍ରାହ୍ମଣମାନଙ୍କ ମଧ୍ୟରେ ବୁଦ୍ଧିମାନ୍ ବିଦ୍ୟାର୍ଥୀଙ୍କୁ ଚଉଦଟି ବିଦ୍ୟା ଅଭ୍ୟାସ କରିବାକୁ

ପଢୁଥିଲା, ଏହି ହେତୁ ଅଧ୍ୟୟନ କରିବାକୁ ବେଶି ବର୍ଷ ଲାଗୁଥିଲା । ଶକୁନ୍ତଳା ଓ ତାଙ୍କର ସଖୀମାନେ ଯୌବନପ୍ରାପ୍ତ ହେଲା ପର୍ଯ୍ୟନ୍ତ ଆଶ୍ରମରେ ରହୁଥିଲେ ଏବଂ ଶକୁନ୍ତଳା ବିବାହପରେ କଣ୍ୱ ଶୀଘ୍ର ଅନସୂୟା ଓ ପ୍ରିୟମ୍ବଦାଙ୍କର ବିବାହ ବ୍ୟବସ୍ଥା କରିବାକୁ ସ୍ଥିର କରିଥିଲେ । 'ହାରୀତଧର୍ମ ସୂତ୍ର'ରେ ଆଶ୍ରମରେ ଶିକ୍ଷା ପାଉଥିବା ବିଦ୍ୟାର୍ଥୀମାନଙ୍କୁ ସଦ୍ୟୋବଧୂ (ବିବାହଯୋଗ୍ୟ) ଓ ବ୍ରହ୍ମବାଦିନୀ— ଏହିପରି ଦୁଇ ଭାଗରେ ବିଭକ୍ତ କରାଯାଇଅଛି । ଏ ମଧ୍ୟରୁ ପ୍ରଥମ ବିଦ୍ୟାର୍ଥିନୀ କନ୍ୟାମାନଙ୍କର ଶିକ୍ଷା ସମାପ୍ତ ହେଲାପରେ ବିବାହ ହେଉଥିଲା ଏବଂ ଦ୍ୱିତୀୟ ବିଦ୍ୟାର୍ଥିନୀ କନ୍ୟାମାନେ ବ୍ରହ୍ମଚର୍ଯ୍ୟବ୍ରତ ପାଳନ କରି ଆଜୀବନ ଆଶ୍ରମରେ ରହୁଥିଲେ । କାଳିଦାସଙ୍କ ସମୟରେ ସମ୍ଭବତଃ ସେହି ରୀତି ଥିଲା । ଏହିହେତୁ ଦୁଷ୍ୟନ୍ତ ଶକୁନ୍ତଳାଙ୍କର ସଖୀମାନଙ୍କୁ ପ୍ରଶ୍ନ କରିଥିଲେ ଯେ ତୁମମାନଙ୍କର ସଖୀ ବିବାହ ପର୍ଯ୍ୟନ୍ତ ବୈଖାନସବ୍ରତ ଅବଲମ୍ବନ କରିବେ ନା ଆଜୀବନ ହରିଣୀମାନଙ୍କ ସହବାସରେ ରହିବେ ।

ଆଶ୍ରମଜୀବନ ଅତ୍ୟନ୍ତ ସରଳ ଥିଲା । ରହିବା ସକାଶେ ଘାସପତ୍ର ନିର୍ମିତ ପର୍ଣ୍ଣଶାଳା, ପିନ୍ଧିବା ସକାଶେ ବଲ୍କଲ, ଖାଇବା ସକାଶେ ଅଯତ୍ନବର୍ଦ୍ଧିତ ନୀବାର, ବନ୍ୟ ଫଳମୂଳ ଏବଂ ଶୋଇବା-ସକାଶେ ଦର୍ଭଶଯ୍ୟା ବା ମୃଗଚର୍ମର ବ୍ୟବସ୍ଥା ଆଶ୍ରମରେ ପ୍ରଚଳିତ ଥିଲା । (ରଘୁ ୧୯,୫,୧୪,୮୧) ବୃକ୍ଷ ଦୀପରେ ଇଙ୍ଗୁଦୀତୈଳ ବ୍ୟବହୃତ ହେଉଥିଲା । ଆଘାତରେ ଔଷଧରୂପେ ମଧ୍ୟ ତାର ଉପଯୋଗ କରାଯାଉଥିଲା । (ଶାକୁନ୍ତଳ ୪-୧୪) **'पश्चिमाद् यामिनी-यामात् प्रसादमिव चेतना'** (ରଘୁ ୧୭, ୧୮) କାଳିଦାସଙ୍କର ଏହି ଉପମାରୁ ପ୍ରଭାତ ସମୟରେ ବୁଦ୍ଧି ପ୍ରସନ୍ନ ରହେ ବୋଲି ଜଣା-

ଯାଏ । ଏହିହେତୁ ବିଦ୍ୟାର୍ଥୀମାନେ ଏହି ସମୟରେ ଉଠି ଅଧ୍ୟୟନରେ ଲାଗିଯାନ୍ତି । ବିଦ୍ୟାର୍ଥୀମାନଙ୍କର ଅଧ୍ୟୟନରୁ ଆଶ୍ରମ ପ୍ରଶାନ୍ତ ହେବା ଜାଣିପାରିଲେ ବୋଲି ରଘୁବଂଶରେ ବର୍ଣ୍ଣିତ ହୋଇଅଛି । ପ୍ରାତଃକାଳ ଓ ସନ୍ଧ୍ୟା ସମୟରେ ସମିଧ, କୁଶ, ଫଳପ୍ରଭୃତି ଆଣିବା ନିମନ୍ତେ ତପସ୍ୱୀ ଓ ବିଦ୍ୟାର୍ଥୀମାନେ ଆଶ୍ରମରୁ ବାହାରକୁ ଯାଉଥିଲେ । ବିଦ୍ୟାର୍ଥୀମାନଙ୍କୁ ସମୀପସ୍ଥ ନଦୀ ବା ଜଳାଶୟମାନଙ୍କରୁ ଗୃହକୃତ୍ୟ ବା ବୃକ୍ଷମାନଙ୍କରେ ପାଣି ଦେବା ନିମନ୍ତେ ଜଳ ଆଣିବାକୁ ପଡ଼ୁଥିଲା । ପ୍ରାତଃକାଳ ଓ ସାୟଂକାଳରେ ଅଗ୍ନିଙ୍କର ପୂଜା କରାଯାଉଥିଲା । (ରଘୁ ୧-୫୩)

ଆଶ୍ରମମାନଙ୍କରେ ସବୁବେଳେ ଶାନ୍ତିମୟ ବାତାବରଣ ରହୁଥିବାରୁ ତାର ପ୍ରଭାବ ପଶୁ ଓ ପକ୍ଷୀମାନଙ୍କ ଉପରେ ନ ପଡ଼ି ରହୁ ନଥିଲା । ବାଲ୍ମୀକି ଆଶ୍ରମର ସବୁପ୍ରକାର ପ୍ରାଣୀ ତପସ୍ୱୀ-ମାନଙ୍କର ସଂସ୍ରବରେ ଶାନ୍ତସ୍ୱଭାବ ହୋଇଯାଇଥିଲେ ବୋଲି କାଳିଦାସ ବର୍ଣ୍ଣନ କରିଅଛନ୍ତି । ଆଶ୍ରମମାନଙ୍କରେ ଯେ କୌଣସି ପ୍ରାଣିହତ୍ୟା ନ କରିବାକୁ କଠୋର ନିୟମ ଥିଲା । ମୃଗୟା କରି କରି ଦୁଷ୍ୟନ୍ତ କଣ୍ୱଙ୍କ ତପୋବନ ସମୀପରେ ପହଞ୍ଚିଲେ । ସେଠାରେ ଏକ ହରିଣ ଚରୁଥିଲା, ତାକୁ ମାରିବାକୁ ବାଣ ମାରୁଥିଲେ, ଏପରି ସମୟରେ ସମିଧ ନେଇ ଆସୁଥିବା ତପସ୍ୱୀ ମଧ୍ୟରେ ଉପସ୍ଥିତ ହୋଇ ରାଜାଙ୍କୁ କହିଲେ—'ଏ ଆଶ୍ରମ ମୃଗ ; ଅତଏବ ଅବଧ୍ୟ' ଏବଂ ବାଣ ପ୍ରତିସଂହାର କରିବାକୁ ଅନୁରୋଧ କଲେ । ରାଜା ସେମାନଙ୍କର ପ୍ରାର୍ଥନା ଗ୍ରହଣ କଲେ ବୋଲି 'ଶାକୁନ୍ତଳ'ରେ ଦେଖିବାକୁ ମିଳେ । 'ବିକ୍ରମୋର୍ବଶୀୟ'ରେ ଋଷିକୁମାରଙ୍କ ସହିତ ମୂଳଫଳ ସମିଧ ଆଣିବାକୁ ଯାଇଥିବା ରାଜକୁମାର ଆୟୁ

ସଙ୍ଗମମଣି ନେଇ ଉଡୁଥିବା ଗୃଧ୍ରକୁ ବାଣ ମାରି ତଳେ ପକାଇଥିଲେ ଏହା ଆଶ୍ରମବିରୋଧୀ କାର୍ଯ୍ୟ ହେବା ଯୋଗୁଁ ଚ୍ୟବନମହର୍ଷି ଏକ ତାପସୀ ସହିତ ତାଙ୍କୁ ତାଙ୍କ ପିତାମାତାଙ୍କ ପାଖକୁ ଫେରାଇ ଦେଇଥିଲେ । ଏଥିରୁ ଜଣାଯାଉଅଛି ଯେ ଆଶ୍ରମରେ ଏହି ନିୟମ କେତେ କଠୋରତା ସହକାରେ ପାଳନ କରାଯାଉଥିଲା ।

ଆଶ୍ରମମାନଙ୍କରେ ବ୍ରାହ୍ମଣବାଳକମାନଙ୍କୁ ୧୦ ପ୍ରକାର ବିଦ୍ୟା ଶିକ୍ଷା ଦିଆଯାଉଥିଲା । ସେ ସମସ୍ତ ବିଦ୍ୟାର ଉଲ୍ଲେଖ ଆମେ ଅଗରୁ କରି ଦେଇଛୁଁ । କ୍ଷତ୍ରିୟକୁମାରଙ୍କୁ ଅନିବାର୍ଯ୍ୟରୂପେ ଧନୁର୍ବିଦ୍ୟା ଶିକ୍ଷା ଦିଆଯାଉଥିଲା । ଏହି ବିଷୟ 'ବିକ୍ରମୋ-ର୍ବଶୀୟ'ରୁ ଜଣାଯାଏ । ସ୍ତ୍ରୀମାନଙ୍କୁ ଲିଖନ, ପଠନ, ଚିତ୍ରଲିଖନ ସଙ୍ଗୀତ, ଗୃହକୃତ୍ୟ ଇତ୍ୟାଦି ବିଷୟର ଶିକ୍ଷା ଦିଆଯାଉଥିଲା ବୋଲି ଶକୁନ୍ତଳା ଓ ତାଙ୍କ ସଖୀମାନଙ୍କର କଥୋପକଥନରୁ ଜଣାଯାଏ । ଯେଉଁ ସ୍ତ୍ରୀମାନେ ସାଧାରଣ ବିଷୟ ଶିଖିବାକୁ ଗୃହ୍ନୁଥିଲେ, ସେମାନଙ୍କୁ ଉଦ୍ୟାନକଳା ଶିକ୍ଷାଦେବା କାଳିଦାସଙ୍କର ଇଚ୍ଛା ଥିଲାପରି ବୋଧ ହୁଏ । ବୃକ୍ଷମାନଙ୍କୁ ଠିକ୍ ସମୟରେ ପାଣିଦେଇ ରକ୍ଷଣାବେକ୍ଷଣ କଲେ ସ୍ତ୍ରୀମାନଙ୍କ ହୃଦୟରେ ଅଜ୍ଞାତଭାବେ କ୍ରମେ କ୍ରମେ ଅପତ୍ୟବାତ୍ସଲ୍ୟ ଅଙ୍କୁରିତ ହୁଏ ବୋଲି କାଳିଦାସ ଅନେକ-ସ୍ଥଳରେ ବର୍ଣ୍ଣନ କରିଅଛନ୍ତି । ତପସ୍ୟା କଲାବେଳେ ପାର୍ବତୀ ଯେଉଁସବୁ ବୃକ୍ଷ ପାଣି ଦେଇ ବଢ଼ାଇଥିଲେ, ସେମାନଙ୍କ ପ୍ରତି ତାଙ୍କର ନିଜପୁତ୍ର କାର୍ତ୍ତିକେୟଙ୍କ ଅପେକ୍ଷା ଅଧିକ ଆଦର ଥିଲା । ବାଲ୍ମୀକି ସୀତାଙ୍କୁ କହିଛନ୍ତି ଯେ ସହଜରେ ଉଠେଇହେଲା ପରି କଳସୀରେ ଛୋଟ ଛୋଟ ଗଛମାନଙ୍କରେ ଜଳ ଦେଇ ସନ୍ତାନ ହେବା ପୂର୍ବରୁ ସନ୍ତାନବାତ୍ସଲ୍ୟ ଅନୁଭବ କରିବ । କେତେକ

ସ୍ତ୍ରୀ ପୁରୁଷଙ୍କର ଅନ୍ୟାନ୍ୟ ବିଦ୍ୟା ମଧ୍ୟ ଶିଖୁଥିଲେ । 'ମାଳ-ବିକାଗ୍ନିମିତ୍ର'ର ପରିବ୍ରାଜିକା ବିବିଧବିଦ୍ୟାପାରଙ୍ଗତା ବିଦୁଷୀ ଥିବା ଦେଖାଯାଏ ।

'यतस्त्वया ज्ञानमशेषमाप्तं लोकेन चैतन्यमिवोष्णरश्मेः ।' ଏହି ଶ୍ଳୋକରେ କାଳିଦାସ ଅଜ୍ଞାନ ଦୂରକରି ମନୁଷ୍ୟକୁ ନବୀନ ଦୃଷ୍ଟି ଦେଉଥିବା ଶିକ୍ଷକଙ୍କର ଗୁରୁତର ଅଧିକାର ନାଟକଟି ସମଗ୍ର ସଂସାରରେ ଚେତନା ଉତ୍ପନ୍ନ କରୁଥିବା ସୂର୍ଯ୍ୟଙ୍କ ସହିତ ଉପମା ଦେଇଅଛନ୍ତି । ଏଥିରୁ ଜଣାଯାଏ କାଳିଦାସଙ୍କ ସମୟରେ ସମାଜରେ ଶିକ୍ଷକ-ମାନଙ୍କର କେତେ ଉଚ୍ଚ ସ୍ଥାନ ରହିବା ବାଞ୍ଛନୀୟ । ପ୍ରକୃତ ଶିକ୍ଷକ କେବଳ ବିଦ୍ୟା ଦ୍ୱାରା ନିଷ୍ଠାପୂର୍ବକ ଅଧ୍ୟାପନାକାର୍ଯ୍ୟ କରନ୍ତି, ଯେ କେବଳ ଉଦର ପୂରଣ ନିମନ୍ତେ ବିଦ୍ୟାର ଉପଯୋଗ କରନ୍ତି, ତାଙ୍କୁ ଜ୍ଞାନରୂପଦ୍ରବ୍ୟବିକ୍ରେତା ବେପାରୀ କୁହାଯାଏ (यस्यागमः केवलजीविकायै, तं ज्ञानपण्यं वणिजं वदन्ति) ବୋଲି ସ୍ପଷ୍ଟ ଭାବରେ 'ମାଳବିକାଗ୍ନିମିତ୍ର'ରେ କହିଅଛନ୍ତି । ସମସ୍ତ ଶିକ୍ଷକ ସମାନ ଯୋଗ୍ୟତାସମ୍ପନ୍ନ ହୋଇ ପାରିବେ ନାହିଁ । କାହାର ଜ୍ଞାନଭଣ୍ଡାର ଅତୀବ ବିଶାଳ ତ, ଶିଷ୍ୟଙ୍କୁ ତାହା ଦେବାର ଶକ୍ତି ନାହିଁ । କିଏ ସୁଶିକ୍ଷିତ ବା ସୀମିତଜ୍ଞାନବିଶିଷ୍ଟ ହେଲେ ମଧ୍ୟ ଶିଷ୍ୟଙ୍କୁ ଶିକ୍ଷାଦେବା ପ୍ରଣାଳୀ ତାଙ୍କର ଅସାଧାରଣ । ଏହି ଦୁଇଟି ଗୁଣ ଯାହାଙ୍କଠାରେ ସମବେତ, ସେ ହେଉଛନ୍ତି ପ୍ରକୃତରେ ଶିକ୍ଷକ ଏହା ଅନୁଭବ କାଳିଦାସ **श्लिष्टा क्रिया कस्यचिदात्मसंस्था, संक्रान्तिरन्यस्य विशेषयुक्ता । यस्योभयं साधु स शिक्षकाणां धुरि प्रतिष्ठापयितव्य एव** । (ମାଳ, ୧, ୧୬) ଏହି ଶ୍ଳୋକରେ ବ୍ୟକ୍ତ କରି ଅଛନ୍ତି ।

ବିଦ୍ୟାର୍ଥୀମାନଙ୍କର ମନୋବୃତ୍ତି, ବୁଦ୍ଧି, ପାତ୍ରତାପ୍ରଭୃତି ଆଲୋଚନା କରି ସେମାନଙ୍କ ଉପଯୋଗୀ ବିଷୟ ନିର୍ବାଚନ କରିବା ଶିକ୍ଷକମାନଙ୍କର କୌଶଳ ଉପରେ ନିର୍ଭର କରେ । ପ୍ରଥମରୁ ଏବିଷୟରେ ସାବଧାନତା ଅବଲମ୍ବନ କଲେ ବିଦ୍ୟାର୍ଥୀ ଓ ଶିକ୍ଷକ-ମାନଙ୍କର ପରିଶ୍ରମ ବ୍ୟର୍ଥ ହୁଏ ନାହିଁ । ଏହାପରି ବିଦ୍ୟାର୍ଥୀମାନଙ୍କୁ ପରୀକ୍ଷା ଭବନରେ ପ୍ରବେଶ କରିବାକୁ ପଡୁନଥିଲା । ଏହି ସିଦ୍ଧାନ୍ତ ଅଧୁନାତନ ସମ୍ବାଦସମ୍ମତ । ଏହା କାଳିଦାସ ନିଜ 'ମାଳବିକାଗ୍ନି-ମିତ୍ର'ର ପାତ୍ରମାନଙ୍କର ସମ୍ମୁଖରେ ବ୍ୟକ୍ତ କରିଅଛନ୍ତି । ନାଟ୍ୟ-ଗୃହମାନେ ନିଜ ନିଜ ଶିଷ୍ୟାଦରିଅରେ ନାଟ୍ୟ ପରୀକ୍ଷା ଦେଇ ପରସ୍ପର ଶିକ୍ଷାନିପୁଣତା ଦେଖାଇବା ଚାହିଁଲାପୁ ବୋଲି ଦେବାରକ୍ତା ସୂଚନା ଦେଲ ପରେ ଧାରିଣୀ କହିଛନ୍ତି—'ଯଦି ବିଦ୍ୟାର୍ଥିନୀ ମନ୍ଦବୁଦ୍ଧି ହୁଏ, ଏବଂ ପ୍ରାପ୍ତ ଶିକ୍ଷାକୁ କ୍ରିୟାତ୍ମକରୂପେ ଦେଖାଇ ପାରେ ନାହିଁ, ତେବେ ସେହି ଦୋଷ ଜଣ ଶିକ୍ଷକଙ୍କ ମୁଣ୍ଡରେ ଲଦି ଦେବାକୁ ହେବ ?' ଏହା ଶୁଣି ବିଦୂଷକ ଉତ୍ତର ଦେଲେ 'ଶିକ୍ଷାସମ୍ବନ୍ଧରେ ଅଯୋଗ୍ୟ ବିଦ୍ୟାର୍ଥିନୀ ନିର୍ବାଚନ କରିବା ଶିକ୍ଷକର ମନ୍ଦବୁଦ୍ଧିତାର ପରିଚାୟକ ।' ଅନ୍ୟତ୍ର କବି **'କ୍ରିୟା ହି ବସ୍ତୂପହିତା ପ୍ରସୀଦତି'** (ରଘୁ ୩,୧୯) ଏହି ପରି ଯୋଗ୍ୟ ବିଦ୍ୟାର୍ଥୀ ଦେଖି ଶିକ୍ଷା ଦେଲେ ଶିକ୍ଷା ଫଳପ୍ରଦ ହୁଏ ବୋଲି କହି ଅଛନ୍ତି ।

ଉପର୍ଯ୍ୟୁକ୍ତ ପ୍ରବନ୍ଧରେ କାଳିଦାସ ବିଦ୍ୟାର୍ଥୀମାନଙ୍କ ବିଷୟରେ କେତେକ ସୂଚନା ଦେଇ ଅଛନ୍ତି । **'ଅପରିନିଷ୍ଠିତସ୍ୟୋ-ପଦେଶସ୍ୟାନ୍ୟାଯ୍ୟଂ ପ୍ରକାଶନମ୍'** ପ୍ରାପ୍ତଶିକ୍ଷା ପୂର୍ଣ୍ଣଭାବେ ଆୟତ୍ତ ନ କରି ପରୀକ୍ଷା ଦେଲେ ବିଦ୍ୟାର୍ଥୀର କ୍ଷତି ହୁଏ, ତା ଫଳରେ ଅଧ୍ୟାପକଙ୍କର ମଧ୍ୟ ଦୁର୍ନାମ ହୁଏ । ବର୍ତ୍ତମାନ ପରୀକ୍ଷାର ପାଠ ଉପରେ କେବଳ

ସମସ୍ତ ସଂକଳନା ନିର୍ଭର କରୁଅଛି ଏବଂ ଅନେକ ସ୍ଥଳରେ ବିଦ୍ୟାର୍ଥୀମାନଙ୍କ ପକ୍ଷରେ ପରୀକ୍ଷା ଏକ ଲକ୍ଷ୍ୟ ପରି ହୋଇଅଛି । ବେଶି ପରିମାଣରେ ପରୀକ୍ଷାର୍ଥୀ ଫେଲ ହେବାର କାରଣ— ଅଧିକାଂଶ ବିଦ୍ୟାର୍ଥୀ ଆଜିକାଲି ସନ୍ତୋଷଜନକଭାବେ ପ୍ରସ୍ତୁତ ନ ହୋଇ ପରୀକ୍ଷାରେ ଉପନୀତ ହେଉଅଛନ୍ତି । ଦୈବାତ୍ ପାଶ୍ କଲେ ମଧ୍ୟ ତାର ଜ୍ଞାନ ଭଲରୂପେ ପରିପକ୍ୱ ନ ହେବା ଫଳରେ ଉପର ଶ୍ରେଣୀରେ ବ୍ୟବହାର ଜୀବନରେ ସେହି ଜ୍ଞାନର କୌଣସି ଉପଯୋଗ ହୋଇପାରୁ ନାହିଁ । ସେହି ପରି କେବଳ ଘୋଷି ଦେଲେ ବିଦ୍ୟା ହସ୍ତଗତ ହୁଏ ନାହିଁ । ମନ ଦେଇ ତାର ଅଭ୍ୟାସ କରିବା ଦରକାର । ଏହି ଭାବ କବି **'विद्यामभ्यसनेनेव प्रसादयितुमर्हसि'** (ରଘୁ ୧,୮୮) ଏହି ଶ୍ଳୋକରେ ବ୍ୟକ୍ତ କରି ଅଛନ୍ତି ।

ଶିକ୍ଷକ ଓ ବିଦ୍ୟାର୍ଥୀମାନଙ୍କ ପରି ପରୀକ୍ଷା ଗ୍ରହଣ କରୁଥିବା ବିଶ୍ୱବିଦ୍ୟାଳୟ ଏବଂ ବୋର୍ଡ଼ ବିଷୟରେ ମଧ୍ୟ କେତେକ ସୂଚନା ଏହି ପ୍ରବନ୍ଧରେ ମିଳେ । ଆପଣଙ୍କୁ ହରଦତ୍ତ ଏବଂ ଗଣଦାସଙ୍କର କଳହର ନିଷ୍ପତ୍ତି କରି ଦେବାକୁ ହେବ ' ବୋଲି ରାଜା ଅନୁରୋଧ କଲାମାତ୍ରେ ପରିବ୍ରାଜିକା ହସି ଦେଇ କହିଲେ—'ସେ ପରିହାସ ରଖନ୍ତୁ, ପାଖରେ ନଗର ଥିଲାବେଳେ କିଏ କେବେ ଗାଁରେ ରତ୍ନର ପରୀକ୍ଷା କରେ ?' ଏହା ପରେ ରାଜା କହିଲେ—'ଆପଣ ବିଦୁଷୀ ଓ ମଧ୍ୟସ୍ଥ । ମୁଁ ଓ ରାଣୀ—ଆମେ ଦୁହେଁ ପକ୍ଷପାତୀ' ଏଥିରେ କାଳିଦାସ ସୂଚନା ଦେଇଛନ୍ତି ଯେ ଯେଉଁ ବିଦ୍ୟାର୍ଥୀ ସହିତ ସମ୍ପୃକ୍ତ ଏବଂ ଯାହା ଦ୍ୱାରା ବିଦ୍ୟାର୍ଥୀର କିଛି ନା କିଛି ହିତ ସମ୍ଭବପର, ସେପରି ବ୍ୟକ୍ତିଙ୍କୁ ପରୀକ୍ଷକ କରିବା ଉଚିତ ନୁହେଁ ।' ସଙ୍ଗେ ସଙ୍ଗେ

ପରେ କବି କହିଛନ୍ତି— '**सर्वज्ञस्याप्येकाकिनो नीर्णयाभ्युपगमो दोषाय**' ପରିବ୍ରାଜିକାଙ୍କର ଏହି ଉକ୍ତିରେ 'ଏକମାତ୍ର ପରୀକ୍ଷକଙ୍କର ମତାମତରେ ନିର୍ଭର କରି ପରୀକ୍ଷାର ଫଳ ନିର୍ଦ୍ଧାରଣ କରିବା ବିଦ୍ୟାର୍ଥୀ ପ୍ରତି ଅନ୍ୟାୟ ହୋଇପାରେ, ଏହେତୁ ପରୀକ୍ଷାରେ ଦୁଇ ବା ତତୋଧିକ ବ୍ୟକ୍ତି ପରୀକ୍ଷକ ହେବା ବାଞ୍ଛନୀୟ । ସେହିପରି ବ୍ୟବସ୍ଥା କଲେ ଅନ୍ୟାୟର ସମ୍ଭାବନା ନାହିଁ' ବୋଲି ସୂଚିତ ହୁଏ । ଏହା ଆଜିକାଲି ସର୍ବସମ୍ମତ ହୋଇ ସାରିଲାଣି । ଚିତ୍ରାଙ୍କନ, ନୃତ୍ୟ, ଗୀତ ପ୍ରଭୃତି ଯେତେକ ପ୍ରୟୋଗପ୍ରଧାନ କଳା ଓ ବିଦ୍ୟା, ଏ ସମସ୍ତରେ କେବଳ ପୁସ୍ତକଶିକ୍ଷା ପୂର୍ଣ୍ଣ ବୋଲି ନ ଧରି ପ୍ରତ୍ୟକ୍ଷ ପ୍ରୟୋଗ ଦେଖି ପରୀକ୍ଷକମାନଙ୍କୁ ବିଦ୍ୟାର୍ଥୀମାନଙ୍କର ଯୋଗ୍ୟତା ସ୍ଥିର କରିବାକୁ ହେବ । ଏହି ସିଦ୍ଧାନ୍ତ ମଧ୍ୟ କବି ପ୍ରବେଶକରେ ଦେଖାଇଅଛନ୍ତି ।

ପ୍ରସଙ୍ଗକ୍ରମେ ଶିକ୍ଷାର କି ଲକ୍ଷ୍ୟ ଉଲ୍ଲେଖ କରି ଅଛନ୍ତି, ତାହା ବିଚାର କରି ଏହି ପ୍ରକରଣ ଶେଷ କରିବୁଁ । ଶିକ୍ଷାର ଲକ୍ଷ୍ୟ ଅନେକ ପ୍ରକାର ନିର୍ଦ୍ଦେଶ କରି ଅଛନ୍ତି । ଯାହାଦ୍ୱାରା ଶରୀର ସୁଦୃଢ଼, ବଚନ ପ୍ରଗଲ୍‌ଭ ଏବଂ ମନ ସୁସଂସ୍କୃତ ହୁଏ, ତାହା କେବଳ ପ୍ରକୃତଶିକ୍ଷା ବୋଲି କେତେକ କହନ୍ତି । ଅନ୍ୟମାନଙ୍କର ମତରେ ଯାହାଦ୍ୱାରା ବିଦ୍ୟାର୍ଥୀ ଉତ୍ତମ ନାଗରିକ ହୁଏ, ସେ କେବଳ ଶିକ୍ଷା । କାଳିଦାସ 'ସମ୍ୟଗାଗମିତା ବିଦ୍ୟା ପ୍ରବୋଧବିନୟାବିବ' ଏହି ଉପମାଦ୍ୱାରା ପ୍ରବୋଧ ଅର୍ଥାତ୍ ଜ୍ଞାନପ୍ରାପ୍ତି ଏବଂ ବିନୟ ଅର୍ଥାତ୍ ସୁଶୀଳତା ଏହି ଦୁଇଟି ବିଦ୍ୟାର ଲକ୍ଷ୍ୟ ବୋଲି ବ୍ୟକ୍ତ କରିଅଛନ୍ତି । କେବଳ ଜ୍ଞାନଦ୍ୱାରା ମନୁଷ୍ୟ ଶ୍ରେଷ୍ଠ ହୋଇ ନ ପାରେ, ସଙ୍ଗେ ସଙ୍ଗେ ସୁଶୀଳ

ହେବା ଦରକାର—ଏହା ସବୁ କବି ଉକ୍ତ ଉପମାଦ୍ୱାରା ସୂଚିତ କରିଅଛନ୍ତି । ବିଦ୍ୟାକୁ ଏହିରୂପେ ଉପାସନା କଲେ ଏହି ଦୁଇଟି ଉଦ୍ଦେଶ୍ୟ ସାଧିତ ହୋଇଥାଏ । ପରୀକ୍ଷା ସକାଶେ ନିର୍ବାଚିତ ଛାତ୍ରମାନେ କଣ୍ଠସ୍ଥ କରି ନିର୍ଦ୍ଦିଷ୍ଟ ସମୟରେ ପରୀକ୍ଷା ଦେଇ ପାସ କରିଦେଲେ ଶିକ୍ଷାର ପରୀକ୍ଷା ଦୂରରେ ରହୁଛି, ଜ୍ଞାନ ମଧ୍ୟ ଆୟତ୍ତ ହେଉନାହିଁ । ଏହା ହେଉଛି ଆଜିକାଲିକାର ଅନୁଭବ । ଜ୍ଞାନଦ୍ୱାରା ସଂସାରରେ ମନୁଷ୍ୟର ସୁଖସ୍ୱାଚ୍ଛନ୍ଦ୍ୟ ବଢ଼ିଥାଏ, ଶିକ୍ଷା ନ ଥିଲେ ମନୁଷ୍ୟ ସ୍ୱଭାବରେ ଲୋଭ, ମାତ୍ସର୍ଯ୍ୟ, ଦ୍ୱେଷପ୍ରଭୃତି ଦୁଷ୍ଟ ମନୋ-ବିକାରର ବୃଦ୍ଧି ହୁଏ ଏବଂ ତାହାଫଳରେ ସଂସାରରେ ବିବିଧ କଳହ, ଯୁଦ୍ଧ ଓ ରକ୍ତପାତ ଦେଖାଦିଏ । ଏହିହେତୁ କାଳିଦାସ ଶିକ୍ଷାର ଉଦ୍ଦେଶ୍ୟରୂପେ ପ୍ରବୋଧ ସହିତ ବିନୟର ମଧ୍ୟ ଉଲ୍ଲେଖ କରି ଅଛନ୍ତି ।



# ୯ । କାଳିଦାସ ଓ ପରବର୍ତ୍ତୀ ଗ୍ରନ୍ଥକାର

ख्यातः कृती सोऽपि च कालिदासः
शुद्धा सुधा स्वादुमती च यस्य ।
वाणीमिषाच्चण्डमरीचिगोत्र—
सिन्धोः परं पारमवाप कीर्त्तिः ॥

ସୋଡ୍‌ଢଲକୃତ ଉଦୟସୁନ୍ଦରୀ କଥା

(ଧନ୍ୟ କାଳିଦାସ କବି ! ତୁମର କୀର୍ତ୍ତି କବିତା ପରି ଦୋଷରହିତ, ଅମୃତ ପରି ମଧୁର ! ତୁମର ବାଣୀ ଯେପରି ସୂର୍ଯ୍ୟବଂଶକୁ ପୂର୍ଣ୍ଣଭାବେ ବର୍ଣ୍ଣନା କରି ପାରିଛି, ସେହିପରି ତୁମର କୀର୍ତ୍ତି ସମୁଦ୍ରର ପରପାରରେ ପହଞ୍ଚି ପାରିଛି ।)

ଶୁଣାଯାଏ—କାଳିଦାସଙ୍କର ଜୀବିତାବସ୍ଥାରେ ତାଙ୍କର ସୁଧାମଧୁର ଗ୍ରନ୍ଥମାନଙ୍କର ପ୍ରଶଂସା ଓ ପ୍ରସିଦ୍ଧି ସବୁଆଡ଼େ ବ୍ୟାପିଯାଇ ଥିଲା । ଦାନବୀର ଗୁପ୍ତସମ୍ରାଟଙ୍କର ଆଶ୍ରୟରେ କୀର୍ତ୍ତି ସହିତ ଅସୀମ ଧନସମ୍ପତ୍ତି ମଧ୍ୟ ତାଙ୍କୁ ମିଳିଥିଲା । ଏହି ହେତୁ ସେ ଭବଭୂତିଙ୍କ ପରି **'उत्पत्स्यतेऽस्ति मम कोऽपि समानधर्मा, कालो ह्ययं निरवधि र्विपुला च पृथ्वी'** * ଏପରି ଅସନ୍ତୋଷ ଏବଂ ନିଜ

---

* ଅର୍ଥ—କେବେ ନା କେବେ ଯେ କୌଣସି ସ୍ଥଳରେ କିଏ ହେଲେ ମୋ ଗ୍ରନ୍ଥମାନଙ୍କର ସହାନୁଭୂତିପୂର୍ଣ୍ଣ ସମାଲୋଚକ ଜାତ ହେବେ, ବା ବର୍ତ୍ତମାନ ସୁଦ୍ଧା ଥାଇ ପାରନ୍ତି, କାରଣ କାଳ ଅନନ୍ତ ଏବଂ ପୃଥିବୀ ବିଶାଳ ।

ସମକାଳୀକ ପଣ୍ଡିତକବିମାନଙ୍କର ତାଚ୍ଛୀଲ୍ୟଦ୍ୟୋତକ ଓ ଅଭିମାନପୂର୍ଣ୍ଣ କଟୂକ୍ତି କୌଣସି ସ୍ଥଳରେ ପ୍ରୟୋଗ କରିନାହାନ୍ତି । ମୃତ୍ୟୁପରେ ମଧ୍ୟ ତାଙ୍କର କୀର୍ତ୍ତି ଉତ୍ତରୋତ୍ତର ବଢ଼ିଅଛି । ଏହାଙ୍କର ଗ୍ରନ୍ଥ ଆବାଳବୃଦ୍ଧ ସମସ୍ତଙ୍କୁ ମୁଗ୍ଧ କରି ଦେଉଅଛି । ଏହା ଛଡ଼ା ଖ୍ରୀଷ୍ଟୀୟ ଷଷ୍ଠଶତାବ୍ଦୀଠାରୁ ଅଜି ପର୍ଯ୍ୟନ୍ତ ପ୍ରାଚୀନ ଓ ଅର୍ବାଚୀନ କବିମାନେ କାଳିଦାସଙ୍କୁ ପ୍ରଶଂସା କରି ଯେଉଁ ସବୁ ସ୍ତୁତି ପୁଷ୍ପାଞ୍ଜଳି ଅର୍ପଣ କରିଅଛନ୍ତି, ସେଥିରୁ କେତେକ ସୂକ୍ତି ଏହି ଗ୍ରନ୍ଥର ଶେଷ ଭାଗରେ ସଂକଳିତ କରାଯାଇଅଛି । ପରନ୍ତୁ ପ୍ରତ୍ୟକ୍ଷ ପ୍ରଶଂସା ଅପେକ୍ଷା ଉତ୍ତରକାଳୀନ ଗ୍ରନ୍ଥକାରମାନେ କାଳିଦାସୀୟ ଗ୍ରନ୍ଥମାନଙ୍କର କଳ୍ପନା ଓ ବର୍ଣ୍ଣିତ ପ୍ରସଙ୍ଗମାନ ଅନୁକରଣ କରି ଏକ ପ୍ରକାର ତାଙ୍କର ଯେଉଁ ଶ୍ରେଷ୍ଠତା ସ୍ୱୀକାର କରିଅଛନ୍ତି, ତାର ମୂଲ୍ୟ ବେଶି । କାରଣ ତଦ୍ୱାରା ତାଙ୍କ ଗ୍ରନ୍ଥମାନଙ୍କର ଲୋକପ୍ରିୟତା ଓ ସାର୍ବଜନୀନ ପ୍ରଚୁର କଳ୍ପନା ସହଜରେ ହୋଇଥାଏ । ଆମେ ଆଗରେ କହିଛୁ —କାଳିଦାସଙ୍କର ମୃତ୍ୟୁର ଅବ୍ୟବହିତ ପରେ ରଚିତ ବତ୍ସଭଟ୍ଟିଙ୍କର ମନ୍ଦସୋର ପ୍ରଶସ୍ତିରେ ତାଙ୍କର ଋତୁସଂହାର ଓ ମେଘଦୂତ କାବ୍ୟର କଳ୍ପନାର ପ୍ରତିବିମ୍ବ ଅତିଚାତୁରୀତାପୂର୍ବକରେ ପ୍ରତିଫଳିତ । ଖ୍ରୀଷ୍ଟ ଷଷ୍ଠଶତାବ୍ଦୀରେ ଗୟାସମୀପବର୍ତ୍ତୀ ନାଗାର୍ଜ୍ଜୁନ-ପାହାଡ଼ର ଗୁମ୍ଫାରେ ଖୋଦିତ ମୌଖରି ରାଜା ଅନନ୍ତବର୍ମାଙ୍କର ଲେଖରେ **'ଯସ୍ୟାହୂତସହସ୍ରନେତ୍ରବିରହକ୍ଷାମା ସଦୈବାଧ୍ୱରୈଃ, ପୌଲୋମୀ ଚିରମଶ୍ରୁପାତମଳିନାଂ ଧତ୍ତେ କପୋଲଶ୍ରିୟମ୍ ।'** ଏହି ଶ୍ଳୋକରେ 'ରଘୁବଂଶ'ର (୭, ୬୩) ଶ୍ଳୋକର ଛାୟା ସ୍ପଷ୍ଟ ଦେଖାଯାଏ । ଖ୍ରୀଷ୍ଟ ସପ୍ତମଶତାବ୍ଦୀର ଭଟ୍ଟି କାବ୍ୟରେ ଏବଂ ଐହୋଲେର ରବିକୀର୍ତ୍ତିକୃତ ପ୍ରଶସ୍ତିର କେତେକ ସ୍ଥାନରେ କାଳିଦାସୀୟ କଳ୍ପନାର ପ୍ରତିଧ୍ୱନି ଶୁଣାଯାଏ । ଏହି ଶତାବ୍ଦୀରେ କାଳିଦାସଙ୍କର କୀର୍ତ୍ତି ଖାଲି

ଭାରତବର୍ଷରେ ନୁହେଁ, କିନ୍ତୁ ଭାରତବର୍ଷରୁ ବାହାରେ ସମୁଦ୍ର ପାର ହୋଇ ବ୍ୟାପିଥିଲା । କାରଣ ଏହି ଶତାବ୍ଦୀରେ କମ୍ବୋଡ଼ିଆରେ ଖୋଦିତ ଭବବର୍ମାଙ୍କର ନିମ୍ନଲିଖିତ ଦୁଇ ଶ୍ଳୋକରେ କାଳିଦାସଙ୍କର କଳ୍ପନା ସ୍ପଷ୍ଟ ଦେଖାଯାଏ –

शरत्कालाभियातस्य परानावृततेजसः ।
दिव्षामसह्यो यस्यैव प्रतापो न रवेरपि ।
यस्य सेनारजोधूतमुज्झितालंकृतिष्वपि
रिपुस्त्रीगण्डदेशेषु चूर्णमात्रमुपागतम् । *

ଉତ୍ତରକାଳୀନ ଗ୍ରନ୍ଥକାରମାନେ ଖାଲି କାଳିଦାସଙ୍କର ରମଣୀୟ କଳ୍ପନାମାନ କେବଳ ନେଇନାହାନ୍ତି, କିନ୍ତୁ ସେମାନଙ୍କର ଅନେକ ଘଟନା ମଧ୍ୟ କାଳିଦାସୀୟ ଘଟନା ସହିତ ଖାପ ଖାଉଛି । ସଂସ୍କୃତନାଟ୍ୟସାହିତ୍ୟରେ କାଳିଦାସଙ୍କ ପରେ ଭବଭୂତିଙ୍କର ସ୍ଥାନ । କିଂବଦନ୍ତୀ – ଏଦୁହେଁ ସମକାଳୀନ ଓ ପରସ୍ପର-ପ୍ରତିଦ୍ୱନ୍ଦ୍ୱୀ ବୋଲି ମଧ୍ୟ ଜନଶ୍ରୁତି ରହିଛି । କିନ୍ତୁ ଦୁହିଙ୍କର ସମୟ ନିରୂପଣ କଲେ ସେହି ଜନଶ୍ରୁତି ନିରାଧାର ବୋଲି ଜଣାପାଏ । ଖାଲି ଏତିକି ନୁହେଁ କିନ୍ତୁ ଏହା ମଧ୍ୟ ପ୍ରମାଣିତ ହୁଏ ଯେ ଭବଭୂତି କାଳିଦାସୀୟ ନାଟକମାନ ଅତିସୂକ୍ଷ୍ମଭାବେ ପରିଶୀଳନ କରି ସେ ମଧ୍ୟରୁ ଅନେକ ରମଣୀୟ କଳ୍ପନା, ଶବ୍ଦପ୍ରୟୋଗ ଓ ହୃଦୟାକର୍ଷକ ଘଟନାମାନ ସଂଗ୍ରହ କରି ନିଜ ନାଟକମାନଙ୍କରେ ସୁନ୍ଦର-ଭାବେ ସନ୍ନିବେଶିତ କରିଅଛନ୍ତି । 'ମାଳତୀମାଧବ'ରେ ମାଳତୀଙ୍କର ମନ ଆକୃଷ୍ଟ କରିବା ଉଦ୍ଦେଶ୍ୟରେ କାମନ୍ଦକୀ ଦୁଷ୍ୟନ୍ତ-ଶକୁନ୍ତଳା,

* ରଘୁବଂଶ, ୪, ୪୯, ୪, ୪୫ ଦେଖନ୍ତୁ ।

ଏବଂ ପୁରୁରବା-ଉର୍ବଶୀଙ୍କର ପ୍ରେମକଥାର ଦୃଷ୍ଟାନ୍ତ ଦେଇଅଛନ୍ତି । ଏହି ଦୃଷ୍ଟାନ୍ତମାନ ସମ୍ଭବତଃ ଭବଭୂତି କାଳିଦାସୀୟ ନାଟକ-ମାନଙ୍କରୁ ଅବଗତ ହୋଇଥିବେ । ଏହି ନାଟକର ନବମଅଙ୍କରେ ମାଳତୀ ହଠାତ୍ ଅଦୃଶ୍ୟ ହେଲାପରେ ମାଧବ ଉନ୍ମତ୍ତ ହୋଇଯାଇଛନ୍ତି ଏବଂ ନିଜ ପ୍ରିୟତମାଙ୍କ ପାଖକୁ ସନ୍ଦେଶ ନେବା-ପାଇଁ ମେଘକୁ ପ୍ରାର୍ଥନା କରୁଛନ୍ତି ଏବଂ ହସ୍ତୀ, ବାୟୁ ପ୍ରଭୃତିଙ୍କୁ ମାଳତୀଙ୍କର ସମ୍ବାଦ ପଚାରୁଛନ୍ତି । ଏହି କଳ୍ପନା ଭବଭୂତିଙ୍କୁ ସମ୍ଭବତଃ 'ମେଘଦୂତ' ଓ 'ବିକ୍ରମୋର୍ବଶୀୟ'ରୁ ମିଳିଥିବ । 'ଉତ୍ତରରାମଚରିତ'ର ଶେଷ ଅଙ୍କରେ ବିବିଧ କାରଣ-ବଶତଃ ଲବ ଓ କୁଶ ନିଜପୁତ୍ର ବୋଲି ରାମଚନ୍ଦ୍ରଙ୍କ ବିଶ୍ୱାସ ଜାତ ହୋଇଅଛି । ଏହି ପ୍ରସଙ୍ଗ 'ଶାକୁନ୍ତଳ'ର ଅନ୍ତିମ ଅଙ୍କର 'ପ୍ରତ୍ୟ-ଭିଜ୍ଞାପ୍ରସଙ୍ଗ'ର ଅନୁରୂପ । ଏହା ଛଡ଼ା 'ଗୌରୀଗୁରୋଃ ପାବନାଃ' ଏହି ଅବିକଳ ଶବ୍ଦ ପ୍ରୟୋଗ ମଧ୍ୟ ଦେଖାଯାଏ । ଏ ସମସ୍ତ ସାଦୃଶ୍ୟ ଦେଖିଲେ କାଳିଦାସଙ୍କର କାବ୍ୟନାଟକର ପ୍ରଭାବ ଭବ-ଭୂତିଙ୍କ ନାଟକମାନଙ୍କରେ କେତେଦୂର ପଡ଼ିଅଛି, ତାହା ଅନୁମାନ କରାଯାଏ । ଯାହା ହେଉ ପଛେ, ଭବଭୂତିଙ୍କର ନାଟକ କାଳିଦାସଙ୍କ ନାଟକର ଅବିକଳ ନକଲ ନୁହେଁ । ସେ ସମସ୍ତ ନାଟକର ରଚନାରେ କବିଙ୍କର ନିଜସ୍ୱ ବୈଶିଷ୍ଟ୍ୟମାନ ରହିଛି । ଏହା ଛଡ଼ା ହର୍ଷଙ୍କର ପ୍ରିୟଦର୍ଶିକା ଓ ରତ୍ନାବଳୀ ରାଜଶେଖରଙ୍କର କର୍ପୂରମଞ୍ଜରୀ ଓ ବିହ୍ଲଣଙ୍କ କର୍ଣ୍ଣସୁନ୍ଦରୀ ନାଟକ-ମାନଙ୍କ ଉପରେ କାଳିଦାସଙ୍କ 'ମାଳବିକାଗ୍ନିମିତ୍ର' ନାଟକର ପ୍ରଭାବ ସୁସ୍ପଷ୍ଟରୂପେ ପଡ଼ିଅଛି । ଏଥିରୁ ଏତିକି କୁହାଯାଇପାରେ ଯେ କାଳିଦାସଙ୍କର ଏହି ନାଟକଟି ସଂସ୍କୃତ ସାହିତ୍ୟରେ ଏକ ବିଶିଷ୍ଟ ନାଟ୍ୟସମ୍ପ୍ରଦାୟ ସୃଷ୍ଟି କରିଅଛି । କାଳିଦାସଙ୍କର

ମୁବରଭିତ୍ତି ଭାସ କବିଙ୍କର 'ସ୍ୱପ୍ନବାସବଦତ୍ତ' ମଧ୍ୟ କେତେକାଂଶରେ ଏହି ନାଟକ ସହିତ ସମାନ ଦେଖାଯାଏ । ପୁଣି ଏହି ନାଟକରେ ଉଦୟନ, ବାସବଦତ୍ତା, ପଦ୍ମାବତୀସଦୃଶ ପ୍ରଧାନ ପାତ୍ରମାନଙ୍କର ସମାନ ଉଦାତ୍ତସ୍ୱଭାବର ପାତ୍ର ହର୍ଷପ୍ରଭୃତିଙ୍କର ନାଟକମାନଙ୍କରେ ଦେଖାଯାନ୍ତି ନାହିଁ । 'ମାଳବିକାଗ୍ନିମିତ୍ର'ର ଅଗ୍ନିମିତ୍ର, ଧାରିଣୀ, ଇରାବତୀ, ମାଳବିକା ସଦୃଶ ପାତ୍ରମାନଙ୍କୁ ପରବର୍ତ୍ତୀକାଳୀନ ନାଟକକାରମାନେ ନିଜ ନିଜ ରଚନାରେ ଚିତ୍ରିତ କରିଅଛନ୍ତି । ସେ ସମସ୍ତ ରଚନା 'ସ୍ୱପ୍ନବାସବଦତ୍ତ' ସମାନ ନ ହୋଇ 'ମାଳବିକାଗ୍ନିମିତ୍ର' ସମାନ ହୋଇଅଛି । ଏଥିରୁ ସ୍ପଷ୍ଟ ହେଉଅଛି ଯେ ସେହି ନାଟକକାରମାନେ କାଳିଦାସଙ୍କର ନାଟକକୁ କେବଳ ଆଦର୍ଶରୂପେ ନେଇଥିଲେ ।

ଏହି ସମସ୍ତ ନାଟକ ଅନ୍ତଃପୁରର ଘଟଣାମାନ ଆଧାର କରି ରଚିତ ହୋଇଅଛି । ଏ ସମସ୍ତରେ ନାୟକ ସ୍ୱଚ୍ଛନ୍ଦଭାବରେ ଏକ ଅନ୍ତଃପୁରବାସିନୀ ରାଜକନ୍ୟାଠାରେ ଆସକ୍ତ ହେବା, ବିବାହିତା ରାଣୀ ଈର୍ଷ୍ୟାବଶତଃ ସେମାନଙ୍କ ପ୍ରେମରେ ବାଧା ଦେବା, ପରେ ପ୍ରସଙ୍ଗବଶତଃ ସେହି ରାଜକନ୍ୟାର ପୂର୍ବ ଚରିତ ପ୍ରକାଶିତ ହେବା ପରେ ରାଜାଙ୍କ ସହିତ ତାଙ୍କର ବିବାହ କରାଇବା ଇତ୍ୟାଦି କଳ୍ପନା ଯେ କୌଣସି ରୂପରେ ବିଦ୍ୟମାନ ଥିବା ପରି ଜଣାଯାଏ । ନାଟକ ଶେଷରେ ରାଜାଙ୍କୁ ଖବର ଆସେ ଯେ ତାଙ୍କର ସୈନିକମାନେ ଶତ୍ରୁମାନଙ୍କୁ ଜୟ କରିଅଛନ୍ତି । କିନ୍ତୁ ଏହି ଘଟଣାର ସବିଧାନ (କଥାବସ୍ତୁ) ସହିତ ସମ୍ବନ୍ଧ ଭାସ ତଥା କାଳିଦାସଙ୍କ ନାଟକରେ ଯେତେଦୂର ଘନିଷ୍ଠ ଦେଖାଯାଏ, ଅନ୍ୟାନ୍ୟନାଟକରେ ସେତେଦୂର ଦେଖାଯାଏ ନାହିଁ । କିଂ ବହୁନା, ବିଦ୍ଧଶାଳଭ

ରାଜଶେଖରଙ୍କର ଆଶ୍ରୟଦାତା ରାଜାମାନେ ଏହି ନାଟକମାନଙ୍କର ନାୟକ । ଏହିହେତୁ ସେମାନଙ୍କର ବିଜୟୋତ୍ସବ ବା ବିବାହୋତ୍ସବ ପ୍ରସଙ୍ଗରେ ସେ ସମସ୍ତ ନାଟିକାମାନ ରାଜାମାନଙ୍କର ଆଦେଶରେ ରଚିତ ହୋଇଥିଲାପରି ବୋଧ ହୁଏ । ଏ ସମସ୍ତ ନାଟକମାନଙ୍କରେ ବିବାହ ଓ ବିଜୟର ବାଦରାୟଣ ସମ୍ବନ୍ଧ ପ୍ରଦର୍ଶିତ କରା ହୋଇଅଛି । ଏହିହେତୁ ଏମାନଙ୍କର ଉପାଖ୍ୟାନରେ ଅଭିନୟ ସାଙ୍ଗାତ୍ୟ (Unity of action) ଦେଖାଯାଏ ନାହିଁ । ପାତ୍ରମାନଙ୍କର ଚରିତ୍ର ଚିତ୍ରଣ ଓ ଭାଷାପରିପାଟୀରେ ମଧ୍ୟ ଉକ୍ତ ନାଟକନାଟିକାମାନ 'ମାଳବିକାଗ୍ନିମିତ୍ର' ଅପେକ୍ଷା ନିମ୍ନସ୍ତରର ।

କାଳିଦାସ ନାଟ୍ୟସାହିତ୍ୟ ପରି କାବ୍ୟସାହିତ୍ୟରେ ମଧ୍ୟ ଏକ ସ୍ୱତନ୍ତ୍ର ସମ୍ପ୍ରଦାୟ ସ୍ଥାପନ କରି ଅଛନ୍ତି । ଏହାଙ୍କର ପରମରମଣୀୟ 'ମେଘଦୂତ' କାବ୍ୟ ଲୋକମାନଙ୍କର ଏତେଦୂର ପ୍ରିୟ ହୋଇଉଠିଲା ଯେ ଅନ୍ୟ କବିମାନେ ମଧ୍ୟ ଏହାର ଅନୁକରଣ କରିବାକୁ ଲାଗିଲେ ଏବଂ ଶହେ ଦେଢ଼ଶହ ବର୍ଷ ମଧ୍ୟରେ କେବଳ ବାୟୁଦୂତ, ଭ୍ରମରଦୂତ ହାରୀତଦୂତ, ଚକ୍ରବାକଦୂତପ୍ରଭୃତି ଅନେକ ଦୂତକାବ୍ୟର ସୃଷ୍ଟି ହେଲା । ସେ ସମସ୍ତ କାବ୍ୟ ବର୍ତ୍ତମାନ ମିଳୁନାହିଁ, ତଥାପି ଖ୍ରୀଷ୍ଟଶତାବ୍ଦୀର ଭାମହନାମକ କାଶ୍ମୀରୀକବି ଆଲଙ୍କାରିକ ଗ୍ରନ୍ଥକାର ନିଜ ଗ୍ରନ୍ଥରେ ଏସମସ୍ତ ଦୂତକାବ୍ୟର କଠୁ ସମାଲୋଚନା କରିଅଛନ୍ତି । ତହିଁରୁ ଜଣାଯାଉଛି ଭାମହଙ୍କ ସମୟରେ ସେ ସମସ୍ତ ଦୂତକାବ୍ୟ ବିଦ୍ୟମାନ ଥିଲା । ଭାମହଙ୍କର କଠୁ ସମାଲୋଚନାକୁ ଭ୍ରୂକ୍ଷେପ ନ କରି ଉତ୍ତରକାଳୀନ ଦୂତକାବ୍ୟ ରଚନା ଅକ୍ଷୁଣ୍ଣ ରହି ଅଛନ୍ତି । ବର୍ତ୍ତମାନ ପ୍ରାୟ ଏହି ଧରଣର ପଚିଶଟି ଦୂତକାବ୍ୟ ଉପଲବ୍ଧ ଅଥବା ନାମମାତ୍ରେ

ପଡ଼ିଛି । ଏମାନଙ୍କ ମଧ୍ୟରୁ ଅନେକ ଖ୍ରୀଷ୍ଟୀୟ ଏକାଦଶ ଶତାବ୍ଦୀର ପରବର୍ତ୍ତୀ । ଏହି କାବ୍ୟମାନଙ୍କ ମଧ୍ୟରେ ଉଦ୍ଧବ ସଦୃଶ ମନୁଷ୍ୟ ଶୁକ, କୋକିଳ, ଭୃଙ୍ଗକ, ଚକ୍ରବାକ ସଦୃଶ ପକ୍ଷୀ, ଚନ୍ଦ୍ର, ପବନ-ସଦୃଶ ଅଚେତନ ପଦାର୍ଥ, ଏବଂ ମନ ଭକ୍ତି ସଦୃଶ ଅମୂର୍ତ୍ତ କଳ୍ପନା-ମାନଙ୍କୁ ଦୂତ କରି, ଏମାନଙ୍କଦ୍ୱାରା କାବ୍ୟର ନାୟକ ନାୟିକାମାନେ ପରସ୍ପରପ୍ରତି ସନ୍ଦେଶ ପଠାଇଛନ୍ତି । ଏମାନଙ୍କ ମଧ୍ୟରୁ ଅଧିକାଂଶ ବିପ୍ରଲମ୍ଭଶୃଙ୍ଗାରରସାତ୍ମକ ହେବା ହେତୁ ମନ୍ଦାକ୍ରାନ୍ତାବୃତ୍ତରେ ରଚିତ ହୋଇଅଛି । ଏମାନଙ୍କରେ ଅଧିକାଂଶ ସ୍ଥଳରେ 'ମେଘଦୂତ'ର କଳ୍ପନା ଓ ପଦମାନ ଉପଯୁକ୍ତ ହେବା ଦେଖାଯାଏ । କେତେକ କବି ପୁଣି ମେଘଦୂତର ପ୍ରତ୍ୟେକ ପଦ୍ୟର ଚତୁର୍ଥ ଚରଣ ନେଇ ସମସ୍ୟା ପୂର୍ତ୍ତି କରି ନିଜ ନିଜ କାବ୍ୟ ରଚନା କରି ଅଛନ୍ତି । ଏତକ ମଧ୍ୟ ଏଠାରେ ଉଲ୍ଲେଖଯୋଗ୍ୟ ଯେ ବର୍ତ୍ତମାନ କାଳରେ 'ମେଘଦୂତ'କୁ ପୂର୍ତ୍ତି କରି ଦୁଇଟି କାବ୍ୟ ରଚିତ ହୋଇଅଛି । ସେ ମଧ୍ୟରୁ 'ମେଘପ୍ରତିସନ୍ଦେଶ' ନାମକ ଏକ ଦୂତକାବ୍ୟରେ ଯକ୍ଷପତ୍ନୀ ନିଜ ପ୍ରିୟତମଙ୍କ ପାଖକୁ ମେଘଦ୍ୱାରା ପ୍ରତିସନ୍ଦେଶ ପଠାଇ ଅଛନ୍ତି । ଦ୍ୱିତୀୟ 'ମେଘଦୌତ୍ୟ' ନାମକ କାବ୍ୟରେ ଏହିପରି କଥା ବସ୍ତୁ ବର୍ଣ୍ଣିତ ହୋଇଅଛି—ଯକ୍ଷପତ୍ନୀ କୁବେରଙ୍କ ପାଖକୁ ମେଘଦ୍ୱାରା ନିଜ ବକ୍ତବ୍ୟ ଜଣାଇ ନିଜ ପ୍ରିୟତମଙ୍କୁ ମୁକ୍ତ କରି ଅଛନ୍ତି । *

---

* Chintaharan Chakravarty···The Origin and Development of Dutakavya Literature in Sanskrit (I. H. Q Vol III. PP. 273—293)

ବୋଧ ହୁଏ—'ମେଘଦୂତ' ଅତ୍ୟନ୍ତ ଲୋକପ୍ରିୟ ହେବା ହେତୁ ବୈଷ୍ଣବ ଓ ଜୈନକବିମାନେ ମଧ୍ୟ ନିଜ ନିଜ ଧର୍ମ-ସିଦ୍ଧାନ୍ତମାନଙ୍କର ପ୍ରଚାର ପ୍ରକାଶ ଏହାର ପଦ୍ଧତି ଉପଯୋଗ କରି ଅଛନ୍ତି। ବୈଷ୍ଣବକବିମାନେ ସୀତାରାମ ଓ ଗୋପୀକୃଷ୍ଣଙ୍କର ପ୍ରେମ କଥା ନେଇ ନିଜ ନିଜ ଦୂତକାବ୍ୟ ରଚନା କରିଅଛନ୍ତି। ଜୈନକବିମାନଙ୍କର କାବ୍ୟମାନଙ୍କରେ ଶାନ୍ତରସର ସାମ୍ରାଜ୍ୟ ଦେଖାଯାଏ। ଖ୍ରୀଷ୍ଟୀୟ ଅଷ୍ଟମଶତାବ୍ଦୀରେ 'ଜିନସେନ' ନାମକ ଏକ ଜୈନକବି ନିଜ 'ପାର୍ଶ୍ୱାଭ୍ୟୁଦୟ' ନାମକ କାବ୍ୟରେ ମେଘଦୂତର ପ୍ରତ୍ୟେକ ପଂକ୍ତି ନେଇ ସମସ୍ୟା ପୂର୍ତ୍ତି କରିଅଛନ୍ତି। ମେଘଦୂତ କାବ୍ୟ ସମ୍ପୂର୍ଣ୍ଣଭାବେ ଶୃଙ୍ଗାରରସାତ୍ମକ। ଏହାର ପ୍ରତ୍ୟେକ ପାଦ ନିଜ ତୀର୍ଥଙ୍କରଙ୍କର ଚରିତ୍ରରେ ଉପଯୋଗ କଲାବେଳେ କବି ଉଦ୍ଦେଶ୍ୟ ସିଦ୍ଧ କରିବାକୁପାଇ ଜାଣି ଶୁଣି ନାନାବିଧ କଳ୍ପନା କରି ଅଛନ୍ତି କିନ୍ତୁ ସେ ତାହା ପ୍ରଶଂସନୀୟ ପ୍ରକାରେ କରି ଅଛନ୍ତି। ଏଥିରୁ ଜଣାଯାଏ—କାଳିଦାସଙ୍କର କାବ୍ୟମାନ ଲୋକମାନଙ୍କୁ କିପରି ମୁଗ୍ଧ କରି ପାରନ୍ତି। ଅନ୍ୟାନ୍ୟ ଜୈନ କବିମାନେ ମଧ୍ୟ ଉପଯୁକ୍ତ କାରଣ ବଶତଃ ଦୂତକାବ୍ୟ-ରୂପରେ ନିଜ ନିଜ ଆଚାର୍ଯ୍ୟମାନଙ୍କୁ ସ୍ୱ ସ୍ୱ ଇତିବୃତ୍ତବିଷୟକ ପତ୍ର ପଠାଇ ଅଛନ୍ତି।

'ମେଘଦୂତ'ରେ ଅନେକ ଦେଶ, ନଗରୀ, ପର୍ବତ, ନଦୀ-ପ୍ରଭୃତିର ଅତ୍ୟନ୍ତ ରମଣୀୟ ବର୍ଣ୍ଣନା ଥିବାହେତୁ ତାହା ଅଧିକ ଚିତ୍ତାକର୍ଷକ ହୋଇଅଛି। କାଳିଦାସ ନିଜେ ଦେଶ ପର୍ଯ୍ୟଟନକରି ଅଥବା ବିଭିନ୍ନ ଦେଶମାନଙ୍କର ଯାତ୍ରୀମାନଙ୍କଠାରୁ ବହୁ ବିଷୟ

ସଂଗ୍ରହ କରି, ସେ ସମସ୍ତଙ୍କୁ ଏହି ରଚନାରେ ସ୍ଥାନ ଦେଇ ଅଛନ୍ତି। ତାହା ଫଳରେ ଏହାର ଐତିହାସିକ ମହତ୍ତ୍ୱ ବଢ଼ିଯାଇଅଛି। ଏହାଙ୍କ ଅନୁକରଣ କରିଥିବା କବିମାନଙ୍କଠାରେ ତାଙ୍କପରି ସୂକ୍ଷ୍ମଦର୍ଶିତା ନ ଥିବାରୁ ସେମାନଙ୍କଦ୍ୱାରା ରଚିତ ଗ୍ରନ୍ଥମାନଙ୍କରେ ଐତିହାସିକ ମହତ୍ତ୍ୱ ଦେଖାଯାଏ ନାହିଁ। ଅଧିକାଂଶ କବି ଭୌଗୋଳିକ ଉଲ୍ଲେଖ ଛାଡ଼ି ଦେଇଛନ୍ତି। ଅନ୍ୟ କେତେକ ଭୌଗୋଳିକ ଉଲ୍ଲେଖ କରିଥିଲେ ମଧ୍ୟ ଉଲ୍ଲିଖିତ ସ୍ଥଳମାନଙ୍କର ପ୍ରାମାଣିକ ବର୍ଣ୍ଣନା ନ ଥିବାରୁ ସେ ସମସ୍ତ ପାଠକମାନଙ୍କୁ ଭ୍ରମରେ ପକାଉଅଛି।

ଯେତେବେଳେ କାଳିଦାସଙ୍କର ଗ୍ରନ୍ଥମାନ ୟୁରୋପୀୟ ଭାଷାମାନଙ୍କରେ ଅନୁବାଦିତ ହେଲା, ସେତେବେଳେ ୟୁରୋପୀୟ ରଚନାରେ ମଧ୍ୟ ସେମାନଙ୍କର ପ୍ରତ୍ୟକ୍ଷ ବା ଅପ୍ରତ୍ୟକ୍ଷ ପ୍ରଭାବ ପଡ଼ିଲା। 'ଶାକୁନ୍ତଳ' ନାଟକର ଜର୍ମାନ ଭାଷାର ଅନୁବାଦ ପଢ଼ି ପ୍ରସିଦ୍ଧ ଜର୍ମାନ କବି ଗେଟେ ନିଜ 'ଫାଉଷ୍ଟ' ନାମକ ଜଗଦ୍‌ବିଖ୍ୟାତ ନାଟକର ଆରମ୍ଭରେ ସଂସ୍କୃତ ନାଟକ ପରି ପ୍ରସ୍ତାବନା ଲେଖିଅଛନ୍ତି। ଦ୍ୱିତୀୟ ଜର୍ମାନ କବି ଶିଲର 'ମେଘଦୂତ' ପଢ଼ିସାରି ଲେଖିଥିବା 'Maria Stwart' ନାମକ କାବ୍ୟରେ ବନ୍ଦୀଗୃହରେ ସ୍ଥିତା ସ୍କଟଲଣ୍ଡର ରାଣୀଙ୍କଦ୍ୱାରା ମେଘକୁ ଦୂତ କରି, ତାହାଦ୍ୱାରା ନିଜ ଦେଶକୁ ସନ୍ଦେଶ ପଠାଇବା ବିଷୟ ବର୍ଣ୍ଣନା କରି ଅଛନ୍ତି।

ପ୍ରସିଦ୍ଧ ଇଂରାଜୀ ଦାର୍ଶନିକ ଓ ଗ୍ରନ୍ଥକାର କାର୍ଲାଇଲ ନିଜର ଏକ ଗ୍ରନ୍ଥର ଏକ ସ୍ଥଳରେ ଲେଖି ଅଛନ୍ତି ଯେ ଯଦି କୌଣସି

ସମୟରେ ସେକ୍ସପୀୟର ଓ ଭାରତୀୟ ସାମ୍ରାଜ୍ୟ - ଏହି ଦୁଇଟି-ମଧ୍ୟରୁ କେବଳ ଗୋଟିକୁ ନେବା ସକାଶେ ମୋତେ କୁହାଯାଏ, ତେବେ ମୁଁ ସେକ୍ସପୀୟରଙ୍କୁ ମନୋନୀତ କରିବି । ପ୍ରକୃତରେ କାର୍ଲାଇଲଙ୍କର ମତ ଯଥାର୍ଥ ପ୍ରମାଣିତ ହୋଇଅଛି । ଇଂରେଜମାନେ ଭାରତୀୟ ସାମ୍ରାଜ୍ୟ ଛାଡିବାକୁ ବାଧ୍ୟ ହୋଇଅଛନ୍ତି, କିନ୍ତୁ ସେମାନଙ୍କ ଠାରୁ ସେକ୍ସପୀୟରଙ୍କୁ କେହି କେବେ କାଢି ନେଇ ପାରିବ ନାହିଁ । କାର୍ଲାଇଲଙ୍କ ମତରୁ ଏହା ପ୍ରମାଣିତ ହୋଇଅଛି ଯେ ଶକ୍ତିଶାଳୀ ବ୍ୟକ୍ତି ନିଜ ରାଷ୍ଟ୍ରର ଗ୍ରନ୍ଥକାରଙ୍କୁ କେତେ ସମ୍ମାନ ଦେଇଥାଏ । ସମ୍ପ୍ରତି ଓ ଏକଦେଶୀବଳମ୍ବୀ ଇଂଲଣ୍ଡ ସେକ୍ସପୀୟରଙ୍କୁ ଯେତେ ଆଦର କରେ ଓ ସମ୍ମାନ ଦିଏ, ତାହା ଅପେକ୍ଷା ଶତଗୁଣ ଅଧିକ ସମ୍ମାନ ଅନେକଜାତି-ଉପଜାତି, ମତମତାନ୍ତର, ଏବଂ ବିବିଧ ଭାଷାରେ ବିଭକ୍ତ ଭାରତ ନିଜ କାଳିଦାସଙ୍କୁ ଦେବା ବାଞ୍ଛନୀୟ । ଧର୍ମ, ସଂସ୍କୃତି ଓ ଭାଷା ପରି ଶ୍ରେଷ୍ଠ ଗ୍ରନ୍ଥକାର ମଧ୍ୟ ରାଷ୍ଟ୍ରର ଏକୀକରଣରେ ଓ ଉନ୍ନତିରେ ସହାୟକ ହୋଇଥାଏ । ଏହାର ଜ୍ୱଳନ୍ତ ଉଦାହରଣ କାଳିଦାସ ଉତ୍ତରରେ ପଞ୍ଜାବଠାରୁ ଆରମ୍ଭ କରି ଦକ୍ଷିଣରେ ମାନ୍ଦ୍ରାଜ-ପର୍ଯ୍ୟନ୍ତ ଏବଂ ପଶ୍ଚିମରେ ମହାରାଷ୍ଟ୍ରଠାରୁ ଆରମ୍ଭ କରି ପୂର୍ବରେ ବଙ୍ଗ ପର୍ଯ୍ୟନ୍ତ ସମସ୍ତ ପ୍ରାନ୍ତର ପଣ୍ଡିତମାନେ ପ୍ରତ୍ୟେକେ କାଳିଦାସଙ୍କୁ ନିଜର ମନେ କରି, ତାଙ୍କର ଜନ୍ମନିର୍ଣ୍ଣୟରେ, ଜୀବନର ଚରିତରେ ପ୍ରଭାବ ପକାଇବାରେ ଏବଂ ତାଙ୍କ ଗ୍ରନ୍ଥମାନଙ୍କରେ ନିହିତ ଗୂଢ଼ ରହସ୍ୟମାନ ପ୍ରକାଶ କରିବାରେ ସାହାଯ୍ୟ କରୁ ଅଛନ୍ତି । ୟୁରୋପୀୟ ପଣ୍ଡିତମାନଙ୍କର ଭାରତୀୟ ସଂସ୍କୃତି ଓ ସଂସ୍କୃତ ଭାଷାର ପ୍ରଥମପରିଚୟ କାଳିଦାସଙ୍କର 'ଅଭିଜ୍ଞାନଶାକୁନ୍ତଳ'ରୁ ହିଁ ହୋଇ ଅଛି । ଆଜି ଭାରତୀୟ

ଜନସାଧାରଣଙ୍କ ସମ୍ମୁଖରେ ଅଭିମାନପୂର୍ବକ ଉଲ୍ଲେଖନୀୟ ବସ୍ତୁମାନଙ୍କ ମଧ୍ୟରେ କାଳିଦାସଙ୍କ କୃତଗୁଡ଼ିକ ପରିଗଣିତ ଇଂଲଣ୍ଡର ସେକ୍ସପୀୟର, ଜର୍ମାନୀର ଗେଟେ, ଇଟାଲିର ଡାଣ୍ଟେ ଏହି ମହାକବିମାନଙ୍କ ପର ଭାରତୀୟ କାଳିଦାସଙ୍କୁ ମଧ୍ୟ ବିଶ୍ୱସାହିତ୍ୟସଂସାରର କବିମାଳାରେ ଅତ୍ୟନ୍ତ ପ୍ରଧାନ ସ୍ଥାନ ମିଳିଅଛି । ଏତାଦୃଶ ସର୍ବଶ୍ରେଷ୍ଠ ମହାକବିଙ୍କର ଗ୍ରନ୍ଥମାନଙ୍କୁ କେଉଁ ଭାରତୀୟ ଅଭିମାନ ସହକାରେ ନ ପଢ଼ି ରହି ପାରିବ ?

—*—

ବ୍ରହ୍ମପୁର, ଶିରୋମଣି ପ୍ରେସ୍‌ରେ
ଶ୍ରୀ ଅନନ୍ତ ତ୍ରିପାଠି ଶର୍ମାଙ୍କଦ୍ୱାରା ମୁଦ୍ରିତ । ୧୯୬୨ ।

# कालिदासस्तुतिकुसुमांजलिः

१ लिप्ता मधुद्रवेणासन् यस्य निर्विषया गिरः ।
तेनेदं वर्त्म वैदर्भं कालिदासेन शोधितम् ॥
दण्डिनः ॥ (षष्ठशताब्दी)

२ निर्गतासु न वा कस्य कालिदासस्य सूक्तिषु ।
प्रीतिर्मधुरसान्द्रासु मञ्जरीष्विव जायते ॥
बाणस्य । (सप्तमशताब्दी)

३ एकोऽपि जीयते हन्त कालिदासो न केनचित् ।
शृङ्गारे ललितोद्गारे कालिदासत्रयी किमु ॥
राजशेखरस्य । (दशमशताब्दी)

४ अस्पृष्टदोषा नलिनीव दृष्टा हारावलीव ग्रथिता गुणौघैः
प्रियाङ्कपालीव विमर्दहृद्या न कालिदासादपरस्य वाणी ॥
(श्रीकृष्णकवेः)

५ ख्यातः कृती सोऽपि च कालिदासः
शुद्धा सुधा स्वादुमती च यस्य ।
वाणीमिषाच्चंडमरीचिगोत्र—
सिन्धोः परं पारमवाप कीर्त्तिः ॥
सोड्ढलस्य (एकादशशताब्दी)

६ साकूतमधुरकोकिलविलासिनीकंठकूजितप्राये
शिक्षासमयेऽपि मुदे रतलीलाकालिदासोक्ती ॥
गोवर्धनाचार्यस्य । (द्वादशशताब्दी)

७ काव्येषु नाटकं रम्यं तत्र रम्या शकुन्तला ।
तत्रापि च चतुर्थोऽङ्कस्तत्र श्लोकचतुष्टयम् ॥
सुभाषितम ।

८ पुरा कवीनां गणनाप्रसङ्गे कनिष्ठिकाधिष्ठिताकालिदासा ।
अद्यापि तत्तुल्यकवेरभावादनामिका सार्थवती बभूव ।
सुभाषितम् ।

९ वासन्तं कुसुमं फलं च युगपद् ग्रीष्मस्य सर्वं च यद्
यच्चान्यन्मनसो रसायनमतः सन्तर्पणं मोहनम् ।
एकीभूतमभूतपूर्वमथवा स्वर्लोकभूलोकयो-
रैश्वर्यं यदि लब्धुमिच्छसि सखे शाकुन्तलं सेव्यताम् ॥
शर्मण्यदेशीय 'गेटे' कवेः । (अष्टादशशताब्दी)



# कालिदासं प्रति*

( भज गोविन्दम् )

—१—

दिव्यो मोही विलसति विटपः कुञ्जो मञ्जुरयं परितः ।
त्वमेव तत्र कवीन्द्र ! प्रियया यौवनसिंहासने स्थितः ॥
जगदिदमखिलं कालिदास ! तव मरकतमणिमयपदपीठम् ।
बृहन्नभ इदं तवैव मूर्धनि बिभर्ति छत्रं हेममयम् ।
ऋतुषड्वर्गच्छलेन नूनं षड्मा वारविलासिन्यः ॥
भ्रमन्ति कविवर ! भवन्तमभितः सुललितलीलं नृत्यन्त्यः ॥
मधूनि पात्रैः सदा नूतनैश्छवि नवनवां बिभ्रन्ति ।
तृष्णामभिनवयौवनस्य ते प्रशमयितुं ताः सिञ्चन्ति ॥
क्वापि न शोको न वा यातना न कोऽपि जन्तुर्विलोक्यते ।
नान्तरेण तव राज्ञीं किञ्चित् त्वमेव राजा विराजसे ॥

—२—

कवितावनिताविलास ! सम्प्रति कविः केवलं नान्यस्त्वम् ।
क्वासौ राज्ञो विदग्धपरिषत् ? क्व च भवनं भवतो यातम् ॥

---

* ଏହା ମୋଡର୍ନ ରିଭ୍ୟୁର ଜୁନ୍ ୧୯୩୨ ସଂଖ୍ୟାରେ ପ୍ରକାଶିତ ରବୀନ୍ଦ୍ରନାଥଙ୍କର କାଳିଦାସବିଷୟକ କବିତାର ସଂସ୍କୃତ-ଅନୁବାଦ । ମୋର ପ୍ରିୟଶିଷ୍ୟ ଓ ମିତ୍ର ଶ୍ରୀଯୁକ୍ତ ପୁରୁଷୋତ୍ତମ ନାରାୟଣ ସାରଦର କରିଅଛନ୍ତି ।

क्व गतः सम्प्रति कालिदास ! ननु महान् स नृपतिः स्वामी ते
क्व च सावन्ती ! हन्त न लेशः कस्याप्यधुना विलोक्यते ॥
शश्वद्दिव्यानन्दस्यन्दिनि कुबेरनगरे कविनृपते ।
वसतिं सततं त्वं कृतवानिति लोकः सम्प्रति मन्वयते ॥
यदाभ्रंलिहे शिखरिशेखरे सान्ध्यं ध्यानादनन्तरम् ॥
हर्षाकुलहृदयेन भगवता शिवेन तांडवमारब्धम् ।
वारिपरिप्लुतमेघगर्जनाच्छलेन पटहध्वनिरभवत् ।
स्फुरत्कान्तिमद्विद्युद्वलयं तालैस्ताण्डवमनुगतवत् ॥
संस्तुतिगीतं त्वं च गीतवान् अन्ते सदयं स्मित्वा स्वम् ।
श्रवणभूषणं मयूरपिच्छं गौर्य्या मूर्धनि ते निहितम् ॥

—३—

मनोहारिणीं कुमारसम्भवकथां गायता यावत्तौ ।
स्तूयेते स्म कवीश्वर ! भवता गौरीगिरिशौ भगवन्तौ ॥
तस्थुः परितः प्रमथाः सर्वे शान्ततमाश्च ततो मन्दम् ।
सायन्तन्यो नीरदमाला आचक्रमिरे गिरिशिखरम् ॥
गगनमण्डले तडिल्लतासौ न विलासं निजमदर्शयत् ।
जलदानां वृन्दोऽपि समर्थो न तत्क्षणे गर्जितुमभवत् ।
कण्ठमुन्नतं निजमवनमयन् कमनीयं च तथा बर्हम् ।
स्कन्दमयूरो देव्यास्तस्थौ गिरिजाया निकटे निभृतम् ॥
किमपि चकम्पे क्वचित्सुमन्दस्मितेन देव्या ओष्ठयुगम् ।
तदनु च शीघ्रं मुक्तवती सा दीर्घमलक्षितनिःश्वासम् ॥

क्षणे च तस्या नयनापाङ्गे जाते बाष्पैः परिप्लुते ।
व्रीडाकुलसम्भ्रान्तलोचना सपदि स्म च सा विलोक्यते ॥
ततस्तादृशीं देवीं गिरिजां कविकुलभूषण ! विलोकयन् ॥
सपदि नीतवान् भवान् विरामं मधुगानं निजमसमाप्तम् ॥

—४—

सुखदुःखाशानिराशादिभिर्द्वन्द्वैर्वैर्यमिव कदाचन ।
किमभूदभिभूतो न भवानपि कथय कवीश्वर सनातन ॥
उपजाया वा राजकुले किं प्रावर्तन्त न दिवानिशम् ।
प्रवृत्तं च किं हननं नासीत्कृपाणादिभिः प्रच्छन्नम् ॥
निघृणार्थितानिकारानयैः किं ते पीडा नैव कृता ।
तीव्रवेदनाकुले त्वयि गता किं वाऽनिद्रा नैव निशा ॥
निखिलमूर्ध्नि तव कविता विमला समुल्ललास स्वच्छन्दम् ॥
मन्ये शोभापद्मं विकशितमभिप्रमोदप्रभाकरम् ॥
नैवापत्तिर्न चापि शोकः परमदारुणा न वा व्यथा ।
नैताभिस्ते समवलोक्यते कविता क्वचिदपि कलङ्किता ॥
जीवितसिन्धुं प्रमथ्य गरलं प्राणहरं त्वं प्राशितवान् ।
उदीर्णाश्च ये सुधातधाराः समन्ततस्तान् विकीर्णवान् ॥

रवीन्द्रनाथठक्कुरस्य । (विंशी शताब्दी)

— — —

# ପରିଶୀଳିତ ଗ୍ରଂଥାବଳୀ

## (କ) କାଳିଦାସଙ୍କର ଗ୍ରଂଥ

१ ऋतुसंहार (ऋतु०) [निर्णयसागर प्रेस]

२ कुमारसम्भव (कुमार०) [निर्णयसागर प्रेस]

३ मेघदूत (मेघ०) [संपादक प्रो० का. वा पाठक]

४ रघुवंश (रघु०) [संपादक गो. र. नन्दर्गीकर]

५ मालविकाग्निमित्र (माल०) [संपादक शि. मा. परांजपे]

६ विक्रमोर्वशीय (विक्र०) [संपादक शं. पां. पंडित]

७ शाकुन्तल (शाकु०) [संपादक प्रो. अ. वा. गजेन्द्रगडकर]

८ कालिदास ग्रन्थावली [अखिल भारतीय विक्रमपरिषद्, काशी]

## (ଖ) ହିନ୍ଦୀ ଅନୁବାଦ

१ कालिदास ग्रन्थावली (अनूदित) (ग्रंथ १—१०) हिमालय बुकडिपो, हरद्वार ।

२ कुमारसंभव, रघुवंश, मेघदूत और ऋतुसंहार– लाला सीताराम कृत [रामनारायणलाल, प्रयाग]

३ मेघदूत—पं० केशवप्रसाद मिश्र कृत [इंडियन प्रेस, अलाहाबाद]

४ शकुन्तला—राजा लक्ष्मणसिंह कृत

५ रघुवंश (पद्यानुवाद)—सरयूप्रसाद मिश्र

६ रघुवंश (गद्यानुवाद) - पं० महावीरप्रसाद द्विवेदी

## (ଗ) ସମାଲୋଚନାତ୍ମକ ଗ୍ରଂଥ

१ कालिदास और उनकी कविता—पं० महावीरप्रसाद द्विवेदी कृत

२ कालिदासकी निरंकुशता और उसका निराकरण—पं० महावीरप्रसाद द्विवेदी और जगन्नाथ प्रसाद चतुर्वेदी कृत (गंगापुस्तकालय)

३ कालिदास और भवभूति (अनुवाद) डी. एल. राय)

४ मेघदूतविमर्श—कन्हैयालाल पोद्दार

५ मेघदूत–डॉ० वासुदेवशरण अग्रवाल

(ख) संस्कृत ग्रंथ

१ बुद्धचरित (बुद्ध ०) अश्वघोषकृत [सं० प्रो. कोवेल]

२ सौन्दरनन्द ,, [सं० जॉन्स्टन्]

३ स्वप्नवासवदत्त भासकृत [सं० म. म. गणपतिशास्त्री]

४ प्रतिमा ,, [सं० म. म. गणपति शास्त्री]

५ सेतुबन्ध प्रवरसेनकृत [निर्णयसागर प्रेस]

६ भरतचरित, श्रीकृष्णकविकृत [त्रिवेंद्रम संस्कृत सीरिज]

७ काव्यमीमांसा (का.मी) राजशेखरकृत [गायकवाड़—ओरिएण्टल सीरिज]

८ कामसूत्र (का०सू०) वात्स्यायनकृत [निर्णयसागर प्रेस]

९ ज्योतिर्विदाभरण

१० शिवपुराण

११ मत्स्यपुराण

१२ पद्मपुराण

१३ कथासरित्सागर, सोमदेवकृत [निर्णयसागर प्रेस]

(ଙ) ଅନ୍ୟାନ୍ୟଭାଷାର ଗ୍ରନ୍ଥ

1. K. C. Chattopadhyaya: [The Date of Kalidasa]
2. Lachmidhar Kalla: [The Birth-place of Kalidasa]
3. Aravinda Ghose: [Kalidasa]
4. S. C, De: [Kalidasa and Vikramaditya]
5. Hillebrandt: [Kalidasa, German]
6. H. D. Sharma: [Padmapuran and Kalidasa]
7. A. B. Keith: [A History of Sanskrit Literature]
8. A. B. Keith: [The Sanskrit Drama]
9. M. Winternitz: [Geschichte der indischen Litteratur]
10. Cambridge History of India, Vol. 1, Ancient Indi
11. V. Smith: [Early History of India, E. H. I.]
12. R. G. Bhandarkar: [Vaishnavism, Shaivism an Minor Religious Systems]
13. R G. Bhandarkar: [A Peep into the Early Histor of India]
14. K. S. Aiyangar: [Studies in Gupta History]
15. Fleet: [Gupta Inscriptions]
16. H. C. Chakldar: [Social Life in Ancient India]
17. V. V. Mirashi: [The Vakataka Dynasty of tl Central Provinces and Berar]

ଏତ୍ଭିନ୍ନ Epigraphia Indica (Ep. Ind.) India Antiquary (Ind. Ant.) Journal of Bihar and Oriss Research Society (J. B. O. R. S.) ରେ ପ୍ରକାଶିତ ପ୍ରବନ୍ଧ ଓ ଲେଖ ।

——

# ଶୁଦ୍ଧିପତ୍ର

| ପୃଷ୍ଠା | ପଂକ୍ତି | ଅଶୁଦ୍ଧ | ଶୁଦ୍ଧ |
|---|---|---|---|
| ୩ | ୪ | ପଣ୍ଡିତଗଣ | ପଣ୍ଡିତ |
| ,, | ୧୩ | ନାଭେ ନାଭେ | ନାଭେ |
| ,, | ୧୪ | ନିଜନିଜ···ନିଜ...ନିଜ | ନିଜ...ନିଜ |
| ,, | ୧୫ | ନିଜ ନିଜ | ନିଜ |
| ୬ | ୧୪ | ମଜ୍ଞାନ | ମଜାନାં |
| ୨୦ | ୮ | ପ୍ରାଚତତ୍ତ୍ୱବେଦୀମାନେ | ପ୍ରାଚତତ୍ତ୍ୱବେଦୀ |
| ୨୧ | ୧୮ | 'ରଘୁବଂଶ | ଓ 'ରଘୁବଂଶ' |
| ୩୦ | ୧୫ | 'ଯେତେବେଳେ | 'ଯେତେବେଳେ |
| ୩୭ | ୮ | ସ୍ୱମସ୍ତ୍ୱର | ସ୍ୱପସ୍ତର |
| ୪୨. | ୧୨ | ଭଗ୍ନମୁଖଃ | ଭଗ୍ନମୁଖଃ |
| ୭୦ | ୬ | (ଦ୍ୱିତୀୟ) ରାଜକୁମାର | ରାଜକୁମାର (ଦ୍ୱିତୀୟ) |
| ୮୫ | ୪ | ପଣ୍ଡିତଙ୍କର | ପଣ୍ଡିତଙ୍କର |
| ୧୦୩ | ୧୭ | ହେବା | ହେବା |
| ୧୨୩ | ୩ | ସ୍ତୁତିକ | ସ୍ତୁତିକ-- |
| ୧୨୭ | ୨ | ବିଜ୍ଞାତ୍ତୁ— | ବିଜ୍ଞାତ୍ତୁ— |
| ୧୪୬ | ୧୮ | ଅଙ୍ଗୁଳି | ଅଙ୍ଗୁଳି |
| ୧୫୫ | ୯ | ନିପୁଣ | ନିପୁଣ |
| ୧୫୬ | ୬ | ମହାନୀଯ୍ୱତା | ମହନୀୟତା |
| ୧୭୦ | ୧୭ | ପୌର୍ବାପର୍ଯ୍ୟ | ପୌର୍ବାପର୍ଯ୍ୟ— |
| ୧୮୦ | ୧୫ | ପରମାତ୍ମ ଦର୍ଶନର | ପରମାତ୍ମଦର୍ଶନରେ |
| ୨୦୩ | ୨ | ସ୍ୱବୋଧ ଓ | ସ୍ୱବୋଧ |
| ୨୪୨ | ୧୫ | ଅନ୍ତର୍ଦ୍ଧୃତି | ଅନ୍ତର୍ଦ୍ଧୃତି |
| ୨୦୯ | ୪ | ପଣ୍ଡବ | ପାଣ୍ଡବ |
| ୨୫୬ | ୧୦ | ଅଗରେ | ଅଗ୍ରରେ |

| ପୃଷ୍ଠା | ପଂକ୍ତି | ଅଶୁଦ୍ଧ | ଶୁଦ୍ଧ |
|---|---|---|---|
| ୨୬୩ | ୭ | ପରିଗୃରିକା | ପରିବ୍ରାଜକା |
| ୨୭୪ | ୫ | ସ୍ୱାମୀଙ୍କର | ମିତ୍ରର |
| ୨୭୨ | ୨୩ | ନେଇଅଛି | ନେଇ |
| ୨୭୩ | ୨୧ | ନିଭୋର | ବିଭୋର |
| ୨୮୮ | ୧୩ | ବୃଦ୍ଧିଃ | ବୃଦ୍ଧିଃ |
| ୨୯୩ | ,, | शरासन | शराशनम् |
| ୩୧୧ | ୨ | ପ୍ରିତି— | ପ୍ରତି— |
| ୩୧୪ | ୧୧ | ଦୋଭାଗ୍ୟରୁ | ଦୌର୍ଭାଗ୍ୟରୁ |
| ୩୩୧ | ୨୦ | ସାନୁମତୀ | ବସୁମତୀ |
| ୩୩୩ | ୧୦ | ବଲକାରରେ | ବଲାକାରରେ |
| ୩୪୨ | ୧୫ | 'ବକମବଂଶୀୟର | 'ବକମୋବଂଶୀୟ'ର |
| ୩୦୭ | ୧୩ | ଅଲାକାଂର | ଅଲଂକାର |
| ୩୦୮ | ୧୦ | ଦୂଷ୍ୟନ୍ତ | ଦୁଷ୍ୟନ୍ତ |
| ,, | ୧୩ | ଅନାଦାର | ଅନାଦର |
| ,, | ୧୪ | ଆଶୃଙ୍କର | ଅଶ୍ରୁଙ୍କର |
| ୩୬୮ | ୮ | ଦୃଷ୍ଟ୍ରୋରପି | ଦୃଷ୍ଟେରପି |
| ୩୭୭ | ୧୨ | पंङ्क्तिम । | पङ्क्तिम् । |
| ୩୮୫ | ୧୬ | ଅନୁପାତ | ଅନୁପ୍ରାସ |
| ୩୮୭ | ୧୫ | यौवनबतीं | यौवनवतीं |
| ୩୮୭ | ୨୧ | यौवनवतम | यौवनवतीम् |
| ୩୯୪ | ୭ | ସମର୍ଥନାସ୍ତ | ସମସ୍ତ ଶ ଦ |
| ୩୯୬ | ୨ | मञ्जम् | मञ्जम् |
| ୪୦୫ | ୫ | ଭିନ୍ନାଭିନ୍ନ | ଭିନ୍ନ ଭିନ୍ନ |
| ୪୦୬ | ୧୭ | ललित | ललिते |

—○—